ଗଳ୍ପ କୋଣାର୍କ
ପ୍ରଥମ ପାହାଚ

ସଂଯୋଜନା :
ଶ୍ରୀ ସୁବୋଧ ଦାସ
ଇ-୧୦, ନୂଆ କଲୋନୀ, ବାଦାମବାଡ଼ି
କଟକ-୭୫୩୦୧୨ (ଓଡ଼ିଶା)

ପ୍ରକାଶକ :
ଶ୍ରୀ ଗୋବିନ୍ଦଚରଣ ପାତ୍ର
ଓଡ଼ିଶା ବୁକ୍ ଷ୍ଟୋର
ବିନୋଦବିହାରୀ, କଟକ-୭୫୩୦୦୨

ପ୍ରଥମ ପ୍ରକାଶ : ୧୯୮୨

ମୁଦ୍ରଣ : ଗୀତାଞ୍ଜଳି ପ୍ରେସ
କଟକ-୭୫୩୦୦୨

ମୂଲ୍ୟ : ପଚିଶ ଟଙ୍କା ମାତ୍ର

**GALPA KONARKA**
First Part

*Compiled by* :
**Sri Subodh Das**
E-10, New Colony, Badambadi
Cuttack-753012 (Orissa)

*Published by* :
**Sri Govinda Charan Patra**
**ORISSA BOOK STORE**
Binodbehari, Cuttack-753002

First Publication : 1982

*Printed at* :
**Gitanjali Press**
Cuttack-753002

*Price* :
Rs. 25-00 only

# ମୁଖଶାଳା : ଅନୁଚିନ୍ତା

କଅଁଳ ବୃକ୍ଷ ଉଛନ୍ତି ମାଟି ବୁକୁରୁ ରକ୍ତ ଶୋଷି ବଞ୍ଚିବାର ଅଧିକାର ପାଇଛନ୍ତି ବୋଲି ଠିକ୍ ସମୟରେ ସେ ଟିକେ ପାଣି ପାଇବନି, ତା'ର କୋମଳ ଶାଖା ପ୍ରଶାଖାରେ ଆଲୁଅର ସୁନେଲି କିରଣ ଟିକେ ପ୍ରତିଫଳିତ ହେବ ନାହିଁ, ଶୀତଳ ପବନ ତାର ଝାଉଁଳି ପଡ଼ୁଥିବା ହାତ ଗୋଡ଼ରେ ଟିକିଏ କୋମଳ ସ୍ପର୍ଶ ଦେବନି; ତାହେଲେ ସେ କିପରି ବଞ୍ଚିବାର ସ୍ପୃହା ପାଇବ ? ଶୁଖିଲା ମାଟିର ସ୍ତନ, ଉଷର ମନ କେତେକାଳ ଆଉ ବଞ୍ଚାଇ ରଖି ପାରିବ ବୃକ୍ଷ ଗଛର ଚେଇଁ ଉଠୁଥିବା ଆତ୍ମାକୁ ? ଆମ ଗଳ୍ପ ସାହିତ୍ୟର ପରିବେଷ୍ଟନୀ ଭିତରେ ଆଖି ବୁଲାଇ ଆଣିଲେ, ଠିକ୍ ତାହାହିଁ ନଜରକୁ ଆସିବ । ମହାକାଳର ଜର୍ଜରିତ ପାପ୍ରଡିକ ଉଷର ଭୂଇଁରେ ସ୍ୱପ୍ନ ଗଛଟିର କଅଁଳ ପତ୍ରରେ ପୋକ ଧରି ଯାଉଛି । ସବୁଜିମା ଧୀରେ ଧୀରେ ପାଣ୍ଡୁର, ବିବର୍ଣ୍ଣ ହୋଇ ପଡ଼ୁଛି । ଚିର ସବୁଜ କୋଣାର୍କ ମୂର୍ତ୍ତିକୁ ଜନମାନସରେ ସାଇତି ରଖିବା ପାଇଁ କେତେ କଳ୍ପନା ସ୍ରଷ୍ଟା ମନରେ । ମହାକାଳର ଚନ୍ଦ୍ରଭାଗା କ୍ଷୀଣ ହୋଇଯାଇଛି । ସ୍ତର ସ୍ତର ବାଲୁକାର ସ୍ତୂପୀକୃତ ନୀରବତା ଭିତରେ ସ୍ରଷ୍ଟା ନିଶ୍ଚିହ୍ନ ହୋଇଗଲେ ବି ତାର ସୃଷ୍ଟିର କୋଣାର୍କ ଦମ୍ଭ ଧରି ଠିଆ ହୋଇ ରହିଛି । ଫକୀରମୋହନ...ସୁରେନ୍ଦ୍ର ମହାନ୍ତିଙ୍କଠାରୁ କହ୍ନେଇ, ଜ୍ୟୋତ୍ସ୍ନା, ଯଶୋଧାରା ପର୍ଯ୍ୟନ୍ତ, ସେଇ ଚିରଚଳିତ ପ୍ରବାହର ଧାରା ସୁସ୍ପଷ୍ଟ । ପ୍ରବାହମାନ କାଳର ସ୍ରୋତରେ ଅସଂଖ୍ୟ ଗଳ୍ପ ସ୍ରଷ୍ଟାଙ୍କ ଆବିର୍ଭାବ ଓ ପ୍ରସ୍ଥାନକୁ ଜୀବନ୍ତ କରି ରଖିବାର ପ୍ରୟାସ ଏହି ସଂକଳନ, "ଗଳ୍ପ କୋଣାର୍କ ।" ବିଭିନ୍ନ ସମୟରେ ଚେଇଁ ଉଠିଥିବା ସ୍ୱପ୍ନ ଗଛମାନଙ୍କର ପ୍ରାଣର ଉସ୍କୁ ବାନ୍ଧି ରଖିବାର ଏକ ଅଭୂତ ପାଗଳାମି । ହୁଏତ ଆସନ୍ତା କାଲିର ସ୍ରଷ୍ଟା ବା ଗବେଷକ ଏଇ ମୂର୍ତ୍ତିର କୋଣାର୍କରୁ ଖୋଜି ପାଇବେ ଅତୀତର ଜୀବନ ଚିନ୍ତାମାନଙ୍କୁ, ଫସିଲ ପାଲଟି ଯାଉଥିବା ଉଷର ପଥର ଦେହରେ ସ୍ୱପ୍ନଗଛର ଆତ୍ମସଚେତନତାକୁ ।

ଜୀବନର ଆରମ୍ଭ ଯେମିତି, ଶେଷ ବି ସେମିତି । ସ୍ୱପ୍ନଗଛର ଜନ୍ମ ଓ ମୃତ୍ୟୁ ସୂଚାଇ ଦିଏ ଅନ୍ୟ ଏକ ସ୍ୱପ୍ନଗଛର ଜନ୍ମ ଓ ମୃତ୍ୟୁକୁ । ସ୍ରଷ୍ଟାର ସୃଷ୍ଟି ବୁଝାଇ ଦିଏ ଜୀବନର ରହସ୍ୟମୟ ପରିବେଶକୁ । ଅବୋଲକରା ବା ବତିଶ ସିଂହାସନର ସ୍ୱପ୍ନିଳ ଆଈ ମା' କାହାଣୀରୁ ଫକୀରମୋହନଙ୍କ

ଚତୁର ପ୍ରାଞ୍ଜଳ ଜୀବନର ଧାରା ବା ବର୍ତ୍ତମାନର ନାରୁ, ରାଧାବିନୋଦ, ପ୍ରତିଭା, ଶ୍ୟାମାପ୍ରସାଦ ବା ଅନାଦି ସାହୁଙ୍କର ରହସ୍ୟାବୃତ୍ତ ଅଦ୍ଭୁତ ମଣିଷ ଜୀବନର ସନ୍ଦର୍ଭମାନେ ସେଇ ଗୋଟିଏ କଥା କହନ୍ତି । କେବଳ ଆଖିର ଚାହାଣୀ ବଦଳି ଯାଇଛି । କଥା କହିବାର ଢଙ୍ଗ ନିଆରା ହୋଇ ପଡ଼ିଛି । ସବୁ ଭିତରେ ମଣିଷ ଜୀବନ ଓ ତାର ଚତୁର୍ଦ୍ଦିଗରେ ଅଗଣା ଅଗ୍ନି ବଳୟ ପରି ଘେରି ରହିଥିବା ଭେଳିକିମାନଙ୍କର ଚଳପ୍ରଚଳ, ଆଲୋଡ଼ନ, କୋଳାହଳ ।

ଗଳ୍ପ କୋଣାର୍କ ସେଇ କୋଳାହଳମାନଙ୍କୁ ନିଜ ଅଙ୍ଗରେ ପ୍ରତିଧ୍ୱନିତ କରି ଅଗଣିତ ରସଗ୍ରାହୀ ବିଦଗ୍ଧ ପ୍ରାଣରେ ସଞ୍ଚରିତ କରାଇବାର ଏକ ପ୍ରକଳ୍ପ, ଏକ ବାସ୍ତବ ଆବଶ୍ୟକତା । ଅତୀତକୁ ସହଜରେ ପାଶୋରି ଦେଇଥିବା ମଣିଷକୁ ଏକ ଚେତାବନୀ । କାଳ ସହିତ ସଂଘର୍ଷ କରି ନିଜକୁ କଷ୍ଟିତ ପରିମାଣରେ ଧରି ରଖିଥିବା ଅତୀତର ସେଇ କୋଣାର୍କ କହେ ଅନେକ କାହାଣୀ, ଅନେକ ପ୍ରବଚନ । କେତେ କିସମର ମଣିଷଙ୍କ ଆତଯାତ ଏ ପୃଥିବୀରେ, କେତେ ରକମର ଚିନ୍ତା । କିଏ ହସୁଛି, କିଏ କାନ୍ଦୁଛି, କିଏ ବିରହରେ ଜର ଜର ହୋଇ ପଡ଼ୁଛି ତ କିଏ ବିଷାଦରେ ଘାଣ୍ଟି ହୋଇ ଯାଉଛି । ବିଦ୍ରୋହ ଆସୁଛି ପୁଣି ସାଲିସ୍ ହୋଇଯିବାର ମୋହ ଗ୍ରାସ କରୁଛି । ଏମନ୍ତ ବିଭିନ୍ନତା ଭିତରେ ଗୁନ୍ଥିଁଛି ସମନ୍ୱୟ, ସୌହାର୍ଦ୍ଦ୍ୟ । ମଣିଷକୁ ମଣିଷ ବୁଝି ପାରିବାର ଏକାଗ୍ରତା । ସ୍ରଷ୍ଟା ତାର ଗଳ୍ପରେ ନିଜ କଥା କହେ । ଅନ୍ୟ ମଣିଷ ତାର ସମାଜକୁ ବିଶ୍ଳେଷଣ କରି ନିଜସ୍ୱ ଅନୁଚିନ୍ତା ଟିକକ ପ୍ରକାଶ କରେ । କେଉଁ ମଣିଷ ଚରିତ୍ରଟିକୁ ଭଲପାଏ ତ କାହାକୁ ଭର୍ତ୍ସନା କରେ । କେଉଁ ସଭ୍ୟତାର ଜୟଗାନ କଲାଣି ତ କେଉଁ ସଭ୍ୟତାକୁ ଧ୍ୱଂସର ନୀରବ ଗୁମ୍ଫା ଭିତରକୁ ନିକ୍ଷେପ କରେ । ବିଭିନ୍ନ ସ୍ରଷ୍ଟା ବିଭିନ୍ନ କାଳରେ କିପରି ବିଭକ୍ତ ମଣିଷ ଚରିତ୍ର ଓ ସମସ୍ୟମାନଙ୍କ ଭିତରେ ସମନ୍ୱୟ ଆଣିଛି ତାର ପ୍ରମାଣ ଦେବ ଏ ସଂକଳନ ।

ଆସନ୍ତା କାଲିର ଗବେଷକ ଖୋଜି ପାଇବ ହଜିଲା ତୃପ୍ତି ଓ ଅବସାଦର ଜୀବନ୍ତ କାହାଣୀ ସମୂହକୁ । ଅନୁଭବ କରିବ ବିଭିନ୍ନ ସମୟରେ ତେଇଁ ଉଠିଥିବା ଗୃହ ଗଛମାନଙ୍କ ବିତର୍କିତ ମୁହୂର୍ତ୍ତିମାନଙ୍କୁ । ଉତ୍ତୀର୍ଣ୍ଣ ସମୟର ବାରଣ୍ଡାରେ ଠିଆହୋଇ ସେ ଯେଉଁ ସୂର୍ଯ୍ୟାସ୍ତ ଲକ୍ଷ୍ୟ କରିବ, ସେ ସୂର୍ଯ୍ୟାସ୍ତ ସୂଚାଇ ଦେବ ଅନ୍ୟ ଏକ ସୂର୍ଯ୍ୟୋଦୟକୁ । ଫକୀରମୋହନଙ୍କଠାରୁ ଏ ପର୍ଯ୍ୟନ୍ତ ଠିକ୍ ସେଇ କଥା ।

କାଳାନ୍ତରର ପୃଷ୍ଠଭୂମିରେ ନିଜର ସ୍ୱାତନ୍ତ୍ର୍ୟ ଓ ସ୍ଥିତି ବଜାୟ ରଖିଛି ଓଡ଼ିଆ ଗଳ୍ପ ସାହିତ୍ୟ, ଆଉ ତାହାର ଦୃଢ଼ ଆତ୍ମବିଶ୍ୱାସ ଉପରେ ଏ ଗଳ୍ପ ସଂକଳନର ପରିକଳ୍ପନା ଓ ପରିପ୍ରକାଶ । ଫକୀରମୋହନ, ମଚି ରାଉତରାୟ ଗୋପୀନାଥ, କିଶୋରୀଚରଣ, ନୀଳମଣି, ଅଖିଳମୋହନ, ମନୋଜ, କୃଷ୍ଣ-ପ୍ରସାଦ, ଜଗନ୍ନାଥପ୍ରସ ଦ, ଭବ ପଟ୍ଟନାୟକ, ବରେନ୍ଦ୍ର ଧଳ, ପ୍ରଶାନ୍ତ ମହାପାତ୍ର କିମ୍ବା ଜଗଦୀଶ ସମସ୍ତେ ଗୋଟିଏ ସମାନ୍ତର ଭିତ୍ତିଭୂମି ଉପରେ ଠିଆ ହୋଇ ନିଜନିଜ କଥା କହିଛନ୍ତି । କିଏ କେଉଁପରି ଜୀବନର ବିଭିନ୍ନତାକୁ ଅନୁଭବ କରିଛନ୍ତି, ସେଇ କଥାକୁ ଯୋର୍‌ରେ ଚିତ୍କାର କରି ପ୍ରକାଶ କରିଛନ୍ତି । "ନରେ ବା କୁଞ୍ଜରେ ଅଶ୍ୱତ୍ଥମା ହତ" ପରି ସବୁ ସତ ଅସତ୍ ମନେହୁଏ, ସବୁ ଥାଇବି ନଥିଲା ପରି ଦୃଶ୍ୟ ହୁଏ । ମୃତ୍ୟୁର ତଡ଼ିତ୍ ପ୍ରବାହରେ ଜର୍ଜରିତ ହୋଇଥିଲେ ବି ନବଜାତକର ସ୍ୱପ୍ନରେ ଆତ୍ମବିଭୋର ହୋଇପଡ଼େ । ଏଇ ବିଭିନ୍ନ ପର୍ଯ୍ୟାୟର ଅନୁଭୂତିଗୁଡ଼ିକୁ ଏକତ୍ର ସଂକଳନ କରି ସବୁ ସମୟର ସବୁ ସ୍ରଷ୍ଟାଙ୍କ ଭିତରେ ସମନ୍ୱୟ ଆଣିବାର ଆବଶ୍ୟକ ରହିଛି । କାରଣ ସ୍ରଷ୍ଟା ତ ନିଜେ ମଣିଷଟିଏ ବୋଲି ତା'ର ସୃଷ୍ଟିର ସାମ୍ରାଜ୍ୟ ଭିତରେ ସେ ଦୁର୍ଯ୍ୟୋଧନ ପରି ବାହୁସ୍ଫୋଟ ମାରି କହେ—ମୋ ଛଡ଼ା ଆଉ କିଏ ସେ ଧୀରରେ କୃଷ୍ଣ ! ରେ ମହାକାଳ ! କି ବିଚିତ୍ର ଏ ଆତ୍ମାଭିମାନ । ଏହି ଅଭିମାନର ସ୍ୱସଂଗୃହୀତ ଗର୍ବିତ ପୃଥିବୀର ମଣିଷ ଦ୍ରଷ୍ଟା ବୁଝି ପାରେନା, ସେ ଯାହା କହୁଛି, ଅନ୍ୟ ଜଣେ ଠିକ୍ ସେୟା କହିବାକୁ ଚାହୁଁଛି ।

ବେଲାଲସେନ୍‌ର ଆଖିରେ ସବୁ ସମାନ । ଅଥଚ ମଣିଷ ସ୍ରଷ୍ଟାଟି ନିଜ ଜୀବକାଳରେ କେତେ ଛଳନାର ପୋଷାକ ପିନ୍ଧେ, ନିଜ ଢାଲକୁ ମାଜି ଚକ୍ ଚକ୍ କରେ । କେତେ ପୁରସ୍କାର, ମାନପତ୍ର, ଜୟଗାନର ପାଚେରୀ ଭିତରେ ଶ୍ୱାସରୁଦ୍ଧ ହୋଇପଡ଼େ । ମହାକାଳର ବଙ୍କ ଚଢ଼େଇଟି କିନ୍ତୁ ଅତି ଚତୁରତାର ସହିତ ନିଜ ଚଞ୍ଚୁରେ ସାଉଁଟି ନିଏ ସ୍ରଷ୍ଟାର ସେଇ ସେଇ ସୃଷ୍ଟିମାନଙ୍କୁ, ଯେଉଁଥିରେ ଜୀବନ ଅଛି, ସତ୍ୟ ରହିଛି, ଆବିଷ୍କାର କରିବାର ଗୌରବ ରହିଛି, ଅମୃତାସ୍ୱିତ ସମୟର ସ୍ୱାକ୍ଷର ବହନ କରିଛି । ମଣିଷ ସ୍ରଷ୍ଟାଟି ଭିତରୁ ସେତେବେଳେ ଚେଇଁ ଉଠେ ସ୍ରଷ୍ଟା ମଣିଷଟି । ସେ ଦେଖେ ସବୁ ସୃଷ୍ଟି ସମାନ । ସବୁ ଗୋଟିଏ କଥା କହୁଛନ୍ତି । ସେଇକଥା ସମନ୍ୱୟର, ତେଣୁ କାହିଁକି ଏ ଆତ୍ମ ପିପାସା, ଆତ୍ମଗ୍ଲାନିର ନୀରବ କ୍ରନ୍ଦନ । ସବୁ କିଛି ମିଛ, କେବଳ ମାତ୍ର ସତ୍ୟ ସ୍ରଷ୍ଟାର ସୃଷ୍ଟି ।

ଏ ସଂକଳନର ଗୌରବ ରହିଛି ସେଇ ସମନ୍ୱୟର ସ୍ୱରରେ । ଆଜି ପର୍ଯ୍ୟନ୍ତ ଯେଉଁ ଗଳ୍ପ ସଂକଳନମାନ ଆତ୍ମପ୍ରକାଶ କରିଛି, ସେଥିରେ ସମନ୍ୱୟର ସ୍ୱର ଅଭାବ; ବରଂ ତହିଁରେ ଅଛି ବିଦ୍ରୋହର, ସ୍ୱାର୍ଥପରତାର ସ୍ୱର । ପ୍ରତ୍ୟେକ ସଂକଳନର ଏକ ଗୁରୁ ଭୂମିକା ହେଲା, ତାହା ନିଜସ୍ୱ ଭାବ-ପ୍ରବଣତାର ଊର୍ଦ୍ଧ୍ୱରେ ରହି ଅତୀତର ସୃଷ୍ଟି ସମ୍ପର୍କରେ ଭବିଷ୍ୟତକୁ ସୂଚାଇ ଦେବା । ବହୁ ଯଶସ୍ୱୀ କଥାକାର, ସମାଲୋଚକ ତଥା ସାହିତ୍ୟିକ, ପାଣିପାଗକୁ ସୁହାଇଲା ଭଳି ଗଳ୍ପ ସଂକଳନ କରି ଆସିଛନ୍ତି । ବିଶ୍ୱବିଦ୍ୟାଳୟର ପାଠ୍ୟପୁସ୍ତକ ପାଇଁ ମୁଖ୍ୟତଃ ସେଗୁଡ଼ିକ ଉଦ୍ଦିଷ୍ଟ । ଏ ସମସ୍ତେ ଗୋଟିଏ ଗୋଟିଏ ଗୌରବମୟ ପ୍ରତିଶ୍ରୁତି; ମାତ୍ର ସବୁଥିରେ ପ୍ରାୟ ସମନ୍ୱୟ, ସୌହାର୍ଦ୍ଦ୍ୟର ଅଭାବ । ସଂକଳକ ସଂପ୍ରଦାୟଭୁକ୍ତ ହୋଇ ଭୁଲିଯାଏ ନିଜର କର୍ତ୍ତବ୍ୟ, ନିଜକୁ ଦୂରେଇ ରଖିପାରେ ନାହିଁ ଭଲ ପାଇବା ବା ଘୃଣା କରିବାର ଅକ୍ଷମଣୀୟ ଅପରାଧରୁ । ତେଣୁ ସଂକଳନ ଭିତରେ ନିର୍ଭୀକତା ଉଭାନ ହୋଇଯାଏ ।

ଗଳ୍ପ କୋଣାର୍କ ଏକ ନିର୍ଭୀକ ଚେତାବନୀ, ଆସନ୍ତାକାଲି ପାଇଁ ଏକ ସମ୍ଭାବ୍ୟମୟ ପ୍ରତିଶ୍ରୁତି । ଚିରାଚରିତ ଗଡ୍‌ଡାଳିକା ପ୍ରବାହଠାରୁ ଦୂରେଇ ଯାଇ ନୂତନ ଆଭିମୁଖ୍ୟ ବହନ କରିଛି । ଫକୀରମୋହନଙ୍କଠାରୁ ଏ ପର୍ଯ୍ୟନ୍ତ ବିଭିନ୍ନ ସ୍ରଷ୍ଟାମାନଙ୍କୁ ଗୋଟିଏ ସାରସ୍ୱତ ମଞ୍ଚରେ ଉପବିଷ୍ଟ କରାଇ କ୍ରମାନ୍ୱୟ ଭାବରେ କାହାଣୀ ଶୁଣେଇବାର ଯୋଜନା କରାଯାଇଛି । କାରଣ ଏ ସମସ୍ତଙ୍କ ଓଡ଼ିଆ ଗଳ୍ପ ସାହିତ୍ୟ ପାଇଁ ଏକ ଗୌରବମୟ ପ୍ରତିଶ୍ରୁତି । ଏହି ସ୍ୱଳ୍ପ ସମୟ ପ୍ରବାହ ଭିତରେ ଅନେକ ସ୍ରଷ୍ଟା ନିଜର ଐତିହ୍ୟ ଓ ସୃଷ୍ଟି ଜୀବନକୁ ଜୀବନ୍ୟାସ ଦେଇଛନ୍ତି । ଏ ସମସ୍ତ ସ୍ରଷ୍ଟାଙ୍କ ସମ୍ମାନ ସହ ଏ ସଂକଳନ ଗୁଚ୍ଛିକରେ ସଙ୍କଳିତ କରାଯାଇଛି ।

ସୁରେନ୍ଦ୍ର-ଗୋପୀନାଥ-ଅଖିଳମୋହନ-କିଶୋରୀ-ନୀଳମଣି-ମନୋଜ ବା ଶାନ୍ତନୁ-କୃଷ୍ଣପ୍ରସାଦ-ଜଗନ୍ନାଥପ୍ରସାଦ-ରବି, ବିରେନ୍ଦ୍ର-ପ୍ରଭାତ ବା ପ୍ରତିଭା ରାୟ, ଅନାଦି ସାହୁ ପର୍ଯ୍ୟନ୍ତ ସମସ୍ତଙ୍କୁ ଏକତ୍ର ବାନ୍ଧିରଖିବା ଏକ ବେଦନାକ୍ତ ଉପାଖ୍ୟାନ । ଏଇ ସମସ୍ତଙ୍କ ଓଡ଼ିଆ ଗଳ୍ପ କ୍ଷେତ୍ରରେ ଏକ ନବଜାଗରଣ, ନବ ଉନ୍ମେଷ । ପ୍ରତ୍ୟେକ ଗାଳ୍ପିକ ନିଜସ୍ୱ ପୃଥିବୀର ବୃତ୍ତ ଭିତରେ ଉଜ୍ଜୀବିତ ହୋଇଛନ୍ତି । ନିର୍ଭୀକ ଭାବରେ ନିଜର କହିଲା ପଣକୁ ନିଜର ରଖି ଜୀବନାନୁଭୂତିକୁ ପ୍ରକାଶ କରିଛନ୍ତି । ସୁରେନ୍ଦ୍ର ମହାନ୍ତି ଏକ ଅବିଚଳିତ ପ୍ରଜ୍ଞାମୟ ପୁରୁଷପରି କ୍ଷୟିଷ୍ଣୁ ସମୟର ପରିଧି ଭିତରେ ଜୀବନ ଚର୍ଯ୍ୟା କରିଛନ୍ତି । ଗୋପୀନାଥ ଜୀବନର ଚଳଚଞ୍ଚଳ କଥାକୁହା ଭାଷାରେ, ବହିଲା ସମୟର

ଢେଉପରେ ନହିକା ଉଟାର ମଙ୍ଗ ମୋଡ଼ିଛନ୍ତି । ପାଦଚଲି ମଣିଷର ଆତ୍ମନିବେଦନ, ଜଙ୍ଗଲରେ ଅମ୍ବିଲି ଆକାଶକୁ ଅନାଇ ଜୀବନ ସହି ନିରନ୍ତ ସଂଗ୍ରାମ କରୁଥିବା ମଣିଷର କଥା କହିଛନ୍ତି । ପଶୁପକ୍ଷୀମାନଙ୍କର ଚରିତ୍ର ଭିତରେ ମଣିଷ ମନର ଦ୍ୱନ୍ଦ୍ୱକୁ ସୁନ୍ଦର ଦେଇଛନ୍ତି କେଡ଼େ ସହଜ ଆଉ ସରଳ ଭାବରେ !

କୃଷ୍ଣଚରଣ ନିଜ ଚତୁର ଭାବାବେଶକୁ ସରଳ ଛନ୍ଦମୟ ପରିବେଶ ଭିତରେ ରୂପାୟିତ କରିଛନ୍ତି । ତାଙ୍କ ସୃଷ୍ଟିରେ ଜୀବନାନୁଭୂତି, ଯୌନଚର୍ଯ୍ୟା ଓ ତଦ୍‌ଜନିତ ଦାର୍ଶନିକ ମନୋଭାବ ପାଠକ ମନରେ ନୈସର୍ଗିକ ଭାବ-ଚେତନାର ପ୍ରଭାବ ପକାଇଛି । ଅନ୍ୟତମ ସଫଳ ସ୍ରଷ୍ଟା ତଥା ବର୍ଷୀୟାନ୍ ସାହିତ୍ୟିକ ଶାନ୍ତନୁ ବାବୁ ନିଜସ୍ୱ ସୃଷ୍ଟିରେ ଯେଉଁ ଉତ୍ତୁଙ୍ଗ ପ୍ରାସାଦ ସୃଷ୍ଟି କରିଛନ୍ତି ତାହା ଯେ ଓଡ଼ିଆ ସାହିତ୍ୟ ପାଇଁ ଏକ ଗୌରବମୟ ମୃତିସ୍ତମ୍ଭ, ଏହା ନିଃସନ୍ଦେହ । ଏଣେ ମନୋଜ ଦାସ ବିଂଶ ଶତାବ୍ଦୀ ମଣିଷର ମନକୁ ବିଶ୍ଳେଷଣ କରି ତାର ଭିନ୍ନ ଫର୍ଦ୍ଦ ନିରୂପଣ କରିଛନ୍ତି । ଯେକୌଣସି ମଣିଷ ଓ ତାର ସମାଜ ଭିତରେ ଝୁଲୁଥିବା କଳୁଷିତ ଅଳିନ୍ଦ୍ରମାନଙ୍କୁ ପୋଛିଦେବାର ପ୍ରଚେଷ୍ଟା ତାଙ୍କ ଗଳ୍ପର ପ୍ରଧାନ ଆଧାର । ବୈପ୍ଳବିକ ମାର୍କସୀୟ ହେଉ ବା ସାମାଜିକ ସଂଘର୍ଷ ହେଉ, ମନୋଜଙ୍କ ଗଳ୍ପ ମାନସରେ ଏକ ସାମ୍ୟବାଦୀ ମଣିଷର ପୁରୁଷାକାର ଆର୍ତ୍ତନାଦ କରିଚି, ସଂଗୋପିତ ବିଦ୍ରୋହ ଘୋଷଣା କରିଚି । ଅଖିଳମୋହନ ଗୋଟିଏ ଅଶାନ୍ତ ଗ୍ରହ ପରି ନିଜର ବଳୟରେ ନିଜେ ଅନେକ କ୍ଷୁଧା, ଯାତନା, ବିଦ୍ରୋହ, କ୍ଳାନ୍ତି ଓ ବିଷାଦ ଧରି ଘରି ବୁଲିଛନ୍ତି । ଲ୍ୟାମ୍ପପୋଷ୍ଟର ଇତିହାସ ଯେମିତି ତାଙ୍କର ନିଜସ୍ୱ ଇତିହାସକୁ ବାରମ୍ବାର ଇଙ୍ଗିତ କରୁଛି ବା ଅନ୍ଧଗଳିରେ ବାଟ ହୁଡ଼ିଥିବା ମଣିଷର ସର୍ବଶେଷ ଠିକଣା ରହସ୍ୟମୟ ମନେ ହେଉଛି । ସାମାଜିକ ଓ ପାରିବାରିକ ଜୀବନର ପ୍ରତ୍ୟେକଟି ବିଭାଗକୁ ଗଭୀର ଭାବରେ ଅନୁଶୀଳନ କରିଚି କିଶୋରୀ ଗଳ୍ପ ମାନସ । ଲକ୍ଷ୍ମୀଙ୍କ ଭଣ୍ଡାରଠାରୁ ସଂସାରର ସବୁ ଦର୍ଜା, ଝର୍କା ଖୋଲିଯାଇଛି ବୁଝିବାକୁ ମଣିଷର ମନକୁ, ତାର ଅନ୍ତର୍ନିହିତ ଦ୍ୱନ୍ଦ୍ୱକୁ । ଆଉ ଝର୍କା ଖୋଲିଗଲେ ତ ନୀଳମଣିଙ୍କର କପୋତ ପକ୍ଷୀ ଉଡ଼ିଯାଉଚି ତ ଯାଉଚି । ଉଡ଼ୁ ଉଡ଼ୁ କେତେବେଳେ ଅନ୍ଧାର ରାତିର ନିଃସ୍ୱପର ମନେ ହେଉଚି ତ କେତେବେଳେ ଶ୍ରୀଦୁର୍ଗାଙ୍କ ପାଦ ତଳେ ମହିଷାସୁର ପରି ଛଟପଟ ହେଉଚି ପାପପୁଣ୍ୟ, ଧର୍ମ ଅଧର୍ମ, ସାମାଜିକ ଅସାମାଜିକ—ବିଚାରମାନଙ୍କ ମଧ୍ୟରେ କଣ୍ଟରୁଦ୍ଧ ମଣିଷ ନୀଳମଣିଙ୍କ ଗଳ୍ପ ଭିତରେ ଯିବାବେଳେ ସଂଗ୍ରାମ କରିଚି । ନିଜର ଅଦ୍‌ଭୁତ କହିଲ ପଣିକି

ତାଙ୍କ ଗଳ୍ପ । ଅତି ସୁନ୍ଦର, ବ୍ୟଙ୍ଗାତ୍ମକ ଢଙ୍ଗରେ ହେଉ ବା ଅତି ଚତୁର ଦାର୍ଶନିକର ଭାଷାରେ ହେଉ, ସେ ନିଜ ଭିତରକୁ ଅତି ସୁସ୍ପଷ୍ଟ କରିଦିଅନ୍ତି । ମଣିଷ ଭିତରର ଭଗବନ୍ତ ଚେତନା ଓ ତାହାରର ବସ୍ତୁବାଦୀ ଚେତନା ଭିତରେ ଚାଲିଥିବା ସଂଗ୍ରାମ ହିଁ ନୀଳମଣି । ଗଳ୍ପ ମାନସର ଏକ ନିର୍ଦ୍ଦିଷ୍ଟ ସୋପାନ । ଶାନ୍ତନୁ ସେଇଠାରୁ ଆରମ୍ଭ କରିଛନ୍ତି ସଂଗ୍ରାମ । ଜୀବନର ପ୍ରତ୍ୟେକଟି ପରିବେଶ ବଞ୍ଚି ରହିବାକୁ ଚାହୁଁଥିବା ପ୍ରତ୍ୟେକଟି ଚରିତ୍ର ଉପରେ ସେ ଗବେଷଣାରତ ଏବଂ ନିଜେ ଜଣେ ଦାର୍ଶନିକ ପରି ପ୍ରତିଭାତ ହୁଅନ୍ତି । ଠିକ୍ ସେମିତି ମନେହୁଏ ତାଙ୍କର ଭାଷା, କେତେବେଳେ ଦିବାଲୋକ ପରି ସୁସ୍ପଷ୍ଟ ତ କେତେବେଳେ କୁହୁଡ଼ିଆ ପୁଣି କେତେବେଳେ ଆଚ୍ଛାଦିତ ଅହଂରୂପି ଅନ୍ଧାର ଭିତରେ ଛଟପଟ ହୁଏ । କୃଷ୍ଣପ୍ରସାଦଙ୍କ ଦୃଷ୍ଟିରେ ଏମିତି ଛଟପଟ ହେଉଥିବା ମଣିଷ ଓ ତାହାର ଭାଷା ହିଁ ମଣିଷର ସ୍ଥିତିକୁ ଅଧିକ ସୁଦୃଢ଼ କରେ । ସ୍ରଷ୍ଟା-ମାନସ ଦିଗ ବିସ୍ତାର କରେ । ନିଜସ୍ୱ ଅନୁଭୂତିରୁ ଆରମ୍ଭ କରି ଦାର୍ଶନିକ ମନର ବଳୟର ଭିତରେ ଆବଦ୍ଧ କୃଷ୍ଣପ୍ରସାଦ ଏବେ ସନାତନ ଓଝାଙ୍କୁ ମଣିଷର ପ୍ରଚଣ୍ଡ ଗହଳ ଭିତରେ ଖୋଜୁଛନ୍ତି । ରହସ୍ୟମୟ ମନେହୁଏ ଏ ଖୋଜିବା, ସେମିତି ଖୋଜିବା ବୀଣାପାଣିଙ୍କର ଏବଂ ସିଏତ ବୋଧହୁଏ ଏକମାତ୍ର ନାରୀ ଯିଏକି ଜୀବନ ନିର୍ଯାସରେ ପ୍ରତୀକ୍ଷାର ଦୀପଜାଳି ବିଂଶ ଶତାବ୍ଦୀ ମଣିଷର କଳୁଷିତ ଅନ୍ଧାରୀ ମନକୁ ଉଦ୍ଭାସିତ କରିବାରେ ତ୍ୟାଗନିଷ୍ଠ ସନ୍ନ୍ୟାସିନୀ, ଆଉ ସାମ୍ପ୍ରତିକ ସମାଜର ବିଷଧର କୃଷ୍ଣସର୍ପଟି ଜିହ୍ୱାଲମ୍ବାଇ ଅନ୍ୟକୁ ଦଂଶନ କରିବାକୁ ଧାଉଁଥିବାବେଳେ ପଦ୍ମତୋଳା ବୋଲି ଆସ୍ୱାଦ କରିବାର କଳାକୌଶଳରେ ପାରଙ୍ଗମ ସନ୍ନ୍ୟାସ ଶିଳ୍ପୀଟିଏତ ନିମାଇଁ ପଟ୍ଟନାୟକ ଏବଂ ଖୋଜି ଖୋଜି ଅନେକ କିଛି ପାଇଛନ୍ତି ବୋଧହୁଏ ହରି ମିଶ୍ର । ମାନସିକ ଦ୍ୱନ୍ଦ୍ୱ ଭିତରେ ଉବୁଟୁବୁ ମଣିଷର ସମସ୍ତ ଜଞ୍ଜାଳକୁ ସମାଧାନର ଏକ ସମାନ୍ତରାଳ ରେଖାରେ ପହଞ୍ଚାଇ ଦେଇ ଏକ ଦାର୍ଶନିକ ଚେତନାବୋଧର ଆଡ଼ମ୍ବର ସୃଷ୍ଟି କରିବା ତାଙ୍କର ସ୍ୱାତନ୍ତ୍ର୍ୟ । ଭିନ୍ନ ଦୃଷ୍ଟିକୋଣ, ନୂତନ ରୁଚିବୋଧ ତଥା ସ୍ୱତନ୍ତ୍ର ରଚନାତ୍ମକ ଶୈଳୀରେ ଋଦ୍ଧିମନ୍ତ, ବରେନ୍ଦ୍ର କୃଷ୍ଣଙ୍କର ସମସ୍ତ ଗଳ୍ପ ଧାଧ୍ୱ ପାଠକ ମହଲରେ ବେଶ୍ ଆଲୋଡ଼ନ ତଥା ଆମୋଦ ସୃଷ୍ଟି କରିଥାଏ । ସରଳ ନିରାଡ଼ମ୍ବର ନିରୀହ ମଣିଷଟିଏ ପ୍ରଭାତବାବୁ, କିନ୍ତୁ ପରିପକ୍ୱ ସୃଷ୍ଟିର ନିଜସ୍ୱ ଗଳ୍ପାଧାର ଭିତରେ ତାଙ୍କ ସୃଷ୍ଟିର ସାମ୍ରାଜ୍ୟ ଏତେ ବ୍ୟାପକ ଯେ ଯେକୌଣସି ରସଗ୍ରାହୀ ପାଠକ ଆତ୍ମସନ୍ତୋଷର ରଜ୍ଜୁରେ ଆପେ ଆପେ ବାନ୍ଧି ହୋଇଯାଏ ।

ହଠାତ୍ ଓଡ଼ିଆ ଗଳ୍ପ ସୃଷ୍ଟି କ୍ଷେତ୍ରରେ ଏକ ନବୀନ ସମସ୍ୱର ଅଭ୍ୟୁଦୟ ହେଲା ରବି ପଟ୍ଟନାୟକଙ୍କଠାରୁ । ଅଗ୍ରସରଧର୍ମୀ ଗଳ୍ପମାନଙ୍କ ଭିତରେ ନାନା ରୂପକଳ୍ପ ଓ ପ୍ରତୀକମାନଙ୍କ ବ୍ୟବହାର କରି ଗଳ୍ପକୁ ଚିରାଚରିତ ପରଂପରାଠାରୁ ଦୂରେଇ ନେଇ ଯାହା କହିବାର କଥା ତାହାକୁ କେବଳ ସୂଚେଇ ଦେଲେ । ମଣିଷର ମନ ଭିତରେ ଅହରହ ଚାଲିଥିବା ସଂଘର୍ଷ ଓ ତଜ୍ଜନିତ ବିଷାଦ, ନୈରାଶ୍ୟ, ଗ୍ଳାନି ଓ ଛଳନାର ସାମ୍ରାଜ୍ୟ ଭିତରେ ଅନ୍ଧଗଳିର ଅନ୍ଧାରରେ ମଣିଷ ହଜି ଯାଉଛି । ସାଂପ୍ରତିକ ସମସ୍ୱର ପ୍ରତ୍ୟେକ ଚରିତ୍ର ଉପରେ ସେ ମାର୍ଜିତ ରୁଚିସଂପନ୍ନ ଗବେଷଣା କରି ବହୁରୂପୀ ମଣିଷର ମୁଖାମାନଙ୍କୁ ଚିହ୍ନାଇ ଦେଇଛନ୍ତି । ବେପରୁଆ ମଣିଷର ଛଳନାମୟ ପୃଥିବୀ ଧୀରେ ଧୀରେ ଅପସରି ଯାଉଛି । ଜୀବନକୁ ନୂଆ କରି ଚହ୍ନିବାର ଏ ପ୍ରୟାସ ଅତି ଗୁରୁତ୍ୱପୂର୍ଣ୍ଣ ମନେହୁଏ । କୈଳାସ ଲେଙ୍କାଙ୍କ ପରିବ୍ୟାପ୍ତ ପୃଥିବୀ ମଧ୍ୟରେ ଯୌନ ତାଡନା, ସାମାଜିକ ବିଶୃଙ୍ଖଳା, ଶ୍ରେଣୀ ସଂଘର୍ଷଠାରୁ ଆରମ୍ଭ କରି ସାଂସ୍କୃତିକ ଇତିହାସ ସୃଷ୍ଟି କରୁଥିବା ମଣିଷର ଭାବରାଜିକୁ ସେ ପ୍ରକାଶ କରିଛନ୍ତି । ଆଉ ପ୍ରଚଳିତ ଧାରାରେ ଉଦ୍‌ବୁଦ୍ଧ ସ୍ରଷ୍ଟାମାନେ ମଣିଷର ମନସ୍ତାତ୍ତ୍ୱିକ, ନୈସର୍ଗିକ ଭଗବଦୀୟ ଭାବଚେତନାମାନଙ୍କୁ ପ୍ରକାଶ କରିଛନ୍ତି ନିଜସ୍ୱ ସୃଷ୍ଟିରେ । ଚନ୍ଦ୍ରଶେଖରଙ୍କ ସଚେତନ ସଂଯମୀ ମନ ମଣିଷର ଏ ସମସ୍ତକୁ ନିଜ ଗମ୍ଭୀର ଭାଷା ମାଧ୍ୟମରେ ବ୍ୟକ୍ତ କରିଛନ୍ତି । ମଣିଷ ଯେମିତି ହୋଇଛି ନବଜାତକ ଏବଂ ସେ କ୍ରମଶଃ ନିଜକୁ ସମ୍ରାଟ ମନେକରିଛି ଏବଂ ନିଜସ୍ୱ ଆତ୍ମଚର୍ଯ୍ୟା ଫଳରେ ତାର ପତନ ନିଶ୍ଚିତ ମନେ ହେଉଛି । ପ୍ରଫୁଲ୍ଲ ତ୍ରିପାଠୀ ଭିନ୍ନ ସ୍ୱାଦର ଜଣେ ସ୍ରଷ୍ଟା । ଅଦ୍ଭୁତ ନିଜସ୍ୱ ଅଭିବ୍ୟକ୍ତି ଭିତରେ ସେ ଜୀବନ ଓ ସମାଜର ବିଭିନ୍ନ ଦିଗ ଉପରେ ଆଲୋକପାତ କରିଅଛନ୍ତି । ନବୀନ ଭାଷାର ସ୍ୱର ତାଙ୍କ ରଚନାରେ ସୁସ୍ପଷ୍ଟ । ସାମାଜିକ କୁସଂସ୍କାର ବିଧର୍ମୀ ମନୋଭାବ ବିରୁଦ୍ଧରେ ସେ ସଂଗ୍ରାମ କରିଛନ୍ତି ।

ଅନ୍ୟ ପକ୍ଷରେ ରତ୍ନାକର ବେଣ୍ କେମିତି ଗୋଟିଏ ରୋମାଣ୍ଟିକ୍ ଭାବାବେଗର ବର୍ଷୀୟାନ ପ୍ରହରୀ । ସିଧା ସଳଖ ପ୍ରକାଶ କରିଦେବାର ଆଗ୍ରହ ତାଙ୍କ ଗଳ୍ପର ସୁସ୍ପଷ୍ଟତାକୁ ପ୍ରମାଣ କରେ । ଚରିତ୍ର ଓ ପରିବେଶ, ସମୟ ଓ ସ୍ଥାନ ସମସ୍ତେ ଜୀବନର ପ୍ରେମ, ଘୃଣା ଓ ଈର୍ଷାର ପୃଥିବୀ ଭିତରେ ଆବଦ୍ଧ । ଆଉ ସେଇଥି ପାଇଁ ପ୍ରସନ୍ନ ପାଟଶାଣୀ ସାମ୍ୟବାଦ, ସମାଜବାଦ, ମାର୍କସୀୟ ଅନୁଚିନ୍ତାମାନଙ୍କ ଭିତରେ ଗୋଟିଏ ସାଲିସ୍ କରିବାକୁ ଚେଷ୍ଟା କରିଛନ୍ତି । ପ୍ରତିଭା ରାୟ ମଣିଷର ପ୍ରତ୍ୟେକଟି ମନସ୍ତାତ୍ତ୍ୱିକ ଅବସ୍ଥାକୁ

ଅନୁଶୀଳନ କରି ମଣିଷର ପର୍ଯ୍ୟାୟଭୁକ୍ତ ମାନସିକ ଅବସ୍ଥାକୁ ଜୀବନ୍ତ କରି ଗଢ଼ି ତୋଳିଛନ୍ତି ।

(…"ମଣିଷ ଜୀବନର ମନସ୍ତାତ୍ତ୍ୱିକ ଅବବୋଧ ସଙ୍ଗୁପ୍ତ ଦୈହିକ କାମନାର ପ୍ରଚଳିତ ସ୍ୱରସଂଳାପ, ଚିନ୍ତା ଓ ଚେତନାର ଅପୂର୍ବ ସମନ୍ୱୟ ଓ ସୃଷ୍ଟି ପାଇଁ ଗୌରବମୟ ପରମ୍ପରାର ତରୁଣତମ କଥାକାର ସୁବୋଧ ଦାସ ତ ଏ ଦଶକପାଇଁ ବିପୁଳ ସମ୍ଭାବନାର ପ୍ରତିଶ୍ରୁତି"….ଡକ୍ଟର କୃଷ୍ଣଚରଣ ବେହେରା—ମୁଖବନ୍ଧ—ଭିନ୍ନସ୍ୱାଦର ଗଳ୍ପ)

ଏ ସବୁ ଗଳ୍ପସ୍ରଷ୍ଟାଙ୍କ ସୃଷ୍ଟିରେ ରହିଛି ସମସ୍ୟା ଏବଂ ସେଇ ସମସ୍ୟାମାନଙ୍କଠାରୁ ଅହର୍ନିଶ ସଂଗ୍ରାମ କରୁଥିବା ମଣିଷର 'ମୁକ୍ତି । ଏଇ ମୁକ୍ତିର ସ୍ୱର ଦ୍ୱିଗୁଣିତ ହୋଇଛି ନବୀନ ସ୍ରଷ୍ଟାମାନଙ୍କ ସୃଷ୍ଟିରେ । ରାଧାବିନୋଦ, ବିଶ୍ୱରଞ୍ଜନ, ନାରୁ ମହାନ୍ତି, ପଦ୍ମଜ ପାଲ, କହ୍ନେଇ, ରାମଚନ୍ଦ୍ର ବେହେରା ଓ ଅନାଦି ସାହୁଙ୍କ ପର୍ଯ୍ୟନ୍ତ ସମସ୍ତେ ଅତ୍ୟନ୍ତ ଗମ୍ଭୀରଭାବରେ ସାଂପ୍ରତିକ କାଳର ମଣିଷ, ତାର ପୃଥିବୀକୁ, ତାର ପାପ ପୁଣ୍ୟ, ସ୍ୱର୍ଗ, ନର୍କ, ଆଲୁଅ ଅନ୍ଧାରର ଜ୍ୱାଳାମୟ ସ୍ଥିତିକୁ ଅନୁଶୀଳନ କରି ନିଜ ସୃଷ୍ଟିରେ ପ୍ରକାଶ କରିଛନ୍ତି । ଏମାନେ ଫ୍ରଏଡ଼, ମାର୍କସ, ସାର୍ତ୍ତ୍ରି, କେମ୍ୟୁ, ଜୋୟସ୍ ପ୍ରଭୃତି ସକଳ ଦାର୍ଶନିକ-ମାନଙ୍କ ଚିନ୍ତାଧାରାକୁ ନିଜସ୍ୱ ମନେକରି ଏକ ଅଦ୍ଭୁତ ଭାବପ୍ରବଣତାର ଶୀକାର ହୋଇଛନ୍ତି । ଏମାନେ ସମସ୍ତେ ବୁଦ୍ଧିଜୀବୀ । ନିଜ ପାରିପାର୍ଶ୍ୱିକ ଜୀବନର ବିଭିନ୍ନ ଅନୁଭୂତି ଭିତରେ ସମନ୍ୱୟ ପ୍ରତିଷ୍ଠା କରିଛନ୍ତି । ଆସନ୍ତା କାଲି ପାଇଁ ନିର୍ଭୀକ ଭାବଚେତନାର ଏମାନେ ଜଣେ ଜଣେ ନିର୍ଦ୍ଦିଷ୍ଟ ପ୍ରହରୀ । ଏଇ ଅବସରରେ କନ୍ହେଇଙ୍କ ସ୍ମୃତି ପ୍ରଜ୍ୱଳିତ ଗଳ୍ପ ମାନସ ଆହୁଲାଇ ଦିଏ ଅନ୍ଧାରୀ ହୃଦର ଆତ୍ମାକୁ । ଅତି ଅଳ୍ପ ବୟସରେ ବିଦାୟ ନେଇଥିବା ଏଇ ସ୍ରଷ୍ଟା ତାଙ୍କ ସୃଷ୍ଟିରେ ଜୀବନକୁ ଗ୍ରୁଟି ଗ୍ରୁଟାଇବାର ସଂକଳ୍ପ ନେଇଥିଲେ । ଯେମିତି ସତ୍ୟ ମିଶ୍ରଙ୍କ ଯୀଶୁଖ୍ରୀଷ୍ଟ ମହାଶୂନ୍ୟରେ ଝୁଲିରହି ବାରମ୍ବାର ସଂଳାପିତ ମୁହୂର୍ତ୍ତମାନଙ୍କୁ ସନ୍ଧାନ କରିଛି, ଶୂନ୍ୟତାର ଅବରୋଧ ମଧ୍ୟରେ । ପୁନର୍ଜନ୍ମର ପ୍ରତିଶ୍ରୁତି ବିଦ୍ରୋହୀର ଆତ୍ମିକ ଗୁମ୍ଫାମାନଙ୍କୁ ଶୂନ୍ୟକରି ବାରମ୍ବାର ଉଚ୍ଚାରଣ କରୁଚି । ନାରୁ ମହାନ୍ତିଙ୍କ ବୁଢ଼ା ଲୋକଟି ପାହାଡ଼ ଆରୋହଣ କରି ନିଜ କ୍ଳାନ୍ତ ପଦ ଦୁଇଟିକୁ ଅବିଶ୍ୱାସ କରୁଚି; ପୁଣି ବିଶ୍ୱାସର ବସନ୍ତ ମଳୟ ଭିତରେ ଆଶ୍ୱସ୍ତ ହେଉଚି । ବିଶ୍ୱାସ ଓ ଅବିଶ୍ୱାସର ଦୁର୍ଗ ଭିତରେ ଅବସ୍ଥାପିତ ସକଳ ଜୀବନଯାତ୍ରାର ଅଯୁମାରମ୍ଭ ହୋଇଛି ମାତ୍ର । ରାମଚନ୍ଦ୍ରଙ୍କ ଗଳ୍ପରେ ସେଇ ଜୀବନଚେତନା ପ୍ରତ୍ୟେକଟି ସ୍ତରରେ ଆତ୍ମ-

ପ୍ରକାଶ କରିଚି । ପଦ୍ମଜ ନିଜ କ୍ୟୋମସ୍କାର ସ୍ୱୟଂଶୃଙ୍ଖଳିତ ଲିପିକାରର ମୁଦ୍ରାକୁ ଲକ୍ଷ୍ୟ କରି ସୃଷ୍ଟି କରନ୍ତି ଅବସାଦ, ଅବଶୋଷ, ସ୍ଖଳିତ ଜୀବନର ମାନଚିତ୍ର ମାନଙ୍କୁ । ଚେତେଡ଼େଳିକାର ପରୀକ୍ଷା ଭିତରେ ମାର୍ଜିତ ରୁଚିସମ୍ପନ୍ନ ଶୈଳୀକୁ ସେ ଅସମ୍ଭବ ଭାବପ୍ରବଣତାର ବଶବର୍ତ୍ତୀ ଅନୁଭୂତିମାନଙ୍କର ଚରିତ୍ରକୁ ସଂଯୋଜିତ କରିଛନ୍ତି । ଯୌନ ଚେତନା ହେଉ ବା ଆତ୍ମଗ୍ଲାନି ହେଉ ବା ଉଦ୍ଭଟ ହେଉ ଆଧୁନିକ ଜୀବନର ଓ ମଣିଷର ସେଇ ଜ୍ୱାଳାମୟ ପୃଥିବୀକୁ କଳାତ୍ମକ ଢଙ୍ଗରେ ବିଶ୍ୱରଞ୍ଜନ ନିଜ ଗଳ୍ପ ମାଧ୍ୟମରେ ପ୍ରକାଶ କରିଛନ୍ତି । କବି ଭାବରେ ଏକ ପ୍ରଚଣ୍ଡ ପ୍ରତିଭାର ଅଧିକାରୀ ହୋଇ ମଧ୍ୟ ଏକ ଭିନ୍ନ ପୃଥିବୀର ବଳୟ ମଧ୍ୟରେ ଜଗନ୍ନାଥପ୍ରସାଦଙ୍କର ସମସ୍ତ ଗଳ୍ପ ଗୁଡ଼ିକ "ଶିଳ୍ପର, ବାସ୍ତବତାର, ଅନୁଭୂତିପୂର୍ଣ୍ଣ ପ୍ରଜ୍ଞାର । ଜୀବନର ସୂକ୍ଷ୍ମ ରହସ୍ୟକୁ ଗଭୀର ଭାବରେ ଅନୁଶୀଳନ କରି ଜୀବନବୃତ୍ତର କେନ୍ଦ୍ର ବିନ୍ଦୁରେ କମ୍ପନ ସୃଷ୍ଟି କରି ଏକ ବୃହତ୍ତର ଜୀବନ ବଳୟ ସହିତ ସେ ଯେଉଁ ସମ୍ବେଗାତ୍ମକ ସମ୍ବନ୍ଧ ସୃଷ୍ଟି କରିଛନ୍ତି ତାହା ଓଡ଼ିଆ ଗଳ୍ପ ସାହିତ୍ୟରେ ନିଶ୍ଚିତ ଏକ ବ୍ୟତିକ୍ରମ" । ଯଦିଓ ଓଡ଼ିଆ କଥା ସାହିତ୍ୟରେ ନବାଗତ ତଥାପି ନିଜ ପରିବ୍ୟାପ୍ତ ଜ୍ଞାନ-ପରିଧିର ବଳୟ ଭିତରେ ଅନାଦି ସାହୁ ବାସ୍ତବ ଜୀବନର ଯେଉଁ ନୂତନ ପ୍ରତ୍ୟୟ ତଥା ପ୍ରୟୋଗାତ୍ମକ ଶୈଳୀ ସୃଷ୍ଟି କରିଛନ୍ତି ତାହା ନିଶ୍ଚିତରେ ଏକ ସ୍ୱତନ୍ତ୍ର ଦିଗର ସନ୍ଧାନ ଦିଏ ।

ବର୍ତ୍ତମାନର ପୃଥିବୀରେ ଜନ୍ମ ଉଠୁଥିବା ଅହଙ୍କାରୀ ମଣିଷ ମନର ବିଷାଦ ନାଟକ କ୍ରମଶଃ ଓଡ଼ିଆ ଗଳ୍ପ ମଞ୍ଚକୁ ପ୍ରଭାବିତ କରିଛି । ଉତ୍କଳୀୟ ମହାନୁଭବତା, ସାଂସ୍କୃତିକ-ଐତିହାସିକ, ଦ୍ୱନ୍ଦ୍ୱମୟ ଚେତନା, ଜୀବନର ପର୍ଯ୍ୟାୟଭୁକ୍ତ ବିଭିନ୍ନ ଚେତନାମାନଙ୍କ ମଧ୍ୟରେ ସହାବସ୍ଥାନ ରକ୍ଷା କରିପାରିଛି ଓଡ଼ିଆ ଗଳ୍ପ । ସରଳ ନିର୍ବିକାର ଭାବରେ କଥାଟିକୁ କହିଦେବା କଥାକାରର ଦାୟିତ୍ୱ ହୋଇ ଆଉ ନାହିଁ । ସେ ସହନଶୀଳ ହୋଇ ପ୍ରତ୍ୟେକଟି ଚେତନାକୁ ନିଜର ମନେ କରି ସୃଷ୍ଟି କରି ଯିବ ଭବିଷ୍ୟତ ମଣିଷ ପାଇଁ ମହାକାବ୍ୟ । ଏତିକି ଆଶା ପୋଷଣ କରିବାକୁ ହିଁ ପଡ଼ୁଛି । ନିଜ ଗାଁ ମାଟି ପାଣି ପବନ ସହ ସାମିଲ ହେବାକୁ ପଡ଼ିବ ସ୍ରଷ୍ଟାକୁ । ଦରମଲା ନବୀନ ମଣିଷ ଜୀବନର ଗ୍ରନ୍ଥିଗଛରେ ସେ ବଞ୍ଚିବାର ଆଗ୍ରହ ସୃଷ୍ଟି କରି ପାରିବ ଯେମିତି, ରସ ସଞ୍ଚାର କରି ପାରିବ ଯେମିତି, ମଣିଷର କଥାହିଁ କହିବ ଯେମିତି । ସ୍ୱାଧୀନ ଭାବରେ ଏ ସ୍ରଷ୍ଟାଗଣ ସେମାନଙ୍କ ସୃଷ୍ଟିରେ ଗଢ଼ି ତୋଳିବେ ଅନ୍ୟ ଏକ କୋଣାର୍କ, ଯିଏ କି ଆଗାମୀ ବଂଶଧରମାନଙ୍କୁ ନିର୍ଦ୍ଦିଷ୍ଟ

ପ୍ରତିଶ୍ରୁତି ଦେବ ବଞ୍ଚିବାକୁ— ମଣିଷଟିଏ ପରି ହୋଇ ମଣିଷ ବଞ୍ଚିପାରିବ ଯେମିତି ।

କୋଣାର୍କ ଯେମିତି ନିଖୁଣ ଭାବରେ ଜୀବନର ବିଭିନ୍ନ ଭାବାନୁଭୂତିକୁ ସ୍ପଷ୍ଟ ଭାବରେ ପ୍ରକାଶ କରିଚି, ଯୌନ ଚେତନାରୁ ଶୂନ୍ୟ ଚେତନା ଆଡ଼କୁ ଆରୋହଣ କରିଚି, ସୌନ୍ଦର୍ଯ୍ୟମୟ ସୃଷ୍ଟିର ପ୍ରାଞ୍ଜଳ ରୂପ ପାଇ ପାରିଚି, ଠିକ୍ ସେଇମିତି "ଗଳ୍ପ କୋଣାର୍କ" ସୃଷ୍ଟିଇ ହୁଏ ସମୟରୂପି ବଳୟର ପୃଷ୍ଠଭୂମିରେ ପରମ ସ୍ରଷ୍ଟାଙ୍କ ଆଶୀର୍ବାଦରେ ଠିଆହୋଇ ରହିଚି କୋଣାର୍କ, ନିଜର ସ୍ୱାତନ୍ତ୍ର୍ୟକୁ ରକ୍ଷି । ମୈଥୁନ ରତ କ୍ରୀଡ଼ାର ଛନ୍ଦ, ଓଡ଼ିଆ ବୀରର ଶୌର୍ଯ୍ୟ ଚରିତ, ଓଡ଼ିଆ ସଂସ୍କୃତିର ଭାସ୍କର୍ଯ୍ୟର ପଥର ହାତୀର ପୃଷ୍ଠ ଦେଶ, ହିନ୍ଦୁ ଚେତନାର ମୁଦ୍ରା ବିଷ୍ଣୁ ସର୍ପଠାରୁ ଅଲେଖ ପରମବ୍ରହ୍ମ ଶୂନ୍ୟ ଚେତନା ପର୍ଯ୍ୟନ୍ତ ସମସ୍ତ ଦୃଶ୍ୟାବଳୀ ସମୟର ଚକ ସହ ତାଳ ରକ୍ଷି ଆଗେଇ ଚାଲିଚି କାଳ କାଳ ଧରି । ଓଡ଼ିଆ ଜୀବନ ଓ ସଂସ୍କୃତିର ରୂପ ପ୍ରତୀକ ଜଗନ୍ନାଥଙ୍କର ଗୋଟିଏ ଚକ୍ଷୁ ଏ ସମୟକୁ, ଏ ସମାଜକୁ ଆଖିଠାରି । ସବୁକିଛି ବୈଚିତ୍ର୍ୟମୟ ମନେହେଲେ ବି ସବୁ କିଛି ଆପାତ୍ ଶ୍ରେୟବୋଧ ହେଲେବି, ସବୁକିଛି ଆପଣାର, ସବୁ ନଥିବାର, ସବୁ ହଜି ଯାଇଥିବାର ବିକ୍ଷୁବ୍ଧ ପୃଥିବୀ ପୁଣି ଫେରିଆସେ ସବୁ ଥିବାର, ସବୁ ପାଇବାର ସମୁଦ୍ର କୂଳକୁ । ଓଡ଼ିଆ କଳା, ସାହିତ୍ୟ, ସଂସ୍କୃତି, ଭାସ୍କର୍ଯ୍ୟ, ଐତିହ୍ୟ ଏବଂ ତାର ମହାନ ସ୍ୱାତନ୍ତ୍ର୍ୟକୁ କାଳ କାଳ ଧରି ଜୀବନ୍ତ କରି ରଖୁ ଏହାହିଁ କାମନା । ସ୍ରଷ୍ଟା ତାର ଆପଣାର ପୃଥିବୀକୁ ଅନ୍ତରରୁ ନିବିଡ଼ ଭାବରେ ଭଲପାଉ । ଯାଯାବରର ଖୋଲା ମନ ନେଇ ଖୋଜି ବୁଲୁ ମହାନୁଭବ ଚେତନାମାନଙ୍କ ପ୍ରବାହକୁ । ଶକ୍ତ 'ପ୍ରସ୍ତର ଖଣ୍ଡକୁ ବାରମ୍ବାର ଆଘାତ କଲେ ହୁଏତ ସନ୍ଧାନ ମିଳିବ ସୁପ୍ତ ଝରଣାର ଅବଲୁପ୍ତ ଆତ୍ମାକୁ । ସେମିତି ଓଡ଼ିଆ ଗଳ୍ପ କୋଣାର୍କ ପୁଣି ଥରେ ଓଡ଼ିଆ ଜାତିର କଥା କହୁ । ଅମର କଥା, ଅତୀତ ପରି ମନେ ହେଉଥିବା ସବୁ ବର୍ତ୍ତମାନର କଥା, ହଜିଯିବାପରି ଦୃଶ୍ୟ ହେଉଥିବା ଫସିଲ, ମଣିଷର ସାଂସ୍କୃତିକ ଇତିହାସର କଥା ଏବଂ ମାତୃଗର୍ଭରେ ଚେଇଁ ଉଠୁଥିବା ଭ୍ରୂଣ-ଗଛଟିର ଭବିଷ୍ୟତ ପଞ୍ଜିକାର ବୈପ୍ଳବିକ ସୂର୍ଯ୍ୟୋଦୟର କଥା ।

ଶ୍ରୀଗୁଣ୍ଡିଚା : ୨୩-୬-୮୨ **ସୁବୋଧ ଦାସ**

# ଗଳ୍ପ କୋଣାର୍କ

## ପ୍ରଥମ ପାହାଚର ସ୍ରଷ୍ଟା :

**ବସନ୍ତ କୁମାର ଶତପଥୀ** (୧୫-୨-୧୯୧୫) ପାନ୍ଦଡ଼ା, ବାଙ୍ଗିରିପୋଷି, ମୟୂରଭଞ୍ଜ

ବୃତ୍ତି—ଅଧ୍ୟାପନା, ଇଂରାଜୀ ଭାଷା ଓ ସାହିତ୍ୟ ବିଭାଗ । (ଅବସରପ୍ରାପ୍ତ)

ପ୍ରକାଶନ—ଆକାଶୀ ଫୁଲ, ମାଂସାସୀମାନଙ୍କ ଉଦ୍ଦେଶ୍ୟରେ, ହାଇଡ୍ରାବାଦ ଅଙ୍ଗୁର, ଏଣ୍ଟିରୋମାଣ୍ଟିକ, ଗଙ୍ଗା ଓ ଗାନ୍ଧୀ, ଗୋଟିଏ ଆଳୁ, ନବଗ୍ରହ୍ମୀ (ଗଳ୍ପ, କବିତା ସଂଚୟନ, ଚମ୍ପା, ରବୀନ୍ଦ୍ର ନାଥଙ୍କ ରାଜା, ସେକ୍ସପିଅର କାହାଣୀମାଳା, ନବ ନାଟିକା, ଦୁଇଟି ଭ୍ରମଣ କାହାଣୀ ଓ ଅନ୍ୟାନ୍ୟ

ଅବାଞ୍ଛିତ—୧୫୨

**ସୁରେନ୍ଦ୍ର ମହାନ୍ତି** (୨୧-୫-୧୯୨୨) ପୁରୁଷୋତ୍ତମପୁର, କଟକ, ଅଧୁନା, ଶିବାନୀ, ଷ୍ଟୁଆର୍ଟ ପାଟଣା, କଟକ ।

ବୃତ୍ତି—ସାହିତ୍ୟ ଓ ରାଜନୀତି । ଲୋକସଭା ସଦସ୍ୟ,

ପ୍ରକାଶନ—ମହା ନଗରୀର ରାତି, ରୁଟି ଓ ଚନ୍ଦ୍ର, କୃଷ୍ଣଚୂଡ଼ା, ଶେଷ କବିତା, ସବୁଜ ପତ୍ର ଓ ଧୂସର ଗୋଲାପ, ମରାଳର ମୃତ୍ୟୁ, ମହାନିର୍ବାଣ, ଦୁଇ ସୀମାନ୍ତ, ଅନ୍ଧ ଦିଗନ୍ତ, ନୀଳଶୈଳ, ଶତାବ୍ଦୀର ସୂର୍ଯ୍ୟ ।
ଉତ୍କଳ ଯୁଗେ ଯୁଗେ, ପେକିଂ ଡାଇରୀ, କବି ଓ ନର୍ତ୍ତକୀ, ଓଡ଼ିଆ ସାହିତ୍ୟର ଆଦି ପର୍ବ, ଓଡ଼ିଆ ସାହିତ୍ୟର ମଧ୍ୟ ପର୍ବ, ଓଡ଼ିଆ ସାହିତ୍ୟର କ୍ରମ ବିକାଶ ଇତ୍ୟାଦି

ମହାନିର୍ବାଣ—ପ୍ରଥମ ଗଳ୍ପ

**ସାତକଡ଼ି ହୋତା** (୧-୧୦-୧୯୨୯) ଜଗନ୍ନାଥଖୁଣ୍ଟା, ମୟୂରଭଞ୍ଜ ।

ବୃତ୍ତି—ଭାରତୀୟ ରେଲୱେ ସର୍ଭିସର ଅନ୍ୟତମ ସର୍ବୋଚ୍ଚ ଅଫିସର ।

ପ୍ରକାଶନ—ଶୋଣିତର ସ୍ୱପ୍ନ, ଫୁଲର ଗୋଟିଏ ସୁରଭି, ବେଗମ ସାହେବା, କାଶବୁରୁର କନ୍ୟା, ମହାସ୍ନାନ (ଗଳ୍ପ) ବ୍ୟାକୁଳ ହୃଦୟ, ସ୍ୱପ୍ନ ଶିଉଳି, ଏତେ ସ୍ୱପ୍ନ ଏତେ ଆଲୋକ (ଉପନ୍ୟାସ), ମଧୁଛନ୍ଦା (କବିତା) ।

ଭଗବାନ—୧୬୭

**ଚନ୍ଦ୍ରଶେଖର ରଥ** (୧୭-୧୦--୧୯୨୯) ବଲାଙ୍ଗୀର

ବୃତ୍ତି—ଅଧ୍ୟାପନା, ଇଂରାଜୀ ଭାଷା ଓ ସାହିତ୍ୟ ବିଭାଗ

ପ୍ରକାଶନ—ଅନେକ ବନ୍ୟା ପରେ, ଅଶ୍ୱାରୋହୀର ଗଳ୍ପ, ସମ୍ରାଟ ଓ ଅନ୍ୟମାନେ, ଏନ୍ୟ ଏକ ସକାଳ (ଗଳ୍ପ) ଦୃଷ୍ଟି ଓ ଦର୍ଶନ, ଅଶ୍ରୁତ ସ୍ୱର, ଉତ୍ତର ଅରଣ୍ୟ, ମୁଁ ସତ୍ୟ ଧର୍ମ କହୁଛି, ମଧୁ ସନ୍ଧାତ, କ୍ରୀତଦାସର ସ୍ୱପ୍ନ, (ନିବନ୍ଧ) ସନ୍ଧାରୂଢ଼, ଅପୂର୍ଣ୍ଣ ଉପନିବେଶ, ନବ ଜାତକ (ଉପନ୍ୟାସ)

ଉତ୍ତର ପୁରୁଷ—୬୧

**ଦୁର୍ଗା ମାଧବ ମିଶ୍ର** (୧୨-୧୨-୧୯୨୯) ନୟାଗଡ଼, ପୁରୀ

ବୃତ୍ତି—ଭାରତୀୟ ପୋଲିସ୍ ସଂସ୍ଥାର ଅନ୍ୟତମ ସର୍ବୋଚ୍ଚ ଅଫିସର ।

ପ୍ରକାଶନ—ଜ୍ୟୋତିଷେ କହିଛନ୍ତି, ନନ୍ଦାକାନ୍ତା, ମୁଠିଏ ମାଟି ଟେନାଏ ଆକାଶ, ତାରା ଓ ତିମିର, ଫଲ୍‌ଗୁରେ ବନ୍ୟା, ନିଷାଦର ନିଃଶବ୍ଦ ଦାରଣ (ଗଳ୍ପ)

ଅବନ୍ଧୁ ମହୀ— ୨୩୧

**ଡକ୍ଟର କୃଷ୍ଣ ଚରଣ ବେହେରା** (୨-୭-୧୯୩୨) ଅର୍ଜୁନ ବନ୍ଧା, ବାଲେଶ୍ୱର

ବୃତ୍ତି—ଅଧ୍ୟାପନା : ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ ।

ପକାଶନ—ନାଟ୍ୟ ସାହିତ୍ୟ ପରିଚୟ, ପ୍ରଗତି ସାହିତ୍ୟ, ଅଶ୍ଳୀଳତା ବିପକ୍ଷରେ, କେତୋଟି ସାହିତ୍ୟକ ଅଭିଭାଷଣ—(ପ୍ରବନ୍ଧ ଓ ସମାଲୋଚନା), ନାରୀ ଏକ ନଦୀର ନାମ, ଗୋପନ ପତ୍ର, ଉଷା ଓ ପୋଡା, ସୃଷ୍ଟିର ସ୍ୱପ୍ନ, ବେଦୀ ଇତ୍ୟାଦି ଗଳ୍ପ (ଗଳ୍ପ ଗ୍ରନ୍ଥ)

କୁମ୍ଭଯୋନୀ—୧

**ଡକ୍‌ଟର କୃଷ୍ଣ ପ୍ରସାଦ ମିଶ୍ର** (୧୯-୪-୧୯୩୩) ବ୍ରହ୍ମପୁର, ଗଞ୍ଜାମ

ଅଧୁନା—ବିଶ୍ୱନାଥଲେନ୍, କଟକ

ବୃତ୍ତି—ଅଧ୍ୟାପନା : ଦର୍ଶନ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର, ଭୁବନେଶ୍ୱର ।

ପ୍ରକାଶନ—ତିନୋଟି ଉପନ୍ୟାସ, ଆଠଟି ଗଳ୍ପ ସଂଗ୍ରହ ଏବଂ ଦୁଇଟି ଜୀବନୀ ଅଦ୍ୟାବଧି ପ୍ରକାଶିତ ।

ଅଧିକାର—୨୪୫

**ଶାନ୍ତନୁ କୁମାର ଆଚାର୍ଯ୍ୟ** (୧୫-୫-୧୯୩୩) ସିଦ୍ଧେଶ୍ୱରପୁର, କଟକ
· ଅଧୁନା—"କୃଷ୍ଣପ୍ରିୟା" ଶହୀଦ ନଗର, ଭୁବନେଶ୍ୱର
ବୃତ୍ତି—ଅଧ୍ୟାପନା : ରସାୟନ ବିଜ୍ଞାନ ବିଭାଗ ।
ପ୍ରକାଶନ—ଏଇ ଶେଷ ପଦଟି, ଅରଣ୍ୟର ଚୂଳ, ଅଧିନ ବଉଳ, ମନ ମର୍ମର, ଏକ ବିଂଶ ଶତାବ୍ଦୀ ପାଇଁ ଗଳ୍ପ (ଗଳ୍ପ), ନର କିନ୍ନର, ଶକୁନ୍ତଳା, ସାହାର ପ୍ରଥମ ପାଦ, ଶତାବ୍ଦୀର କଟକେତା, ଅନ୍ୟ ଏକ ସମସ୍ତ ଅନ୍ୟ.ଏକ ଭାରତ, ଦକ୍ଷିଣାବର୍ତ୍ତ (ଉପନ୍ୟାସ), ମୋ କାଠ ଘୋଡ଼ା କଥା କହେ, ଆକାଶକୁ ସାତଟି ପାହାଚ (ଶିଶୁ ସାହିତ୍ୟ)
ଗଳ୍ପ ସେଇଠିକ ଯୋଉଠି ଭଗବାନ ଅଛନ୍ତି—୨୦୮

**ଡାକ୍ତର.ସରୋଜେଶ୍ୱରୀ ଦଳବେହେରା** (୧୩-୧୦-୧୯୩୩)
ମାର୍ଫତ୍ : କେ. ଶ୍ରୀନିବାସନ ଆଇ. ଏ. ଏସ. ଭୁବନେଶ୍ୱର
ପ୍ରକାଶନ—ସ୍ୱୈରୀ ଚଇତାଳି (ଗଳ୍ପ), ନଷ୍ଟ ନୀଡ଼ ଗୋଧୂଳି (ଉପନ୍ୟାସ)
ଧୂମକେତୁ—୧୬୧

**ମନୋରମା ମହାପାତ୍ର** (୧୦-୬-୧୯୩୪) ମାର୍ଫତ୍ : ସଦାଶିବ ମହାପାତ୍ର, ଆଇ. ଏଫ୍. ଏସ୍
ବୃତ୍ତି—ଅଧ୍ୟାପନା : ଅର୍ଥନୀତି ବିଭାଗ
ପ୍ରକାଶନ—ଯୁଆଡ଼ ସେଉଁଠି ଉଠେ, ଆମେ ସବୁ ନୀରବ ଦର୍ଶକ (କବିତା), ଏ ପୃଥିବୀ ଶରଶଯ୍ୟା, ବନ୍ଦ ଘରର କବାଟ, ପାଉଁଜର ପାଟି (ଗଳ୍ପ), ବିରାଡ଼ି-ମାନଙ୍କ ଅନଶନ, କେତୋଟି ମନଛୁଆଁ କାହାଣୀ, ପଶୁପକ୍ଷୀଙ୍କ ରାଇଜ କଥା, ରତ୍ନ ଦ୍ୱୀପ, ଖୁଡ଼ୀ ଓ କଖାରୁ (ଶିଶୁ ସାହିତ୍ୟ) ।
•ବନ୍ଦ ଘରର ଗୃହ—୧୨୯

**ମନୋଜ ଦାସ** (୧୯୩୪) ଶଙ୍ଖାରୀ, ଭୋଗରାଇ, ବାଲେଶ୍ୱର
ବୃତ୍ତି—ଅଧ୍ୟାପକ, ଆନ୍ତର୍ଜାତିକ ଶିକ୍ଷାକେନ୍ଦ୍ର, ପଣ୍ଡିଚେରୀ
ପ୍ରକାଶନ—ମନୋଜ ଦାସଙ୍କ କଥା ଓ କାହାଣୀ, ଲକ୍ଷ୍ମୀର ଅଭିସାର, ଆବୁ ପୁରୁଷ ଓ ଅନ୍ୟାନ୍ୟ ଗଳ୍ପ, ଧୂମ୍ରାଭ ଦିଗନ୍ତ ଇତ୍ୟାଦି ବହୁ ଗଳ୍ପ ପୁସ୍ତକ ।
ଓଟ—୨୫୩

**ଡକ୍ଟର ଚୌଧୁରୀ ହେମକାନ୍ତ ମିଶ୍ର** (୧୯୩୫) ଭେଡ଼ା, କଟକ
ବୃତ୍ତି—ଏନ୍. ସି.ଆର. ଟି. ନୂଆଦିଲ୍ଲୀରେ ପ୍ରଫେସର ଭାବରେ ଅବସ୍ଥାପିତ ।

ପ୍ରକାଶନ—ନଷିଦ୍ଧ ପୁସ୍ତକ, ଭଲ୍ଲୁକର ପୁଟ୍‌ପ୍ୟାଣ୍ଟ ଓ ଅନ୍ୟାନ୍ୟ ମଜ୍ଜାଗପ, ଟେଙ୍ଗରେଛା ଗପ, ଅଘଟଣ ସଙ୍କଳନ, କୁରୁକୁଳଆ ଗଳ୍ପ, ଚୌଧୁରୀ ହେମକାନ୍ତଙ୍କ ଶ୍ରେଷ୍ଠଗଳ୍ପ, କବି, ମରଣ ପରେ, ତାସ ଘର, ତାମିଲଗଳ୍ପମାଳା ଓ ମନୁଷ୍ୟର ରୂପ ଇତ୍ୟାଦି ବହୁ ପୁସ୍ତକ ପ୍ରକାଶିତ ।

ଗ୍ରୀଷ୍ମାବକାଶରେ ଜୀବନ୍ତ ଶବଯାତ୍ରା—୨୭୨

**ରବି ପଟ୍ଟନାୟକ** (୧୯୩୫) ରାଇରଙ୍ଗପୁର, ମୟୂରଭଞ୍ଜ,

ବୃତ୍ତି—ଭାରତୀୟ ଭୂତାତ୍ତ୍ୱିକ ସଂସ୍ଥାର ଉଚ୍ଚପଦସ୍ଥ ଭୂତତ୍ତ୍ୱବିଦ୍ ।

ପ୍ରକାଶନ—ଅସାମାଜିକର ଡାଏରୀ, ଅନ୍ଧଗଳିର ଅନ୍ଧକାର, ବହୁରୂପୀ, ରାଗଡୋଙ୍ଗ, ଯାଜ୍ଞସେନୀ, ହିରଣ୍ୟ ଗର୍ଭ (ଗଳ୍ପ)

ଗୋଟାଏ ଜପୁଡ଼ା ଗଛର କାହାଣୀ – ୧୯୧

**ଜଗନ୍ନାଥ ପ୍ରସାଦ ଦାସ** (୨୬-୪-୧୯୩୬) ପୁରୀ

ବୃତ୍ତି—ଭାରତୀୟ ପ୍ରଶାସନିକ ସଂସ୍ଥାର ଉଚ୍ଚପଦସ୍ଥ ଅଫିସର ।

ପ୍ରକାଶନ—ପ୍ରଥମ ପୁରୁଷ, ସୂର୍ଯ୍ୟାସ୍ତ ପୂର୍ବରୁ, ଅନ୍ୟସବୁ ମୃତ୍ୟୁ, ସବାଶେଷ ଲୋକ, ଯେ ଯାହାର ନିର୍ଜନତା, ଅସଙ୍ଗତ ନାଟକ, ଅନ୍ୟ ଦେଶ ଭିନ୍ନ ସମୟ (ଓଡ଼ିଆ ପୁସ୍ତକ) ।

ଫାଷ୍ଟ ପରସନ୍ (First person) ବିଫୋର ସନ୍‌ସେଟ୍ (Before sun set) ଲଭ୍ ଇଜ୍ ଏ ସିଜନ୍ (Love is a season) ଟାଇମ୍ ସ୍କେପ୍‌ସ୍ (Time scapes) ପୁରୀ ପେଣ୍ଟିଙ୍ଗ (Puri painting) (ଇଂରାଜୀ ପ୍ରକାଶନ)

ଏହା ବ୍ୟତୀତ ବହୁ ନାଟକ, ଗଳ୍ପ, କବିତା, ହିନ୍ଦୀ, ବଙ୍ଗଳା, ମରାଠୀ, ଗୁଜୁରାଟୀ, ମାଲୟାଲମ୍, ତାମିଲ, କନ୍ନଡ, ପଞ୍ଜାବୀ, ଉର୍ଦ୍ଦୁ ଇତ୍ୟାଦି ଭାଷାରେ ଅନୂଦିତ ହୋଇଛି ଏବଂ ବହୁ ନାଟକ ବେତାର ଏବଂ ଦୂର ଦର୍ଶନ ମାଧ୍ୟମରେ ପ୍ରସାରିତ ହୋଇଛି ।

ଦୁଃସ୍ୱପ୍ନ : ଅଥବା ଅବକାଶ ଅଫିସରୁ ଫେରିଗଲା କାହିଁକି ୧୮୦

**ବୀଣାପାଣି ମହାନ୍ତି** (ନଭେମ୍ବର ୧୯୩୬)

ମାର୍ଫତ—ସଚ୍ଚିଦାନନ୍ଦ ମହାନ୍ତି (ଆଡ୍‌ଭୋକେଟ୍) କେନ୍ଦ୍ରାପଡ଼ା କଟକ

ବୃତ୍ତି—ଅଧ୍ୟାପନା, ଅର୍ଥନୀତି ବିଭାଗ

ପ୍ରକାଶନ—ପାନ୍ଥଶାଳା ଓ ରକ୍ତ କରବୀ, ନବରଙ୍ଗ, କସ୍ତୁରୀ ମୃଗ ଓ ସବୁଜ ଅରଣ୍ୟ ରଜନୀର ତୃଷ୍ଣା, ସାମ୍ରାଜ୍ୟର ସ୍ୱର, ଅନ୍ଧକାରର ଗ୍ରହ, କାଳାନ୍ତର ଆରୋହଣ, ମଧ୍ୟାନ୍ତର, ବସ୍ତ୍ରହରଣ, ଇଣ୍ଟରଭ୍ୟୁ, ଅନ୍ୟ ଅରଣ୍ୟ (ଗଳ୍ପ)

ଅର୍ଘ୍ୟ—୨୬୯

ନମାଇ ପଟ୍ଟନାୟକ (ଏପ୍ରିଲ୍ ୧୯୩୮) ବଉଳ ସାହି ନୟାଗଡ଼, ପୁରୀ ।

ବୃତ୍ତି—ଅଧ୍ୟାପନା ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ ।

ପ୍ରକାଶନ—ପଦ୍ମତୋଳା, ଅନ୍ଧାରର ମୁହଁ, ନମାଇଁ ପଟ୍ଟନାୟକଙ୍କ କଥା ଓ କାହାଣୀ (ଗଳ୍ପ) ଲୋହିତ ଉଦ୍ୟାନ, (କବିତା)

ଗଙ୍ଗଦତ୍ତର ଉପାଖ୍ୟାନ—୮୦

ପ୍ରୀତମ (ପ୍ରଶାନ୍ତ ପଟ୍ଟନାୟକ) (୮-୧୦-୧୯୩୭)

ବୃତ୍ତି—ଓଡ଼ିଶା ପ୍ରଶାସନିକ ସଂସ୍ଥାର ଉଚ୍ଚପଦସ୍ଥ ଅଫିସର ।

ସାହିତ୍ୟକୃତି—ଶତାଧିକ ପରୀକ୍ଷା ଧର୍ମୀ ଗଳ୍ପ ଲେଖି ଓଡ଼ିଆ ସାହିତ୍ୟରେ ଆଲୋଡ଼ନ ସୃଷ୍ଟି କରିଥିବା ଏହି ପ୍ରତିଭା ତଥା ପ୍ରତିଭାବାନ୍ କଥାକାର ନିଜ ସୃଷ୍ଟି ମାଧ୍ୟମରେ ଅନ୍ୟକୁ ଆନନ୍ଦ ଦେବା ଏବଂ ଅନ୍ତରଙ୍ଗତା ସୃଷ୍ଟି କରିବା ଉପରେ ଅଧିକ ବିଶ୍ୱାସ କରନ୍ତି ।

ଦୁର୍ବଳମୁହୂର୍ତ୍ତ—୫୫

ବଳଭଦ୍ର ପଟ୍ଟନାୟକ (୮.୧୦.୧୯୩୭) ତିର୍ତ୍ତୋଲ, ଜଗତ୍‌ସିଂହପୁର, କଟକ ।

ବୃତ୍ତି—ଅଧ୍ୟାପନା, ଓଡ଼ିଆ ଭାଷା ସାହିତ୍ୟ ବିଭାଗ ।

ପ୍ରକାଶନ—ନାୟିକାର ନାମ ଶ୍ରାବଣୀ, ବଧୂ ନିରୂପମା, ସତୀ ଅସତୀ, ନଷ୍ଟ ଚରିତ୍ର, ତୃତୀୟ ପୁରୁଷ, ଦିନ ଯାଏ ଚନ୍ଦ୍ର ରହେ, ଚପଳଛନ୍ଦା, ଗାରେ କଜ୍ଜଳ ଧାରେ ଲୁହ, ଏଇଗାଁ, ଏଇମାଟି, ପାପପୁଣ୍ୟ ଓ କେଶବତୀ କନ୍ୟା ଇତ୍ୟାଦି ବହୁ ଉପନ୍ୟାସ, ଗଳ୍ପ ଓ କବିତା ପୁସ୍ତକ ପ୍ରକାଶିତ ।

ଜଣେ ଯୁବକ—୨୦୦

ରଘୁନାଥ ମହାପାତ୍ର (୭.୧୨.୧୯୩୯) ଝୁଟଣା, ବାବଲପୁର, ବାଲେଶ୍ୱର

ବୃତ୍ତି—ସହସମ୍ପାଦକ, "କଲ୍ୟାଣୀ" ରାଧାନାଥ କୋ ଅପରେଟିଭ ପ୍ରେସ, ବାଲୁବଜାର, କଟକ ।

ପ୍ରକାଶନ—ରଙ୍ଗ ବାହାରି, ସ୍ମୃତି ମଧୁର ନଈ, ଶୁଆ ନୁହେଁ ଶାରୀ, ଶେଷ ପ୍ରହର, ନଶୀ ବହୁଗୀ, ମନ ଅରଣ୍ୟ, (ଗଳ୍ପ) । ମୁଁ ମନ୍ତ୍ରୀ ହେବି, ଅନେକ ଉତ୍ତର ଆକାଶ, ନିଃସଙ୍ଗ ପୃଥିବୀ, ପ୍ରତିଶ୍ରୁତି (ଉପନ୍ୟାସ)

ବଳେଇ—୧୧୧

*

**ହରହର ମିଶ୍ର**—(୧୯.୧ .୧୯୪୦) ମାର୍କଣ୍ଡେଶ୍ୱର ସାହି, ପୁରୀ ।

ବୃତ୍ତି—ଅଧ୍ୟାପନା, ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ ।

ପ୍ରକାଶନ—ବୃଷଭର ଏକ ପାଦ, ମୂକ ତାନ୍ତ୍ରିକ, ଇଚ୍ଛାର ସାମ୍ରାଜ୍ୟ (ଗଳ୍ପ) ଶଙ୍ଖନାଦ, ଅକ୍ଷମ ଦେବତା, ଲଲି କାଳର ତପସ୍ୟା ସୂକ୍ତ ଶତକ, ଚନ୍ଦ୍ରବିମ୍ବ (କବିତା) ନୂତନ ସମ୍ପର୍କ, ଅନାମ କ୍ଷେତ୍ର, ବ୍ରାହ୍ମଣୀ ମଣ୍ଡପ (ଅନୁବାଦ) ମହି ଦଶଆ, କାଗଜ ଡଙ୍ଗା, ମଧୂଲିତା, ଗରଳ, ଘରର ଦୁଇଟି ଡେଣା, ହେ ନିଷାଦ ନିବୃତ୍ତ ହୁଅ, ବନାଗ୍ନି, କଳିତ ଗଜପତି, ଅଦୃଶ୍ୟ ନଟ, ସମ୍ଭବ ଅସମ୍ଭବ (ନାଟକ) ସ୍ୱର ଓ ସାଧକ, ଦୃଶ୍ୟ ଓ ଦୃଶ୍ୟାନ୍ତର (ପ୍ରବନ୍ଧ) ।

ବୃଷଭର ଏକ ପାଦ—୨୬୧

**ସୁଧାଂଶୁବାଳା ପଣ୍ଡା** (୧.୮.୧୯୪୧) ନୟାଗଡ଼, ପୁରୀ

ମାର୍ଫତ—ଇଞ୍ଜିନିୟର ସତ୍ୟବାଦୀ ପଣ୍ଡା, ହରିରାଜପୁର, ବାଙ୍କି, କଟକ ।

ବୃତ୍ତି—ଗୃହିଣୀ ଭାବରେ ସାହିତ୍ୟ ସେବା କରିବା ।

ପ୍ରକାଶନ—ନବବର୍ଷର ସକାଳ, ଯେ ଅଲୁଅଁ ଲୁଟିଦେଲା, (ଗଳ୍ପ) ଅବ୍ୟକ୍ତ ବେଦନା, ମୋ ଲେଖା ଅଶ୍ରୁର କାଳିରେ (ଉପନ୍ୟାସ) ବକୁଳ ବନର ରାଧା (ନାଟକ) ।

କଣ୍ଟିତ୍ କାନ୍ତା—୨୧୯

**କନକ ଦେବୀ** (୧୯୪୧) କୋଷଲ, ଡେଲାଙ୍ଗ, ପୁରୀ ।

ଅଧୁନା—ମାର୍ଫତ ପି. ଡ଼. ସି. ହରିଚନ୍ଦନ, ଭୂଷାନିବାସ ସଦର ଥାନା ଲେନ୍ ପୁରୀ ।

ବୃତ୍ତି—ନିପଟ ଗୃହିଣୀ ଭାବରେ ସାଂସାରିକ ଜଞ୍ଜାଳକୁ ଅତିକ୍ରମ କରି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିବା ।

ତାରା ଫୁଟିବାର ବେଳା—୮୯

**ବରେନ୍ଦ୍ରକୃଷ୍ଣ ଧଳ** (୨୫.୩.୧୯୪୨) ବାଙ୍କୀ, କଟକ

ବୃତ୍ତି—ସାମ୍ବାଦିକ : ମାତୃଭୂମି ଓ ନ୍ୟାସନାଲ ହେରାଲଡ଼

ପ୍ରକାଶନ—ପାଣିଗାର, କବଚ (ଗଳ୍ପ), ସନ୍ଧ୍ୟାରେ ମୁକୁର, ବିଦଗ୍ଧ ବିହଙ୍ଗୀ ନାୟିକା (ଉପନ୍ୟାସ), ରାଧାରାଣୀ, ରେଡ଼ିଓସର କାହାଣୀ, ଶାମ୍ବ (ଅନୁବାଦ) ପିଲାଏ ହସିଲେ ପୃଥିବୀ ହସେ (ଶିଶୁ ସାହିତ୍ୟ)

କବଚ—୧୪୧

କାଳୀ ଚରଣ ଦାସ (୧୯.୧୨.୧୯୪୨) କଅଁଳ ଯୋଡ଼, ଛତ୍ରପୁର, ପୁରୀ ।

ବୃତ୍ତି—କଲିକତାସ୍ଥିତ ଏକ କାରଖାନାରେ ସହକାରୀ ମ୍ୟାନେଜର ରୂପେ ଅବସ୍ଥାପିତ ।

ପ୍ରକାଶନ—ଦଗ୍‌ଦଳସ୍ଥ (ଗଳ୍ପ)

ଉପସର୍ଗ—୩୫

ଡକ୍ଟର ପ୍ରତିଭା ରାୟ (୨୧.୧.୧୯୪୪) "ଅଖ୍ୟାୟିକା" ତୁଳସୀ ପୁର, କଟକ.

ବୃତ୍ତି—ଅଧ୍ୟାପନା : ଶିକ୍ଷା ବିଭାଗ

ପ୍ରକାଶନ—ବର୍ଷା ବସନ୍ତ ବୈଶାଖ, ଉପ ନାୟିକା, ଶଶଶିଭଲି, ନଈଁଚର ସପନ, ଅପରିଚିତା, ପରିଚୟ, ନାସ୍ତିକ ପୃଥିବୀ, ପୁଣ୍ୟତୋୟା, ଆଶାବରୀ, ଡାଳିମ୍ବ ଫୁଲର ହସ, ନୀଳତୃଷ୍ଣା, ମେଘ ମେଦୁର, ଅସ୍ତମାରମ୍ଭ, ସମୁଦ୍ରର ସ୍ୱର, ଅରଣ୍ୟ (ଉପନ୍ୟାସ) ସାମାନ୍ୟ କଥନ, ଅସମାପ୍ତ, ଐକତାନ, (ଗଳ୍ପ) ଚନ୍ଦନ ଓସ୍ତାଦ୍, ମିଛ ମିଛିକା ସତ ସତିକା (ଶିଶୁ ସାହିତ୍ୟ) ।

ମୁଁ—୨୫

ଡକ୍ଟର ପୂର୍ଣ୍ଣାନନ୍ଦ ଦାନୀ (୧୯୪୪) ମହାନ୍ତପଡ଼ା, ସମ୍ବଲପୁର

ବୃତ୍ତି—ଅଧ୍ୟାପନା ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ । ଶତାଧିକ ପରୀକ୍ଷାଧର୍ମୀ ତଥା ରୁଚିଶୀଳ ଗଳ୍ପ ଲେଖି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିବାରେ ଯାହାଙ୍କ ଦାନ ଉଲ୍ଲେଖନୀୟ ତାଙ୍କର ଏକାଧିକ ପୁସ୍ତକ ଖୁବ୍ ଶୀଘ୍ର ପ୍ରକାଶ ଅପେକ୍ଷାରେ ।

ଅରଣ୍ୟ ଜାତ—୨୨୬

ରାଧାବିନୋଦ ନାୟକ (୩.୧.୧୯୪୫) କାଶୀମ୍ ପୁର, ଅଷ୍ଟିପାଲ, ବାଲେଶ୍ୱର ।

ବୃତ୍ତି—ଅଧ୍ୟାପନା : ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ

ପ୍ରକାଶନ—ପରାଣ ପିଉଲା କାଦୁଅ, ଅନୁଚ୍ଚାରିତ, ଅପେକ୍ଷାର ଦିନ ରାତି (ଗଳ୍ପ)

ଲାବଣୁ ନକଟ—୬୫-୭୨

ଡକ୍ଟର ରତ୍ନାକର ଚଇନି (୨୫.୮.୧୯ ୫) ଅରେଇ, ସାଲେପୁର, କଟକ ।

ବୃତ୍ତି—ଅଧ୍ୟାପନା : ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ ।

ପ୍ରକାଶନ—ଗପ, ମୁଠାଏ ଶୂନ୍ୟତା, କଳ୍ପଲତା, ସୂର୍ଯ୍ୟାସ୍ତର ଉପବନ, ନଷ୍ଟିଦ୍ଧ ଶୃଙ୍ଗାର, ରାତ୍ରୁ ନାମ ପିପାସା (ଗଳ୍ପ) ଶେଷ ଅଶ୍ରୁ, ଅସ୍ତରାଗଚନ୍ଦ୍ର, ମଞ୍ଚ ନାୟିକା, ରାଜହଂସ, ଅପଦେବତା, କଳଙ୍କିତ ସୂର୍ଯ୍ୟ, ରଙ୍ଗ ତରଙ୍ଗ, ଅନେକ କ୍ୟାକ୍ଟସ୍, ଅନ୍ଧାରର ସୂର୍ଯ୍ୟମୁଖୀ, ନଚିକେତା ଉବାଚ; ଅଗ୍ନିର ଉପତ୍ୟକା, ପୁନଶ୍ଚ ପୃଥିବୀ, ମୁଖା, ଅଚଥ ଗୃହେକ୍ୟ (ନାଟକ) କବି ଗୋପାଳକୃଷ୍ଣ, କବି ବନମାଳୀ, ଉତ୍କଳ ନାଟ୍ୟ-ପରମ୍ପରା, ମୋ ଆଖିର ମୂଲ, ଓଡ଼ିଆ ନାଟକର ଉଦ୍ଭବ ଓ ବିକାଶ ସମାଲୋଚନା)

ଏକୁଟିଆ ଆକାଶରେ—୧୬

ପ୍ରଫୁଲ୍ଲ କୁମାର ତ୍ରିପାଠୀ (୧୫.୮.୧୯୪୫) ଦେଶଭଟଲ ସମ୍ବଲପୁର ।

ବୃତ୍ତି—ଅଧ୍ୟାପନା : ଇଂରାଜୀ ଭାଷା ଓ ସାହିତ୍ୟ ବିଭାଗ ।

ପ୍ରକାଶନ—ଆତ୍ମଚରିତ, ଉଣା ଅଧିକ, ନଳ ସିଂହାସନ, ସପ୍ତାହ ଓ ଅନ୍ୟସାନ (ଗଳ୍ପ) ଏ ନଦୀ ଦେ ନୀର, ଅମର (ଉପନ୍ୟାସ) ଅନ୍ୟାନ୍ୟ ଇଲ୍ଲାକା ଓ ଅନ୍ୟାନ୍ୟ କବିତା ।

ଗୃହ—୧୨୧

ରାମଚନ୍ଦ୍ର ବେହେରା (୨-୧୧-୧୯୪୫) ବରହାଟି ପୁର, କେଉଁଝର

ବୃତ୍ତି—ଦ୍ୱିତୀୟ ଶ୍ମଶାନ, ଅବହ୍ଲା ପୃଥିବୀ

ଅନ୍ତୁର୍ଣୀ—୪୪

ପ୍ରମୋଦ ପଣ୍ଡା (୧୬.୫.୧୯୪୬) ଭଞ୍ଜନଗର, ଗଞ୍ଜାମ ।

ବୃତ୍ତି—ପ୍ରଶାସନିକ ଅଫିସର, ଓଡ଼ିଶା ରାଜ୍ୟ ଅର୍ଥ କର୍ପୋରେସନ ।

ପ୍ରକାଶନ—ଅସହାୟ ମୁହୂର୍ତ୍ତ, ଏକାନ୍ତ ବ୍ୟକ୍ତିଗତ ।

ପ୍ରତାରିତ ସମୟ—୯

ପ୍ରସନ୍ନ କୁମାର ପାଟଶାଣୀ (୧୭.୪.୧୯୪୭) ବାଲୁଗାଁ, ପୁରୀ ।

ବୃତ୍ତି—ରାଜନୀତି ଓ ଓକିଲାତି, ଅଧୁନା ଓଡ଼ିଶା ବିଧାନ ସଭାର ସଭ୍ୟ ।

ପ୍ରକାଶନ—ନିଆଁର ବନ୍ଧୁ ଓ ରକ୍ତ ବୃକ୍ଷର ପଶାଧ (ଗଳ୍ପ) ବାଘ ଆଁ ଭିତରେ ପିକ୍‌ନିକ, ଲେନିନ୍; ଅଗ୍ନିଯୁଗ, ବର୍ଷା ରକ୍ତପଥ, ସାପ ଗାତରେ ସକାଳ (କବିତା) ହୋରାଇଜନ୍ ଅଫ୍ ମାଇଁ ହିମାଳୟାନ୍ ଡନ୍,

(Horizon of my Himalayan Dawn) (In to the water) ଇନ୍ ଟୁ ଦ ଓ୍ୱାଟର (The broken Soliloquy of Sun) (ଦ ବ୍ରୋକେନ୍ ସଲିଲକି ଅଫ୍ ସନ୍)

ପଦ୍ମାଜୟୂ—୧୦୫

ବିଶ୍ୱରଞ୍ଜନ (୨୦.୧୧.୧୯୪୭) ଉଷା ମଣ୍ଡଳ, ବନମାଳୀ ସାହି, ପୁରୀ ।

ବୃତ୍ତି—ଅଧ୍ୟାପନା : ଉତ୍କଳ ବିଶ୍ୱବିଦ୍ୟାଳୟ ବିଭାଗ ।

ପ୍ରକାଶନ—କାଚ କଣ୍ଢେଇ, ଜୀବନ ଚର୍ଯ୍ୟା, ପଙ୍କ ଓ ପ୍ରତିଧ୍ୱନି, ତଥାପି ଅନେକ ଅଳ୍ପ କଥାର ଗଳ୍ପ କେତୋଟି ।

କେତେ ଦୂର ପୁରୀରୁ ଭୁବନେଶ୍ୱର—୨୩୮

କେଦାରସ୍ମୃତି ସାଉଡବାୟୁ (୧୦.୯.୧୯୫୩, ମାକଲପୁର, ବାଲେଶ୍ୱର ।

ବୃତ୍ତି—ଆପାତତଃ କିଛି ନାହିଁ, କିନ୍ତୁ ଗୋଟିଏ ଭଲ ଦିନ ଅପେକ୍ଷାରେ ।

ପ୍ରକାଶନ—ପୋଡାଗ୍ରସ୍ତ, ଅନ୍ୟ ନଦୀ ଅନ୍ୟ ଦିଗନ୍ତ । (ଗଳ୍ପ)

ପ୍ରାର୍ଥନାର ସ୍ୱର—୩୯



ଗଳ୍ପ : କୋଣାର୍କ ତୋଳବାକୁ
କୁଶଳୀ ସ୍ରଷ୍ଟାଗଣ ସେମାନଙ୍କର
ସଦସ୍ୟ ସ୍ୱୀକୃତ ଦେଇଥିବାରୁ
ତାଙ୍କୁ ଆନ୍ତରିକ କୃତଜ୍ଞତା

—ସଂଯୋଜକ

# ମହାନିର୍ବାଣ

## ସୁରେନ୍ଦ୍ର ମହାନ୍ତି

ଶତ ମକ୍ଷିକାର ଗୁଞ୍ଜରଣ ପରି, ଉପୋଷଥ-ବ୍ରତଧାରୀ ଭିକ୍ଷୁମାନଙ୍କର ଧାରଣୀ-ଆବୃତ୍ତିର ଅନୁନାସିକ ସଙ୍ଗୀତରେ ଗୃଧ୍ରକୂଟ-ବିହାର ଏକ ମଧୁଚକ୍ରର ଭ୍ରମ ସୃଷ୍ଟି କରିଥିଲା ।

"ଓଁ ନମଃ ସମସ୍ତ ବୁଦ୍ଧାନାଂ ଅପ୍ରତିହତ ଶାସନାମ୍"...ଧାରଣୀର ଅବଶିଷ୍ଟାଂଶ, ଆମ୍ରକୁଞ୍ଜର କେଉଁ ମଂଜରିତ ଶାଖାରେ ଗୋଟିଏ କୋକିଳର ଅଶାନ୍ତ କୁହୁରବ ମଧ୍ୟରେ, ଜଳୋପ୍ଲବ ବିସ୍ମୃତ ହୋଇ ପଡ଼ିଥିଲେ ।

ଦୃପ୍ତ...ମୂଢ଼, ନିର୍ବୋଧ ପକ୍ଷୀ !

ଅଥଚ ତୁମର ଏହି ପ୍ରମତ୍ତ ରତିଭିକ୍ଷା, ବିଶ୍ୱର ଶ୍ରେଷ୍ଠସଙ୍ଗୀତ ରୂପେ ବିବେଚିତ...ସ୍ୱର ଓ ମୂର୍ଚ୍ଛନାର ଏକ ବିଚିତ୍ର ନିର୍ବାଣ-ଲୋକ ! ଏହି ତ ନିର୍ବାଣ.... ଏକ ଅନିର୍ବଚନୀୟ ଅତଳ ଶୂନ୍ୟତା, ଯାହା ମଧ୍ୟରେ ସବୁ ସତ୍ତା ଲୋପ ପାଇଥାଏ; ପୁଣି ଯେଉଁ ଶୂନ୍ୟତା ମଧ୍ୟରେ ସବୁ ପୂର୍ଣ୍ଣତା ଏକ ପ୍ରାଚୁର୍ଯ୍ୟରେ ଉଦ୍‌ଭାସିତ ହୋଇ ଉଠେ ।

କୋକିଳର କୁହୁଧ୍ୱନି, ଘନସ୍ୱାଘନ ଆମ୍ରକୁଞ୍ଜର ଗଭୀର ଅନ୍ତଃସ୍ଥଳ ମନ୍ଥିତ କରି, ବିଦୀର୍ଣ୍ଣ କରି, କାମନାର ପ୍ରମତ୍ତ ଆଲୋଡ଼ନ ପରି, ବାରମ୍ବାର ପ୍ରତିଧ୍ୱନିତ ହୋଇ ଉଠୁଥିଲା ।

ଜଳୋପ୍ଲବ ଧାରଣୀ-ଆବୃତ୍ତି ଭୁଲି, ସେହି କୁହୁଧ୍ୱନି ଆତ୍ମବିସ୍ମୃତ ପରି ଶୁଣୁଥିଲେ ।

ଏକ ବିବସ୍ତ୍ରା ନାରୀର, ସୁତୀକ୍ଷ୍ଣ, ଶାଣିତ ଅଙ୍ଗରେଖା ପରି, ଆମ୍ର-କୁଞ୍ଜର ମଞ୍ଜରିତ ଶାଖାମାନ, ଗୃଧ୍ରକୂଟ ବିହାରର ବାତାୟନହୀନ ନିରୁଦ୍ଧ କକ୍ଷର ଦକ୍ଷିଣ ଦ୍ୱାର ଦାହାରେ, ସ୍ୱର୍ଣ୍ଣାଭ ଆକାଶର ପୃଷ୍ଠଭୂମିରେ ଉତ୍କୀର୍ଣ୍ଣ ହୋଇଥିଲା ।

•

ଏକଲକ୍ଷ ଆଠବାର ଧାରଣୀ ଆବୃତ୍ତି କଲେ, ଗଣ୍ଡବ୍ୟୂହ ସୂତ୍ରପାଠର ପୁଣ୍ୟଫଳ ମିଳିଥାଏ····ଉପୋଷଥ ଉତ୍ସବର ବିଧି ।

ବସନ୍ତର ଏହି ସକାଳରେ ବେଣୁ, ମୁକୁଳିତ ଆମ୍ର ଶାଖାରେ ବସନ୍ତ ନାଗର ମଞ୍ଜରିତ ଅଙ୍ଗରେଖା କଳ୍ପନା କରିବା ପାଇଁ ବେଳନାହିଁ, ବେଳ ନାହିଁ··· ! ଦଳେ ମୋକ୍ଷକାମୀ ଭକ୍ତ ନୀଳୋତ୍ପଳଙ୍କ କକ୍ଷଆଡ଼େ ଆସୁଥିଲେ । ଉପୋଷଥ ଉତ୍ସବରେ, ଭିକ୍ଷୁମାନଙ୍କ କଣ୍ଠରେ ଧାରଣୀର ଆବୃତ୍ତି ଶୁଣିଲେ ମଧ୍ୟ ମୋକ୍ଷର ପଥ ସୁଗମ ହୋଇଥାଏ । ସେଥିପାଇଁ ମୋକ୍ଷର ମୂଲ୍ୟରୂପେ, ଭିକ୍ଷୁମାନଙ୍କ ସମ୍ମୁଖରେ ସ୍ଥାପିତ ଜଳପୂର୍ଣ୍ଣ ପାତ୍ରମାନଙ୍କରେ କାର୍ଷାପଣମାନ ପକାଇ, କକ୍ଷ ମାନଙ୍କର ପ୍ରାଚୀର-ଗହ୍ୱରରେ ପ୍ରତିଷ୍ଠିତ, ଅବଲୋକିତେଶ୍ୱର ଓ ପ୍ରଜ୍ଞାପାରମିତା, ଅମୋଘସିଦ୍ଧି ଓ ତାରା ଅଥବା ଅକ୍ଷୋଭ୍ୟ ଓ ଲୋଚନା ପ୍ରଭୃତି ବୌଦ୍ଧ ଦେବ-ଦେବୀଙ୍କର ଯୁଗନଦ୍ଧ ମୂର୍ତ୍ତିମାନଙ୍କଠାରେ ଗୋଟିଏ ଗୋଟିଏ ଦୀପ ଜଳାଇ, କକ୍ଷରୁ କକ୍ଷାନ୍ତର, ସମସ୍ତ ବିହାର ପରିକ୍ରମା କରିବା, ମୋକ୍ଷକାମୀ ଭକ୍ତ ଓ ଯାତ୍ରୀମାନଙ୍କର ଉପୋଷଥ ଉତ୍ସବରେ ବିଧି ।

ନୀଳୋତ୍ପଳ ସ୍ୱପ୍ନରୁ ଉଠିଲା ପରି ପୁଣି ଧାରଣୀ ଆବୃତ୍ତି କଲେ···

"ଓଁ ନମଃ ସମନ୍ତ ବୁଦ୍ଧାନାଂ ଅପ୍ରତିହତ ଶାସନାମ୍
ଉତ୍ତମୋତ୍ତମ ଆଗଚ୍ଛେ ଭବ ହ୍ରୀଂ ଫଟ୍ ସ୍ୱାହା !"

ନୀଳୋତ୍ପଳଙ୍କ କକ୍ଷରେ ଯାତ୍ରୀମାନେ ଦର୍ଶନବିଧି ସମାପ୍ତ କରି, ଘୃତଦୀପ ଜାଳି ଚାଲିଗଲେ । ପୋଡ଼ା ଘିଅ ଓ ସଳିତାର ତୀବ୍ର ଗନ୍ଧରେ କକ୍ଷର ବାତାବରଣ ହଠାତ୍ ଭାରି ହୋଇ ଉଠିଲା ।

କିନ୍ତୁ ଯାହାଙ୍କର ମଞ୍ଜିର ଧ୍ୱନି ଓ କଙ୍କଣନାଦ ଶୁଣିବା ପାଇଁ ନୀଳୋତ୍ପଳ ଉତ୍କଣ୍ଠ ହୋଇ ଅପେକ୍ଷା କରିଥିଲେ···କାହାନ୍ତି ସେ, ଶ୍ରେଷ୍ଠୀ ଶ୍ୱେତ-ପର୍ଣ୍ଣର ବଧୂ ମଧୁବ୍ରତା ?

ଆଃ···ମଧୁବ୍ରତା !

ବଜ୍ରଦନ୍ତ ଶତ୍ରୁର ଜ୍ୱାଳାମୟ ମୁହୂର୍ତ୍ତରେ, ବେଦନାର କଣ୍ଟକିତ ଦଂଶନ ପରି, ମଧୁବ୍ରତାର ସ୍ମରଣରେ ପୁଣି, ଏକ ସୂକ୍ଷ୍ମ ବେଦନା ନୀଳୋତ୍ପଳଙ୍କର ସମସ୍ତ ସତ୍ତାକୁ କୁଣ୍ଠିତ କରିଦେଲା ।

ଧାରଣୀର ଆବୃତ୍ତି ଭୁଲି ନୀଳୋତ୍ପଳ ଅନୁଚ୍ଚ କଣ୍ଠରେ ସ୍ୱଗତୋକ୍ତି କଲାପରି କହି ଉଠିଲେ···"ମଧୁବ୍ରତା, ମଧୁବ୍ରତା !"

# ( ଗ )

ଗତବାର ମଧ୍ୟ ଉପୋଷଥ ଦିବସରେ, ମଧୁବ୍ରତା ବିହାରକୁ ଆସି ନ ଥିଲେ । ତାହାର କେତେଦିନ ପୂର୍ବେ, ଶ୍ୱେତପର୍ଣ୍ଣ ଶ୍ରେଷ୍ଠୀର ଗୃହକୁ ଭିକ୍ଷାନ୍ନ ଉଦ୍ଦେଶ୍ୟରେ ଯାଇ ମଧୁବ୍ରତା ସହିତ ଥରେ ମାତ୍ର ସାକ୍ଷାତ ହୋଇଥିଲା । ମଧୁବ୍ରତା ସ୍ୱହସ୍ତରେ ସେଦିନ ଭିକ୍ଷାନ୍ନ ପରିବେଷଣ କରିଥିଲେ । କିନ୍ତୁ କୌଣସି ଗୃହକୁ ଥରେ ଭିକ୍ଷାନ୍ନ ସଂଗ୍ରହ ପରେ, ଏକ ନିର୍ଦ୍ଦିଷ୍ଟ କାଳ ଅତିକ୍ରାନ୍ତ ନ ହେବା ପର୍ଯ୍ୟନ୍ତ ପୁଣି ସେଠାକୁ ଦ୍ୱିତୀୟବାର ଯିବା ଭିକ୍ଷୁ ପକ୍ଷରେ ନିଷିଦ୍ଧ । ସେଥିପାଇଁ ଶ୍ୱେତପର୍ଣ୍ଣର ଅନ୍ତଃପୁରକୁ ଆଉଥରେ ଭିକ୍ଷାପାଇଁ ଯିବାର ଉପାୟ ନ ଥିଲା ।

ଆଃ···ମଧୁବ୍ରତା ! ମଧୁବ୍ରତା !

ଗ୍ରୀଷ୍ମ ଋତୁର ନିଥର ସରସୀରେ ମୁଦ୍ରିତ କମଳ ପରି, ବେଦନା ବିଧୁର ଦୁଇଟି ଆୟତ ଆଖି, ଦୂର୍ବାଦଳରେ ଶିଶିର ବିନ୍ଦୁ ପରି ସେଥିରେ ଏକ କରୁଣ ଉଜ୍ଜ୍ୱଳତା, ନୀଲୋତ୍ପଳଙ୍କର ମାନସଦୃଷ୍ଟିରେ ଭାସି ଉଠି ପୁଣି ମିଳାଇ ଗଲା !

"ଓଁ ନମଃ ସମନ୍ତ ବୁଦ୍ଧାନାଂ···"

ନାସ୍ତି···ନାସ୍ତି···ନାସ୍ତି···କୋକିଳର ସେହି ଅଶାନ୍ତ, ପ୍ରମତ୍ତ ରତିଭିକ୍ଷା, ଧାରଣୀ ଆବୃତ୍ତିର ଗୁଞ୍ଜରଣକୁ ପୁଣି ନୀରବ କରିଦେଇଥିଲା ।

ଅର୍ହତ ଶାନ୍ତିଦେବଙ୍କୁ ପରାସ୍ତ କରିବା ପାଇଁ ଇଚ୍ଛାକୃତ, କୋକିଳର ଏହି ପ୍ରମତ୍ତ ରତିଭିକ୍ଷା ଓ ଧାରଣୀର ଆବୃତ୍ତି—କେଉଁଟି ଚିରନ୍ତନ ? ସବୁ ଧାରଣୀ, ସବୁ ସୂତ୍ର, ସବୁ ତ୍ରିପିଟକ ମୁଖସ୍ଥ, ନୀରବ ହେବା ପରେ ସୁଦ୍ଧା, ନିର୍ବାଣହୀନ ଏହି ନିର୍ବୋଧ ପକ୍ଷୀଟିର ପ୍ରମତ୍ତ ରତିଭିକ୍ଷା ତଥାପି ମୁଖସ୍ଥ ନ ହୋଇ ରହିଥିବ !

ତାହାହେଲେ ଆନନ୍ଦ ଓ ସୌନ୍ଦର୍ଯ୍ୟ ପରିହାର କରି, ଆତ୍ମନିଗ୍ରହ ଓ ତିତିକ୍ଷା ମଧ୍ୟରେ ନିର୍ବାଣର ଏ ସାଧନା କାହିଁକି ? କାହିଁକି ?

ନୀଲୋତ୍ପଳଙ୍କ କକ୍ଷର ପ୍ରାଚୀର-ଗହ୍ୱରରେ ରକ୍ତ-ପ୍ରସ୍ତର ନିର୍ମିତ ଗୋଟିଏ ଯୁଗନଦ୍ଧ, ଅବଲୋକିତେଶ୍ୱର ଓ ପ୍ରଜ୍ଞାପାରମିତା ମୂର୍ତ୍ତି ସ୍ଥାପିତ ଥିଲା । କେହି ଭକ୍ତ ଯାତ୍ରୀ ମୂର୍ତ୍ତିର ପାଦତଳେ, ଅଶୋକମଞ୍ଜରୀର ଗୋଟିଏ ସ୍ଫୁରିତ ସ୍ତବକ ନିବେଦନ କରି ଯାଇଥିଲେ । ପ୍ରଜ୍ଞାପାରମିତାଙ୍କ ସୁତୀକ୍ଷ୍ଣସ୍ତନାଗ୍ର, ଅବଲୋକିତେଶ୍ୱରଙ୍କ ସୁକଠିନ ବକ୍ଷକୁ ସୁଦ୍ଧା ଯେପରି ପୀଡ଼ନ କରୁଥିଲା । ଅବଲୋକିତେଶ୍ୱରଙ୍କ ମୁଖମଣ୍ଡଳରେ* ମୁଦିତା ଓ ଉପେକ୍ଷାର ସ୍ନିଗ୍ଧତା···ପ୍ରଜ୍ଞାଙ୍କ ମୁଖମଣ୍ଡଳ ରତିତୃପ୍ତିରେ କୋମଳ ।

× × ×

*ଆନନ୍ଦ ପ୍ରଶାନ୍ତି ।

ସେଦିନ ପତିମୋକ୍ଷ ଦିବସ ।

ରାତ୍ରି ନିସ୍ତବ୍ଧ ହୋଇଥିଲା । ବିହାରର ଅନ୍ତେବାସୀମାନେ ଉପପୋଥ ଦିବସ କ୍ଳାନ୍ତି ଓ ପତିମୋକ୍ଷବେଳେ ଆଚାର୍ଯ୍ୟ ଶାନ୍ତିଦେବଙ୍କଠାରେ ନିଜ ନିଜର ସ୍ଖଳନମାନ ଅକୁଣ୍ଠିତ ଭାବରେ ସ୍ୱୀକାର କରି, ପତିମୋକ୍ଷର ବ୍ୟବସ୍ଥା ଗ୍ରହଣ କରିବା ପରେ, ନିର୍ମଳ ଚିତ୍ତ ଓ ନିରୁପଦ୍ରବ ବିବେକରେ ନିଦ୍ରାଭିଭୂତ ହୋଇ ପଡ଼ିଥିଲେ ।

ବୃଦ୍ଧକୂଟ ବିହାରର ଶିଖର ଶିଖରରେ, ନିଜ ପ୍ରକୋଷ୍ଠ ସମ୍ମୁଖସ୍ଥ ଏକ ମୁକ୍ତ, ଚତୁଷ୍କୋଣାକାର ଅଳିନ୍ଦରେ ଗୋଟିଏ ଉଚ୍ଚାସନ ଉପରେ ଆଚାର୍ଯ୍ୟ ଶାନ୍ତିଦେବ, ତଥାପି ଧ୍ୟାନସୀନ ପରି ବସିଥିଲେ । ପୂର୍ଣ୍ଣିମା ତିଥିର ଜ୍ୟୋତ୍ସ୍ନାପ୍ଲାବନ ମଧ୍ୟରେ, ଜ୍ୟୋତ୍ସ୍ନାଚ୍ଛନ୍ନ ଶାନ୍ତିଦେବ, ଗୋଟିଏ ନିଶ୍ଚଳ ଶିଳାମୂର୍ତ୍ତି ପରି ଦିଶୁଥିଲେ । ବିହାରର ଆମ୍ରବୀଥିକାରେ ବୃକ୍ଷର ଛାୟାସବୁ, ରାତ୍ରିର ବିନିଦ୍ର ପ୍ରହରରେ ଶତ ବେଦନାର ସ୍ମୃତି ପରି ବିଚ୍ଛୁରିତ ହୋଇ ପଡ଼ିଥିଲା । ଗୋଟିଏ ଟିଟ୍ଟିଭର ଅଶାନ୍ତ ଚିତ୍କାର, ବେଳେ ବେଳେ ଆବେଗ ଓ କାମନାବିହୀନ କୁମାରୀ ରାତ୍ରିକୁ ଶୀତଳ ସୁଷୁପ୍ତିରୁ ଜାଗ୍ରତ କରିବା ପାଇଁ ଚେଷ୍ଟା କରି, ଯେପରି ବାରମ୍ବାର ବିଫଳ ହେଉଥିଲା ।

ନୀଳୋତ୍ପଳଙ୍କ ପାଦଶବ୍ଦରେ ଶାନ୍ତିଦେବ ଆଖି ମେଲି, ଜ୍ୟୋତ୍ସ୍ନାଲିକାର ମଧ୍ୟକୁ ଚାହିଁଲେ । ଶୀଳ, ସଂଯମ, ସାଧନା ଓ ଅଧ୍ୟୟନରେ ଭିକ୍ଷୁଶ୍ରେଷ୍ଠ ନୀଳୋତ୍ପଳଙ୍କର ପତିମୋକ୍ଷ କରିବା ପାଇଁ କୌଣସି ସ୍ଖଳନ ବା ବିଚ୍ୟୁତି ଥାଇପାରେ, ଏ ଧାରଣା ଆଚାର୍ଯ୍ୟ ଶାନ୍ତିଦେବଙ୍କର ନ ଥିଲା ।

ସେ ଚେଇଁ ପଚାରିଲେ...

"ଭଦନ୍ତ ନୀଳୋତ୍ପଳ, ତୁମ୍ଭେ ଏତେ ରାତିରେ ?"

ନୀଳୋତ୍ପଳ ହଠାତ୍ କୌଣସି ଉତ୍ତର ଦେଇ ନ ପାରି ନୀରବ ରହିଲେ । ସ୍ଖଳନର ସ୍ୱୀକୃତି ପାଇଁ, ତାଙ୍କର ଯେପରି କଣ୍ଠରୋଧ ହେଉଥିଲା ।

ନୀଳୋତ୍ପଳ ଅବଶେଷରେ ଅକୁଣ୍ଠିତ ଚିତ୍ତରେ ସ୍ୱୀକାର କରିଗଲେ... ଶ୍ରେଷ୍ଠୀ ଶ୍ୱେତପର୍ଣ୍ଣର କୁଳବଧୂ ମଧୁବ୍ରତା...ପ୍ରୋଷିତଭର୍ତ୍ତୃକା । ଶ୍ରେଷ୍ଠୀପୁତ୍ର ସାଧବ ନଳିନାକ୍ଷ, ବିବାହର ମଧୁଯାମିନୀପରେ ପାଟଳୀପୁତ୍ରରୁ ଅନ୍ୟ ସାଧବମାନଙ୍କ ସହିତ ଗୋଟିଏ ବୋଇତରେ ଗଙ୍ଗା ବକ୍ଷରେ ସମୁଦ୍ର ଯାତ୍ରା କରିଥିଲା । ସେ ଆଜକୁ କେତେବର୍ଷ ତଳେ । ସେହିଦିନୁ ନଳିନାକ୍ଷ ନିରୁଦ୍ଦିଷ୍ଟ । ପାଟଳୀପୁତ୍ରର କେହି କେହି ବିଦେଶପ୍ରତ୍ୟାଗତ ସାଧବ କହନ୍ତି, ଜଳଦସ୍ୟୁମାନଙ୍କର ଆକ୍ରମଣରେ

( ୬ )

ନଳିନାକ୍ଷ ନିହତ ହୋଇଅଛି, ଆଉ କେହି କେହି କହନ୍ତି କେଉଁ ଏକ ଦ୍ୱୀପରେ ନଳିନାକ୍ଷ ଏକ ସୁନ୍ଦରୀ ବିଦେଶିନୀର ପାଣିଗ୍ରହଣ କରି ସେଠାରେ ନୂତନ ସଂସାର ଗଢ଼ିଅଛି ! ନଳିନାକ୍ଷର ପ୍ରତ୍ୟାବର୍ତ୍ତନ ପାଇଁ ଏକ ନିର୍ଦ୍ଦିଷ୍ଟ କାଳ ଅପେକ୍ଷା କରିବା ପରେ, ତାହାଙ୍କୁ ନଷ୍ଟ ଅଥବା ମୃତରୂପେ ବିବେଚନା କରି, ଶ୍ୱେତପର୍ଣ୍ଣ ସାମାଜିକ ବିଧାନ ଅନୁସାରେ, ପ୍ରେତକର୍ମ୍ମ ସମାପ୍ତ କରିଅଛି । ନଳିନାକ୍ଷ ମୃତ ବୋଲି ସମସ୍ତେ ଗ୍ରହଣ କରି ସାରିଥିଲେ ହେଁ, ନୀଳୋତ୍ପଳର ପ୍ରତ୍ୟାବର୍ତ୍ତନର ବିଶ୍ୱାସ, ମଧୁବ୍ରତାର ପ୍ରାଣରେ, ବାସରଗୃହର ପ୍ରଦୀପ ପରି ତଥାପି ଅମଳିନ ଦ୍ୟୁତିରେ ନିଷ୍ପନ୍ଦ ରହିଅଛି ।

× × ×

ସେଦିନ ହେମନ୍ତର ଏକ କୋମଳ ରୌଦ୍ରତପ୍ତ ମଧ୍ୟାହ୍ନ । ନିସ୍ତିମିତ ଶୀତରେ, ମଧ୍ୟାହ୍ନର ଗ୍ଳପ୍ସା ଅଙ୍ଗୁଳିପରିମିତ ଅପସୃତ ହେବା ପୂର୍ବରୁ ଶ୍ରେଷ୍ଠୀ ଶ୍ୱେତପର୍ଣ୍ଣର ଅନ୍ତଃପୁରରେ ଭୋଜନ ସମାପ୍ତ କରି ଭିକ୍ଷୁ ନୀଳୋତ୍ପଳ ବିଦାୟ ନେଉଥିଲେ । ମଧୁବ୍ରତା ଅନ୍ତଃପୁରରେ ଏକ ଗବାକ୍ଷର ନେପଥ୍ୟରୁ ଅସ୍ଫୁଟ କଣ୍ଠରେ ହଠାତ୍ ଡାକଲେ···"ଭଦନ୍ତ !" (ସେହିଦିନୁ ଆମ୍ରବୀଥିକାରେ କୋକିଳର କୁହୁଧ୍ୱନି ଅଥବା ଏହିପରି ମୂର୍ଚ୍ଛିତ, ଜ୍ୟୋତ୍ସ୍ନା-ପୁଲକିତ ରାତ୍ରିରେ, ନିଃସଙ୍ଗ ଆକାଶ ପଥରେ ଟିଟ୍ଟିଭର ଚିତ୍କାର, ଗବାକ୍ଷର ନେପଥ୍ୟରେ କଙ୍କଣ ଓ ମଞ୍ଜିରର କଳଧ୍ୱନି ସହିତ, ମଧୁବ୍ରତାଙ୍କର ସେହି ଧୀରୁ ବ୍ରୀଡ଼ାକୁଣ୍ଠିତ ଆହ୍ୱାନର ପ୍ରତିଧ୍ୱନି ନୀଳୋତ୍ପଳଙ୍କର ମର୍ମେ ମର୍ମେ ଅନୁରଣିତ କରିଦିଏ ।)

ନୀଳୋତ୍ପଳଙ୍କର ସମ୍ମୁଖକୁ ଆସିଲେ ନୀଳଚେଳପରିହିତା, କୁସୁମିତା ଅପରାଜିତା ବ୍ରତତୀ ପରି, ଉଜ୍ଜ୍ୱଳ ଶ୍ୟାମବର୍ଣ୍ଣା, କୃଶାଙ୍ଗୀ ମଧୁବ୍ରତା । ଅଲକ୍ତ-କରଞ୍ଜିତ, ମଞ୍ଜିରବେଷ୍ଟିତ ଦୁଇ ଚରଣ ଯେପରି ପ୍ରିୟମିଳନର ସଙ୍ଗୀତରେ ମୂର୍ଚ୍ଛନାମଗ୍ନ । କ୍ଷୀଣ କଟୀତଳେ ବର୍ତ୍ତୁଳ ଜଘନ, ପୁଣି କାଞ୍ଚଳୀର କଠୋର ବନ୍ଧନ ତଳେ ପୀନସ୍ତନବକ୍ଷୁବ୍ଧ ବକ୍ଷର ନୀଳାସ୍ପିତ ରେଖା, ପୀଡ଼ନ ପାଇଁ ଯେପରି ଉଦ୍‌ବେଳିତ ହୋଇ ଉଠିଥିଲା । ଓଲଟ ପଦ୍ମଦଳ ପରି ଦୁଇ ଆୟତ ନୟନରେ କିନ୍ତୁ, ଏକ ଗ୍ଳସ୍ତାଚ୍ଛନ୍ନ ହୃଦର କରୁଣ ଉଦାସୀନତା । ନୀଳୋତ୍ପଳ ଆତ୍ମବିସ୍ମୃତ ହୋଇ ପଡ଼ିଥିଲେ ।

ଅନ୍ତଃପୁରର ପାରାବତ ପାଳିକାରେ, ପାରାବତମାନଙ୍କର କାମୋନ୍ମତ୍ତ କୂଜନ ବ୍ୟତୀତ ସେହି ଅଳସ-ମଧ୍ୟାହ୍ନରେ ଆଉ ଅନ୍ୟ ଶବ୍ଦ ନ ଥିଲା ।

ମଧୁବ୍ରତାଙ୍କର ଗୋଟିଏ ଗଭୀର ଦୀର୍ଘନିଃଶ୍ୱାସରେ ନୀଳୋତ୍ପଳଙ୍କ ଆତ୍ମ-ବିସ୍ମୃତି କଟିଗଲା । ସେ ମଧୁବ୍ରତାଙ୍କର ଦୁଇ ଆଖି ଭିତରକୁ ଚାହିଁଲେ । ଓଲଟ ପଦ୍ମଦଳ ପରି ତାଙ୍କର ଦୁଇ ଆଖିରେ କେତେ ବିନ୍ଦୁ ଅଶ୍ରୁ ଏକ ଅପାପବିଦ୍ଧ ସୁନ୍ଦରିମାରେ ମଧୁବ୍ରତାଙ୍କର ମୁଖମଣ୍ଡଳକୁ ଯେପରି ବିଧୌତ କରିଥିଲା । ରାଗ-ରଞ୍ଜିତ ତାଙ୍କର ଦୁଇ ଓଷ୍ଠାଧର ଏକ ଅବ୍ୟକ୍ତ ପ୍ରଶ୍ନରେ ଯେପରି କମ୍ପିତ ହୋଇ ଉଠୁଥିଲା ।

ନୀଳୋତ୍ପଳ ସମ୍ବେଦନଶୀଳ କଣ୍ଠରେ ପଚାରିଲେ···"କଣ କହିବ ଭଦ୍ରେ ?"

ସଲ୍ଲଜ ସଙ୍କୋଚରେ ମଧୁବ୍ରତା, ରକ୍ତିମ ଶତଦଳ ପରି ଆରକ୍ତିମ ବାମ କରତଳ ନୀଳୋତ୍ପଳଙ୍କ ଆଡ଼େ ପ୍ରସାରିତ କରି ବ୍ରୀଡ଼ାକୁଣ୍ଠିତ କଣ୍ଠରେ କହିଲେ, "ମୋର କରଗଣନା କରି କହି ପାରିବେ ଶ୍ରମଣ ! ସେଦିନ ମଧୁଯାମିନୀ ଶେଷରେ, ଗଙ୍ଗା ବକ୍ଷରେ ଅସ୍ତଚନ୍ଦ୍ର ସହିତ ଯାହାଙ୍କୁ ବିଦାୟ ଦେଇଥିଲି, ସେ ପୁଣି ଫେରିବେ କି ନାହିଁ ?"

ମନ୍ତ୍ର-ମୁଗ୍‌ଧ ପରି ନୀଳୋତ୍ପଳ ମଧୁବ୍ରତାଙ୍କର ପ୍ରସାରିତ ବାମ କର-ପୃଷ୍ଠକୁ ନିଜର ହାତରେ ଧରି ସମ୍ପୂର୍ଣ୍ଣ ଆତ୍ମବିସ୍ମୃତ ହୋଇ ପଡ଼ିଲେ । ଶ୍ରମଣ-ମାନଙ୍କ ପକ୍ଷରେ ଏ ପ୍ରକାର ସାମୁଦ୍ରିକ ବିଦ୍ୟା, କର୍‌ଗଣନା ଓ ଅଭିଜ୍ଞର ପ୍ରଭୃତି ଶିକ୍ଷା କରିବା ନିଷିଦ୍ଧ । ତେଣୁ ମଧୁବ୍ରତାଙ୍କର କରଗଣନା କରି, ତାଙ୍କର ପ୍ରଶ୍ନର ଉତ୍ତର ଦେବା ନୀଳୋତ୍ପଳଙ୍କ ପକ୍ଷରେ ସମ୍ଭବ ନଥିଲା । ତଥାପି ସେ ସେହି ମୂର୍ଚ୍ଛିତ ମଧ୍ୟାହ୍ନରେ ମଧୁବ୍ରତାଙ୍କର ପେଲବ କରତଳକୁ ନିଜର ଦୁଇ ହାତରେ ତୋଳି ଧରିଥିଲେ । ଦଣ୍ଡ, ଚୀବର ଓ ଅକ୍ଷମାଳାର ନିତ୍ୟ ସ୍ପର୍ଶରେ, ନୀଳୋତ୍ପଳଙ୍କର ଦୁଇ ହାତର କ୍ଷୁଧିତ ସ୍ନାୟୁତନ୍ତ୍ରୀମାନେ ଯେପରି ଏକ ନବଜୀବନର ପୁଲକରେ ପୁଲକିତ ହୋଇ ଉଠିଥିଲେ । ଏକ ସମ୍ମୋହନ ମଧ୍ୟରେ ନୀଳୋତ୍ପଳ ଆତ୍ମବିସ୍ମୃତ ହୋଇ ପଡ଼ିଥିଲେ । ଏକ ଅତଳ ମହାଶୂନ୍ୟତା ମଧ୍ୟରେ ନୀଳୋତ୍ପଳଙ୍କ ସମଗ୍ର ସତ୍ତା ଯେପରି ଲୁପ୍ତ ହୋଇ ପଡ଼ିଥିଲା । ନୀଳୋତ୍ପଳ, ଶତ ସାଧନା ଓ ସଂଯମ ମଧ୍ୟରେ ସୁଦ୍ଧା ଯେଉଁ ଅନିର୍ବଚନୀୟ, ଅଦୃଶ୍ୟ ଶୂନ୍ୟତାର ଅନୁଭବ ପାଇ ନ ଥିଲେ, ଆଜି ଏହି ଅଳସ ପାରାବତକୂଜିତ ମଧ୍ୟାହ୍ନରେ, ତାହା ଯେପରି ନୀଳୋତ୍ପଳଙ୍କର ସମଗ୍ର ସତ୍ତାକୁ ଢଳେ ଢଳେ ଆଚ୍ଛନ୍ନ କରିଦେଲା ।

ଏହି ତ ସେହି ଅନିର୍ବଚନୀୟ ମହାଶୂନ୍ୟ, ଯାହା ମଧ୍ୟରେ ଦେହ ଓ ଆତ୍ମା, ମାଂସ ଓ ପ୍ରାଣ, ରୂପ ଓ ଅରୂପ, ସବୁ ନିଶ୍ଚିହ୍ନ ହୋଇଯାଏ । ଏହି ତ

ମହାସୁଖ, ଯାହା ମଧ୍ୟରେ ଦେହ ଦେହାତୀତ ହୋଇ, ବିଦେହରେ ପରିଣତ ହୁଏ । ଏହି ତ ମହାନିର୍ବାଣ । ପ୍ରଜ୍ଞାଙ୍କର ପାନିସ୍ୱନାଭରଦ୍ଧ ଅବଲୋକିତେଶ୍ୱରଙ୍କ ମୁଖମଣ୍ଡଳରେ ମୁଦ୍ରିତ ଓ ଉପେକ୍ଷାରି ବ୍ୟଞ୍ଜନା, ନୀଳୋତ୍ପଳ ନିଜର ମୁଖମଣ୍ଡଳ ସୁଦ୍ଧା ଅନୁଭବ କରି ପାରୁଥିଲେ ।

ନୀଳୋତ୍ପଳଙ୍କର ଗମ୍ଭୀର, ଉଷ୍ଣ ପ୍ରଶ୍ୱାସର ଜ୍ୱାଳା ମଧୁବ୍ରତାଙ୍କର ପ୍ରସାରିତ କରତଳକୁ ଯେପରି ଦଗ୍ଧ କରି ଦେଉଥିଲା । ସେ ଧୀରେ ଧୀରେ ନୀଳୋତ୍ପଳଙ୍କ ଦୁଇ ହାତରୁ ନିଜର ପ୍ରସାରିତ କରତଳ କାଢି ଆଣି ଅଞ୍ଚଳ ମଧ୍ୟରେ ତାହାକୁ ଆବୃତ କରିଦେଲେ । ଘନକୃଷ୍ଣ ପକ୍ଷ୍ମରେଖା ମଧ୍ୟରେ ମଧୁବ୍ରତାଙ୍କର ଦୁଇ ଆୟତ ନେତ୍ରରେ ଉତ୍କଣ୍ଠିତ ଦୃଷ୍ଟି ମୁଦ୍ରିତ ହୋଇ ଆସିଲା ।

ନୀଳୋତ୍ପଳ ପୁଣି ପୂର୍ବର ଅବସ୍ଥାକୁ ଫେରିଆସିଲେ, ମାତ୍ର ମଧୁବ୍ରତା ସେଠାରେ ସେତେବେଳକୁ ନ ଥିଲେ । ପର୍ବତ ପାଳିକାରେ ପାରାବତ-ମାନଙ୍କର ଅଳସ କୂଜନ ମଧ୍ୟରେ ନୀଳୋତ୍ପଳଙ୍କର ସମ୍ମୋହନ ଧୀରେ ଧୀରେ କଟି ଆସୁଥିଲା ।

ଶାନ୍ତିଦେବ ପୂର୍ବପରି ନିଶ୍ଚଳ ନୀରବତାରେ ବସିଥିଲେ । ଗୋଟିଏ ଝିଙ୍କିଭିର ଅଶାନ୍ତ ଚିତ୍କାର ସେହି ନିର୍ବୈୟକ୍ତିକ ଜ୍ୟୋତ୍ସ୍ନା ରାତ୍ରିକୁ ଏକାନ୍ତ ନିଃସଙ୍ଗ ଓ ଗମ୍ଭୀର କରି ଦେଇଥିଲା ।

ନୀଳୋତ୍ପଳ କହିଲେ, "ସେହିଦିନୁ ମୋର ଚିତ୍ତର ସକଳ ପ୍ରଶାନ୍ତି ଲୋପ ପାଇଅଛି; ମୋର ସମସ୍ତ ସଂଯମ ଓ ସାଧନା ସ୍ଖଳିତ ହୋଇଅଛି । ଦେହର କ୍ଷୁଧାରେ ଆତ୍ମାର ଅଭୀପ୍ସା ମଳିନ ହୋଇଅଛି । କିନ୍ତୁ ଭଗବାନ, ମଧୁବ୍ରତାର ସେହି ପେଲବ, ରକ୍ତିମ ବାମ କରତଳ ପୀଡ଼ନ କଲାବେଳେ ଏକ ଅନିର୍ବଚନୀୟ ମହାସୁଖ ମଧ୍ୟରେ ମୁଁ ମୁହୂର୍ତ୍ତିକ ପାଇଁ ନିର୍ବାଣର ଯେଉଁ ମହାଶୂନ୍ୟତା ଉପଲବ୍ଧି କରିଥିଲି ତାହା କଣ ମିଥ୍ୟା ?"

ଶାନ୍ତିଦେବ ସେହିପରି ନୀରବରେ ଧ୍ୟାନାସୀନ ଏକ ବୁଦ୍ଧମୂର୍ତ୍ତି ପରି ବସି-ଥିଲେ । ନିଃସଙ୍ଗ ଆକାଶ ପଥରେ ସେହି ଅତୃପ୍ତ ଝିଙ୍କିଭିର ଅଶାନ୍ତ ଚିତ୍କାର ମଧ୍ୟରେ ନୀଳୋତ୍ପଳଙ୍କର ଜିଜ୍ଞାସା ଯେପରି ବାରମ୍ବାର ପ୍ରକାଶିତ ହୋଇ ପୁଣି ନୀରବ ହୋଇ ଯାଉଥିଲା ।

ଶାନ୍ତିଦେବ କହିଲେ···, ଭନ୍ତେ "ତଥାଗତ ଦୁଃଖର ନିଦାନ କହିଛନ୍ତି, ରୂପରୁ ତୃଷ୍ଣା, ତୃଷ୍ଣାରୁ ବେଦନା, ବେଦନାରୁ ଦୁଃଖ । ତେଣୁ ଦୁଃଖ ଜୟ ପାଇଁ

ରୂପ ଓ ତୃଷ୍ଣାର ଜନ୍ମ ଅନିବାର୍ଯ୍ୟ । ଦୁଃଖର ଜନ୍ମ ହିଁ ନିର୍ବାଣ, ଜନ୍ମ ଓ ପୁନର୍ଜନ୍ମର ନାଗବନ୍ଧନରୁ ମହାମୁକ୍ତି ।"

ଶାନ୍ତିଦେବ ପୁଣି ପୂର୍ବର ନିଶ୍ଚଳ ମୌନତା ମଧ୍ୟରେ ଅବଲୁପ୍ତ ହୋଇ ପଡ଼ିଲେ । ନୀଳୋତ୍ପଳ ପ୍ରାଚୀରର ଗୁମ୍ଫା ସହିତ ମିଶି ଏକ ଗୁମ୍ଫା ପରି ଠିଆ ହୋଇଥିଲେ । ସେହି ଅଶାନ୍ତ ଚିତ୍ତ ଏକ ଅତୃପ୍ତ, ତୃଷ୍ଣାବଦ୍ଧ ଆତ୍ମାପରି, କେତେବେଳେ ଊର୍ଦ୍ଧ୍ୱକୁ ଉଠିଯାଇ, ଆଉ କେତେବେଳେ ଆମ୍ର ବୀଥିକାର ଗୁମ୍ଫାଘନ ଶୀର୍ଷକୁ ଖସି ଆସି, ରାତ୍ରିର ଘନୀଭୂତ ସ୍ନାୟୁରେ, କାମନାର ଏକ ପ୍ରମତ୍ତ ଆବେଗ ପରି, ଜ୍ୟୋତ୍ସ୍ନାସ୍ନାତ ଆକାଶରେ ଶତ ଅଶାନ୍ତ ତରଙ୍ଗ କାଟି ଉଡ଼ି ବୁଲୁଥିଲା ।

ବିବସନା ଉର୍ବଶୀର ଅଙ୍ଗବାସ ପରି, ଶୁକ୍ଳପକ୍ଷର ମୁକୁଳ ସ୍ନିଗ୍ଧ ଜ୍ୟୋତ୍ସ୍ନା ବିଚ୍ଛୁରିତ ହୋଇ ପଡ଼ୁଥିଲା । ନୀଳୋତ୍ପଳ, ଜ୍ୟୋତ୍ସ୍ନାର ସେହି ପ୍ଳାବନ ମଧ୍ୟରେ, ଆତ୍ମବିସ୍ମୃତ ହୋଇ ପଡ଼ୁଥିଲେ । ତଥାଗତ କହିଛନ୍ତି, ଦୁଃଖର ହେତୁ ରୂପ, ନିର୍ବାଣ ପଥରେ ପ୍ରତିବନ୍ଧକ, କିନ୍ତୁ 'ଏହି ଅଶରୀରୀ ଜ୍ୟୋତ୍ସ୍ନାର ଭୁବନ-ବିମୋହିନୀ ରୂପ ଓ ସୌନ୍ଦର୍ଯ୍ୟ ମଧ୍ୟରେ ଅନାହତ ଆନନ୍ଦର ଅନୁଭବ, ସବୁ ତୃଷ୍ଣାକୁ ପ୍ରଶମିତ କରି, ଯେଉଁ ବେଦନାର ସଞ୍ଚାର କରୁଅଛି, ତାହା ତ ଦୁଃଖକୁ ଦୁଃଖାତୀତ କରେ । ନୀଳୋତ୍ପଳ ତାହା ସ୍ପଷ୍ଟ ଅନୁଭବ କରି ପାରୁଅଛନ୍ତି । ସେଦିନ, ସେହି ନିର୍ଜନ, ପାରାବତ କୂଜିତ ମଧ୍ୟାହ୍ନରେ ମଧୁବ୍ରତାଙ୍କର ବାମ କରତଳ, ଦୁଇ ହାତରେ, ଆବେଗକମ୍ପିତ ହୃଦୟରେ ଉଠାଇ ନେବାବେଳେ, ଏହିପରି ଏକ ଅନୁଭୂତି ନୀଳୋତ୍ପଳଙ୍କୁ ନିର୍ବେଦଗ୍ରସ୍ତ କରି ଦେଇଥିଲା ।

ତାହା କେବଳ ମୁହୂର୍ତ୍ତକ ପାଇଁ ।

ମଧୁବ୍ରତାର ସାନ୍ନିଧ୍ୟ ପାଇଁ ଏକ ଅନିର୍ବଚନୀୟ ବେଦନା, ସେହି ଶୀତଳ ଜ୍ୟୋତ୍ସ୍ନାରାତ୍ରିକୁ ବିଦଗ୍ଧ କରି ଦେଉଥିଲା ।

ଶାନ୍ତିଦେବ ସୁପ୍ତୋତ୍ଥିତ ପରି କହିଲେ "ଭନ୍ତେ, ରାତ୍ରି ଦ୍ୱିତୀୟ ପ୍ରହର ଉତ୍ତୀର୍ଣ୍ଣ ପ୍ରାୟ । ପତିମୋକ୍ଷର ବିଧାନରୂପେ ତୁମ୍ଭଙ୍କୁ ତିନି ସପ୍ତାହ ଶ୍ମଶାନରେ ଅଶୁଭ-ଭାବନା ଅଭ୍ୟାସ କରିବା ପାଇଁ ପଡ଼ିବ ।"

ନୀଳୋତ୍ପଳ ବିହାର-ଶିଖରରୁ ତାଙ୍କର ପ୍ରକୋଷ୍ଠକୁ ଫେରି ଆସିଲେ । ଅବଲୋକିତେଶ୍ୱର ଓ ପ୍ରଜ୍ଞାଙ୍କ ପୀଠତଳେ ଦୀପ ବହୁବେଳୁ ନିର୍ବାପିତ ହୋଇ ସାରିଥିଲା । ଅବଗୁଣ୍ଠିତା ଜ୍ୟୋତ୍ସ୍ନାର ଗୋଟିଏ ରଶ୍ମିଫଳକ ପ୍ରକୋଷ୍ଠର ପାଷାଣ-ଚତ୍ୱର ଉପରେ ମୂର୍ଚ୍ଛିତ ହୋଇ ପଡ଼ିଥିଲା । ଚିତ୍ତର ସେହି ଅଶାନ୍ତ ଝଙ୍କାର,

ଗ୍ରୀଷ୍ମର ପବନରେ ଆମ୍ର ମୁକୁଳର ବହୁଲିତ ସୁରଭି, ନୀଳୋତ୍ପଳଙ୍କୁ ସମ୍ପୂର୍ଣ୍ଣ ଅବ୍ୟବସ୍ଥିତ କରି ଦେଇଥିଲା ।

ନୀଳୋତ୍ପଳଙ୍କର ମନେ ପଡ଼ୁଯାଉଥିଲା, "ମହାପରିନିର୍ବାଣସୂତ୍ର"ର ଗୋଟିଏ ସୂତ୍ର...

ସେଦିନ ପ୍ରବ୍ରଜ୍ୟା ପଥରେ ପଥଶ୍ରାନ୍ତ, କ୍ଷୁଧାର୍ତ୍ତ ତଥାଗତ ମଲ୍ଲମାନଙ୍କର କୁଶୀନର ଜନପଦର ଉପକଣ୍ଠସ୍ଥିତ ଶାଳବନରେ ଉପନୀତ ହେଲେ ।

ନବବସନ୍ତ ସେଦିନ, ରକ୍ତପୁଷ୍ପ ଓ ପଲ୍ଲବରେ ଶାଳବୀଥିକାର ଶାଖାରେ ଶାଖାରେ, ମଦନୋତ୍ସବର ଏକ ବିଚର୍ଚ୍ଚିତ, ବର୍ଣ୍ଣାଢ୍ୟ ସମାରୋହ ରଚନା କରିଯାଇଥିଲା । ଶାଳବୀଥିକାର ପେଲବ ମର୍ମଭୂମିରୁ ଗୋଟିଏ କୋକିଳର ଅଶାନ୍ତ କୂଜନ ସେହି ନିଭୃତ ବନଭୂମିକୁ ଯେପରି ଉପେକ୍ଷା ଓ ନିଗ୍ରହର ପାଣ୍ଡୁର ଶଯ୍ୟା ଛାଡ଼ି ଉଠିବା ପାଇଁ ଡାକି ଡାକି ନୀରବ ହୋଇ ଯାଉଥିଲା । ତାହାର ଅଶାନ୍ତ ପ୍ରତିଧ୍ୱନି ଶାଳବୀଥିକାର ଶାଖାରେ, ପତ୍ରେ ପତ୍ରେ, ଏକ ବ୍ୟଥାତୁର ଆଲୋଡ଼ନ ସୃଷ୍ଟି କରି ଯାଉଥିଲା । ମଧୁଲୋଭୀ ଭ୍ରମରମାନଙ୍କର ଅତୃପ୍ତ ଗୁଞ୍ଜନ, ସେହି ଆହ୍ୱାନ ଓ ଆଲୋଡ଼ନକୁ ଯେପରି ଏକ ପ୍ରମତ୍ତତାରେ ପୁଞ୍ଜିଭୂତ କରି ଦେଉଥିଲା ।

ସେହି ମୁହୂର୍ତ୍ତରେ ନାରୀର ଚିନ୍ତା ଆନନ୍ଦଙ୍କ ପ୍ରାଣକୁ କାହିଁକି ଉଦ୍‌ବେଳିତ କଲା କେଜାଣି, ଆନନ୍ଦ ଜିଜ୍ଞାସା କଲେ..."ଭଗବାନ୍, ନାରୀ ସହିତ ଭିକ୍ଷୁମାନଙ୍କର କି ସମ୍ପର୍କ ରହିବ ?"

ତଥାଗତ ଉତ୍ତର ଦେଲେ—"ନାରୀର ସାମୀପ୍ୟ ପରିହାର କରିବା ପ୍ରତ୍ୟେକ ଭିକ୍ଷୁର କର୍ତ୍ତବ୍ୟ ।"

ଆନନ୍ଦ ପଚାରିଲେ..."କିନ୍ତୁ ଯଦି ହଠାତ୍ କେଉଁ ସୁକେଶିନୀ, ସୁହାସିନୀ, ସୁବେଶା ନାରୀ ସହିତ ଭିକ୍ଷୁର ସାକ୍ଷାତ ହୁଏ ?"

ତଥାଗତ ଉତ୍ତର ଦେଲେ..."ଚିତ୍ତଚାଞ୍ଚଲ୍ୟ ଦମନ କରି ନିଜକୁ ସଂଯତ ରଖିବ ।"

ଆନନ୍ଦ ପୁଣି ପଚାରିଲେ..."ଭଗବାନ୍, ନାରୀ ସହିତ ଭିକ୍ଷୁମାନଙ୍କର ତା' ହେଲେ କି ସମ୍ପର୍କ ରହିବ ।"

ତଥାଗତ ଉତ୍ତର ଦେଲେ..."ନାରୀ ସହିତ ଭିକ୍ଷୁମାନଙ୍କର ବାକ୍ୟାଳାପ ନିଷିଦ୍ଧ ।"

ଆନନ୍ଦ ତଥାପି ପଚ୍ଚରିଲେ···"ଯଦି କୌଣସି ସୁଲକ୍ଷିଣା ନାରୀ କୌଣସି ଭିକ୍ଷୁ ସହିତ ଆଳାପ ଆରମ୍ଭ କରନ୍ତି ?"

ତଥାଗତ କ୍ଲାନ୍ତକଣ୍ଠରେ ଉତ୍ତର ଦେଲେ···"ନୀରବରେ ଅଧୋମୁଖ ହୋଇ ସେଠାରୁ ପ୍ରତ୍ୟାବର୍ତ୍ତନ କରିବ ।"

ପ୍ରକୋଷ୍ଠର ମୁକ୍ତଦ୍ୱାର ପଥରେ, ଦିଗ୍‌ବଳୟର ଊର୍ଦ୍ଧ୍ୱରେ, ଅସ୍ତଗାମୀ ଚନ୍ଦ୍ରର ଶେଷ କାକଜ୍ୟୋତ୍ସ୍ନା ମଳିନମୁଖୀ ମଧୁବ୍ରତାର, ବେଦନାତୁର ଦୁଇ ଆୟତ ଆଖି ଉପରେ, ଅବନତ ପକ୍ଷ୍ମରେଖା ପରି କ୍ରମେ ମୁଦ୍ରିତ ହୋଇ ଆସୁଥିଲା । ନିସ୍ତବ୍ଧ ନିଶାର୍ଦ୍ଧର ମର୍ମରିତ ପବନ, ମଧୁବ୍ରତାର ଦୀର୍ଘଶ୍ୱାସରେ ଯେପରି କ୍ଷୁଭିତ ହୋଇ ଉଠୁଥିଲା । ନୀଳୋତ୍ପଳ ଉନ୍ମାଦ ପରି ତଳର ଶିଳାଶଯ୍ୟା ଉପରୁ ଉଠିପଡ଼ି, ପ୍ରକୋଷ୍ଠର ଦ୍ୱାର ବନ୍ଦ କରିଦେଲେ ।

## ଦୁଇ

ରାଜଗୃହର ଗ୍ରୀଷ୍ମାବାସ, ଗୃଧ୍ରକୂଟ, ପର୍ବତମାଳାବେଷ୍ଟିତ ଗୃଧ୍ରକୂଟ ଶିଖରର ପାଦଦେଶରେ ବିସ୍ତୀର୍ଣ୍ଣ ଶ୍ମଶାନଭୂମି । ସେହି ଶ୍ମଶାନରେ ନୀଳୋତ୍ପଳ ଏକ ପ୍ରମତ୍ତ କାପାଳିକ ପରି, ଇତସ୍ତତଃ ବିକ୍ଷିପ୍ତ ନର କରୋଟୀ, ଅସ୍ଥି, କଙ୍କାଳ ଓ ଛିନ୍ନ, ଜୀର୍ଣ୍ଣ ବସ୍ତ୍ର, ତନ୍ନତନ୍ନ କରି ପର୍ଯ୍ୟବେକ୍ଷଣ କରୁଥିଲେ, ଯେପରି ସୃଷ୍ଟିର ଶ୍ରେଷ୍ଠ ଅନୁଦ୍‌ଘାଟିତ ରହସ୍ୟର ଅର୍ଥ, ସେହି ଜଞ୍ଜାଳ ମଧ୍ୟରେ ଆବଦ୍ଧ ରହିଥିଲା । କ୍ଷୌରକର୍ମ ଅଭାବରେ ମସ୍ତକ ବନ୍ୟ କେଶରାଶି ଓ ଗଣ୍ଡଦେଶ ଶ୍ମଶ୍ରୁରେ କଣ୍ଟକିତ ହୋଇ ପଡ଼ିଥିଲା । ପ୍ରଶାନ୍ତ କୋମଳ ମୁଖମଣ୍ଡଳ, ଗମ୍ଭୀର ରେଖାବଳୀରେ କୁଟୀଳ ଦିଶୁଥିଲା । ଦେହର ଚର୍ମ ଶୁଷ୍କ ମାଂସ ପରି କଠିନ ଓ ନିଷ୍ପ୍ରାଣ ଦିଶୁଥିଲା । ପରିଧାନରେ ମଳିନ ଗୈରିକ, ପରିଚ୍ଛନ୍ନ ଉତ୍ତରୀସଙ୍ଗ ଓ ସଂଘାଟ ନଥିଲା । ଶ୍ମଶାନରେ ପରିତ୍ୟକ୍ତ ଖଣ୍ଡେ ପ୍ରେତବସ୍ତ୍ର ସେ ଅନ୍ତର୍ବାସକ ପରି ପିନ୍ଧିଥିଲେ । କୋଟରଗତ ଦୁଇ ଆଖି ଜବାକୁସୁମ ପରି ଗମ୍ଭୀର ରକ୍ତବର୍ଣ୍ଣ ଧାରଣ କରିଥିଲା ।

ଅର୍ହତ, ଆୟୁଷ୍ମାନ ଶାନ୍ତଦେବଙ୍କ ଆଦେଶ···ଅଶୁଭ-ଭାବନା-ଯୋଗରେ ସିଦ୍ଧ ନହେବା ପର୍ଯ୍ୟନ୍ତ, ନୀଳୋତ୍ପଳଙ୍କ ପୂର୍ଣ୍ଣ ଭିକ୍ଷୁତ୍ୱର ଉପସମ୍ପଦ ସମାହିତ ହୋଇ ପାରିବ ନାହିଁ । ପ୍ରଥମେ ଉପାସକ, ପରେ ଶ୍ରମଣ ଏହି ଅବସ୍ଥାରେ ଏ ପର୍ଯ୍ୟନ୍ତ ରହିଛନ୍ତି ନୀଳୋତ୍ପଳ । ତଥାପି ତାଙ୍କର ଚିତ୍ତଶୁଦ୍ଧି ସଂପୂର୍ଣ୍ଣ ହୋଇନାହିଁ । ରୂପ ଓ ତୃଷ୍ଣା ସେ ତଥାପି ଜୟ କରି ନାହାନ୍ତି । ସେଥିପାଇଁ ପଠମୋକ୍ଷର ବିଧାନ ରୂପେ, ଆୟୁଷ୍ମାନ ଶାନ୍ତଦେବଙ୍କ ନିର୍ଦ୍ଦେଶରେ, ନୀଳୋତ୍ପଳ ଏହି ମହାଶ୍ମଶାନରେ ଅଶୁଭ-ଭାବନା-ଯୋଗ ଅଭ୍ୟାସ କରୁଅଛନ୍ତି ।

ଶ୍ରମଣମାନଙ୍କୁ ଘୋର ଶ୍ମଶାନରେ ଅଶୁଭ-ଭାବନା ଅଭ୍ୟାସ କରିବାକୁ ପଡ଼ୁଥାଏ । ମୃତ୍ୟୁ ପରେ ମନୁଷ୍ୟ, ଦେହ, ରୂପ ଓ ସଂଜ୍ଞା ପରିହାର କରି କ୍ଷୟ ଓ ବିଲୟର ଯେଉଁ ବିଭିନ୍ନ ଅବସ୍ଥା ମଧ୍ୟରେ, ଯେପରି କ୍ରମେ ପଞ୍ଚଭୂତ ମଧ୍ୟରେ ବିଲୀନ ହୋଇଥାଏ, ଶ୍ମଶାନରେ ତାହାର ଦର୍ଶନ, ମନନ ଓ ଚିନ୍ତନ ମଧ୍ୟରେ ରୂପର ଭଙ୍ଗୁରତା ଉପଲବ୍ଧି କରିବା ଅଶୁଭ-ଭାବନା-ଯୋଗର ତତ୍ତ୍ୱ । ରୂପ, ତୃଷ୍ଣା ଓ ବେଦନା ଜୟ ପାଇଁ ଶ୍ରମଣମାନଙ୍କୁ ଏହି ଅଭ୍ୟାସ କରିବାପାଇଁ ପଡ଼ୁଥାଏ ।

ମଧ୍ୟାହ୍ନର ତାପଦଗ୍ଧ ଉପତ୍ୟକା ଉପରେ, ପର୍ବତମାଳାର ଛାୟା କ୍ରମେ ଏକ ଶୀତଳ ପ୍ରଲେପ ପରି ଖୋଲି ଆସୁଥିଲା । ଶ୍ମଶାନ ପ୍ରାନ୍ତରେ ଗୋଟିଏ ବଜ୍ରଦଗ୍ଧ ଶାଳ୍ମଳୀର ମୃତଶାଖା ଉପରୁ ପଲେ ଗୃଧ୍ର ପକ୍ଷ ଝାଡ଼ି, କେଉଁଠି ଶବର ଆଘ୍ରାଣ ପାଇ ଉଡ଼ି ଆସୁଥିଲେ । ଯେଉଁଠାରେ ସେହି ଗୃଧ୍ରପଲ କଳକଳା ରଡ଼ି କରି, ଓହ୍ଲାଇ ମାଟିରେ ଚଞ୍ଚୁ ଘଷିବା ପାଇଁ ଆରମ୍ଭ କରି ଦେଇଥିଲେ, ସେଠାରେ କୌଣସି ନୂତନ ଶବ ପଡ଼ିଥିବ ଭାବି, ଏକ ବ୍ୟାଧିତ ଆନନ୍ଦରେ, ନୀଳୋତ୍ପଳ ସେହି ଆଡ଼େ ଧାଇଁ ଗଲେ । ତାଙ୍କର ଉପସ୍ଥିତି ସତ୍ତ୍ୱେ ଗୃଧ୍ରପଲ ସେଠାରୁ ଉଡ଼ିଗଲେ ନାହିଁ । ନୀଳୋତ୍ପଳ ଉନ୍ମାଦ ପରି ତାଙ୍କୁ ଖଣ୍ଡେ ପଥର ଉଠାଇ ଫିଙ୍ଗି, ସେମାନଙ୍କୁ ସେଠାରୁ ତଡ଼ିଦେଲେ ।

ଖଣ୍ଡେ ପଥରର ଆବରଣ ତଳେ, କେହି ଗୋଟିଏ ଶବକୁ ସମାଧି ଦେଇ ଯାଇଥିଲା । ନୀଳୋତ୍ପଳ ଶବଟିକୁ ଦେଖିବା ପାଇଁ ପଥରର ଆବରଣ ଦୁଇ ହାତରେ ଉଠାଇ ଫିଙ୍ଗି ଦେଲେ ।

କେଉଁ ଏକ ଅବୋଧ ପିତା, ଶିଶୁ ପୁତ୍ରଟିର କୋମଳ ଅଙ୍ଗ, କଙ୍କରିଳ ମାଟିର କଠୋର ସ୍ପର୍ଶରେ ପୀଡ଼ିତ ହେବନାହିଁ ବୋଲି, କୋମଳ ପଲ୍ଲବଶଯ୍ୟା ଉପରେ, ଶବଟିକୁ ପରମ ଶ୍ରଦ୍ଧା ଓ ଯତ୍ନରେ ଶୁଆଇ ଦେଇ ଯାଇଥିଲା । ପାଖରେ ପକାଇ ରଖି ଯାଇଥିଲା ଗୋଟିଏ ରଙ୍ଗିନ ପୁତ୍ତଳି···କ୍ରୀଡ଼ା ସାଥୀ । ଆଃ···ଝଞ୍ଜାହତ, ବୃନ୍ତଚ୍ୟୁତ କୁସୁମ ପରି ଏହି ନିଷ୍ପାପ ଶିଶୁ···

କୌଣସି କାଳେ ନୀଳୋତ୍ପଳଙ୍କର କୌଣସି ଶିଶୁ ସହିତ କେବେ ସମ୍ବନ୍ଧ ନଥିଲା, ଅଥବା ଶିଶୁ ସମ୍ପର୍କରେ କୌଣସି ଅନୁଭବ ନ ଥିଲା । ମାତ୍ର ଏହି ଶିଶୁଟିକୁ ଦେଖି ସେ ତାହାକୁ କୋଳ କରି ନେବାପାଇଁ, ଦୁଇବାହୁ ପ୍ରସାରିତ କରିଥିଲେ, କିନ୍ତୁ ପରମୁହୂର୍ତ୍ତରେ ଆତ୍ମସମ୍ବରଣ କରି ଏକ ବିଷଧର ସର୍ପ ଦେଖି ପଛକୁ ଫେରି ଆସିବା ପରି, ସେ କେତେ ପାଦ ପଛକୁ ଫେରି ଆସିଲେ । ଶିଶୁଟିର ଦେହ ଉପରେ

ସେପରି ନୀଳବର୍ଣ୍ଣର ଏକ ପ୍ରଲେପ ବୁଲି ଆସିଥିଲା, ତାହାର ଦୁଇ କୋମଳ ଓଷ୍ଠାଧର କୃଷ୍ଣବର୍ଣ୍ଣ ଧାରଣ କରିଥିଲା ।

ନୀଳୋତ୍ପଳ ପ୍ରମତ୍ତ ପରି ଚିତ୍କାର କରି ଉଠିଲେ । ଏହା ବିନୀଳକ, ବିନୀଳକ···ପେଲବ ପୁଷ୍ପପଲ୍ଲବ ପରି, ସୁକୁମାର ଦେହ ଦିନେ ଏହିପରି ନୀଳବର୍ଣ୍ଣ ଧାରଣ କରେ ।

ତା'ପରେ ହୁଏ ବିପୁବ୍ଭକ୍, ପର୍ଯ୍ୟୁଷିତା । ତା'ପରେ ବିଚ୍ଛିଦକ, ଖଣ୍ଡ ଖଣ୍ଡ ହୋଇ ଛିଣ୍ଡିପଡ଼େ ।

ତା'ପରେ ବିକ୍ଷେକ, ଶିବା ଓ ଗୃଧ୍ର ପଲଙ୍କର ଆହାର୍ଯ୍ୟ ।

ତା'ପରେ ହୁଏ ଗୁଲବନ, କାଷ୍ଠାଣୁପୂର୍ଣ୍ଣ ।

ତା'ପରେ ବିକ୍ଷିପ୍ତକ ହୋଇ ଇତଃସ୍ତତ ବିକ୍ଷିପ୍ତ ହୋଇପଡ଼େ···

ତା'ପରେ ? ତା'ପରେ ?

ଏତେ ବାର ମୁଖସ୍ଥ ସତ୍ତ୍ୱେ, ଅଶୁଭ-ଭାବନାର ଶେଷ ପର୍ଯ୍ୟାୟଟି ନୀଳୋତ୍ପଳଙ୍କର ସ୍ମରଣ ହେଲା ନାହିଁ । ସେ ଉନ୍ମାଦ ପରି, ଦୁଇ ମୁଷ୍ଟିବଦ୍ଧ ବାହୁ ଶୂନ୍ୟରେ ଉଠାଇ, ଆକାଶକୁ ଚାହିଁ ଚିତ୍କାର କରି ଉଠିଲେ···"ତା'ପରେ ? ତା'ପରେ ?"

ନିର୍ଜନ ଉପତ୍ୟକାର ପର୍ବତ ପ୍ରାଚୀନରେ ବାଧା ପାଇ ନୀଳୋତ୍ପଳଙ୍କର ଚିତ୍କାର ପ୍ରତିଧ୍ୱନି ହୋଇ ଉଠିଲା···ତା'ପରେ ? ତା'ପରେ ?

ତା'ପରେ ଅସ୍ଥିକ ! ଅସ୍ଥିକ ! ଅସ୍ଥି ! ଖଣ୍ଡ ଖଣ୍ଡ ଚୂର୍ଣ୍ଣୀଭୂତ ବିବର୍ଣ୍ଣ ଅସ୍ଥି ।

ନୀଳୋତ୍ପଳଙ୍କର ଜ୍ୱରତପ୍ତ ମସ୍ତିଷ୍କ ଓ କଳ୍ପନାରେ, କୁଶୀନର ଉପକଣ୍ଠରେ କୁସୁମିତ ଶାଳବୀଥିକାରେ, ତଥାଗତ ଆନନ୍ଦଙ୍କୁ ଯେପରି କହୁଥିଲେ···"ଏହି ବିବର୍ଣ୍ଣ ଅସ୍ଥିତ, ରୂପ ଓ ତୃଷ୍ଣାର ଚରମ ପରିସମାପ୍ତି ।"

ନୀଳୋତ୍ପଳ ପାଗଳ ପରି ଅଟ୍ଟହାସ କରି ଚିତ୍କାର କଲେ···"ଅସ୍ଥିକ ! ଅସ୍ଥିକ ।"

ତା'ପରେ ନୀଳୋତ୍ପଳ ନିଜର ଦୁଇ ସୁପୁଷ୍ଟ ବାହୁର କଠିନ ମାଂସପେଶୀ ସଞ୍ଚାଳିତ କରି ପ୍ରଳାପ କଲାପରି ନିଜକୁ ନିଜେ କହିଲେ···"ନୀଳୋତ୍ପଳ । ଏହି ତୁମର ଦୁଇ ସୁପୁଷ୍ଟ ବାହୁ, ବାହୁ ନୁହେଁ, ଏହା ଅସ୍ଥି, ଅସ୍ଥି । ତୁମେ ନିଜେ ନୀଳୋତ୍ପଳ, ତୁମେ ମଧ୍ୟ ଖଣ୍ଡେ ବିବର୍ଣ୍ଣ କାଷ୍ଠାଣୁପୂର୍ଣ୍ଣ ଅସ୍ଥି !"

କିନ୍ତୁ ଅସ୍ଥି ଖଣ୍ଡର ନିର୍ବାଣଲାଭରେ କି ପ୍ରୟୋଜନ ?

ନୀଳୋତ୍ପଳ ଆକାଶକୁ ଚାହିଁ ଚିତ୍କାର କରି ଉଠିଲେ···"ଅସ୍ଥିଖଣ୍ଡର ନିର୍ବାଣ ଲାଭରେ କି ପ୍ରୟୋଜନ କହି ପାରିବ ଆକାଶ ? ଅସ୍ଥିର ପୁନର୍ଜନ୍ମ ନାହିଁ, ପୁନରାଗମନ ନାହିଁ, ରୂପ ତୃଷ୍ଣାର ବେଦନା ନାହିଁ, ଅତୃପ୍ତି ନାହିଁ, ଦୁଃଖ ନାହିଁ···· ଏ କେବଳ ଅସ୍ଥି ! ଅସ୍ଥି !"

ତା'ପରେ ତ୍ରୁଷିତଲୋକର ମହାନିର୍ବାଣ···ଅନନ୍ତ ମହାସୁଖ, ଜନ୍ମ ଓ ପୁନର୍ଜନ୍ମର ଆବର୍ତ୍ତନରୁ ମହାମୁକ୍ତି !

ଗୋଧୂଳିର ଉଦାସ ଗ୍ରୁସ୍ରା ପର୍ବତମାଳା ପରିବେଷ୍ଟିତ ଉପତ୍ୟକାରେ ନିବୃତ୍ତିର ଅଚଞ୍ଚଳ ମୌନତା ପରି ଗମ୍ଭୀର ହୋଇ ଆସିଥିଲା, ମାତ୍ର ଧରଣୀର ନିଭୃତତମ ମର୍ମଭୂମିରେ, ଏକ ଗମ୍ଭୀର ଉଦ୍‌ବେଳନର ରକ୍ତିମ ଉତ୍ତେଜନା, ଯେପରି ଧୂସର ଆକାଶର ଦିଗ୍‌ବଳୟକୁ ଏକ ଲୋହିତ ଦ୍ୟୁତିରେ ଉଦ୍‌ଭାସିତ କରିଥିଲା ।

ଶ୍ମଶାନର ଅନ୍ୟ ଏକ ପ୍ରାନ୍ତରୁ ଆଉ ଗୋଟିଏ ଶବବାହୀ ଦଳ, ଗୋଧୂଳିର ସେହି ବିବର୍ଣ୍ଣ ଆଲୋକରେ ପ୍ରତ୍ୟାବର୍ତ୍ତନ କରୁଥିଲେ । ଅଶୁଭ ଭାବନାରେ, ନୀଳୋତ୍ପଳଙ୍କର ସିଦ୍ଧି ସମ୍ପୂର୍ଣ୍ଣ ହୋଇଅଛି । ନଶ୍ୱର ନାରୀ ଦେହର, ତୀକ୍ଷ୍ଣ କୋମଳ ରେଖା, ଆଉ ତାଙ୍କର ଚେତନାକୁ ଶଳାକା ପରି ବିଦ୍ଧ କରିବ ନାହିଁ, ଅବଚେତନର ଗହ୍ୱରରେ ନିଦ୍ରିତ କାମନାକୁ ଏକ ଆଦିମ ରାକ୍ଷସ ପରି ଅବର୍ତ୍ତମାନୀୟ କ୍ଷୁଧାରେ ଆଉ ଜାଗ୍ରତ କରିବ ନାହିଁ । ରୂପ ଓ ତୃଷ୍ଣାର ନାଗବନ୍ଧନରୁ ନୀଳୋତ୍ପଳ ଆଜି ଜ୍ୟାମୁକ୍ତ ଏକ ଉଲ୍ଲଙ୍ଗ ତୀରପରି, ବେଦନାମୁକ୍ତ ସ୍ୱସ୍ତିର ଏକ ଦୀର୍ଘଶ୍ୱାସପରି । ଏହାପରେ ସେ ପୁଣି ଗୃଧ୍ରକୂଟ ବିହାରରେ ସେହି ନିଭୃତ ସାଧନା କକ୍ଷକୁ ଅଚଞ୍ଚଳ ଚିତ୍ତ ଓ ପ୍ରଶାନ୍ତିରେ ପ୍ରତ୍ୟାବର୍ତ୍ତନ କରିପାରିବେ !

ଫାଲ୍‌ଗୁନର ମୁକୁଳିତ ବିହ୍ୱଳତା ଆଉ ନାହିଁ ।

ଶେଷ ବସନ୍ତର ଦଗ୍‌ଧ-ମୁକୁଳ ଓ ପଲ୍ଲବର ଭସ୍ମ-ଶଯ୍ୟା ଉପରୁ ରୁଦ୍ର ବୈଶାଖ, ରକ୍ତଚକ୍ଷୁ ମେଲି, ମୋହମୁକ୍ତ କାପାଳିକପରି ଉଠିଲାଣି ।

ଆଜି ଏହି ଶ୍ମଶାନରେ ଆର୍ଯ୍ୟ ଶାନ୍ତଦେବ, ନୀଳୋତ୍ପଳଙ୍କୁ ଭିକ୍ଷୁତ୍ୱର ଉପସମ୍ପଦରେ ଅଭିଷିକ୍ତ କରିବେ । ତା'ପରେ ନୀଳୋତ୍ପଳ ହେବେ, କଲ୍ୟାଣମିତ୍ର ଆର୍ଯ୍ୟ ନୀଳୋତ୍ପଳ !

ଆଉ ଶବଦେହ ପାଖରେ ବସି, ବଳସ୍ଫୁର ବିଭିନ୍ନ ପର୍ଯ୍ୟାୟ ଧିରେ ଧିରେ ନିର୍ବିଘ୍ନ ହୋଇ 'ପଞ୍ଚଭୂତ ସହିତ ମିଶିଯିବାର ବିବର୍ଣ୍ଣ ମହାନାଟକ ଲକ୍ଷ୍ୟ କରିବାର ଆବଶ୍ୟକତା ନାହିଁ । ଆଜି ନୀଳୋତ୍ପଳଙ୍କର ସାଧନା ସମାପ୍ତ, ଆଜି ତାଙ୍କର

ଉପସମ୍ପଦ ପ୍ରାପ୍ତିର ମଙ୍ଗଳ ମୁହୂର୍ତ୍ତ । ନୀଳୋତ୍ପଳଙ୍କର ମନେ ପଡ଼ିଗଲା, ଆଜି ମଧୁ ପୂର୍ଣ୍ଣିମା ।

ତଥାପି ନୀଳୋତ୍ପଳ ଶ୍ମଶାନରେ ନବାଗତ ଶବଟିକୁ ଥରେ ଦେଖିବାର ବ୍ୟାଧିତ କୌତୂହଳ ଦମନ କରି ପାରିଲେ ନାହିଁ । ଏକ ବଣ୍ୟ ପଶୁପରି, ସେ ଅତି ସନ୍ତର୍ପଣରେ ଶବର ଗନ୍ଧ ଆଘ୍ରାଣ କରି କରି ସେହି ଆଡ଼େ ଆଗେଇ ଗଲେ ।

ଶ୍ମଶାନରେ ବେତସଲତାବେଷ୍ଟିତ ଏକ ନିଭୃତ କୋଣରେ, ଗୋଟିଏ ସମାଧି ଗହ୍ୱରର ଖଣ୍ଡେ ପଥର ତଳେ ଶବବାହୀମାନେ, ଗୋଟିଏ ନୀଳବସ୍ତ୍ରାବୃତ ଶବପିଣ୍ଡ ରଖିଯାଇଥିଲେ । ନୀଳୋତ୍ପଳ ଦୁଇବାହୁରେ ସେହି ପଥରଖଣ୍ଡ ଉଠାଇ କାଢ଼ିଦେଲେ ।

ଭୂମିରେ ଗୋଟିଏ ନାରୀର ଶବ ପିଣ୍ଡ । କେବଳ ମୁଖ ବ୍ୟତୀତ ସମଗ୍ର ଦେହଟି ଖଣ୍ଡେ ନୀଳବସ୍ତ୍ରରେ ଆବୃତ ଥିଲା । ନାରୀ ! ନାରୀ ! ଜ୍ୱାଳାମୟୀ ଏକ ଅଗ୍ନିଶିଖା ! ସମାଧିଗହ୍ୱରର ଶୀତଳତା ମଧ୍ୟରେ ଯେପରି ହିମାୟିତ ହୋଇ ଲେଟି ପଡ଼ିଅଛି । ନୀଳୋତ୍ପଳ ଦୁଇ କୋଟରଗତ ଆଖି ହାତରେ ମଳି, ଛାୟାଚ୍ଛନ୍ନ ସମାଧି ଗହ୍ୱର ଭିତରକୁ ନିରୀକ୍ଷଣ କରି ଚାହିଁଲେ ।

ଏକ ଗଭୀର କ୍ଷତକୁ ଆକସ୍ମିକ ସ୍ପର୍ଶର ଯନ୍ତ୍ରଣାରୁ ରକ୍ଷା କରିବାର ଶତ ଆୟାସ ସତ୍ତ୍ୱେ, ଯେପରି ଏକ ଅସତର୍କ ଅଙ୍ଗୁଳି ଅଥବା ଅନ୍ୟ କୌଣସି ପ୍ରତ୍ୟଙ୍ଗ ସେହି କ୍ଷତକୁ ହଠାତ୍ ସ୍ପର୍ଶକରି, ଦୁଃସହ ବେଦନାରେ ଜର୍ଜ୍ଜରିତ କରିଦିଏ, ସେହିପରି ଯାହାର ରୂପାକର୍ଷଣ ଜୟ କରିବାପାଇଁ, ଗୃଧ୍ରକୂଟ-ବିହାରର ଶ୍ରମଣ ଶ୍ରେଷ୍ଠ ନୀଳୋତ୍ପଳ, ଶ୍ମଶାନରେ ପ୍ରେତ ପିଶାଚ ପରି ବୁଲି, ଅଶୁଭ-ଭାବନା ଅଭ୍ୟାସ କରୁଥିଲେ, ଏବେ ସେହି ମଧୁବ୍ରତା, ମଳୟର ସୁରଭିତ ହିଲ୍ଲୋଳ ପରି ସବୁ ସଂଯମ, ସାଧନା ଓ ସିଦ୍ଧି ଗୋଟିଏ ବଳୋଳ ଫୁତ୍କାରରେ କେଉଁଆଡ଼େ ଉଡ଼ାଇ ନେଲା ।

ଏ ଯେ, ଶ୍ରେଷ୍ଠୀ ଶ୍ୱେତପର୍ଣ୍ଣର ବଧୂ ମଧୁବ୍ରତା !

ସେହି ନୀଳଚେଳପରିହିତା ଅପରାଜିତା ବ୍ରତତୀ ପରି, କୃଶାଙ୍ଗୀ ମଧୁବ୍ରତା ! ପଦ୍ମଦଳ ପରି ଦୁଇ ଆୟତ ଆଖିର ପଙ୍କ୍ତି, ମୁଦ୍ରିତ ପକ୍ଷ୍ମରେଖା, ବ୍ରୀଡ଼ାନତ ମୁଗ୍ଧ ଦୃଷ୍ଟିର ଭ୍ରମ ସୃଷ୍ଟି କରୁଥିଲା । ସ୍ଫୁରିତ ଓଷ୍ଠାଧର ଯେପରି ପ୍ରୀତଚୁମ୍ବନର ଦନ୍ତା-ଘାତ ପାଇଁ ଈଷତ୍ ବିସ୍ତାରିତ ହୋଇ ରହିଥିଲା ।

ନୀଳୋତ୍ପଳ ଏକ ହିଂସ୍ର, କ୍ଷୁଧିତ ପଶୁ ପରି ଶବ ଦେହରେ ଆବୃତ ଥିବା ନୀଳବସ୍ତ୍ର ଦୁଇ ହାତରେ କାଢ଼ି ଫିଙ୍ଗି ଦେଲେ ।

ଅଃ...ଅନାଘ୍ରାତ ପଦ୍ମକୋରକ ପରି ଅନାବୃତ ସ୍ତନଯୁଗ୍ମ, ପ୍ରସ୍ଫୁଟ ସୁବର୍ତ୍ତୁଳ ନିତମ୍ବ, ପାଷାଣ ପ୍ରତିମା ପରି ମଧୁବ୍ରତାର ଶୀତଳ, ଉଲଙ୍ଗ ପିଣ୍ଡ ଉପରେ, ଯୁଗନଦ୍ଧ ଅବଲୋକିତେଶ୍ୱର ଓ ପ୍ରଜ୍ଞାପାରମିତା ମୂର୍ତ୍ତିର ଭଙ୍ଗୀରେ, ନୀଳୋତ୍ପଳ ନିଜକୁ ନିଶ୍ଛିଦ୍ର ଭାବରେ ବିଲୀନ କରିଦେଲେ ।

ତା' ପରେ ମଧୁବ୍ରତାର ଉଲଙ୍ଗ ପ୍ରାଣହୀନ ପିଣ୍ଡକୁ ନୀଳୋତ୍ପଳ ଦୁଇ ବାହୁରେ ନିଜର ବକ୍ଷ ସଂଲଗ୍ନ କରି ତୋଳି, ଅଗଣିତ କ୍ଷୁଧିତ ଚୁମ୍ବନରେ ତାହାର ଉଲଙ୍ଗତାକୁ ଯେପରି ଆଚ୍ଛନ୍ନ କରି ପକାଇଲେ ।

ଆଚାର୍ଯ୍ୟ ଶାନ୍ତିଦେବ କେତେବେଳେ ଆସି ସେଠାରେ ଉପସ୍ଥିତ ହୋଇ-ଥିଲେ, ନୀଳୋତ୍ପଳ ତାହା ଜାଣି ନଥିଲେ, କିମ୍ବା ସେହି ପ୍ରମତ୍ତ ମୁହୂର୍ତ୍ତରେ ତାହା ଜାଣିବା ଅବସ୍ଥାରେ ସେ ନଥିଲେ ।

ଆଚାର୍ଯ୍ୟ ଶାନ୍ତିଦେବ ବିକ୍ଷୁବ୍ଧ କଣ୍ଠରେ ଚିତ୍କାର କରି ଉଠିଲେ... "ନୀଳୋତ୍ପଳ ! ନୀଳୋତ୍ପଳ !"

ଉଲଙ୍ଗ ମଧୁବ୍ରତାର ଶିଥିଳ ପିଣ୍ଡକୁ ନୀଳୋତ୍ପଳ ବକ୍ଷ ସଂଲଗ୍ନ କରି, ତାହାଙ୍କୁ ସେହିପରି ନିବିଡ଼ଭାବରେ ଧରି, ନିର୍ବାକ ଦୃଷ୍ଟିରେ ଚାହିଁ ରହିଥିଲେ ।

ଶାନ୍ତି ଦେବ ଚିତ୍କାର କରି ଉଠିଲେ..."ଏ କଣ କରୁଛ, ମୂଢ଼, ନିର୍ବୋଧ, ନୀଳୋତ୍ପଳ !"

"ନୀଳୋତ୍ପଳ ଶାନ୍ତିଦେବଙ୍କ ଆଡ଼େ ଚାହିଁଲେ ନାହିଁ; କିମ୍ବା ତାହାଙ୍କ ଉପସ୍ଥିତିରେ ବିଚଳିତ ହେଲେନାହିଁ ।"

ଏକ ବର୍ଣ୍ଣନାତୀତ ମହାନିର୍ବାଣ ମଧ୍ୟରେ, ସେ ଯେପରି ସତ୍ତ୍ୱହୀନ ଭାବରେ ବିଲୁପ୍ତ ହୋଇ ପଡ଼ିଥିଲେ ।

ରାଜଗୃହ ପର୍ବତମାଳାର ଗୋଟିଏ ନିଃସଙ୍ଗ ଗିରିଶୃଙ୍ଗର ନେପଥ୍ୟରୁ ପୂର୍ଣ୍ଣିମାର ଚନ୍ଦ୍ର ନିଖିଳ ବେଦନାର ଜ୍ୱାଳାମୟ ପିଣ୍ଡ ପରି ଉଇଁ ଆସୁଥିଲା ।

ନୀଳୋତ୍ପଳ ଦୁଇ ବାହୁରେ ବିବସନା ମଧୁବ୍ରତାର ମୃତପିଣ୍ଡ ଟେକିଧରି, ସେହି ଆଡ଼େ ପ୍ରମତ୍ତ ପରି ଧାଇଁ ଅଦୃଶ୍ୟ ହୋଇ-ଯାଉଥିଲେ ।

ଶାନ୍ତଦେବ ଅସହାୟ କଣ୍ଠରେ ଚିତ୍କାର କରୁଥିଲେ···"ନୀଳୋତ୍ପଳ ! ନୀଳୋତ୍ପଳ !"

ନିର୍ଜନ ପାର୍ବତ୍ୟ ଉପତ୍ୟକାରେ ଶାନ୍ତଦେବଙ୍କର ବିକ୍ଷୁବ୍ଧ ଆହ୍ୱାନ ଏକ ପରିହାସ ପରି ପ୍ରତିଧ୍ୱନିତ ହୋଇ ଉଠୁଥିଲା ।

ନୀଳୋତ୍ପଳ ଦୁଇ ବାହୁରେ ବିବସନା ମଧୁବ୍ରତାର ମୃତପିଣ୍ଡ ଆବକ୍ଷ ଆଲିଙ୍ଗନ କରି, ପୂର୍ଣ୍ଣିମାର ପ୍ରଥମ ଜ୍ୟୋତ୍ସ୍ନାସ୍ନାତ ସେହି ଗିରିଶୃଙ୍ଗ ଆଡ଼େ ଧାଇଁ ଅଦୃଶ୍ୟ ହୋଇ ଯାଉଥିଲେ ।



# କୁମ୍ଭ ଯୋନି

### ଡକ୍ଟର କୃଷ୍ଣ ଚରଣ ବେହେରା

ଶ୍ରୀ ଏବଂ ଶ୍ରୀମତୀ ମହାପାତ୍ର ମେଡ଼ିକାଲ କଲେଜ ହସ୍ପିଟାଲରୁ ବାହାରିଲେ । ସେମାନଙ୍କ ପଛରେ ଗାଇନିକ୍ ପ୍ରଫେସର ଡକ୍ଟର ଦାସ ।

ଶ୍ରୀମତୀ ମହାପାତ୍ରଙ୍କ କୋଳରେ ନବଜାତ ପୁତ୍ର ସନ୍ତାନ—ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ବିସ୍ମୟକର ଫଳଶ୍ରୁତି—ମଣିଷର ମେଧା ଓ ସୃଷ୍ଟି—ନୈପୁଣ୍ୟର ଅପୂର୍ବ ଫସଲ—ଏକ 'ଟେଷ୍ଟ୍ ଟିଉବ୍ ବେବି' ।

ଶ୍ରୀମତୀ ମହାପାତ୍ରଙ୍କର ପ୍ରସୂତି-ପର ଶୀର୍ଣ୍ଣ ମୁଖମଣ୍ଡଳ ଶାନ୍ତ ଓ ପରିତୃପ୍ତ ଦେଖା ଯାଉଥିଲା । ମଳିନ ଅଧରରେ ଫୁଟି ଉଠୁଥିଲା ମଧୁର ହାସ୍ୟରେଖା । ଶ୍ରୀ ମହାପାତ୍ର ଏବଂ ଡକ୍ଟର ଦାସ ମଧ୍ୟ ହାସ୍ୟୋଜ୍ଜ୍ୱଳ ଦେଖା ଯାଉଥିଲେ ।

ପ୍ରଥମେ ସରକାରଙ୍କ ତରଫରୁ ସ୍ୱାସ୍ଥ୍ୟ ବିଭାଗର ଡିରେକ୍ଟର, ଶ୍ରୀମତୀ ମହାପାତ୍ର ଏବଂ ଡକ୍ଟର ଦାସଙ୍କୁ ପୁଷ୍ପସ୍ତବକ ପ୍ରଦାନ କରି ଅଭିନନ୍ଦନ ଜଣାଇଲେ ।

ହସ୍ପିଟାଲ ବାହାରେ ଲୋକାରଣ୍ୟ । ସମଗ୍ର ମହାନଗରୀର ଜନତା ଯେପରି ସେଠି ସମବେତ ହୋଇଛନ୍ତି ପୃଥିବୀର ଏକ ପରମ ଆଶ୍ଚର୍ଯ୍ୟ ପ୍ରତ୍ୟକ୍ଷ ପୂର୍ବକ ନୟନ-ମନ ତୃପ୍ତ କରିବେ । ଶ୍ରୀମତୀ ମହାପାତ୍ରଙ୍କ କୋଳର ଶିଶୁ ପୁତ୍ରଟିକୁ ଦେଖିବାକ୍ଷଣି ବିସ୍ମୟ-ମୁଗ୍ଧ ଜନତା ଜୟଧ୍ୱନି କରିବାରେ ଲଗିଲେ ।

ଏ ଶିଶୁପୁତ୍ରଟି ଯେପରି ଏକ ସାଧାରଣ ନବଜାତକ ନୁହେଁ ! ଏହାର ଜନ୍ମ-ପ୍ରକ୍ରିୟା ଭଳି ଅଙ୍ଗ-ପ୍ରତ୍ୟଙ୍ଗର ଗଠନ-ପ୍ରଣାଳୀରେ ମଧ୍ୟ ଯେପରି କିଛି ବିଶେଷତ୍ୱ ରହିଛି ! ତେଣୁ ଏହାକୁ ଥରେ ନିକଟରୁ ଦେଖିବାର ଆଗ୍ରହ ଓ କୌତୂହଳ ଯୋଗୁ ଜନତା ଭିତରେ ଠେଲାପେଲା ଆରମ୍ଭ ହୋଇଗଲା । ପୋଲିସ୍ ହସ୍ତକ୍ଷେପ କରି ନ ଥିଲେ, ସେହି ଜନସମାବେଶରେ ଶାନ୍ତି ଶୃଙ୍ଖଳା ରକ୍ଷା କଷ୍ଟକର ହୋଇ ଥାଆନ୍ତା ।

ସାମ୍ବାଦିକମାନେ ଶ୍ରୀ ଓ ଶ୍ରୀମତୀ ମହାପାତ୍ର ତଥା ଡକ୍ଟର ଦାସଙ୍କୁ ଘେରିଗଲେ । ଅନ୍ତଃସତ୍ତ୍ୱା ଥିବା କାଳରେ ଶ୍ରୀମତୀ ମହାପାତ୍ରଙ୍କୁ ସାକ୍ଷାତ ଓ ପଚରା ଉଚରା କରିବା ପାଇଁ ସେମାନଙ୍କୁ ଅନୁମତି ଦିଆଯାଇ ନ ଥିଲା । ବିଭିନ୍ନ ପ୍ରେସ୍-କ୍ୟାମେରାର ଫ୍ଲାସ୍ ଲାଇଟ୍ ବିଜୁଳି ପରି ବାରମ୍ବାର ଚମକି ଉଠିଲା । ଟେଲିଭିଜନ୍ କ୍ୟାମେରା ମଧ୍ୟ ଫଟୋ ନେବାରେ ଲାଗିଗଲା ।

ସମବେତ ଜନତାକୁ ଶ୍ରୀ ଏବଂ ଶ୍ରୀମତୀ ମହାପାତ୍ର ଅଭିବାଦନ ଜଣାଇଲେ । ସାମ୍ବାଦିକମାନଙ୍କର ବିଭିନ୍ନ ପ୍ରଶ୍ନର ଉତ୍ତର ଦେବାପାଇଁ ସେମାନଙ୍କୁ ସେଠାରେ କିଛି ସମୟ ଅଟକି ରହିବାକୁ ପଡ଼ିଲା । ତା'ପରେ ଡକ୍ଟର ଦାସଙ୍କଠାରୁ ବିଦାୟ ନେଇ ସେମାନେ ପୋଲିସ୍ ସାହାଯ୍ୟରେ ବହୁ କଷ୍ଟରେ ଭିଡ଼ ପାରି ହୋଇ ରାସ୍ତା ଉପରକୁ ଆସିଲେ । ରାସ୍ତା ଉପରେ ଶ୍ରୀ ମହାପାତ୍ରଙ୍କର ବାପ-ମାଆ ଓ ଆତ୍ମୀୟ ସ୍ୱଜନମାନେ କାର୍‌ରେ ଅପେକ୍ଷା କରି ରହିଥିଲେ ।

× × ×

'ମହାପାତ୍ର ମହଲ' ସେଦିନ ଆନନ୍ଦ-ଉତ୍ସବରେ ମୁଖର ହୋଇ ଉଠିଥିଲା । ବୃଦ୍ଧ ଶିଳ୍ପପତି ବହୁଦିନର ଅପେକ୍ଷା ପରେ ନାତିଟିଏ ପାଇ ବଂଶରକ୍ଷା ହେଲା ବୋଲି ଗଭୀର ବିଶ୍ୱାସରେ ଶାନ୍ତ ସମାହିତ ହୋଇ ବାରଣ୍ଡାରେ ବସିଥିଲେ ଏବଂ ଦରିଦ୍ରମାନଙ୍କୁ ଅନ୍ନ ବସ୍ତ୍ର ବଣ୍ଟନ କରାଯାଉ ଥିବାର ଦୃଶ୍ୟ ଦେଖୁଥିଲେ ବିମୁଗ୍ଧ ହୋଇ ।

ତାଙ୍କର ଏକମାତ୍ର ପୁତ୍ର ଶ୍ରୀ ଅମିତାଭ •ମହାପାତ୍ର ବିଶ୍ୱବିଦ୍ୟାଳୟରେ ତୁଳନାତ୍ମକ ସାହିତ୍ୟ ବିଭାଗର ଅଧ୍ୟାପକ । ଆଠ ବର୍ଷ ତଳେ, ଏକଦା ଆପଣାର ସହପାଠିନୀ ମନୀଷା ଚୌଧୁରୀଙ୍କୁ ବିବାହ କରିଥିଲେ ମଧ୍ୟ ସେ ଏ ପର୍ଯ୍ୟନ୍ତ ଥିଲେ ନିଃସନ୍ତାନ । ତେଣୁ ବୃଦ୍ଧ ପିତାଙ୍କର ମନୋବେଦନାର ଅନ୍ତ ନ ଥିଲା । ଶ୍ରୀ ମହାପାତ୍ର କେତେଥର ପିତାଙ୍କୁ ବୁଝାଇଥିଲେ—ଏ ଯୁଗରେ ଆତ୍ମରକ୍ଷା ପାଇଁ ମଣିଷ ଘୋରତର ସଂଗ୍ରାମ କରୁଥିଲାବେଳେ ବଂଶରକ୍ଷା ବଡ଼ କଥା ନୁହେଁ । କିନ୍ତୁ ବୃଦ୍ଧ ଶିଳ୍ପପତିଙ୍କର ତାହା ହୃଦ୍‌ବୋଧ ହୋଇ ନ ଥିଲା । ଅମିତାଭ-ପରେ ଏ ଧନ ସମ୍ପଦ, ବିପୁଳ ଐଶ୍ୱର୍ଯ୍ୟ କାହାର ହେବ ?—କିଏ ଭୋଗ କରିବ ? କାହିଁ ତାଙ୍କର ବଂଶଧର•? କିଏ ତାଙ୍କର ଉତ୍ତର-ପୁରୁଷ ?

ହଁ, ସେ ନାତିଟିଏ‌ଇ ସୃଷ୍ଟି—ଶୃଙ୍ଖଳା ପଣନାତି, ଅଣନାତି… ତାଙ୍କରି ରକ୍ତର ଧାର ପୁରୁଷ ପୁରୁଷ ଧରି ଅନନ୍ତ କାଳ ପର୍ଯ୍ୟନ୍ତ ପ୍ରବାହିତ ହେଉଥାଉ ! ପୁଅ, ନାତି, ପଣନାତି ପ୍ରଭୃତିଙ୍କ ମଧ୍ୟରେ ସେ ଚିରଦିନ ବଞ୍ଚି ରହି ଥାଆନ୍ତୁ !

ଉତ୍ତର-ପୁରୁଷଙ୍କ ମଧ୍ୟରେ ଅମର ହୋଇ ରହିବା ତ ପ୍ରତ୍ୟେକ ମଣିଷର ଉଦଗ୍ର କାମନା ! ତାହା ହିଁ ତ ଏକ ପ୍ରକାର ଆତ୍ମରକ୍ଷା !—ବଂଶରକ୍ଷା ମଧ୍ୟରେ ଆତ୍ମବିସ୍ତାର ଓ ଆତ୍ମସଂରକ୍ଷଣ !

ଶ୍ରୀ ମହାପାତ୍ରଙ୍କର ବୃଦ୍ଧା ଜନନୀ ମଧ୍ୟ ବଂଶରକ୍ଷା ପାଇଁ କମ୍ ବ୍ୟାକୁଳ ହେଉ ନ ଥିଲେ । ନାତିଟିଏ ପାଇଁ ବିଭିନ୍ନ ଓଷା ବ୍ରତ, ବହୁ ଦିଅଁ ଦେବତା ପୂଜା ସେ ନିଷ୍ଠାପର ଭାବରେ କରି ଚାଲିଥିଲେ ବର୍ଷ ବର୍ଷ କାଳ ।

ବୃଦ୍ଧ ପିତାମାତାଙ୍କୁ ମାନସିକ ଅଶାନ୍ତିରୁ ମୁକ୍ତ ଦେବାପାଇଁ ଶ୍ରୀ ମହାପାତ୍ର ଉଦ୍ୟମରେ ହେଳା କରି ନ ଥିଲେ । ବିବାହଠାରୁ ଆଠବର୍ଷ ମଧ୍ୟରେ ସେ ନିଜର ତଥା ନିଜ ସ୍ତ୍ରୀଙ୍କର ବିଭିନ୍ନ ପ୍ରକାର ଡାକ୍ତରୀ ପରୀକ୍ଷା କରାଇଥିଲେ । ଶେଷରେ ମେଡ଼ିକାଲ୍ କଲେଜର ଗାଇନିକ୍ ପ୍ରଫେସର ଡକ୍‌ଟର ଦାସ ଏବଂ ତାଙ୍କର ସହକର୍ମୀଗଣ ବହୁ ପରୀକ୍ଷା ପରେ ମତ ଦେଲେ ଯେ—ସନ୍ତାନ ଉତ୍ପାଦନ ସକାଶେ ଶ୍ରୀ ମହାପାତ୍ରଙ୍କଠାରେ କୌଣସି ଦୋଷତ୍ରୁଟି ଦେଖା ଯାଉନାହିଁ । କିନ୍ତୁ ଶ୍ରୀମତୀ ମହାପାତ୍ରଙ୍କର ଫେଲୋପିଆନ୍ ଟିଉବ୍ ଯୋଡ଼ିକ ଅକାମୀ ହୋଇ ପଡ଼ିଛି । ତେଣୁ ସେ ଗର୍ଭଧାରଣ କରିପାରୁ ନାହାନ୍ତି ।

ଆଉ ଉପାୟ କ'ଣ ? ଶ୍ରୀ ଏବଂ ଶ୍ରୀମତୀ ମହାପାତ୍ର ଭାବି ଭାବି କୌଣସି ଟଳକୂଳ ପାଉ ନ ଥିଲେ । ବୃଦ୍ଧ ଶିଳ୍ପପତି ଧରି ବସିଥିଲେ—ପୁଅକୁ ପୁଣି

ପରେ ବିବାହ କରାଇ ଘରକୁ ଆଉ ଗୋଟିଏ ବୋହୂ ଆଣିବେ । ବଂଶରକ୍ଷାର ତାହାହିଁ ଏବେ ଏକମାତ୍ର ଉପାୟ ।

ଶ୍ୱଶୁରଙ୍କ ଜିଦ୍‌ରେ ଶ୍ରୀମତୀ ମହାପାତ୍ର ବ୍ୟତିବ୍ୟସ୍ତ ହୋଇ ପଡ଼ିଥିଲେ । ସେଦିନ ସେ କାନ୍ଦି କାନ୍ଦି ନୟନ ଲୋତକରେ ଶ୍ରୀ ମହାପାତ୍ରଙ୍କ ବକ୍ଷ ଭିଜାଉ-ଥିଲାବେଳେ ଶ୍ରୀ ମହାପାତ୍ର ତାଙ୍କୁ ଦୃଢ଼ ଆଲିଙ୍ଗନ-ପାଶରେ ଆବଦ୍ଧ କରି କହିଥିଲେ—ଏହା ହୋଇ ପାରେନା ମନୀଷା, ମୋ ବକ୍ଷ ଭିତର ଆସନଟି ତ ତମେ ସମ୍ପୂର୍ଣ୍ଣ ଅଧିକାର କରି ବସିଛ ! ସେଠି ଆଉ ଜଣକ ପାଇଁ ସ୍ଥାନ କାହିଁ ?

ଅଗତ୍ୟା ଏକ ଉପାୟର ପ୍ରସ୍ତାବ କରିଥିଲେ ଡକ୍ଟର ଦାସ । ଉପାୟଟିର କଥା ବିସ୍ତୃତ ଭାବରେ ଶୁଣି ଶ୍ରୀ ଓ ଶ୍ରୀମତୀ ମହାପାତ୍ର ଉଭୟେ ଚମତ୍କୃତ ହୋଇଥିଲେ । ଶ୍ରୀମତୀ ମହାପାତ୍ରଙ୍କ ଡିମ୍ବାଶୟର ଗୋଟିଏ ଡିମ୍ବ ସହିତ ଶ୍ରୀ ମହାପାତ୍ରଙ୍କ ଶୁକ୍ରାଣୁ ଏକ ଟେଷ୍ଟ୍‌ଟିଉବ୍ ଭିତରେ ଏକତ୍ର କରି ଗର୍ଭାଧାନ କରାଯାଇ ପାରିବ । ସେହି ନିଷିକ୍ତ ଡିମ୍ବକୁ ଶ୍ରୀମତୀ ମହାପାତ୍ରଙ୍କ ଜରାୟୁ ମଧ୍ୟରେ ଅବସ୍ଥାପିତ କରାଯାଇ ସନ୍ତାନ ଉତ୍ପାଦନ କରିହେବ ।

ଏ ଉପାୟ ସମ୍ପର୍କରେ ସନ୍ଦିଗ୍ଧମନା ଥିଲେହେଁ ଉଭୟେ ଶ୍ରୀ ଓ ଶ୍ରୀମତୀ ମହାପାତ୍ର ଏହାର ସଦୁପଯୋଗ କରି ସନ୍ତାନ-ଲାଭ ସକାଶେ ବ୍ୟଗ୍ର ହୋଇ ପଡ଼ିଥିଲେ । କିନ୍ତୁ ବୃଦ୍ଧ ଶିଳ୍ପପତିଙ୍କଠାରୁ ଆପତ୍ତିର ସ୍ୱର ଶୁଣା ଯାଇଥିଲା—ଏହା କି ଏକ ମାନବୀୟ ବ୍ୟାପାର ? ପ୍ରାକୃତିକ ପ୍ରକ୍ରିୟାକୁ ଲଙ୍ଘନ କଲେ, କ'ଣ ସୁଫଳ ମିଳେ ? ନା, ନା, ଏପରି ପୈଶାଚିକ ଉପାୟ ଅବଲମ୍ବନ କରି ଆମର ବଂଶରକ୍ଷା କରାଯାଇ ନ ପାରେ ।

ସୁଂସବନ ତଥା ମଣିଷ-ଜନ୍ମର ପାରଂପରିକ ସଂସ୍କାର ଓ ନୈତିକ ମୂଲ୍ୟବୋଧ କ୍ଷୁର୍ଣ୍ଣ ହେବାରୁ ବୃଦ୍ଧ ଶିଳ୍ପପତି ବିଦ୍ରୋହୀ ହୋଇ ଉଠିଥିଲେ । କିନ୍ତୁ ଏହି ବୈଜ୍ଞାନିକ ଅଭିଜ୍ଞିୟା ଦ୍ୱାରା ସଂସ୍କାର-ଭଙ୍ଗ ହେଉ ନ ଥିବା ବିଷୟରେ ତାଙ୍କର କୁଳ-ପୁରୋହିତ ଯୁକ୍ତି କରିଥିଲେ । ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ଅଘଟନ-ଘଟନ-ପଟୀୟସୀ ଶକ୍ତି ଏବଂ ଅଭୂତପୂର୍ବ ସିଦ୍ଧି ବିଷୟ ବୁଝାଇ ପୁଅ ବୋହୂ ଦୁହେଁ ମଧ୍ୟ ତାଙ୍କୁ ଶାନ୍ତ କରାଇ ଥିଲେ ।

କଥା ରହିଥିଲା—ଲେବୋରେଟରୀରେ ପୁଅ ବୋହୂଙ୍କ ସମକ୍ଷରେ ହିଁ ଡକ୍ଟର ଦାସ ସେମାନଙ୍କ ଶୁକ୍ରାଣୁ ଓ ଡିମ୍ବ ଏକତ୍ର କରି ଗର୍ଭାଧାନ କରାଇବେ ଏବଂ ସନ୍ତାନଜନ୍ମ ନ ହେଲା ପର୍ଯ୍ୟନ୍ତ ଏହି ବୈଜ୍ଞାନିକ କୌଶଳ ସର୍ବସାଧାରଣଙ୍କଠାରୁ ଗୋପନ କରି ରଖିବେ ।

ତା' ପରେ ଆରମ୍ଭ ହୋଇଥିଲା—ଡକ୍ଟର ଦାସ ଏବଂ ତାଙ୍କର ସହକର୍ମୀଙ୍କ ଅପୂର୍ବ ଓ ଚମକପ୍ରଦ ସାଧନା । ହସ୍‌ପିଟାଲ୍‌ର ଲେବୋରେଟରୀରେ ଏକ ସ୍ୱତନ୍ତ୍ର କକ୍ଷ ମଧ୍ୟରେ ଶ୍ରୀମତୀ ମହାପାତ୍ରଙ୍କୁ ସକଳ ପ୍ରକାର ମେଡିକାଲ୍ ପରୀକ୍ଷା ମଧ୍ୟରେ ରଖାଗଲା । ଶ୍ରୀ ମହାପାତ୍ର ମଧ୍ୟ ତାଙ୍କର ପାଖେ ପାଖେ ଅସୀମ ଉଦ୍‌ବେଗରେ ଜଗି ରହିଲେ । ଠିକଣା ବେଳରେ ଅପରେସନ୍ ଦ୍ୱାରା ଡକ୍ଟର ଦାସ ଶ୍ରୀମତୀ ମହାପାତ୍ରଙ୍କ ଡିମ୍ବାଶୟରୁ ଅତି ସତର୍କତାର ସହିତ ଏକପୂର୍ଣ୍ଣ ବିକଶିତ ଡିମ୍ବ ବାହାର କରି ଆଣିଲେ । ସଙ୍ଗେ ସଙ୍ଗେ ଶ୍ରୀ ମହାପାତ୍ରଙ୍କ ଶୁକ୍ରାଶୟରୁ କିଛି ପୁଷ୍ଟ ସବଳ ଶୁକ୍ରାଣୁ ମଧ୍ୟ ବାହାର କଲେ । ସ୍ୱତନ୍ତ୍ର ଭାବେ ନିର୍ମିତ ଏକ ଟେଷ୍ଟଟିଉବ୍ ମଧ୍ୟରେ ସେହି ଡିମ୍ବ ଓ ଶୁକ୍ରାଣୁଗୁଡ଼ିକ ଏକତ୍ର ମିଶାଇ ଦେଲେ । ଶୀତତାପ ନିୟନ୍ତ୍ରିତ ଏକ ଅନ୍ଧକାରମୟ ପ୍ରକୋଷ୍ଠରେ ସେହି ଟେଷ୍ଟଟିଉବ୍‌ଟି ରଖି ଡକ୍ଟର ଦାସ ପ୍ରବଳ ଉତ୍କଣ୍ଠା ଓ ଉତ୍ତେଜନା ସେନି ଦୀର୍ଘ ଗୃହିଦନ କାଳ ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ତାହା ପରୀକ୍ଷା କରିବାରେ ଲାଗିଲେ ।

କ୍ରମଶଃ ସେହି ଯୁଗାନ୍ତକାରୀ ପରମ ବିସ୍ମୟକର ବ୍ୟାପାର ସଙ୍ଘଟିତ ହେଲା । ମହାପାତ୍ର ପରିବାରର ସୌଭାଗ୍ୟକୁ ଡକ୍ଟର ଦାସଙ୍କ ସମସ୍ତ ଆବେଗ ଉତ୍କଣ୍ଠାର ଅବସାନ ଘଟାଇ ଟେଷ୍ଟଟିଉବ୍ ମଧ୍ୟରେ ଦେଖାଗଲା—ଗୋଟିଏ ଭ୍ରୂଣର ଆଦ୍ୟାବସ୍ଥା—ମାନବ ସୃଷ୍ଟିର କମଳ କଳିକା ।

ଡକ୍ଟର ଦାସଙ୍କର ସେତେବେଳେ ଆନନ୍ଦ-ଉଲ୍ଲାସ କହିଲେ ନ ସରେ । ଏତେଦିନକେ ପ୍ରକୃତିର ଏକ ବିରାଟ ଗୋପନ ରହସ୍ୟ ଉଦ୍‌ଘାଟିତ ହେଲା । ମାନବ-ଜନ୍ମର କୁଞ୍ଚିକା ଆଧୁନିକ ବିଜ୍ଞାନ କରଗତ କଲା ।

ସେହି ସମୟରେ ଶ୍ରୀମତୀ ମହାପାତ୍ରଙ୍କଠାରେ ନିୟମିତ ହରମୋନ୍ ପ୍ରୟୋଗ କରି ଯାଇଥିଲା ଏବଂ ତାଙ୍କର ଶାରୀରିକ ତଥା ମାନସିକ କ୍ରିୟା-ପ୍ରତିକ୍ରିୟା ସତର୍କତାର ସହି ନିରୀକ୍ଷଣ କରିଯାଉଥିଲା । ଭ୍ରୂଣର ନିରାପଦ ନିବାସ ଲାଗି ତାଙ୍କର ଜରାୟୁ ଭଲ ଭାବରେ ପ୍ରସ୍ତୁତ ହୋଇଗଲା ପରେ ଡକ୍ଟର ଦାସ ଟେଷ୍ଟଟିଉବ୍‌ର ଭ୍ରୂଣକୁ ଆଣି ସଯତ୍ନ ତାହା ମଧ୍ୟରେ ସଂସ୍ଥାପନା କରିଦେଲେ ।

ଏହିଠାରୁ ଶ୍ରୀମତୀ ମହାପାତ୍ର ପ୍ରକୃତ ଅର୍ଥରେ ହେଲେ ଗର୍ଭବତୀ । ନିଜ ଦେହରେ ସମସ୍ତ ବୈଜ୍ଞାନିକ ଅଭିନିବେଶର ଯନ୍ତ୍ରଣା ସେ ହସ ହସ ମୁଖରେ ସହ୍ୟ କରି ନେଇଥିଲେ । ମନ ତାଙ୍କର ପକ୍ଷୀରାଜ ଘୋଡ଼ା ପରି ଛୁଟି ଯାଉଥିଲା କାହିଁ କୁଆଡ଼େ ସ୍ୱପ୍ନ-ରାଜ୍ୟକୁ—ସେ ଯେପରି ସ୍ୱର୍ଗୀୟ ନନ୍ଦନକାନନର ମନଭୁଲା ଶୋଭା ଓ ସୁରଭି-ପରିପୂର୍ଣ୍ଣ ପରିବେଶ ମଧ୍ୟରେ ବିଚରଣ କରୁଛନ୍ତି ନିଜ

ସ୍ୱାମୀଙ୍କ ସହ ! ସ୍ୱାମୀଙ୍କ କୋଳରେ ଥିବା ଶିଶୁ ପୁତ୍ରଟି ତାଙ୍କ କୋଳକୁ ଆସିବା ଲାଗି ବାରମ୍ବାର ହାତ ବଢ଼ାଉଛି । ସେ କିନ୍ତୁ ପୁତ୍ରକୁ କୋଳକୁ ନ ନେଇ ରଙ୍ଗ ବର୍ଣ୍ଣର ଫୁଲଟିଏ ଦେଖାଇ ତାକୁ ଭୁଲାଇବାରେ ଲାଗିଛନ୍ତି । ଶ୍ରୀ ମହାପାତ୍ର ହସି ହସି ତାଙ୍କୁ କହୁଛନ୍ତି—ସେ ତ ମାଆର ପୁଅ ! ମୋ କୋଳରେ ରହିବ କାହିଁକି ?

ଶ୍ରୀମତୀ ମହାପାତ୍ର ଉତ୍ତର ଦେଉଛନ୍ତି—ସେ ବାପ ଓ ମାଆ ଉଭୟଙ୍କର ପୁଅ । ବାପ କୋଳରେ ଥିଲା, ପୁଣି ମାଆ କୋଳକୁ ଆସିବା ପାଇଁ ଚାହୁଁଛି ।

ମୁଗ୍‌ଧ-ବିହ୍ୱଳ ଚିତ୍ତରେ ଦୁହେଁ ଶିଶୁ ପୁତ୍ରଟିକୁ ଧରି ସେହି ସ୍ୱପ୍ନ-ରାଜ୍ୟରେ ଚାଲିଛନ୍ତି ଏବଂ ଚାଲିଛନ୍ତି....

ଭ୍ରୂଣ-ସଂସ୍ଥାପନ ପରେ ସବୁ ବିଷୟ ସ୍ୱାଭାବିକ ଗତିରେ ଚାଲିବାରୁ ଡକ୍ଟର ଦାସ ଗୋଟିଏ ସ୍ୱସ୍ତିର ନିଶ୍ୱାସ ପକାଇ ଶ୍ରୀ ଓ ଶ୍ରୀମତୀ ମହାପାତ୍ରଙ୍କ ଉଦ୍ଦେଶ୍ୟରେ ହସି ହସି କହିଥିଲେ—କାର୍ଯ୍ୟର ପ୍ରାରମ୍ଭଟି ଯେତେବେଳେ ସନ୍ତୋଷଜନକ ହୋଇଛି, ପରିଣତିଟି ସେହିପରି ସଫଳ ହେବ ବୋଲି ମୋର ବିଶ୍ୱାସ ।

ଶ୍ରୀ ମହାପାତ୍ର ଡକ୍‌ଟର ଦାସଙ୍କୁ ଅଭିନନ୍ଦନ ଜଣାଇ କହିଲେ—ତାହା ଆପଣଙ୍କ ଅଦ୍ଭୁତ କୃତିତ୍ୱର ପରିଚାୟକ । ଆପଣଙ୍କର ନିଷ୍ଠାପର ବୈଜ୍ଞାନିକ ସାଧନା ମାନବ-ସଭ୍ୟତାର ଇତିହାସରେ ଏକ ଉଲ୍ଲେଖଯୋଗ୍ୟ ଘଟଣା ରୂପେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ ।

ସେତିକିବେଳେ ଶ୍ରୀ ମହାପାତ୍ରଙ୍କ ପିତା ବୃଦ୍ଧ ଶିଳ୍ପପତି ବାହାରେ ଅପେକ୍ଷା କରୁଥିବାର ସମ୍ବାଦ ଆସି ପହଞ୍ଚିଥିଲା । ଶ୍ରୀ ମହାପାତ୍ରଙ୍କୁ ସାଙ୍ଗରେ ନେଇ ଡକ୍‌ଟର ଦାସ ବାହାରକୁ ଯାଇଁ ବୃଦ୍ଧ ଶିଳ୍ପପତିଙ୍କୁ ସାକ୍ଷାତ କଲେ ଏବଂ ସେ ପର୍ଯ୍ୟନ୍ତ ସକଳ ଅଭିଜ୍ଞିୟା ଠିକ୍ ଭାବରେ ଚାଲିଛି ବୋଲି ଜଣାଇଲେ ।

ବୃଦ୍ଧ ଆପଣା କପାଳରେ ଯୋଡ଼ହସ୍ତ ଛୁଆଁଇ କହି ପକାଇଲେ— ସବୁ ସେହି ଈଶ୍ୱରଙ୍କ ଇଚ୍ଛା !

ଡକ୍‌ଟର ଦାସ ପ୍ରକାଶ କଲେ—ଆପଣମାନଙ୍କର କାମନା-ବାସନା କ'ଣ, ମୁଁ ଜାଣେନା । କିନ୍ତୁ ମହାପାତ୍ର ପରିବାରର କୁଳନନ୍ଦନ ଆସୁଥିବାର ସୂଚନା ମୁଁ ଏବେ ଆପଣମାନଙ୍କୁ ଦେଇପାରେ ।

ଶ୍ରୀ ମହାପାତ୍ର ପଚାରିଲେ—ଆପଣ କ'ଣ ଭ୍ରୂଣଟିର ଲିଙ୍ଗ ଜାଣି ପାରିଛନ୍ତି ?

ଡକ୍ଟର ଦାସ କହିଲେ—ଟେଷ୍ଟିଉବ୍ ମଧ୍ୟରୁ ତାହା ଜାଣିବା ସମ୍ଭବ ହୋଇନାହିଁ । ଭବିଷ୍ୟତରେ ଏ ଦିଗରେ ଅଧିକ ଗବେଷଣା ଓ ପରୀକ୍ଷା-ନିରୀକ୍ଷା ହେଲେ, ପିତାମାତାଙ୍କର ଇଚ୍ଛା ଅନୁଯାୟୀ 'ଟେଷ୍ଟିଉବ୍ ବେବି'ର ଲିଙ୍ଗ ନିରୂପଣ ମଧ୍ୟ ସହଜସାଧ୍ୟ ହେବ ।

ତା'ପରେ ଦୀର୍ଘ ନଅ ମାସର ବ୍ୟାକୁଳ ପ୍ରତୀକ୍ଷା ! ଡକ୍ଟର ଦାସ ଏବଂ ତାଙ୍କର ସହକର୍ମୀଗଣ ଯେପରି ଅସୀମ ଧୈର୍ଯ୍ୟ ଓ ସତର୍କତାର ସହିତ ଅନ୍ତଃସତ୍ତ୍ୱା ଶ୍ରୀମତୀ ମହାପାତ୍ରଙ୍କୁ ସ୍ତରେ ସ୍ତରେ ପରୀକ୍ଷା କରି ଚାଲିଥିଲେ, ଶିଳ୍ପପତି ମହାପାତ୍ରଙ୍କ ପରିବାର ସେହିପରି ଆଶାୟୀ ପ୍ରାଣରେ ନବଜାତକ କୁଳନନ୍ଦନର ସ୍ୱାଗତ ସମ୍ବର୍ଦ୍ଧନା ପାଇଁ ପ୍ରସ୍ତୁତ ହୋଇ ରହିଥିଲେ ।

ଶେଷରେ ସେହି ଶୁଭଦିନ ସମାଗତ ହେଲା । ନିର୍ଦ୍ଦିଷ୍ଟ ଦିନ ସ୍ୱାଭାବିକ ଭାବରେ ଶ୍ରୀମତୀ ମହାପାତ୍ରଙ୍କ ଗର୍ଭରୁ ଭୂମିଷ୍ଠ ହେଲା—ବହୁ ପ୍ରତୀକ୍ଷିତ ପୁତ୍ର ସନ୍ତାନ—ପୃଥିବୀର ପରମ ଆଶ୍ଚର୍ଯ୍ୟ 'ଟେଷ୍ଟିଉବ୍ ବେବି' ।

× × × ×

ବୃଦ୍ଧ ଶିଳ୍ପପତି ମହା ଆନନ୍ଦରେ ଶିଶୁ ପୁତ୍ରକୁ କୋଳକୁ ଟେକି ନେଲେ । ପୃଥିବୀର ଅଷ୍ଟଐଶ୍ୱର୍ଯ୍ୟ ଯେପରି ସେ ଆପଣା ହାତ ମୁଠାରେ ପାଇ ପାରିଛନ୍ତି ! ଏଣିକି ସେ ନିଶ୍ଚିନ୍ତରେ ଆରପାରିକି ବାଟ କାଟି ପାରିବେ । ବୃଦ୍ଧ ଅତି ଗରବରେ ତାହାର ନାମ ରଖିଲେ—'ପରମାନନ୍ଦ' । ବାପ-ମାଆ କିନ୍ତୁ ପୁଅର ଯୁକ୍ତିଯୁକ୍ତ ନାମଟିଏ ବାଛିଲେ—'ବିଜ୍ଞାନ-ବିଭୂତି' ।

ପାରମ୍ପରିକ ଚନ୍ଦ୍ରକଳା ପରି ନୁହେଁ, ବିଜ୍ଞାନର ଦ୍ରୁତ କ୍ରାନ୍ତିକାରୀ ପ୍ରଗତି ପରି ଶିଶୁ ପୁତ୍ରଟି କ୍ରମଶଃ ସ୍ୱାଭାବିକ ଗତିରେ ବଢ଼ିବାରେ ଲାଗିଲା । କେବଳ ଡକ୍ଟର ଦାସ ନୁହନ୍ତି, ବିଶ୍ୱର ବିଭିନ୍ନ ବିଶେଷଜ୍ଞ ଡାକ୍ତରମାନେ ଆସି ସତର୍କ ଦୃଷ୍ଟିରେ ତାହାର ଅଭିବୃଦ୍ଧି ଲକ୍ଷ୍ୟ କରିବାରେ ଲାଗିଲେ ।

ବିଜ୍ଞାନ-ବିଭୂତି ମାତ୍ର ପାଞ୍ଚ ମାସ ବୟସରେ କଥାବାର୍ତ୍ତା କରିବାକୁ ଆରମ୍ଭ କଲା, ଛଅ ମାସ ବୟସରେ ଚାଲି ଶିଖିଲା ଏବଂ ଅଢ଼େଇ ବର୍ଷ ବୟସରୁ ପାଠପଢ଼ାରେ ମନୋନିବେଶ କଲା । ବୟସ୍କଙ୍କର ଦ୍ରୁତ ଗତିରେ ତାହାର

ଶାରୀରିକ ଓ ମାନସିକ ବିକାଶ ହେବାରେ ଲାଗିଲା । କିଶୋର ଅବସ୍ଥାରୁ ହିଁ ତାହାର ଅସାଧାରଣ ମେଧାଶକ୍ତିର ପରିଚୟ ମିଳିଲା । ସମଗ୍ର ମହାନଗରୀରେ ପଢ଼ାଶୁଣା, ବକ୍ତୃତା, ଅଭିନୟ, କ୍ରୀଡ଼ା-କୌତୁକ ସବୁଥିରେ ସେ ହେଲା ଅଦ୍ୱିତୀୟ । ମାତ୍ର ଚଉଦ ବର୍ଷ ବୟସରେ ସେକେଣ୍ଡାରୀ ବୋର୍ଡ଼ର ହାଇସ୍କୁଲ ସାର୍ଟିଫିକେଟ୍ ପରୀକ୍ଷାରେ ସେ ପୂର୍ବର ସମସ୍ତ ରେକର୍ଡ଼ ଭଙ୍ଗ କରି ପ୍ରଥମସ୍ଥାନ ଅଧିକାର ପୂର୍ବକ ଉତ୍ତୀର୍ଣ୍ଣ ହେଲା ।

ବିଶେଷଜ୍ଞ ବିଜ୍ଞାନୀମାନେ ତାହାର ଅସାଧାରଣ ମାନସିକ ଓ ଶାରୀରିକ ଶକ୍ତି ଦେଖି ଚମତ୍କୃତ ହେଲେ । ଏହି ନୂତନ ବୈଜ୍ଞାନିକ ଆବିଷ୍କାର କୁଫଳ ସମ୍ପର୍କରେ ସେମାନଙ୍କ ମନରେ ଯେଉଁ ଆଶଙ୍କା ଥିଲା, ତାହା ଦୂରୀଭୂତ ହୋଇଗଲା ।

ଗର୍ବ ଓ ଆନନ୍ଦରେ ଶ୍ରୀ ଏବଂ ଶ୍ରୀମତୀ ମହାପାତ୍ରଙ୍କ ଗୁହ କୁଣ୍ଢେମୋଟ ହୋଇ ଉଠିଲା ।

ସମଗ୍ର ଜାତି ବିଜ୍ଞାନ-ବିଭୂତିର ଅପୂର୍ବ ମେଧା ଓ ଶାରୀରିକ ସାମର୍ଥ୍ୟରେ ମୁଗ୍ଧଚକିତ ହୋଇ ପଡ଼ିଲା । ବିଶ୍ୱର ମଙ୍ଗଳ ପାଇଁ ବିଜ୍ଞାନ-ବିଭୂତି ଯେପରି ଗୋଟିଏ ଗଣ୍ଡୂଷରେ ସମୁଦ୍ର ଚଳୁ କରିବାକୁ ପ୍ରସ୍ତୁତ ହେଲା ! ବିନ୍ଧ୍ୟାଚଳ ପରି ସମାଜର ଦୁର୍ଜୟ ଶତ୍ରୁର ମସ୍ତକ ଅବନତ କରାଇବା ଲାଗି ଯେପରି ସେ ଧାରଣ କଲା ଅସୀମ ଶକ୍ତି-ସାହସ !! ସେ ଯେପରି ଜାତୀୟ ଗଗନମଣ୍ଡଳରେ କୁମ୍ଭଯୋନିର ଜ୍ୟୋତି !!!



# ପ୍ରତାରିତ ସମୟ

**ପ୍ରମୋଦ ପଣ୍ଡା**

ବସ୍ତୁତଃ ବେଳେ ବେଳେ ଅତି ଦୁର୍ବଳ ମୁହୂର୍ତ୍ତ ଆସେ, ଯେତେବେଳେ ତୁମେ ଯେତେ ସାବଧାନରେ ରୁହ ଠକିଯିବାଟା ଅତି ସାଧାରଣ ଭାବେ ଘଟିଯାଏ । ନିର୍ଦ୍ଧାରିତ କୌଣସି ସଙ୍କଳ୍ପ ସେତେବେଳେ କାମ ଦିଏନି । ବର୍ତ୍ତମାନ ସନାତନର ସେହିଭଳି ଏକ ପ୍ରସଙ୍ଗ କୁହାଯିବ । ସନାତନ ଆଜିର ସମାଜରେ ଅତି ଏକ ସାଧାରଣ ବ୍ୟକ୍ତି କହିଲେ ଠିକ୍ ହେବ । କାରଣ ଅସାଧାରଣ ହେବାକୁ ହେଲେ ଖାଲି ବୁଦ୍ଧି ଦରକାର ନୁହେଁ ବରଂ କ୍ଷମତା ବି ଆବଶ୍ୟକ ବୋଲି ସମାଜ ବୁଝୁଛି । ହେଲେ ମଝିରେ ମଝିରେ ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମରେ ସେ ପୁରୋଭାଗରେ ଥାଏ ବୋଲି ବିଭିନ୍ନ ମହଲରେ ସେ ପରିଚିତ ।

ଦିନକର ଏକ ସକାଳ । ବାହାର ପରିବେଶ ହଠାତ୍ ସନାତନର ଘର ସାମ୍ନା ଅଂଶରେ ଦୁଇଟି ଝଙ୍କାଳିଆ ଉଚ୍ଚା ଗଛ, ଏକ ଭଙ୍ଗା ଗାଡ଼ିର ଅବଶିଷ୍ଟାଂଶ, ଏକ ଆଶ୍ଚର୍ଯ୍ୟ ବାସ୍ନାଭରା ଫୁଲଗଛ, ପ୍ରତି ସକାଳ ସନ୍ଧ୍ୟାରେ ଲାଲ, ନୀଳ ଭରପୂର କରି ଧରି ରଖିଥିବା ଗହଳିଆ ବୁଦୁବୁଦିକା ଲତାକୁଞ୍ଜ ଏବଂ ସର୍ବୋଶେଷରେ ସାମ୍ନା ବଡ଼ କୋଠା ଉପରେ ଝୁଲୁଥିବା ସେହି ସୁନ୍ଦରୀ

ବୋଲି ମନେ କରୁଥିବା, ଗୁମୁଗୁମୁ ହୋଇ ପାଠ ପଢ଼ିବାର ବାହାନା କରି ଅନ୍ୟକୁ ଆକୃଷ୍ଟ କରିବାର ଉପାୟ ଅବଲମ୍ବନ କରୁଥିବା ତରୁଣୀ ଝିଅଟି ଇତ୍ୟାଦି ଇତ୍ୟାଦି ସବୁଦିନ ଭଳି ସନାତନକୁ ସକାଳୁ ସାମ୍ନାସାମ୍ନି କରିବା କଥା । ସନାତନ ବି ଠିକ୍ ଦଶଟା ହେଲେ ଗୋଟାଏ କାର୍ଯ୍ୟାଳୟକୁ ଯାଏ ଅତି ସାଧାରଣ ବଞ୍ଚିବାର ଯୋଗାଡ଼ ପାଇଁ । ଅନାବନା ଗୁଡ଼ାଏ ଫାଇଲ୍ । ଇତସ୍ତତଃ ଅନେକ ଅଲୋଡ଼ା ବ୍ୟସ୍ତତା । ନିଜ ନିଜ ଇଚ୍ଛାକୁ ମଧ୍ୟରେ ସମ୍ପୂର୍ଣ୍ଣ ଅନ୍ତୋତ୍ସର୍ଗ କରି ଦେଇଥିବା ଅନେକ ସହକର୍ମୀ ତଥା ସର୍ବୋଚ୍ଚ କର୍ତ୍ତା ନାମକ ନିହାତି ଏକ ଖାମ୍ଖିଆଲି ସାଧାରଣ ବ୍ୟକ୍ତିମାନଙ୍କ ମଧ୍ୟରେ ନିର୍ଦ୍ଦିଷ୍ଟ ସମୟ ଧରି ଘୂରିଫେରି କରିବାକୁ ହୁଏ । ସେମାନଙ୍କୁ ଗୋଟିଏ ଅତି ସାଧାରଣ ଯାବଶ୍ୟକ ଜୀବନର ଯୋଗାଡ଼ ବୋଲି ଧରି ନେଇ ଭୁଲିଯିବାକୁ ହୁଏ ସନାତନକୁ ।

ସନାତନ କୁହାଯାଇଥିବା ଦିନର ଅତି ଭୋରରୁ ଉଠିଛି । ବାହାରେ ସୁନା ମୁକୁଟ ପିନ୍ଧି ଗର୍ବିତ ସାମ୍ରାଜ୍ଞୀ ପରି ସାହିର ସବୁଠାରୁ ଉଚ୍ଚ ଓ ଲାଲ ରଙ୍ଗର କୁକୁଡ଼ାଟି ଜୋର୍ରେ ଡାକୁଛି । ପରିବେଶ ବେଶ୍ ଶାନ୍ତ ଓ ସଜ୍ଜିତ । ସନାତନ ଏତେ ଭୋରରୁ କ'ଣ ଅବା କରିବ ?

ଅଗତ୍ୟା କିଛି ସମ୍ଭାବନା ଥାଉ କି ନ ଥାଉ ସନାତନ ଅତି ସକାଳୁ ଉଠି ନିତ୍ୟକର୍ମ ସାରି ଘର ଛାଡ଼ିଲା । ଏପରି କେଉଁଠିକୁ ଯିବାର ତା'ର ନିର୍ଦ୍ଦିଷ୍ଟ ଲକ୍ଷ୍ୟ ନ ଥିଲା । ହେଲେ ବେଖିଆଲ୍ ହୋଇ ଘୂରିବାରେ ଗୋଟାଏ ପ୍ରକାର ଆନନ୍ଦ ଥାଏ । ନଥିବା ଜୀବନର ଅନେକ ପ୍ରତିଷ୍ଠାପକତା ଯଥା—ଅଫିସ, ପରିବାର, ସାଙ୍ଗସାଥି, ବନ୍ଧୁବାନ୍ଧବ, ସମାଜ, ପରମ୍ପରା ଇତ୍ୟାଦିକୁ ନେଇ ବଞ୍ଚି ହୁଏନି ।

ବାଟରେ ଯାଉ ଯାଉ ଗୋବିନ୍ଦ ବାବୁ ସହ ଦେଖା ହେଲା । ଭାରି ଗମ୍ଭୀର, ଚିନ୍ତାପ୍ରବଣ, ଧର୍ମବିଶ୍ୱାସୀ ଲୋକଟିଏ ଏଇ ଗୋବିନ୍ଦ ମିଶ୍ର । ବୟସ ସେତେ ଅଧିକ ନ ହୋଇଥିଲେ ବି ଚେହେରା ଦେଖିଲେ ବୟସ୍କ ବୋଲି ମନେ ହେବ । ବେଳେ ବେଳେ କେଉଁଦିନ କିଛି କାମ ନ ଥିଲେ ଏଇ ଗୋବିନ୍ଦ ମିଶ୍ର ସହ ସନାତନର ବୁଲାବୁଲି ହୁଏ । ଆଧ୍ୟାତ୍ମିକ, ସାହିତ୍ୟ, ରାଜନୀତି, ଦର୍ଶନ ସମ୍ପର୍କୀୟ ବିଭିନ୍ନ ବିଷୟ ନେଇ ଆଲୋଚନା ହୁଏ ।

ହଠାତ୍ ଗୋବିନ୍ଦ ମିଶ୍ର ଆରମ୍ଭ କଲେ—

: କ'ଣ ସନାତନ ବାବୁ ଆଜି ଏତେ ସକାଳୁ ସକାଳୁ !

: ହଁ ଏପରି ଟିକିଏ ବୁଲିବାକୁ ବାହାରି ପଡ଼ିଲି ।

: ଭାରି ଶୀଘ୍ର ଯେ । କ'ଣ କାମ ଇତ୍ୟାଦି କିଛି ଥିଲା କି ?

: ନା କିଛି ନାହିଁ ।

: ତେବେ ଚାଲନ୍ତୁ ।

ଗୋବିନ୍ଦ ମିଶ୍ର ପାଖରେ ଗୋଟାଏ କିଛି ସବୁଆଡ଼କୁ ବ୍ୟାପିଯିବାର ସମ୍ମୋହିତ ଦୃଷ୍ଟି ଥାଏ। ବେଳେ ବେଳେ ଏତେ ଗମ୍ଭୀର ଦାର୍ଶନିକ ଶୈଳୀରେ କଥା କୁହେ ଗୋବିନ୍ଦ ମିଶ୍ର, ଯାହା ସନାତନକୁ ଭଲ ଲାଗେନି । ଏଇ ଭୁଟ୍ଟୋଙ୍କ ଫାଶୀ ପାଇବା କଥାକୁ ନେଇ ଦୁଇ ଜଣ ସନେ କଥାବାର୍ତ୍ତା ହେଉଥାନ୍ତି । ଆଉ ଜଣେ ବନ୍ଧୁ ବନ୍ଧୁ ରବି ମହାନ୍ତି ବି ଆସିଥିଲି ।

ଭୁଟ୍ଟୋ ଭାରତର ଯେତେ ବିରୋଧୀ ଥିଲେ ବି ସେ ଯେ ନିଜ କର୍ତ୍ତବ୍ୟ ହିଁ କରୁଥିଲେ ଏବଂ ଜଣେ ଅତି ଚମତ୍କାର ବକ୍ତା ତଥା ରାଜନୀତିଜ୍ଞ ଥିଲେ ଏ ମତ ସନାତନ ଓ ରବି ମହାନ୍ତିର ଥିଲା । ଭୁଟ୍ଟୋଙ୍କୁ ଫାଶୀ ଦେବା ଉଚିତ ହୋଇନି ଏବଂ ଯେଉଁ କାରଣରୁ ଭୁଟ୍ଟୋଙ୍କୁ ଫାଶୀ ଦିଆଗଲା ତା' ଅତି ତୁଚ୍ଛ କାରଣ ବୋଲି ସନାତନ, ରବି ମହାନ୍ତି ମତ ଦେବାବେଳେ, ଗୋବିନ୍ଦ ମିଶ୍ର ଜୀବନର ଅନିତ୍ୟତା, ଇସ୍‌ଲାମ ଧର୍ମର ନୃଶଂସତା, ବ୍ୟକ୍ତି ଓ ସମାଜ ଜୀବନ ଇତ୍ୟାଦିକୁ ନେଇ ଏକ ଦୀର୍ଘମତ ଭାଷଣ ଦେଇଥିଲା ଯାହା ଆଲୋଚିତ ବସ୍ତୁର ଅଂଶ ନ ଥିଲା । ଏଇ ଗୋବିନ୍ଦ ମିଶ୍ର ସବୁବେଳେ ସେପରି । ଗୋଟିଏ କଥାକୁ ଆରମ୍ଭ କରି ଅନ୍ୟ ପ୍ରସଙ୍ଗକୁ ଉଠି ଯାଆନ୍ତି ଏବଂ ଦୀର୍ଘମତ ଭାଷଣ ଦେବା ଅବସ୍ଥାକୁ ଆସିଯାନ୍ତି ।

କିଛି ସମୟ ନୀରବରେ ଚାଲିବା ପରେ ଗୋବିନ୍ଦ ମିଶ୍ର କହିଲା—

: ଚାଲନ୍ତୁ ଚା ଟିକେ ପିଇ-ଆସିବା ।

: ଚାଲନ୍ତୁ ।

ଗୋଟାଏ ଭଲ ରେଷ୍ଟୋରାଂ ଭିତରକୁ ପଶି ଯାଇ ଦୁଇଟି ଚା'ର ଅର୍ଡର ଦେଇ ସିଗାରେଟ ଲଗାଇ ଦୁଇଜଣ କିଛି ମୁହୂର୍ତ୍ତ ବସି ପ୍ୟାଟ୍ରିକ ମଇନହାନଙ୍କ ସଦ୍ୟ ପ୍ରକାଶିତ ବିବଦମାନ ପୁସ୍ତକ 'ଏ ଡେଞ୍ଜର୍‌ସ ପ୍ରେସ' ସମ୍ପର୍କରେ ଆଲୋଚନା କରୁଛନ୍ତି ହଠାତ୍ ଜଣେ କେଉଁ ତରୁଣୀ ଅଖି ଝଲସାଇ ଦେବା ଭଳି ଚେହେରା ଓ ତା' ସାଙ୍ଗକୁ ଅତି ଉଗ୍ର ଆଧୁନିକ ସାଜସଜ୍ଜାରେ ଚାଲି

ଯିବାରେ ଦୁଇ ଜଣ ଏକ ସାଙ୍ଗରେ ସେସଟକୁ ଗୁନ୍ଧିଲେ । ଶେଷ୍ଟ ସ୍ୱାଉସରେ ରହିଥିବା କେହି ଜଣେ ହୋଇଥିବ ବୋଧେ । ହେଲେ ସନାତନକୁ ପଣଚାତ ପଣଚାତ ଭଳ ମନେ ହେଉଛି । କିନ୍ତୁ ତାକବାର ଉପାୟ ନାହିଁ । ଯଦି ସେ ନ ଚିହ୍ନିଲା ତେବେ ତା'ଠାରୁ ବଳ ଦୁଃଖ ଅଉ କ'ଣ ଥାଇପାରେ । ପୁଣି ଗୋବିନ୍ଦ ମିଶ୍ର ସାମ୍ନାରେ ସେ ହାରିଯିବ ।

ଗୋବିନ୍ଦ ମିଶ୍ରର ସୁନ୍ଦରୀ ତରୁଣୀଙ୍କ ପ୍ରତି ଦୁର୍ବଳତା ନାହିଁ ସେ କଥା ନୁହଁ; କିନ୍ତୁ ସେ ଡୁବି ଡୁବି ସେ ସବୁ ବ୍ୟାପାରରେ ଥାଏ ।

ସନାତନ ଚୌଧୁରୀ କହିଲା—

: ଏଇ ଯେଉଁ ସ୍ତ୍ରୀଟି ଚାଲିଗଲା ଦେଖିଲ ତ ?

"ଏମାନଙ୍କ ବେଶଭୂଷା, ଚେହେରା, ଢଙ୍ଗଢାଙ୍ଗ ଦେଖିଲେ ମନେ ହେବ ସହରର ସମସ୍ତ ବ୍ରହ୍ମଚାରୀମାନଙ୍କୁ ନଷ୍ଟ କରିବା ପାଇଁ ଏମାନେ ଏକ ଷଡ଼ଯନ୍ତ୍ରକାରୀ ଦଳର ଅଂଶ ବିଶେଷ ।"

ଗୋବିନ୍ଦ ମିଶ୍ର କହିଲା—

: ତା' ତ ସତ କଥା । କିନ୍ତୁ ଅପର ପକ୍ଷେ ଆଜିର ସମସ୍ତ ତ ସେଥିପାଇଁ କମ୍ ଦାୟୀ ନୁହେଁ । ଆଜିକାଲି ଯେଉଁ ପ୍ରତିଯୋଗିତାର ଯୁଗ ସେଥିରେ ତୁମକୁ ଅତି ଅଧୁନିକ ହେବାକୁ ପଡ଼ିବ । ନ ହେଲେ ତୁମେ ହାରିଯିବ ।

ସନାତନ ଚୌଧୁରୀ ଗୁରୁ ଟିକେ ପିଇ, ସିଗାରେଟ୍ରୁ ଧୂଳାଏ ଧୂଆଁ ଶୋଷି କହିଲା—

: ହେଲେ ଅଧୁନିକ ହେବାରେ ବି ଗୋଟାଏ ସୀମା ସରହଦ୍ ରହିବା କଥା । ଏସବୁ ଅଧୁନିକ ନାମରେ ଉଚ୍ଛୃଙ୍ଖଳତା ନୁହେଁ ତ କ'ଣ । ଆଜିକାଲି ସହରର କେଉଁ ଗୋଟାଏ ଲଜିଙ୍ଗକୁ ତୁମେ ଯାଅ ଦେଖିବ ସେଠାରେ ନାରୀମାନଙ୍କୁ ନେଇ ରୀତିମତ ବ୍ୟବସାୟ ଚାଲିଛି । ମୋଟେ କାହା ଉପରେ ବିଶ୍ୱାସ ରହି ହେବନି ।

: ହଁ ତଥାପି କେତେଦିନ ଆଉ ବିଶ୍ୱାସ ନ ରଖି ଆମେ ଭିନ୍ନ ହୋଇ ରହିବା ।

ଏସବୁ କହିବା ଭିତରେ ଗୋବିନ୍ଦ ମିଶ୍ରର ଗୁରୁ ଆଉଡ଼ି ବ୍ୟାପିଯିବାର ସେହି ସମ୍ମୋହିତ ଚାହାଣିଟି ବୋଧେ ତରୁଣୀ ଜଣକ ପାଖରେ ପହଞ୍ଚିଛି କି

କ'ଣ । ହଠାତ୍ ତରୁଣୀଟି ଆସି ତା' ସୁଗଭୀର ନାଭି ଅଂଶକୁ ଦେଖାଇ ଏବଂ ଦେହର ଅନେକ ଖୋଲା ଅଂଶ ଦେଖା ଯାଉଥିବା ଦୃଶ୍ୟକୁ ଦେଖାଇ ବସିଗଲା ପାଖ ଚୌକିରେ । ସନାତନ ଟିକିଏ ବିବ୍ରତ ବୋଧ କଲା । ତରୁଣୀଟିର ଭାଇଟାଲ ଷ୍ଟାଟିଷ୍ଟିକସ୍ ବୋଧେ ୩୪-୨୪-୩୬ ହେବ କି କ'ଣ । କାନ୍ଧ ପର୍ଯ୍ୟନ୍ତ ତା'ର ବବ କଟା ବାଦାମୀ କେଶ ଝୁଙ୍କି ପଡ଼ୁଛି । ପାଦରେ ୬ ଇଞ୍ଚ ଉଚ୍ଚ ପ୍ଲାଟଫର୍ମ ଯୋତା, ଓଠରେ ନାଲ ଲିପଷ୍ଟିକ । ଅର୍ଦ୍ଧ ପରିପୁଷ୍ଟ ବକ୍ଷ—। ଅର୍ଦ୍ଧ କ୍ଷୁଦ୍ର ଆବରଣ । ତରୁଣୀଟି ସିଗାରେଟ୍‌ଟିଏ ଧରାଇ ଅଧା ଗ୍ଲାସ ହ୍ୱିସ୍କି ମାଗି ପିଇଲା । ତା'ପରେ କିଛି ପାଖକୁ ଘୁଞ୍ଚିଆସି ତା' ଲମ୍ବା ଭ୍ୟାନିଟି ବ୍ୟାଗରୁ ଗୋଟିଏ କ୍ୟାଟଲଗ୍ ବାହାର କରି କହିଲା—

: ମହାଶୟ, ମୁଁ ବିକାଶର ଜଣେ ରିପ୍ରେଜେଣ୍ଟେଟିଭ୍ । ଆପଣମାନେ ସମସ୍ତେ ବିକାଶ ପ୍ରକାଶିତ ବହି ସମ୍ପର୍କରେ ସଚେତନ ଥିବେ । ଏ କ୍ୟାଟଲଗ୍ ଦେଖନ୍ତୁ । ଆମ ଯୋଜନା ଅନୁଯାୟୀ ଆପଣ ଘରେ ଥାଇ ସୁନ୍ଦର ସୁନ୍ଦର ବହି ପାଇ ପାରିବେ କମ୍ ଦାମରେ । କେବଳ ଏଇ ଫର୍ମରେ ଦସ୍ତଖତ କରିବାକୁ ପଡ଼ିବ । କିଛି ଆଡ୍‌ଭାନ୍‌ସ ଯାହା ଆପଣ ଦେବେ ।"

ସନାତନ ସକାଳୁ ସକାଳୁ ଏତେ ସୁନ୍ଦର ଚେହେରା ବିଶିଷ୍ଟ ଏକ ପ୍ରଲୁବ୍ଧକାରୀ ଶିକାର ପାଖରେ ପାଇଯିବ ମୋଟେ ଭାବି ନ ଥିଲା । ହେଲେ ମାସ ଶେଷରେ ଅର୍ଥର ଅଭାବ ।

: ଦେଖନ୍ତୁ, ଆପଣମାନେ ହେଲେ ଶିକ୍ଷିତ ଯୁବକ । ବହି ପଢ଼ିବା ନିଶା ଆପଣମାନଙ୍କ ପାଖରେ ହିଁ ଥାଏ । ଆଜିକାଲି ଏଇ ଯେଉଁ ବ୍ୟସ୍ତ ଜୀବନ ସେଥିରୁ ଟିକିଏ ଫୁରୁସତ ପାଇ ସମୟକୁ ଠିକ୍ ଭାବରେ ବିତାଇବା ପାଇଁ ବହି ଛଡ଼ା ବିଶ୍ୱସ୍ତ ବନ୍ଧୁ ଆପଣ ଆଉ ପାଇବେନି । ମୁଁ ଆଶା ରଖିଛି ଆପଣ ମୋ ସହ ଏକମତ ହେବେ । କାରଣ ଆପଣଙ୍କ ଅବସର ସମୟର ଉପଯୁକ୍ତ ବିନିଯୋଗ ପାଇଁ ମୁଁ ଯଦି କିଛି ସାହାଯ୍ୟ କରି ପାରିଲି ସେଥିରେ ମୁଁ ଧନ୍ୟ ହେବି । ତରୁଣୀଟି ଏତକ କହି ମୁରୁକି ହସୁଥାଏ ।

ସନାତନ ଏଥର ବାଧ୍ୟ ହୋଇ କହିଲା—

: ଦେଖନ୍ତୁ ଆମେ ଆପଣଙ୍କ ପ୍ରସ୍ତାବ ବୁଝୁଛୁ । କିନ୍ତୁ ମୋଟା ଅର୍ଡ଼ର ଦେବା ପାଇଁ ଆମେ ସ୍ୱଚ୍ଛଳ ନୋହୁଁ । ତା'ଛଡ଼ା ଏଇ କେବେ କିପରି ବହି କିଣି ପଢ଼ିବା ହେଲା ଆମ୍ଭର ହବି । ଏ ସହରରେ ଅନେକ ଉଚ୍ଚ କ୍ଷମତା ସମ୍ପନ୍ନ ତଥା ଧନୀ ଲୋକ ଅଛନ୍ତି । ସେମାନଙ୍କ ଠିକଣା ଆମେ ଦେଇପାରୁ, ଯେଉଁମାନେ ମୋଟା ଅର୍ଡ଼ର ଦେଇ ପାରିବେ ।

ତରୁଣୀଟି ବୁଝାଇଲା ଢଙ୍ଗରେ ଆଉ ଟିକିଏ ଘୁଞ୍ଚିଆସି କହିଲା —

: ନା ତା' ଭୁଲ୍ କଥା । ସେମାନଙ୍କ ପାଖରୁ ମୋଟା ଅର୍ଡ଼ର ପାଇବା କଷ୍ଟ ହେବ । କାରଣ ସମସ୍ତ ବଢାଇବା ପାଇଁ ଅନ୍ୟ ପ୍ରକାର ବ୍ୟବସ୍ଥା ତାଙ୍କ ପାଖରେ ଅଛି । ଯେଉଁମାନେ ମଧ୍ୟବର୍ଗ ଶ୍ରେଣୀର ସେମାନେ ହିଁ ବନ୍ଧ କରିବା ସଉକ ରଖନ୍ତି । ଆପଣ ତ ଏକା ସାଙ୍ଗରେ ପଇସା ଦେବେନି । ଆସ୍ତେ ଆସ୍ତେ କିସ୍ତି ସୂତ୍ରରେ ଟଙ୍କା ଦେବେ । ଏବେ କେବଳ ଆଡ୍‌ଭାନ୍ସ ଆକାରରେ ଧରଣି ଟଙ୍କା ଦେବାକୁ ପଡ଼ିବ ।

ତରୁଣୀଟିର କହିବା ଭଙ୍ଗୀରେ ଗୋବିନ୍ଦ ମିଶ୍ର ଓ ସନାତନ ଚୌଧୁରୀ ଏତେଦୂର ପ୍ରଭାବିତ ହୋଇଗଲେ ଯେ ଆଉ କିଛି ଯୁକ୍ତିର ଅବକାଶ ନ ରଖି ଦୁଇଟି ଅର୍ଡ଼ର ଦେଇ ଧରଣ ଟଙ୍କା ଲେଖାଏଁ ଆଡ୍‌ଭାନ୍ସ ଦେଲେ । ଏସବୁ ମଧ୍ୟରେ ସନାତନର ରସିକତା କିଛି ବଢ଼ି ଯାଇଥିଲା । ତରୁଣୀଟି ସହ କିଛି ସମସ୍ତ କଥାବାର୍ତ୍ତା ମଧ୍ୟରେ ଦୁଇ ପେଗ୍ ହ୍ୱିସ୍କି ଗଳାକୁ ଠେଲି ଏକ ତରଳ ଆଚ୍ଛନ୍ନ ଧୂଆଁଳିଆ ପରିବେଶକୁ ସାମ୍ନା କରିବା ଅବସ୍ଥାରେ ତରୁଣୀଟି ଚାଲି ଯାଇଥିବାର ଅନୁପସ୍ଥିତି ଦୁହେଁ ପୂରାପୂରି ଭୁଲି ଯାଇଥିଲେ ।

ହଠାତ୍ ଜଣେ ପୁଲିସ ଅଫିସର ଆସି ରେଷ୍ଟୋରାଁ ମ୍ୟାନେଜରକୁ ଜେରା କରୁଥାନ୍ତି । ସେ କହୁଥାନ୍ତି ଏକ ବ୍ଲାକ୍‌ମେଲିଂ ଗ୍ରୁପ୍‌ର ଜଣେ ତରୁଣୀ ଏ ରେଷ୍ଟୋରାଁ ମଧ୍ୟକୁ କିଛି ସମୟ ପୂର୍ବରୁ ଆସିଥିବାର ସେ ମନେ ରଖିଛନ୍ତି କି ? ସନାତନ ପାଖକୁ ଆସି ଦେଖିଲା ବର୍ଣ୍ଣନା କରାଯାଉଥିବା ତରୁଣୀଟି କେହି ନୁହଁ ବରଂ କିଛି ସମୟ ପୂର୍ବରୁ ସେମାନଙ୍କ ପାଖରେ ହିଁ ଥିଲା । ସକାଳୁ ସକାଳୁ ସେମାନେ ଅତି ଦସ୍ତୁମସ୍ତ ଭାବରେ ଠକି ଯାଇଛନ୍ତି ।

ସେ ଆଉ କିଛି ନ କହି ଗୋବିନ୍ଦ ମିଶ୍ରକୁ ଛାଡ଼ି ଚାଲି ଆସିଲା । ଦିନଟି ଛୁଟିଦିନ ଥିଲା । ଘରକୁ ଆସି ସେ ଭାବିଲା ଏକଦା ତା'ର ପରିଚିତା ଝିଅଟି ଅର୍ଥାତ୍ ଚନ୍ଦନା ରଥ ନାମ୍ନୀ ଝିଅଟି ଆଜି ତାକୁ ଠକି ଦେଇ ଚାଲିଗଲା । ପରଦିନ ସକାଳୁ ସେ ଶୁଣିଲା ଗୋବିନ୍ଦ ମିଶ୍ରର ମନପର୍ସ ଚୋରି ହୋଇଯାଇଛି ।

ଏକ ଆତ୍ମ ପରାଜୟର ଗ୍ଲାନି ତାକୁ ଓ ତା'ର ପରିବେଶକୁ ଘେରିଯିବା ସମୟରେ ବାହାରେ ଖୁବ୍ ଜୋର୍‌ରେ ଠକ୍ ଠକ୍ ଶବ୍ଦ ହେଲା । ସେ ମନେକଲା ପୁଣି କିଏ ଆସିଛି ତାକୁ ପ୍ରତାରିତ କରିବାର ଭୂମିକାରେ । ଏପରି ଅବସ୍ଥାରେ ସେ କବାଟ ଖୋଲି ଜୋର୍‌ରେ ମାଡ଼ିଯିବା ଅବସ୍ଥାରେ ପାଣି ଦେଉଥିବା ସ୍ତ୍ରୀଟି ସହ ଧକ୍କା ଖାଇଛି ସନାତନ ଚୌଧୁରୀ । ଆଉ ତା'ର ଶକ୍ତ ଧକ୍କାରେ ତା' ମୁହଁରେ ଜୋର୍‌ରେ ଆଘାତ ଲାଗିଛି । ପାଣି ମାଠିଆ ପଡ଼ିଯାଇଛି

ସାମ୍ନାରେ । ନହାତ କୁଣ୍ଠିତ ଅବସ୍ଥାରେ ସେ ଦେଖିଛୁ ପରିବେଶକୁ । ସତେ ଯେପରି ଏକ ଅମାପ୍ସିକ ନୀରବତାର ନଶାକ୍ତ ଜୀବନକୁ ସେ ଦେଖୁଛୁ ବିଖଣ୍ଡିତ ଭାବେ । ଗତକାଲି ସେ ଯଦି ସକାଳୁ ସକାଳୁ ଗୋବିନ୍ଦ ମିଶ୍ର ସହ ଦେଖା ନ କରିଥାନ୍ତା ତେବେ ଭଲ ହୋଇଥାନ୍ତା । ହେଲେ ସବୁକଥା ଏଇ ଆକସ୍ମିକ ଭାବେ ହିଁ ଆସେ । ଭାବିଚନ୍ତ କେହି କିଛୁ କରି ନ ଥାଏ । କାରଣ କୌଣସି ସଯତ୍ନ ଗଠିତ ଇମେଜ୍‌କୁ ନେଇ ଆଜିକାଲି ସମସ୍ତ ବିତାଇବା ଆଦୌ ସମ୍ଭବ ନୁହେଁ ।



# ଏକୁଟିଆ ଆକାଶରେ
# ପୃଥିବୀ ଖୋଜୁଥିବା
# ପ୍ରତିଜ୍ଞା ହୀରୋସୀମା

**ରତ୍ନାକର ଚଇନି**

ଆର୍ଯ୍ୟାବର୍ତ୍ତର ପ୍ରସିଦ୍ଧ ଦିଗ୍‌ଗଜ ଧର୍ମବିଦ୍ 'ପ୍ରଭୁପାଦ' ଆସିଛନ୍ତି । ସନ୍ଧ୍ୟା ସାଢ଼େ ପାଞ୍ଚଟାରେ ଧର୍ମସଭା ଆରମ୍ଭ ହେବ । ଚନ୍ଦନ ପଡ଼ିଆରେ । ଉଦ୍‌ଘାଟକ ଭାବେ ଯୋଗ ଦେଉଛନ୍ତି ରାଜ୍ୟର ବିକାଶ ମନ୍ତ୍ରୀ 'ବିଚଯାନନ୍ଦ' ।

• • •

ଏକୁଟିଆ ଆକାଶରେ,•••ପୃଥିବୀ ଖୋଜୁଥିବା 'ପ୍ରତିଜ୍ଞା ହୀରୋସୀମା' ଘୂରୁଥିଲା······ମନରେ ହିମାଦ୍ରି-ନିସ୍ୟନ୍ଦନୀ ବହୁଧା-ପ୍ରବାହିନୀ ଗଙ୍ଗାଧର

ଭଳି । ମୃତ ପଶୁର ପଚମାନ ମାଂସରେ ଅସଂଖ୍ୟ ଚଳମାନ କୃମିକୀଟ ଭଳି । ପ୍ରଶ୍ନ···ଖୋଜି ହେଉଚି ସେ—କୋଉଠି ତା'ର ସେଇ ଖୋଜିଲା ପୃଥିବୀଟା··· କୋଉଠି ତା'ର ହଜିଲା ଚନ୍ଦ୍ରାରଧାରି···ହଠାତ୍ କାନରେ ବାଜିଗଲା—ଧର୍ମସଭା ହେବ···ବିରାଟ ସମ୍ମେଳନ···ବହୁଲୋକର ସମାଗମ·····।

ପାଦ ତା'ର ଅଟକିଗଲା···କିଏ ଯେମିତି ତାକୁ କହିଦେଲା, ରହିଯାଅ ପାନ୍ଥ ! ଅନେକ ଶ୍ରମ ତ କଲଣି । ଆଜି ଧର୍ମତତ୍ତ୍ୱ ଶୁଣି ମନକୁ ପବିତ୍ର କର । କାମନା-ବାସନାର ଯନ୍ତ୍ରଣାରୁ ନିଜକୁ ଉଦ୍ଧାର କର । ପୁଣି ତମେ ଏକଥା କାହିଁକି ଭୁଲିଯାଉଚ ଯେ, ଏଇ ଲୋକଗହଳି ଭିତରୁ ହୁଏତ ତମର ଖୋଜିଲା ପୃଥିବୀର ସନ୍ଧାନ ବି ମିଳିଯାଇ ପାରେ ? ପହଞ୍ଚିଯାଅ ସେଠି—ଅନୁସନ୍ଧାନ ଆରମ୍ଭ କରିଦିଅ ତୁମ ହଜିଲା ଚନ୍ଦ୍ରାଧାରିର···ଏବଂ ଅନେକ କିଛି ଖୋଜିଲା ଜିନିଷର······।

ସେତେବେଳକୁ ପଶ୍ଚିମରେ । ଖେଳୁ ଖେଳୁ ଫଗୁଆଟାଯାକ ସିନ୍ଦୂର ନିଜ ମୁହଁରେ ବୋଳି ହୋଇଥିବା ଦୁଷ୍ଟ ପିଲାଟିଭଳି ମୁହଁକରି । ସୂର୍ଯ୍ୟ ରହିଧରି କାନ୍ଦୁଥିଲେ; ମାଆ ଆସି ମଟେ ପୋଛୁପୋଛୁ କରି କୋଳକୁ ନିଅନ୍ତେ କି !····· ( ସୂର୍ଯ୍ୟରେ ! ତୁ କେଡ଼େ ଖରାପଟାଏ ! ମୋ ସୌଭାଗ୍ୟର ଲାଲ ବୁନ୍ଦାଗୁଡ଼ାକୁ ଏମିତି ନଷ୍ଟ କରିଦେଲୁ ! ସେ ଟିକି ବୟସରେ ତ ତୋର ଧାରଣା ନାହିଁ । ହଉ, ଆ— ନିଜ ପୁଅଟା ତ···· ) ମାଆ ହାତ ବଢ଼ାଇ ଦେଇଥିଲେ ବୋଧହୁଏ । ସେଥିପାଇଁ ସୂର୍ଯ୍ୟ ମନରେ ଏତେ ଆନନ୍ଦ !!

'ପ୍ରଭଙ୍କା ସ୍ୱରେଶୀମା' ସେଇ ମାଆଙ୍କୁ ପ୍ରଣାମ କଲା ବେଳକୁ ତା'ଠୁ ଉଞ୍ଚ ଆକାଶରେ ଉଡ଼ି ଉଡ଼ି ଯାଉଥିବା ଚଢ଼େଇ ଗୁଡ଼ାକ କିଚିରି ମିଚିରି ସ୍ୱରରେ ତାକୁ କ'ଣ ଥଟ୍ଟା- ପରିହାସ କରି ଚାଲିଗଲେ । ସେଇକିବେଳେ ଉଡ଼ନ୍ତା ଚଢ଼େଇ ଗୁଡ଼ାଙ୍କୁ ଚାହିଁ ସେ ଭାବୁଥିଲା, ମୋର ଦି'ଟା ପକ୍ଷୀ ତମ ଭଳିଆ ଥାଆନ୍ତା କି, ମଜା ଚଖେଇ ଦିଅନ୍ତି ।···ରାଗଟା କମି ଆସୁଥିଲା ତା'ର । ସେ ଦେଖିଲା, ଗୁଡ଼ାଏ ଗୋରୁ ଘରମୁହାଁ ହେଉଛନ୍ତି—ଅଫିସ ଫେରନ୍ତା ମଣିଷଙ୍କ ଭଳି । ଦେହର କ୍ଷୁଧା ମେଣ୍ଟେଇ ବେଶ୍ୟାଘରୁ ଫେରୁଥିବା ହସାକୀ ବ୍ୟକ୍ତିଟି ଭଳି । 'ପ୍ରଭଙ୍କା' ବୁଝିଲା, ସନ୍ଧ୍ୟା ହୋଇ ଆସିଲାଣି । ସାଢ଼େ ପାଞ୍ଚଟା ଆଉ ବେଶୀଦୂର ନୁହେଁ । ହେଇଗଲା ଜାଣ । ଏଥର ଯିବାକୁ ହେବ ସେଠିକି । ବହୁ ଲୋକଙ୍କର ସମାଗମ ହେବ···ଧର୍ମସଭା··· । ସେଠି ପହଞ୍ଚିବା ଭିତରେ ନିଜ କଥା ବି ଭାବହେବ······।

• • •

ମୋ ନାଁ ପ୍ରତିଜ୍ଞା ସ୍ୱରେଶ୍ୱରୀମା । ମୋର ଜନ୍ମ ବର୍ଷ ଦ୍ୱିତୀୟ ବିଶ୍ୱଯୁଦ୍ଧର ନିଆଁ ନିଭି ନ ଥିଲା । ବିଶ୍ୱଆଡ଼େ ସେତେବେଳକୁ ଧ୍ୱସ୍ତ ସଭ୍ୟତାର ଗଦା ଗଦା ପୋଡ଼ା ପାଉଁଶ । ଖୁସି, ଆନନ୍ଦ, ପ୍ରେମ ଓ ସ୍ୱପ୍ନର ଭଙ୍ଗା ଭଙ୍ଗା ଚୂନା ଚୂନା ରୂପ । ତାଆରି ଭିତରେ ମୁଁ କୁଆଁ ରଡ଼ି ଦେଇଥିଲି । ବାପାଙ୍କ ମୁଣ୍ଡକୁ କ'ଣ ଫୁଟିଲା କେଜାଣି, ମୋ ନାଁ ରଖିଦେଲେ ପ୍ରତିଜ୍ଞା ସ୍ୱରେଶ୍ୱରୀମା । ସାଙ୍ଗିନାହିଁ । ଯାହା ଥାଏ ତ ସବୁ ସେଇଥିରେ । ଏଇ ଯେମିତି ରଥ, ନନ୍ଦ, ମହାନ୍ତି, ମହାପାତ୍ର, ଦାସ, ସିଂହ ଆଦି ··· । ଏଗୁଡ଼ାକ ଦରକାର ପଡ଼ିଲା ନାହିଁ ମୋ ପାଇଁ । ଏବେ ଦେଖୁଛି, ବାସ୍ତବରେ କିଛି ଦରକାର ବି ନାହିଁ । ମଣିଷର ଟାହ୍ଲା ରକ୍ତଧାରଠୁଁ ଅଟାହ୍ଲା ରକ୍ତଧାରର କିଛି ତଫାତ୍ ନାହିଁ ।

ଦୁନିଆକୁ ଜାଣିବାକୁ ବୟସ ହେଲାବେଳକୁ ମୁଁ ଦେଖିଲି ମୋ ପାଖରେ ମୋ ବାପା ନାହାନ୍ତି, ସିଏ ମତେ ଅନେକ ଖୋଜିଲା କାହାଣୀର ସଙ୍କେତ ମାନ ଧରେଇ ଦେଇଥିଲେ; କିଛିଟା ମୁଁ ଖୋଜି ଖୋଜି ପାଇ ଯାଉ-ଥିଲି, କେତେଟା ପାଉ ନ ଥିଲି; କିନ୍ତୁ ଆଉଥରେ ତାଙ୍କ ସେ ସଂକେତ ପତ୍ରରୁ ନ ଥିଲି, ବରଂ ନିଜ ପେଡ଼ିରେ ସାଇତି ରଖୁଥିଲି, ଭବିଷ୍ୟତରେ ସୁବିଧା ଦେଖି ଖୋଜିବା ପାଇଁ । ଦିନେ ଇଚ୍ଛା ହେଲା ବାପାଙ୍କୁ ପଚାରିବି, 'ମୋ ନାଁଟା ଏମିତି କାହିଁକି ରଖିଲ ବାପା !' ଦେଖିଲି, ଏ ପ୍ରଶ୍ନର ଖିଅ ଧରାଇବା ପାଇଁ ସେ ଆଉ ମୋ ପାଖରେ ନାହାନ୍ତି । ସେତେବେଳକୁ ମୋ ପାଖରେ ଗଦା ହୋଇ ଯାଇଥିଲା ଅସଂଖ୍ୟ ଅସମାଧିତ ପ୍ରଶ୍ନର ଫାଇଲ ।

ଏଇ ଖୋଜିବା ଅଭ୍ୟାସଟା ମତେ ଦେଇ ଯାଇଥିଲେ ମୋ ବାପା । ପରଂପରାର ସୂତ୍ରଧାର ହୋଇ ତେଣୁ ମୁଁ ଖୋଜି ହେଉଚି । ଇଏ ଗୋଟାଏ ନିଶା; ଠିକ୍ ଅଫିମ ଭଳି/ହେମେଭଳି । ଏହା ଭିତରେ ଅସମାଧିତ ପ୍ରଶ୍ନର ଫାଇଲ ବଢ଼ୁଛି ସିନା, କମୁନି । ( ବାପା ! ତମେ କ'ଣ ଚାହୁଁଥିଲ ତମ ପୁଅ ଏଇଆ ହଉ ? ଏମିତି ରକ୍ତର ଧାର ଓ ଏସିଡ୍ ଖୋଜି ଖୋଜି ମରୁରେ ପଥହରା ହେଉ ! ତଥାପି, ତମର ଇଚ୍ଛା ପୂରଣ ହେଉ । ) ମୁଁ ଭାବୁଚି, ମତେ କିଛି ଗୋଟାଏ ବେମାରି ହୋଇଗଲାଣି । ଏହାର ଶେଷ କେଉଁଠି ଏକା ତମେ ବୋଧେ କହି ପାରିଥାନ୍ତ ହେ ଧର୍ମପଦ !

ଚିନାବାଦାମ ପୁଡ଼ିଆରୁ ହଠାତ୍ କାଲି ତାକୁ ଆବିଷ୍କାର କଲି । ସେ ମୋର ହଜିଲା ସ୍ମୃତିର ସୂତା ଖିଅଟିଏ । କ'ଣ ଗୋଟାଏ ଖୋଜିଲା ( ହୁଏତ ପୃଥିବୀ ଖୋଜୁଥିଲି/ହେଇପାରେ ଖୋଜୁଥିଲି ଆକାଶର ତାରାଫୁଲ ) ଭିଡରେ ସମସ୍ତର ଶିକାର ହୋଇ ସିନେମା ଘର ଆଗରେ ଠିଆ ହୋଇ

ପଡ଼ିଥିଲି ହାତରେ ଚନାବାଦାମର ପୁଡ଼ିଆ ଧରି । ବୈଚିତ୍ର୍ୟମୟ ଲୋକ ପଟୁଆର ଭିତରେ (ଯୌବନକୁ ବନ୍ଧାଇ ଦେବାକୁ ବସିଥିବା ସ୍ତ୍ରୀର 'ନିଜ କାମୁକ ସ୍ୱାମୀଟିର ଅନ୍ୟପ୍ରତି ମାଂସାଶୀ ଦୃଷ୍ଟିକୁ ସଚେତନ କରାଇବା ଇଙ୍ଗିତ ଭିତରେ—ଭିନ୍ନକାମର ବାହାନା ଧରି ସିନେମା ପଳାଇ ଆସିଥିବା ପ୍ରେମିକ ପ୍ରେମିକା, ଇଚ୍ଛାକୃତ ଭାବେ ତନୁ ସ୍ପର୍ଶ ଦେଇ କିଏ ଦେଖି କ'ଣ ଭାବୁଥିବା ଭାବନେଇ ସତର୍କ ଚାହାଣି ଫେରାଇବା ଭିତରେ—ନୂଆକରି ଯୌବନର ଅଧିକାରଣୀ ହୋଇ ପ୍ରଜାପତିର ମନନେଇ ଦୁନିଆକୁ ଦେଖୁଥିବା କୁନକୁନିଆ ଝିଅଟିର ଆଖି ପାଖରେ)···ତଥାପି ମୁଁ କିଛି ପାଉ ନ ଥିଲି ।

ଚନାବାଦାମ ପୁଡ଼ିଆକୁ ଚାହିଁ ଶେଷରେ ମୁଁ ଖୋଜିବାକୁ ଲାଗିଲି କସ୍ତୁରୀ ମୃଗ ଭଳି / ନିଜ ଦେହରେ ଆବର୍ଜନା ବୋଲି ହୋଇ ଆବର୍ଜନା ସନ୍ଧାନ ପାଇଁ ପାଗଳ ହେଉଥିବା ମାଛି ଭଳି । ହଠାତ୍ ମୋ ଆଖି ପଡ଼ିଗ-ଲା ପୁଡ଼ିଆଟିର କାଗଜ ଉପରେ । ପ୍ରାଥମିକ ସ୍କୁଲ ପିଲାର କୁକୁର ବିଷୟରେ ଲେଖିଥିବା ପ୍ରବନ୍ଧ···ନାଲି କାଳିରେ ଇଂରାଜୀରେ ନମ୍ବର ଦେଇଥିବା ଶିକ୍ଷକଙ୍କ ହସ୍ତାକ୍ଷର···ତା'ପରେ ଆଖି ପଡ଼ିଲା କାଗଜର ଭାଷା ଉପରେ । ଭାଷାରେ ବ୍ୟବ-ହୃତ ଶବ୍ଦ ଉପରେ ।··· କୁକୁରଟିର ତା' ଛୁଆ ପ୍ରତି ମମତା···'ମମତା'···। ଶବ୍ଦଟିଏ ନୁହେଁ, ଯେମିତି ଗୁବ କାଠିଟିଏ । କେତେଦିନ ତଳେ ହଜି ଯାଇଥିଲା । ବୋଧହୁଏ ଖୋଜି ହେଉଥିଲି । ପାଇ ନ ଥିଲି । ଆକସ୍ମିକ ଭାବେ ମିଳିଗଲା···

କିନ୍ତୁ ଏ 'ମମତା' କିଏ ? କ'ଣ ତା' ସହିତ ମୋର ସମ୍ପର୍କ !! ଠିକ୍ ମନେ ପଡ଼ୁନି ।···ହୁଏତ ଆଉ କେତେ ବର୍ଷ ପରେ ଏ ନାଆଁଟା ବି ଭୁଲି ଯାଇଥାଆନ୍ତି । ନାଆଁଟା ମନେଥିଲା ଦୁରୁଣା କ୍ଷତଭଳି । କେବେ କେଉଁଠି କାହିଁକି ଏ ନାଆଁ ସହିତ ପରିଚିତ ହୋଇଥିଲି ତାହା ମନେ ପଡ଼ୁନି । ହୁଏତ ଆମେ ଦୁହେଁ ପରସ୍ପରକୁ ଭଲ ପାଉଥିଲୁ···କିମ୍ବା କେଉଁ ସୁନ୍ଦରୀ ଝିଅର ସାମାନ୍ୟ ପରିଚୟର ସୁଯୋଗ ନେଇ ମନ ନାମକ ସଇତାନଟା ଗୋଟାଏ ପାଲ ମୂର୍ତ୍ତି କରି ବସିଥିଲା । ହୁଏତ ହୋଇପାରେ, ନାଁ—ନଜଣା ଗୋଟାଏ ଝିଅକୁ 'ମମତା' ବୋଲି ମନେ ମନେ ସ୍ଥିର କରିନେଇ ତାକୁ ନେଇ ଅମାନିଆ ଯୌବନ ମୋର ସ୍ୱପ୍ନ ଦେଖୁଥିଲା । ଏବେ ଭୁଲି ଚାଲିଣି···।

ମାତ୍ର ସେଇ ନାଆଁଟା ଗୋଟାଏ ଚମକ ସୃଷ୍ଟି କରି ଦେଲା, ଅନେକ ଖୋଜିବା ଜିନିଷର ତାଲିକା ଭିତରେ । କିନ୍ତୁ ତାକୁ ତ ମୁଁ ଏବେ

ଖୋଜୁ ନ ଥିଲି···ଖୋଜିବା ଆଉ ପାଇବା ତ ସବୁବେଳେ ଭିନ୍ନ ହୁଏନା ।
ମୁଁ—ପ୍ରତିଜ୍ଞା·ସ୍ୱର୍ଗସୀମା,···ମୁଁ ପୃଥିବୀ ଖୋଜୁଥିଲି । କିନ୍ତୁ···



ଖୋଜି ଖୋଜି ସଭାସ୍ଥଳରେ ପହଞ୍ଚି ଯାଇଥିଲା ପ୍ରତିଜ୍ଞା ସ୍ୱର୍ଗସୀମା । ସେତେବେଳକୁ ବେଶ୍ ଜନ ସମାଗମ ହୋଇ ସାରିଥିଲା । ମାଇକ୍‌ରେ ବାଜୁଥିଲା ଧର୍ମ ସମ୍ବନ୍ଧୀୟ ଚଳଚ୍ଚିତ୍ର ସଙ୍ଗୀତ । ସଭା ମଣ୍ଡପରେ ଗୋଟାଏ ବିରାଟ ମାଣ୍ଡିକୁ ଆଉଜି ବସିଥିଲେ ଆର୍ଯ୍ୟାବର୍ତ୍ତର ପ୍ରସିଦ୍ଧ ଧର୍ମବିଦ୍ ବିପୁଷ୍ମାନ୍ ପ୍ରଭୁପାଦ । ପୃଥୁଳ ଉଦରକୁ ତାଙ୍କର ପକ୍ୱ ଶୁଭ୍ର ମୁଲାଏମ ସ୍ପର୍ଶ ଦେଉଥିଲା, ଚନ୍ଦ୍ରାଲୋକ ନାୟକର କେଶରାଜିରେ ସବୁ ଭୁଲାଇ ଦେବାକୁ ପ୍ରତିଜ୍ଞା କରୁ-ଥିବା ନାୟିକାର କୋମଳ କର ପରଶ ଭଳି / ଚେତନା ଫେରି ପାଉଥିବା ରୋଗୀ ପାଖରେ ଶୀତଳ ପବନର ସ୍ପର୍ଶ ଭଳି ।

ଜନତା ଉତ୍‌କଣ୍ଠିତ—ପ୍ରଭୁପାଦଙ୍କର ଧର୍ମବାଣୀ ଶୁଣିବା ପାଇଁ / ମନ୍ତ୍ରୀଙ୍କ ଭାଷଣ ଶୁଣିବା ପାଇଁ । ମନ୍ତ୍ରୀଙ୍କର ଆସିବାରେ ବିଳମ୍ବ ହୋଇଗଲାଣି ଅନେକ । ଜନାରଣ୍ୟ ବଢ଼ୁଛି । ଚନ୍ଦନ ପଡ଼ିଆ ପୂର୍ଣ୍ଣ ହୋଇ ଲୋକେ ମ୍ୟୁନିସିପାଲିଟି ପୋଖରୀ ହୁଡ଼ାରେ ଭରିଗଲେଣି । ଗୋଟାଏ ଅଦ୍ଭୁତ ଅସ୍ଥିର ରାଗିଣୀ ଘୂରିଆସୁଥିଲା ପୂରି ରହିଥିଲା । ପ୍ରତିଜ୍ଞା ସ୍ୱର୍ଗସୀମା ଦେଖୁଥିଲା ପ୍ରଭୁପାଦଙ୍କୁ / ତାଙ୍କଠୁଁ ଆଶିଷ ନେଇ ଫେରୁଥିବା ତଦ୍‌ଗତ ହୃଦୟ ଭକ୍ତ ମାନଙ୍କୁ । ବୋଧହୁଏ ପ୍ରଜ୍ଞାର ପାପ୍ତିରେ ପାପ୍ତିମାନ୍ ଥିଲେ ପ୍ରଭୁପାଦ । ସେଥିପାଇଁ ମନ୍ତ୍ରୀଙ୍କର ଆସିବାରେ ବିଳମ୍ବ ଘଟିଥିଲେ ସୁଦ୍ଧା ସେ ବିବ୍ରତ ନ ଥିଲେ । ସାମୟିକ ଘଟଣା ତାଙ୍କୁ ବିଚଳିତ କରିପାରେ ନାହିଁ । ସେଥି-ପାଇଁ ତ ସେ ସାଧକ ପ୍ରଭୁପାଦ ।

ପ୍ରତିଜ୍ଞା ସ୍ୱର୍ଗସୀମା ଭାବୁଥିଲା, ତା' ନିଜ ଭିତରୁ ଏଇ ଗୁଣଟାକୁ ସେ ଖୋଜି ଖୋଜି ବାହାର କରିବ । କାରଣ ପୃଥିବୀ ଖୋଜିଲାବେଳେ ତାକୁ ଆଉ ସାମୟିକ ହତାଶା ବିଚଳିତ କରି ପାରିବ ନାହିଁ । ଯେମିତି ବିଚଳିତ ହୋଇ ନ ଥିଲେ ଚୈତନ୍ୟ ପନ୍ଥାନୁସରଣ କରିଥିବା ରାଜା ପ୍ରତାପରୁଦ୍ରଦେବ, ଉତ୍କଳ ଖଣ୍ଡ ଖଣ୍ଡ ହୋଇ ପରାଧୀନ ହୋଇଗଲାବେଳେ । ବଡ଼ ଚମତ୍କାର ନିର୍ଲିପ୍ତତା ଇଏ ! ମନ୍ତ୍ରୀ ଯେତେ ବିଳମ୍ବରେ ଆସିଲେ କିଛି କ୍ଷତି ଘଟିବ ନାହିଁ; ଯାହା ଯେମିତି ଘଟିବାର ଥିବ, ଘଟିବ । ସବୁ ଭଗବାନଙ୍କର ଇଚ୍ଛା···!

କିଛି କେହି ନେଉନାହିଁ; କିଛି ଆସୁନାହିଁ, ଗୋଟାଏ ସ୍ଥିର ରଙ୍ଗମଞ୍ଚ ଉପରେ ଅନେକ ଅଭିନେତା-ଅଭିନେତ୍ରୀ ଅଭିନୟ କରି ଯାଉଛନ୍ତି, ସବୁ ସେଇ ଭଗବାନଙ୍କ ନିର୍ଦ୍ଦେଶରେ ··

ଭଗବାନଙ୍କର ଇଚ୍ଛା ପୂରଣ ହେଲା । ମାତ୍ର ଦେଢ଼ଘଣ୍ଟା ବିଳମ୍ବରେ ବଡ଼ ବ୍ୟସ୍ତତା ଭିତରେ ମନ୍ତ୍ରୀ ଆସି ପହଞ୍ଚିଗଲେ । ସମବେତ ଜନତାଙ୍କ ଭିତରୁ କେତେକ ମନ୍ତ୍ରୀ ବିଚିତ୍ରାନନ୍ଦଙ୍କ ଜୟଧ୍ୱନିରେ ସଭାସ୍ଥଳ ପ୍ରକମ୍ପିତ କରିଦେଲେ । ଆଉ କେତେକ ଏହାକୁ ବାରଣ କରି କହିଲେ ଏହା ଧର୍ମ ସଭା । ମନ୍ତ୍ରୀଙ୍କ ଜୟଧ୍ୱନି କଲେ କିଛି ନାହିଁ; କିନ୍ତୁ ତା' ପୂର୍ବରୁ ଧର୍ମପ୍ରାଣ ପ୍ରଭୁପାଦଙ୍କ ଜୟଧ୍ୱନି କରିବାର ଥିଲା । ତାହା କରାହୋଇ ନାହିଁ ।

କେହି କେହି ମନ୍ତ୍ରୀ ବିରୋଧୀ ଚିତ୍କାର କରିବାକୁ ସୂଚନା ଦେଇ ସାରିଥିଲେ । ମାତ୍ର ଅନତି ବିଳମ୍ବରେ ସଭାସ୍ଥଳରେ ଦୁଇ ଠିକଣା ପୋଲିସ ବୋଝେଇ ଗାଡ଼ି ପହଞ୍ଚି ଯିବାରୁ ଗୋଟାଏ ପ୍ରକାରର ଗୁଞ୍ଜରଣ ମିଶ୍ରିତ ନିସ୍ତବ୍ଧତା ବିରାଜିତ ହେଲା । ତଥାପି ଗୋଟାଏ କିଏ ଚୁପା କଣ୍ଠରେ କହୁଥିବା ପ୍ରତିଜ୍ଞା ଶୁଣିପାରିଲା,—"ଶଳା, ଆଜିକାଲି ଏ ମନ୍ତ୍ରୀ ଗୁଡ଼ା ଗୋବର ଖାତ ଉଦ୍‌ଘାଟନ କରିବାକୁ ବି ଚାଲି ଆସୁଛନ୍ତି । କହୋ ଧର୍ମ ସଭାରେ ତମେ କିଏ ?···"

ଲୋକଟାର ମନ୍ତବ୍ୟ ଆଉ ସ୍ପଷ୍ଟ ଶୁଣାଗଲାନି । କାରଣ ସଭାମଣ୍ଡପରୁ ସେତେବେଳକୁ କାର୍ଯ୍ୟକ୍ରମ ଜନିତ ଆଲାପନୀ ଶୁଣିବାକୁ ମିଳିଲା । ପ୍ରଥମେ ମନ୍ତ୍ରୀମହୋଦୟ କହିବେ । ତାଙ୍କର ଅନେକ କାମ । ଏ ସଭାପରେ ତାଙ୍କର ଆହୁରି କେତେଟା ମିଟିଂର କାର୍ଯ୍ୟକ୍ରମ ରହିଚି । ତା'ଛଡ଼ା ସେ ତ ଉଦ୍‌ଘାଟକ । ସେ ଆଗ କହିବା ନିୟମ—ଯେମିତିକ ମଧୁଶଯ୍ୟା ରାତି ପୂର୍ବ ମୁହୂର୍ତ୍ତର ପୁରୋହିତ । ସେ ଆଗ ମନ୍ତ୍ର ନ ପଢ଼ିଲେ···ଓଁ ସର୍ବ ମଙ୍ଗଳ ମଙ୍ଗଲ୍ୟେ······

ମନ୍ତ୍ରୀ କହିବାକୁ ଆରମ୍ଭ କଲେ—

'ରାଜନୀତିରେ ଧର୍ମ' ସମ୍ବନ୍ଧରେ କହୁ କହୁ ସେ କେତେଟା କଟୁ ମନ୍ତବ୍ୟ ଦେଇଦେଲେ ତାଙ୍କ ବିରୋଧୀ ଦଳ ସଭ୍ୟଙ୍କ ଉଦ୍ଦେଶ୍ୟରେ—ସଉତୁଣୀ ଭଳି / ଏକ ପତ୍ରର ଖାଦ୍ୟପାଇଁ ସାମ୍ନାସାମ୍ନି ହୋଇଥିବା ଦୁଇଟି ଶ୍ୱାନଭଳି ।

ତା'ପରେ ଅବସ୍ଥା ଅଣଆୟତ୍ତ ହୋଇଗଲା ।

ଦୃଶ୍ୟ / ଅଦୃଶ୍ୟ ସ୍ଥାନରୁ ମଞ୍ଚ ଆଡ଼କୁ ହେଲା ଢେଲା ପଥର ବୃଷ୍ଟି । ହୋ-ହା-ଗୋ-ଗାରେ ସଭାସ୍ଥଳ କମ୍ପିଗଲା । ଗୋଟାଏ ଢେଲା ମାଡ଼ରେ ପ୍ରଭୁପାଦଙ୍କ ଓଠ ଫାଟି ଶୁକ୍ଳ ଶ୍ମଶ୍ରୁ ହୋଇଗଲା ରକ୍ତରଂଜିତ । ଆଉ ଗୋଟାଏ ବାଜିଲା ମନ୍ତ୍ରୀଙ୍କ ମଥାରେ । ରକ୍ତ ବାହାରିଲା । ଏଥର ପୋଲିସ ବାହିନୀ ନୀରବ ଦ୍ରଷ୍ଟା ହୋଇ ରହି ପାରିଲା ନାହିଁ । ଧର୍ମକ୍ଷେତ୍ରକୁ କୁରୁକ୍ଷେତ୍ର ଭାବି ସମର ଭୂମିକା ଗ୍ରହଣ କଲେ ସେମାନେ । ଗୋଳିଯୁଦ୍ଧ ଆରମ୍ଭ ହୋଇ-ଗଲା ।

ପରିସ୍ଥିତି ଭିନ୍ନ ରକମର ହୋଇଗଲା ।

ଲୋକେ ଛନ୍ନଛତ୍ର ହୋଇଗଲେ; / କ୍ଷତ ବିକ୍ଷତ ହେଲେ; / ମ୍ୟୁନିସି-ପାଲିଟି ପୋଖରୀରେ ଝାସିପଡ଼ି ଅଣ୍ଟା କାଲୁଆ ପାଣିରେ ଶୀତ ଦୂହାଁଇଲେ । କେତେ କ'ଣ କିଏ ହଜାଇଲେ; କେତେ କ'ଣ କିଏ ପାଇଲେ (ଲାଠି ପାହାର, ଧକ୍କା / ହାତ ଘଣ୍ଟା ଚପଲ···)କିନ୍ତୁ ପ୍ରଭଙ୍କା ସ୍ୱୟଂସେବୀମା ଖୋଜୁଥିବା ପୃଥିବୀ କଥା ଭୁଲିଯାଇ ଶୀତରାତରେ ପୋଖରୀ ପହଁରିବା ଆରମ୍ଭ କରି ଦେଇଥିଲି ।



ଭିନ୍ନ ପରିବେଶରେ ଏବେ ପ୍ରଭଙ୍କା ସ୍ୱୟଂସେବୀମା । ସେ ପହଁରୁଥିଲା; ଦୁଃଖ ଯନ୍ତ୍ରଣା ଭିତରେ ବଞ୍ଚି ରହିବାର ସ୍ୱପ୍ନ ଦେଖୁଥିଲା । ଅନେକଙ୍କ ଭଳି ସେ ଶୀତରାତରେ ମ୍ୟୁନିସିପାଲିଟି ପୋଖରୀର ଗଭୀରତା ମାପୁଥିଲା । ତଥାପି ସେ ମ୍ରିୟମାଣ ନ ହୋଇ ଖୋଜୁଥିଲା ସେଇ ପାଣି ଭିତରେ କିଛି ଗୋଟାଏ ହଜେଇଥିବା ଜିନିଷକୁ । ( ଠିକ୍ ଯେମିତି ପ୍ରତାପରୁଦ୍ର ଦେବଙ୍କ କନ୍ୟାକୁ ଜବରଦସ୍ତ ବିଜୟ ନଗର ଦୁର୍ଗରୁ କୃଷ୍ଣଦେବ ରାୟ ଅପହରଣ କରି ନେଇଗଲା ପରେ ସେ ମ୍ରିୟମାଣ ନ ହୋଇ ଧର୍ମର ଖୋଲପାତରୁ ଶାନ୍ତି ଖୋଜୁଥିଲା ଭଳି— ) ।

ପ୍ରଭଙ୍କା ସ୍ୱୟଂସେବୀମା ଖୋଜୁଥିଲି···

ଖୋଜୁଥିଲା, ସେ ଆସିଲାବେଳେ ତା' ପାଦକୁ ନିଷ୍ଠୁର ମୁକାବିଲାରୁ ବଞ୍ଚାଉଥିବା ସେଇ ସହାୟକ ପଦାର୍ଥ ଦୁଇଟିକୁ । ପାଣିରେ ପହଁରିଲାବେଳେ ତା'ର ମନେହେଲା, ଗୋଟାଏ ଗୋଡ଼ ତା' ଜିନିଷଟି ଧରି ରଖିଛି । ଆଉ

ଗୋଡ଼ଟା ଫୁଲା ଫାଙ୍କିଆଟା । ସ୍ମାର ଭିତରେ ସେ ତା' ଜନ୍ମସ୍ଥଟା କୋଉଠି ହଜେଇ ସାରିଲାଣି । ସେଇ ଅନ୍ଧାରିଆ କାଳୁଆ ଗାଡ଼ରେ ପାଣି ଭିତରେ ଥାଇ ଜଣେ ନିଷ୍ଠାପର ସାଧକ ଭଳି ପ୍ରଜ୍ଞା ଶ୍ୱେତସୀମା ଖୋଜୁଥିଲା ତା'ର ହଜାଇଥିବା ଜନ୍ମସ୍ଥଟିକୁ ।

ହଠାତ୍ ଗୋଟାଏ ଭ୍ରାମ୍ୟମାନ ଜନ୍ମସ୍ଥର ସନ୍ଧାନ ପାଇ ( ଖୋଜିଲା ଜନ୍ମସ୍ଥ ଭାବି ) ପ୍ରଜ୍ଞା ଶ୍ୱେତସୀମା ତାକୁ ଧରିବାକୁ ହାତ ବଢ଼ାଇଲା-ବେଳେ ଦେଖିଲା, ସେପଟେ ଅନ୍ଧାର ଭିତରୁ ଆଉ ଗୋଟାଏ କାହାର ହାତ ଲମ୍ବି ଆସିଛି ସେଇ ଜନ୍ମସ୍ଥଟି ଆଡ଼କୁ । ସତ କହିବାକୁ ଗଲେ ବିନା ବାକ୍ୟ-ବିନିମୟରେ କିଛି ସମୟ ଭିଡ଼ା ଓଟରାରେ ବିତିଗଲା । ଶେଷରେ ସେପଟୁ ପ୍ରଥମେ ସ୍ୱର ଶୁଭିଲା—'ମୋର' ·· ।

ପ୍ରଜ୍ଞା ଶ୍ୱେତସୀମା ଏଥର ମୁହଁ ଖୋଲିଲା—'ମୋର'···

ସେପଟୁ ସ୍ୱର ଶୁଭିଲା, "ଉପରକୁ ଚାଲ । ଯାହାର ହେଇଥିବ, ସେ ନେବ ।"

ପାଣିଭିତରେ ଅନେକ ସମୟ ରହି ଯାଇଥିଲେ ସେମାନେ । ସେତେ-ବେଳକୁ ସଭାସ୍ଥଳଟି ଜନ-ମାନବ ଶୂନ୍ୟ ହୋଇ ସାରିଥିଲା । ମଝିରେ ମଝିରେ ପୋଲିସର ରେରେକାର ଧ୍ୱନି ଶୁଭୁଥିଲା ।

• • •

ଫରଚ୍ଛ ଆଲୁଅରେ (ବିପର୍ଯ୍ୟସ୍ତ ଅବସ୍ଥାରେ ହେଲେ ବି) ଆଉ ଜଣଙ୍କ ହଠାତ୍ ପାଟି କରି କହି ଉଠିଲା, ଆରେ ପ୍ରଜ୍ଞା ! ତୁ !!···

ପ୍ରଜ୍ଞାକୁ ତା' ବନ୍ଧୁକୁ ଚିହ୍ନିବା ପାଇଁ ବାକି ରହିଲାନି । ବାଙ୍କନିଧି, କଲେଜ ଦିନର ବନ୍ଧୁ । ଯୌବନର ଦୋସର ।···ସ୍ମୃତିରେ ଫସିଲ କିଆରିରେ ସୋରିଷ ଫୁଲର ଶୋଭା ନେଇ ନାଚିଗଲା ଅତୀତ । ଦୁହେଁ ଦୁହିଁଙ୍କୁ କୁଣ୍ଢାଇ ପକାଇଲେ ପ୍ରେମ ଗଦ୍‌ଗଦ୍ ହୋଇ । ଚପଲ ପଟଟି କାହାର ପରଖ କରିବା ପାଇଁ ଭୁଲିଗଲେ । ସେ ମୁହୂର୍ତ୍ତଟି କ'ଣ କେବେ ଚପଲ ପଟର ମୁହୂର୍ତ୍ତ ହୋଇପାରେ । ସେ ମୁହୂର୍ତ୍ତ ତ ପ୍ରୀତିର ମୁହୂର୍ତ୍ତ / ସ୍ମୃତିର ମୁହୂର୍ତ୍ତ ।

ବାଙ୍କନିଧି କହିଲା, ତୋ କଥା ସବୁବେଳେ ଆମ ଘରେ ପଡ଼େରେ 'ପ୍ରଢଙ୍କା' ! ତୋର ଏବକାର / ଆଗର ଠିକଣା ମୁଁ ଜାଣିନି । ତୁ ଏବେ କୋଉଠି ଅଛୁ ? କ'ଣ କରୁଚୁ? ମୋ ସ୍ତ୍ରୀ 'ମମତା' ସବୁବେଳେ ତୋ କଥା କହେ । ସେ ତତେ ଜାଣେ······

'ମମତା'···ଏଇ ଶବ୍ଦଟା ସାଙ୍ଗରେ ହଠାତ୍ ଯେମିତ ଗୋଟାଏ ଅଣ୍ଡା ଧୂମାଳ ଆସି ପ୍ରଢଙ୍କା ସ୍ୱର୍ଗେସୀମାକୁ ଦୋହଲାଇ ଦେଲା । କମ୍ପି ଉଠିଲା ତା'ର ଗ୍ରୀବ ସେଇ କାଲୁଆ ପବନରେ । ଓଠ ଥରିଗଲା । ଦାନ୍ତରେ, ଦାନ୍ତ ଧାଡ଼େଇ ହୋଇଗଲା । ସେ ବାଙ୍କନିଧିକୁ କହିଲା, ଦେଖ ଭାଇ, ଭାରି ଶୀତ··· ଆଉ କେତେବେଳେ କଥା ହେବା । ମୁଁ ତ ଅଛି··· । ଏବେ ଆସୁଚି···

ଏକମୁହାଁ ହୋଇ ସେ ଚାଲିଗଲା ଆଗକୁ ଆଗକୁ । କେତେବାଟ ଗଲାପରେ ସେ ଅନୁଭବ କଲା, ତା'ର ଗୋଟାଏ ପାଦରେ କେବଳ ଚପଲ ଅଛି । ଆର ପାଦଟା ଲଙ୍ଗଳା । ଏଥର ପଛକୁ ଫେରି ଚାହିଁଲା ସେ । ଦେଖିଲା, ବାଙ୍କନିଧି ବି ସେଠୁ ଚାଲିଗଲାଣି । ମାତ୍ର ସେ ଚପଲ ପଟଟି ସେଠି ପଡ଼ିଛି । ପ୍ରଢଙ୍କା ସ୍ୱର୍ଗେସୀମା ଗୋଡ଼ରୁ ଆରପଟକ ଚପଲ କାଢ଼ି ସେଇ ଆଡ଼କୁ ଲକ୍ଷ୍ୟ କରି ଫିଙ୍ଗିଦେଲା ଏବଂ ପୁଣି ଏକମୁହାଁ ହୋଇ ଚାଲିଲା ଆଗକୁ ।

ସେତେବେଳକୁ କିନ୍ତୁ ସେ ଭୁଲି ଯାଇଥିଲା, ସେ କ'ଣ ଖୋଜୁଥିଲା । ସତେ ଯେମିତ ସେ କ'ଣ ଖୋଜୁଥିଲା, ସେ ଏବେ ନିଜେ ଜାଣେନା ।

# ମୁଁ

## ପ୍ରତିଭା ରାୟ

ଗୋଟାଏ ଗ୍ରୁପ୍ ଫଟୋ । ପ୍ରିୟ ଲୋକଙ୍କ ଗହଣରେ ଆପଣ ନିଜର ଫଟୋଟି ଦେଖୁଛନ୍ତି । ବାରମ୍ବାର ଦେଖୁଛନ୍ତି । ଆପଣଙ୍କ ଆଖି ଦୁଇଟି କାହାକୁ ଦେଖୁଛି ? ଆପଣଙ୍କ ପ୍ରିୟ ଲୋକଙ୍କ ପ୍ରତିଛବିକୁ ? ନାଁ ଆପଣ ନିଜେ ନିଜର ସ୍ଥିର ଛବିଟିକୁ ବିଭିନ୍ନ ଦୃଷ୍ଟିକୋଣରୁ ଦେଖୁଛନ୍ତି—ଆମୋଦିତ ହେଉଛନ୍ତି—ପୁଲକିତ ହେଉଛନ୍ତି । ଠିକ୍ ଯେମିତି ଦର୍ପଣ ଭିତରେ ଦେଖନ୍ତି ନିଜକୁ—ପୁଣି ଯେମିତି ନିଜକୁ ଖୋଜନ୍ତି ପ୍ରେମିକ ବା ପ୍ରେମିକାର ଆଖିର ଆଇନାରେ । ନିଜ ସନ୍ତାନ ଭିତରେ ଯେମିତି ନିଜ ଅପୂର୍ଣ୍ଣ ବାସନାକୁ ଚରିତାର୍ଥ କରିବାକୁ କାମନା କରନ୍ତି । ଏ ସବୁର ଅର୍ଥ କ'ଣ ? ଏ ସମସ୍ତ ସଂସାର 'ମୁଁ' ମୟ—ଯିଏ ଯାହା କରୁଛି, ସବୁର କେନ୍ଦ୍ର ବିନ୍ଦୁ 'ମୁଁ' । ଘଟଣାଟି ଘଟିଥିଲା ଅମ୍ବିକା ଦେବୀଙ୍କ ଜୀବନରେ । ଧରି ନିଅନ୍ତୁ କଥାଟା ସତ୍ୟ । ଆପଣ ଏ ଗଳ୍ପର ନାୟକ ବା ନାୟିକା ମଧ୍ୟ ହୋଇ ପାରନ୍ତି । କଥାଟା ଏମିତି—

ଶେଷକୁ ସହରର ଅଭିଜ୍ଞ ସାଇକିଆଟ୍ରିଷ୍ଟଙ୍କ ସହ ପରାମର୍ଶ କରିବାକୁ ହେଲା । ପରାମର୍ଶ କରୁ କରୁ ଅମ୍ବିକା ଦେବୀ ସ୍ଥିରମତି ତାଙ୍କର ଜଣେ

ପେସେଣ୍ଟ ହୋଇଗଲେ । ଅଥଚ କଥାଟା ସମ୍ପୂର୍ଣ୍ଣ ଗୋପନ ରଖିବାକୁ ଅମ୍ବିକା ଦେବୀ ଡା: ମହାନ୍ତିଙ୍କୁ ଅନୁରୋଧ କଲେ । ନଚେତ୍ ସହରର ଜଣେ ପ୍ରତିଷ୍ଠିତା ନାରୀନେତ୍ରୀ ସମାଜ ସେବିକା ବିଶେଷ କରି ଜଣେ ବୟସ୍କା ଅଭିଜ୍ଞା ଅଧ୍ୟାପିକା ଅମ୍ବିକା ଦେବୀ ମାନସିକ ରୋଗଗ୍ରସ୍ତା, ଅର୍ଥାତ୍ ପାଗଳୀ ହୋଇ ଯାଇଛନ୍ତି ବୋଲି ବିଜୁଳି ବେଗରେ ସାରା ସହରର ଅଳି କନ୍ଦିରେ ରାଷ୍ଟ୍ର ହୋଇ ଯାଇଥାନ୍ତା । ଅଥଚ ସେ ବାସ୍ତବରେ ପାଗଳୀ ହୋଇ ନାହାନ୍ତି, ମନର ଭାରସାମ୍ୟ ହରାଇ ନାହାନ୍ତି, ଅତୀତକୁ ବିସ୍ମରି ଯାଇ ନାହାନ୍ତି; କିମ୍ବା କୌଣସି ଅସ୍ୱାଭାବିକ ବ୍ୟବହାର ବା ଲକ୍ଷଣ ତାଙ୍କଠାରେ ପରିଲକ୍ଷିତ ହୋଇନାହିଁ; ତଥାପି ସେ ଜଣେ ପ୍ରଖ୍ୟାତ ସାଇକିଆଟ୍ରିଷ୍ଟଙ୍କ ପରାମର୍ଶ ନେଇଛନ୍ତି ସେତିକି ମାତ୍ର ତାଙ୍କୁ ବଡ଼ ପାଗଳୀରେ ଆଖ୍ୟାୟିତ କରିବା ପାଇଁ ଯଥେଷ୍ଟ । ଅବଶ୍ୟ ଆମ ଦେଶରେ ଜଣେ କେହି ସମ୍ପୂର୍ଣ୍ଣ ପାଗଳ ନ ହେବା ପର୍ଯ୍ୟନ୍ତ ସାଇକିଆଟ୍ରିଷ୍ଟର ଦ୍ୱାରସ୍ଥ ହୁଏନାହିଁ । ଯେତେବେଳେ ଜଣେ ନିଜର ସମସ୍ତ ସଚେତନ ବିଚାରକୁ ବିସ୍ମରି ଯାଏ—ବିନା କାରଣରେ ହସେ—କାନ୍ଦେ—ଉଲଗ୍ନ ହୋଇ ରାସ୍ତାରେ ବୁଲିପାରେ – ସାମାଜିକ କଟକଣାର ନିର୍ଦ୍ଦିଷ୍ଟ ସୀମା ଲଙ୍ଘନ କରି ବନ୍ଧୁ ପରିଜନ, ପରିଚିତ ଅପରିଚିତକୁ ଝଗେଇ ହୁଏ—କାମୁଡ଼ି ଗୋଡ଼ାଏ—ଢେଲା ପକାଏ—ଅଶ୍ଳୀଳ ଭାଷାରେ ଗାଳି ଗୁଲଜ କରେ ଠିକ୍ ସେଇ ଅବସ୍ଥା ହିଁ ସାଇକିଆଟ୍ରିଷ୍ଟଙ୍କ ପାଖକୁ ଯିବାର ଉତ୍କୃଷ୍ଟ ଅବସ୍ଥା ବୋଲି ଆମ ଲୋକଙ୍କର ଧାରଣା । କିନ୍ତୁ ଅମ୍ବିକା ଦେବୀ ଏଇ ସାମାନ୍ୟ କଥାଟି ପାଇଁ କାଳ ବିଳମ୍ବ ନ କରି ଡାକ୍ତରଙ୍କ ପରାମର୍ଶ ନେଇଥିଲେ । କଥାଟା କିଛି ନୁହେଁ । ଗୋଟାଏ ସ୍ୱପ୍ନ ! ସ୍ୱପ୍ନ ବା କିଏ ନ ଦେଖେ । ଅମ୍ବିକା ଦେବୀ କିନ୍ତୁ ସ୍ନାତକୋତ୍ତର ଶ୍ରେଣୀର ମନସ୍ତତ୍ତ୍ୱର ଛାତ୍ରୀଟି ଭଳି ଫ୍ରଏଡଙ୍କର ଅବଚେତନ ମନର ବିଜ୍ଞାନକୁ ତନ୍ନ ତନ୍ନ କରି ପଢ଼ିଛନ୍ତି । ଫ୍ରଏଡଙ୍କର ଧାରାରେ ନିଜ ସ୍ୱପ୍ନକୁ ବିଶ୍ଳେଷଣ କରିଛନ୍ତି—ମନେ ହେଉଛି ଫ୍ରଏଡଙ୍କର ଡ୍ରିମ୍ ଆନାଲିସିସ୍ ଭ୍ରମାତ୍ମକ—ଅତିରଞ୍ଜିତ ଭାବରେ ସେକ୍ସ ଓରିଏଣ୍ଟେଡ—ଯୌନ କେନ୍ଦ୍ରିକ । ତାଙ୍କ ସ୍ୱପ୍ନସହ ଫ୍ରଏଡଙ୍କ ବାଖ୍ୟାରେ କୌଣସି ମେଳ ନାହିଁ । ତା' ପରେ ସେ ଡା: ମହାନ୍ତିଙ୍କ ସାହାଯ୍ୟ ନେଉଥିଲେ ।

ଡା: ମହାନ୍ତିଙ୍କ ପାଖରେ ତାଙ୍କୁ ସତ୍ୟ ପାଠ କରିବାକୁ ହୋଇଥିଲା । ଡା: ମହାନ୍ତି ଅଧ୍ୟାପିକା ଅମ୍ବିକା ଦେବୀଙ୍କର ଶ୍ରେଣୀ କକ୍ଷରେ ମନଯୋଗୀ ଛାତ୍ରଟି ଭଳି କେସ୍ ହିଷ୍ଟ୍ରି ନୋଟ୍ କରି ନେଉଥିଲେ । ଅମ୍ବିକା ଦେବୀଙ୍କର କେସ୍ ହିଷ୍ଟ୍ରିରେ ଅବିକଳ ନକଲ ଏମିତି—

ଠିକ୍ ସେଇ ଅଶୁଭ ଘଡ଼ିରୁ ହିଁ ଏ ସ୍ୱପ୍ନର ଆରମ୍ଭ । ସେଦିନ ଅମ୍ବିକା ଦେବୀ ତାଙ୍କର ଏକାନ୍ତ ଅନ୍ତରଙ୍ଗ ବାନ୍ଧବୀ ଶ୍ରୀମତୀ ସରୋଜିନୀଙ୍କ ଆକସ୍ମିକ ବିୟୋଗଜନିତ ଶୋକ ସନ୍ତାପରେ ସନ୍ତାପିତା ହୋଇ ଫେରିଥାନ୍ତି ଭଗ୍ନ ହୃଦୟରେ । ବାସ୍ତବିକ୍ ସରୋଜିନୀ ଯେ ଏମିତି ଅପ୍ରତ୍ୟାଶିତ ଭାବେ ଅସମୟରେ ଚାଲିଯିବ ଏକଥା ଏକବାର ଅଭାବିତ । ଯଦିଓ ଏ ଦୁର୍ଘଟଣାମୟ ବିଚିତ୍ର ପୃଥିବୀରେ ପ୍ରତିଦିନ ଏମିତି ଶହ ଶହ ଘଟଣା ଘଟେ—ତଥାପି ମଣିଷ ନିଜ ପ୍ରିୟ ଲୋକର ମୃତ୍ୟୁରେ ହଠାତ୍ ଦାର୍ଶନିକ ହୋଇ ଉଠେ, ଅଶ୍ରୁ ଝରାଏ । ମାତ୍ର ସବୁଠୁ ବିଚିତ୍ର କଥା ହେଲା, ସମସ୍ତ ସବୁ ବ୍ୟଥାର ଅମୋଘ ମହୌଷଧି ହୋଇ ଉଠେ । ହଠାତ୍ ଅଟକି ଯାଇଥିବା ବିଶୃଙ୍ଖଳ – ବିଡମ୍ବିତ ଜୀବନର ଧାରା ସହଜ ସାବଲୀଳ ହୋଇଉଠେ । ଜୀବନ ଗଡ଼ି ଚାଲେ । ମାତ୍ର ସରୋଜିନୀଙ୍କ ଅକାଳ ବିୟୋଗରେ ଅମ୍ବିକା ଦେବୀ ଏମିତି ଭାଙ୍ଗି ପଡ଼ିଲେ ଯେ, ସମୟର ମହୌଷଧିରେ କୌଣସି ଉପଶମ ହେଲା ନାହିଁ । ସରୋଜିନୀ କେବଳ ଅମ୍ବିକାଙ୍କର ବାନ୍ଧବୀ ନୁହନ୍ତି--ପ୍ରତିବେଶିନୀ ମଧ୍ୟ । ଦୁଇ ବାଲ୍ୟ ବାନ୍ଧବୀ ବାର୍ଦ୍ଧକ୍ୟର କନକ ଗୋଧୂଳି ମୁହୂର୍ତ୍ତ ଗୁଡ଼ିକୁ ଅତୀତର ସବୁଜ ସ୍ମୃତି ସ୍ମରଣରେ ସହଜ ସାବଲୀଳ କରିବା ପାଇଁ ପାଖାପାଖି ଜମି କିଣି ଗୋଟିଏ ପ୍ରକାର ପ୍ଲାନରେ ସୁନ୍ଦର ଘର ଦୁଇଟି ତିଆରି କରିଥିଲେ । ଘରେ ବା ଦୁଇଟି ସୁଦୃଶ୍ୟ ପ୍ରାସାଦ ନୁହେଁ—ଦୁଇଟି ସୁନ୍ଦରୀ ଯମଜ ଭଗ୍ନୀ । ଦୁଇ ଗୃହର ଅନ୍ତର୍ସଜ୍ଜା ଓ ବହିର୍ସଜ୍ଜା ପ୍ରାୟ ଏକ ପ୍ରକାରର । ବେଳେବେଳେ ଅମ୍ବିକା ଦେବୀଙ୍କର ସ୍ୱାମୀ ଭ୍ରମରେ ଅଫିସରୁ ଫେରି ସରୋଜିନୀଙ୍କ ଘର ସାମ୍ନାରେ ଗାଡ଼ିରୁ ଓହ୍ଲାନ୍ତି—ଓହ୍ଲାନ୍ତି—ସରୋଜିନୀଙ୍କ ସ୍ୱାମୀ ହସି ହସି ଅମ୍ବିକା ଦେବୀଙ୍କ ଘରୁ ବାହାରି ଆସନ୍ତି । ଦୁଇ ବନ୍ଧୁ ଉଚ୍ଚ ହାସ୍ୟରେ ଫାଟିପଡ଼ି ରସିକତା କରି କହନ୍ତି—ରକ୍ଷା ହୋଇଯାଇଛି—ଅମ୍ବିକା ଆଉ ସରୋଜିନୀଙ୍କ ଚେହେରାରେ ଆଦୌ ସାମଞ୍ଜସ୍ୟ ନାହିଁ । ନଚେତ୍ କ ଯେ ବିଭ୍ରାଟ ହୁଅନ୍ତା··· । ମୋଟ ମୋଟି ଦୁଇ ପରିବାର ଓ ଦୁଇ ବାନ୍ଧବୀଙ୍କ ଭିତରେ ଥିଲା ଅନାବିଳ ପ୍ରୀତି । ସେଦିନ ଅମ୍ବିକା ଦେବୀ ସ୍ୱାମୀଙ୍କ ସହ ପୁରୀ ଯାଇଥିଲେ ବଦଳି ପାଇଁ ଭ୍ରମଣରେ । ସକାଳୁ ସକାଳୁ ଘରେ ପହଞ୍ଚି ଅମ୍ବିକା ଦେବୀ ଦେଖିଲେ ସରୋଜିନୀଙ୍କ ଗୃହ ଲୋକାରଣ୍ୟ । ରାସ୍ତାରେ ମଧ୍ୟ ବେଶ୍ ଭିଡ଼ ଜମିଛି । ଅଥଚ ପରିବେଶଟା ଅସ୍ୱାଭାବିକ ଗମ୍ଭୀର । ସାଧାରଣତଃ ଏତେ ଲୋକଙ୍କର ସମାବେଶରେ ସ୍ୱାଭାବିକ୍ ମୃଦୁଗୁଞ୍ଜନର ତରଙ୍ଗଟିଏ ବି ନାହିଁ । ସବୁ ନିସ୍ତବ୍ଧ—ନିର୍ବାକ । ପିଲାଦିନେ ଶୁଣିଥିବା କାହାଣୀ ଭଳି କେଉଁ ଯାଦୁ ସ୍ପର୍ଶରେ ରଜାରାଣୀ ହାତୀ ଘୋଡ଼ା— ପାତ୍ରମନ୍ତ୍ରୀ ସମସ୍ତେ ଯେମିତି ପଥର ପାଲଟି ଯାଇଛନ୍ତି । ଆଉ ତା'ରି

ଭିତରେ ଶାପଗ୍ରସ୍ତା ରାଜକନ୍ୟାଟି ଭଳି ସରୋଜିନୀଙ୍କର ଜଡ଼ ନିଷ୍ପନ୍ଦ ପ୍ରାଣହୀନ ଶରୀରଟି ନିସ୍ତୁପ ହୋଇ ପଡ଼ିରହିଛି ଅନ୍ତିମ ଯାତ୍ରାର ପ୍ରସ୍ତୁତିକୁ ଅପେକ୍ଷା କରି । ଗହନ ଗଭୀର ନିଦ୍ରାରେ ସତେ ବା ପାଷାଣ ପାଲଟିଛନ୍ତି ସରୋଜିନୀ । ଅକସ୍ମାତ୍ ଗତ ରାତିରେ ହୃଦରୋଗରେ ପରଲୋକ ହୋଇଯାଇଛି ତାଙ୍କର । କେତେ ବା ବୟସ ! ସମସ୍ତଙ୍କ ସ୍ୱରଯନ୍ତ୍ର ହଠାତ୍ ଯେମିତି ସ୍ତବ୍ଧ ହୋଇଯାଇଛି ଅଥଚ ସବୁ ଆଖିର ଆକାଶରେ ଝର ଝର ବର୍ଷାର ଅବାରିତ ଧାରା । ସତେ ଯେମିତି ଏ ସୁନ୍ଦର ପୃଥିବୀ ଛାଡ଼ି ସରୋଜିନୀ ଚାଲିଗଲେ । ଏପରି ହାସ୍ୟ ହାସ୍ୟ ଭାବ ଭିତରେ ଅମ୍ବିକା ଦେବୀ ଏକବାରେ ମୂକ—ବଧିର—ପଙ୍ଗୁ ପାଲଟି ଯାଇଛନ୍ତି ।

ପୂର୍ବ ଦିନ ଠିକ୍ ଏଇ ସମୟରେ ସରୋଜିନୀ ସକାଳର ସତେଜ ପୁଷ୍ପସ୍ତବକଟି ଭଳି ବାଲକୋନି ଧାରରେ ଅପୂର୍ବ ଠାଣିରେ ଠିଆ ହୋଇ ହାତ ହଲାଇ ହଲାଇ ତାଙ୍କୁ ବିଦାୟ ଜଣାଇଥିଲେ ଆଉ ପୁରୀରୁ ମହାପ୍ରସାଦ ଆଣିବା ପାଇଁ ଆଉ ଥରେ ସ୍ମରଣ କରି ଦେଇଥିଲେ । ମହାପ୍ରସାଦରେ ସରୋଜିନୀଙ୍କର ଖୁବ୍ ଆସକ୍ତି । ଅମ୍ବିକାଙ୍କ ଗାଡ଼ିରେ ମହାପ୍ରସାଦର କୁଡ଼ୁଆ ସବୁ ଥୁଆ ହୋଇଛି । ଅଥଚ ମହାପ୍ରସାଦକୁ ଅପେକ୍ଷା ନ କରି ତାଙ୍କର ମହାପ୍ରସ୍ଥାନ ହୋଇଗଲା । ମହାପ୍ରସ୍ଥାନ କାହାରିକୁ ଅପେକ୍ଷା କରେ ନାହିଁ । ତା'ର କୌଣସି ନିର୍ଦ୍ଦିଷ୍ଟ ବୟସ ସୀମା ବା କାର୍ଯ୍ୟନିର୍ଘଣ୍ଟ ନାହିଁ ।

ସରୋଜିନୀଙ୍କର ଶବ ଶୋଭାଯାତ୍ରା ଆଗକୁ ଚାଲି ଯାଇଥିଲା ସମସ୍ତ ପାର୍ଥିବ ବନ୍ଧନ-ଅଶ୍ରୁ-ହାହାକାରକୁ ଅବଜ୍ଞା କରି । ତା'ପରେ ସାରା ପରିବେଶ ନିସ୍ତୁପ—ନିର୍ବାକ । ସମସ୍ତ ଦେଖଣାହାରୀ ସ୍ତବ୍ଧ । ସମସ୍ତଙ୍କ ଛାତି ଭିତରେ ଅସ୍ପଷ୍ଟ ଯନ୍ତ୍ରଣା—ଗୋଟାଏ ଅଜଣା ଭୟର ଅସ୍ଥିର କମ୍ପନ—ଅସଂଖ୍ୟ ଲୋକ ଦୀର୍ଘଶ୍ୱାସରେ ବାୟୁମଣ୍ଡଳ ଭାରାକ୍ରାନ୍ତ । କାହାପାଇଁ ଏ ବ୍ୟଥା, ହାହାକାର—ଦୀର୍ଘଶ୍ୱାସ ଓ ଅଶ୍ରୁ ! ସରୋଜିନୀଙ୍କ ପାଇଁ ? ବାନ୍ଧବୀ ପାଇଁ ? ପ୍ରତିବେଶିନୀ ପାଇଁ ? ପରିଚିତା ପାଇଁ ? ହୃଦୟର ଏ ଅସ୍ଥିର କମ୍ପନ, ଅବ୍ୟକ୍ତ ଯନ୍ତ୍ରଣା—ଅକସ୍ମାତ୍ ଦାର୍ଶନିକତା କ'ଣ ଅନ୍ୟ ଏକ ମଣିଷର ଅନ୍ତିମ ବିଦାୟ ପାଇଁ ? ପ୍ରଶ୍ନ କଲେ ସମସ୍ତେ ହୁଏତ ଏକଇ ସ୍ୱର ତୋଳିବେ—ହଁ ସରୋଜିନୀ ପାଇଁ ଏ ବ୍ୟଥା—ଅନିଦ୍ର ରଜନୀ—ହାହାକାର—ଯନ୍ତ୍ରଣା । ମାତ୍ର ହାୟ, ସମସ୍ତ ଉତ୍ତର ହିଁ ମିଥ୍ୟା, ପ୍ରବଞ୍ଚନା । ମଣିଷର ମନ ଜଳରେ ଭାସମାନ ଏକ ତୁଷାର ଖଣ୍ଡ ଭଳି—ଯାହାର ସାମାନ୍ୟତମ ଅଂଶ ହିଁ ପ୍ରକାଶ୍ୟରେ ଦୃଶ୍ୟମାନ ହୁଏ—ଅବଶିଷ୍ଟ

ସମସ୍ତ ଅଂଶ ବୁଡ଼ି ରହିଥାଏ ଅବଚେତନତାର, ଛଳନାର, ପ୍ରବଞ୍ଚନାର ଗଭୀରତା ଭିତରେ । ତେଣୁ ଏ ବ୍ୟଥା, ଏ ହାହାକାର ସର୍ବେଜମୀଙ୍କ ପାଇଁ ନୁହେଁ—ଏ ପ୍ରଶ୍ନର ନିର୍ଭୁଲ୍ ସଠିକ୍ ଉତ୍ତର 'ମୋ ପାଇଁ' 'ମୋ ପାଇଁ' ଏ ସମସ୍ତ ପୃଥିବୀ 'ମୁଁ' ମୟ । ମଣିଷ ଅନ୍ୟର ପ୍ରତ୍ୟେକଟି ଦୁଃଖ ଦୁର୍ଘଟଣା—ଭୟଙ୍କର କିଛି ଗୋଟାଏ ଭାଗ୍ୟରେ ବିଡ଼ମ୍ବନା ଭିତରେ ପ୍ରକାଶ୍ୟରେ ଯେଉଁ ହାହାକାର କରି ଉଦାରତାର—ଦୟାଶୀଳତାର—ଦରଦୀ ବନ୍ଧୁତ୍ୱର ଭ୍ରମ ପିଟେ, ତାହା କେବଳ ନିଜ ପାଇଁ ଉଦ୍‌ବେଗ—ଆଶଙ୍କା—ଉତ୍କଣ୍ଠା ବ୍ୟତୀତ ଅନ୍ୟ କିଛି ନୁହେଁ ।

କାହା ପିଲାଟିର ଅକାଳ ବିୟୋଗ ସମ୍ବାଦରେ ଅନ୍ୟ ନାରୀଟିଏ ଅଶ୍ରୁ ଉଚ୍ଛଳ ହୋଇ ଉଠୁ ଉଠୁ ନିଜ ପିଲାଟିକୁ ଗ୍ରୁଡରେ ଜଡ଼ାଇ ଧରି ଈଶ୍ୱରଙ୍କ-ପ୍ରାର୍ଥନା କରେ ନିଜ ପିଲାଟିର ନିରାପତ୍ତା ପାଇଁ । ଅଉ କାହାର ଅକାଳ ବିୟୋଗରେ—ମଣିଷର ପ୍ରଥମ ପ୍ରତିକ୍ରିୟା—ଅଉ କେତେଦିନ ? କିଏ ଜାଣେ କେଉଁ ମୁହୂର୍ତ୍ତରେ ଏମିତି ଏକ ଡାକରା ଆସି ପହଞ୍ଚି ନ ଯିବ ? ସମ୍ବାଦ ପତ୍ରରେ କୌଣସି ରାସ୍ତା ଦୁର୍ଘଟଣାରେ ନିହତ ବ୍ୟକ୍ତିଙ୍କ ନାମ ପଢ଼ୁ ପଢ଼ୁ ମନଟା ଅକସ୍ମାତ୍ ଦୁର୍ବଳ ହୋଇ ଉଠେ ପ୍ରବାସୀ ଆତ୍ମୀୟମାନଙ୍କ ପାଇଁ । ଅମ୍ବିକା ଦେବୀଙ୍କର ଭିତରେ ସେଇ ପ୍ରତିକ୍ରିୟାର ବିଚଳନ ।

ସନ୍ଧ୍ୟାରେ ସର୍ବେଜମୀଙ୍କ ଉଦ୍ଦେଶ୍ୟରେ ଶୋକ ସଭାରେ ଅଜସ୍ର ମର୍ମସ୍ପର୍ଶୀ ଭାଷଣ—ଯେଉଁ ସର୍ବେଜମୀଙ୍କର ଅତ୍ୟଧିକ ସ୍ପଷ୍ଟବାଦିତା ନିର୍ଭୀକତା ଇତ୍ୟାଦି କେତେଟା ଦୁର୍ଗୁଣ ପୂର୍ବ ଦିନ ସମାଲୋଚନାମୂଳକ ଓ ଅସହ୍ୟ ଥିଲା । ରୁକ୍ଷ—ଉଦ୍ଧତତାର ପରିଚାୟକ ଥିଲା—ଆଜି ହଠାତ୍ ସର୍ବସମ୍ମତିକ୍ରମେ ତାହା ଉଦାରତା—ନିଷ୍କପଟତା—ସରଳତା ଓ ସମସ୍ତଙ୍କୁ ଆପଣାର ଭାବିବା ଭଳି ମହାନ ଗୁଣରେ ପରିଣତ ହୋଇଗଲା । ସର୍ବେଜମୀ ରାତାରାତି ଏକ ଅସାଧାରଣ—ମହୀୟସୀ—ନିସ୍ୱାର୍ଥପର ମହିଳାରେ ପରିଣତ ହୋଇଗଲେ । ହାୟ ! ଦିନକ ପାଇଁ ହେଲେ ସର୍ବେଜନୀ ତାଙ୍କର ଏଇ ଅପୂର୍ବ ସ୍ୱର୍ଗୀୟ, ଗୁଣ ଗୁଡ଼ିକର ବିଜ୍ଞାପନ ନିଜ କାନରେ ଶୁଣି ଆତ୍ମପ୍ରସାଦ ଲାଭ କରିଥାନ୍ତେ । ଅମ୍ବିକା ଦେବୀ ସେଦିନ କୋହଉଚ୍ଛଳ କଣ୍ଠରେ କହିଥିଲେ—ଶେଷବେଳେ ମୁଁ ତା' ପାଖରେ ରହି ପାରିଲିନି । ଅନେକ କଥା ଅକୁହା ରହିଗଲା । ମୁଁ ଥିଲି ତା' ହୃଦୟର ଏକମାତ୍ର ନିକଟତମ ବ୍ୟକ୍ତି । ଏପରିକି ତା' ସ୍ୱାମୀଙ୍କ ପାଖରେ ସେ ଯାହା ପ୍ରକାଶ କରିପାରେ ନାହିଁ—ତା' ମୋ ପାଖରେ ପ୍ରକାଶ କରିଥାଏ । ଅନେକ ଅଭିଶୋଷ ରହିଗଲା । ତା'ଠାରୁ ମୁଁ ବୟସରେ ଦୁଇବର୍ଷ ବଡ଼ । ଅଥଚ

ମୁଁ ଥାଉ ଥାଉ ସେ ଚାଲିଗଲା । ଯଦି ତା' ବଦଳରେ ଭଗବାନ ମୋତେ ନେଇ ଯାଇଥାନ୍ତେ, କେତେ ଭଲ ହୋଇ ନ ଥାନ୍ତା ? ଅନ୍ତ ଥରେ ଯଦି ତା'ର ଅଶରୀରୀ ଆତ୍ମା ସହିତ ଭେଟ ହୁଅନ୍ତା—ମାତ୍ର ଥରେ ତା'ର ଅନ୍ତିମ ଇଚ୍ଛା ମୁଁ ତା'ଠାରୁ ଶୁଣି ନଅନ୍ତି—ମହାପ୍ରସାଦ ବାଢ଼ି ଦିଅନ୍ତି ତା' ଆଗରେ—ଆଉ ଥରଟିଏ, କେବଳ ଥରଟିଏ ମୁଁ ତାକୁ ଆଲିଙ୍ଗନ କରି ନଅନ୍ତି··· । ଅନେକ ଆଶା ତା'ର ଅପୂର୍ଣ୍ଣ ରଖି ସେ ଚାଲିଯାଇଛି—ଅସମୟରେ ସବୁକାମ ଅସମାପ୍ତ ରଖି । ଆଉ ଅଧିକ କହି ପାରି ନ ଥିଲେ ଅମ୍ବିକା ଦେବୀ—ପଣତରେ ମୁହଁ ଢାଙ୍କି ଛୋଟ ପିଲାଙ୍କ ଭଳି କାନ୍ଦିଥିଲେ ବସି । ଆଉ ଗୁମୁରି ଗୁମୁରି କହୁଥିଲେ—ସରୋଜିନୀକୁ ଛାଡ଼ି ମୁଁ ରହିପାରିବି ନାହିଁ ।

ଘଟଣାର ଆଦ୍ୟ କଥନ ଏତିକି । ତା'ପରଠାରୁ ପ୍ରତ୍ୟହ ରାତିରେ ସେଇ ଦାରୁଣ ସ୍ୱପ୍ନ । ସ୍ୱପ୍ନ ତ ନୁହେଁ, ସତେ ବା ଏକ ଚଳଚ୍ଚିତ୍ର, ଯାହାର ପ୍ରତ୍ୟେକଟି ଦୃଶ୍ୟ ଓ ସଂଳାପ ଅମ୍ବିକା ଦେବୀଙ୍କର ସ୍ମୃତିପଟରେ ବିସ୍ଫୁରଣ ହେଉଛି । ଠିକ୍ ମଧ୍ୟ ରାତ୍ରୀରେ ସ୍ୱପ୍ନରେ ଆସୁଛି ସରୋଜିନୀ—ସେଇ ଉଦ୍ଦାମ ହସ—ଉଚ୍ଛଳ ସଂଳାପ । ହସି ହସି କହୁଛି—"ମୋ ପାଇଁ ଖୁବ୍ ଦୁଃଖ କରୁଛୁ ? ମୋତେ ମହାପ୍ରସାଦ ଖୋଇଲୁ ନାହିଁ ତ ? ମୋତେ ଛାଡ଼ି ରହି ପାରିବୁ ନାହିଁ ? ସତେ କ'ଣ ସେଇ ସୁନ୍ଦର ମାୟାଭରା ପୃଥିବୀକୁ ତୁଚ୍ଛ କରି ଦେଇ ତୁ ଆସିବୁ ମୋ ପାଖକୁ ? ଏହା କ'ଣ ତୋ ଅନ୍ତରର କଥା ? ମୁଁ ବି ତୋତେ ଝୁରୁଛି ଅମ୍ବିକା । ମୋ ପିଲାମାନଙ୍କର ତରୁଣ ବୟସ । ହୃଦୟର ଦୁଃଖଭାରକୁ ଲଘୁ କରିବାର ଅନେକ ସ୍ପୃହା ତାଙ୍କ ସାମ୍ନାରେ ପାଠ—ଗୀତ—ନାଚ—ସାଙ୍ଗସାଥି ଅଉ ଏଇ ସୁନ୍ଦର ପୃଥିବୀରେ ସୁନ୍ଦର ବୟସର ବର୍ଣ୍ଣ ବିଭବ । ଆଉ ମୋର ସ୍ୱାମୀ ! ସବୁଦିନେ ସେ ସଂସାର ପ୍ରତି ଉଦାସୀନ । କର୍ତ୍ତବ୍ୟ ହିଁ ତାଙ୍କ ଜୀବନର ଉତ୍ସ । ମୁଁ ଥିବା ନ ଥିବା ଭିତରେ ବିଶେଷ କିଛି ଫରକ ନାହିଁ ତାଙ୍କ ପାଖରେ । ବାସ୍ତବତାର ଉତ୍ଥାନ ପତନକୁ ସେ ନଥିର ନିର୍ବିକାର ଭାବେ ଗ୍ରହଣ କରି ନଅନ୍ତି—ମହାଯୋଗୀଟି ପରି । କିନ୍ତୁ ତୁ ? ଆମର ବନ୍ଧୁତ୍ୱର ସ୍ମୃତି ! ସେଇ ସ୍ମୃତି ପଛରେ ଘୂରୁଛି ମୋର ଆତ୍ମା ! ତୁ ଯାହା ଶୋକ ସନ୍ତାପରେ କହିଗଲୁ ତା' କ'ଣ ତୋର ଅନ୍ତରର କଥା ? ଏକାନ୍ତ ସତ୍ୟ !"—ତା'ପରେ ସରୋଜିନୀର ବିଭତ୍ସ ତାଚ୍ଛଲ୍ୟଭରା ଅଟ୍ଟହାସ୍ୟ···ଆଉ ଅମ୍ବିକାଙ୍କର ନିଦ୍ରାଭଙ୍ଗ । ତା'ପରେ ତାଙ୍କର ସାରା ଶରୀର ଘର୍ମାକ୍ତ । ହୃଦସ୍ପନ୍ଦନ ଦ୍ରୁତତର—କଣ୍ଠନଳୀ ଶୁଷ୍କ । ଧୀରେ ଧୀରେ ଅମ୍ବିକା ରାତିକୁ ଭୟ କରିବାକୁ ଆରମ୍ଭ କରିଛନ୍ତି—ନିଦ୍ରାକୁ ଶତ୍ରୁ ମନେ କରିଛନ୍ତି । କାରଣ ନିଦ୍ରାରେ ହିଁ ଆସୁଛି ସରୋଜିନୀ—ଏଇ ହେଲା ଅମ୍ବିକା ଦେବୀଙ୍କର କେସ୍ ହିଷ୍ଟ୍ରି ।

ଡା : ମହାନ୍ତିଙ୍କ ଅଭିଜ୍ଞ ଚିନ୍ତାଧାରାରେ ଅମ୍ବିକାଙ୍କ ମନର ମାନଚିତ୍ର ସ୍ପଷ୍ଟ ହୋଇ ଉଠୁଛି । ସେ ଗମ୍ଭୀର କଣ୍ଠରେ କହିଲେ—ସ୍ୱପ୍ନ ହୋଉଛି ଆମ ଅବଚେତନ ମନର ଆଶା ଆକାଂକ୍ଷା ଚିନ୍ତାର ଛଦ୍ମ ପରିପ୍ରକାଶ । ବିବେକ ପ୍ରହରୀର ଶାସନ ନିଦ୍ରାରେ ଶିଥିଳ ହୋଇ ପଡ଼ିଲେ ଆମ ମନର ଅନେକ ଅସାମାଜିକ ଅଶୁଭ, ଅନାବଶ୍ୟକ ଉଦ୍ଭଟ ଚିନ୍ତା ସବୁ ବାହାରି ଆସନ୍ତି ବିଭିନ୍ନ ରୂପରେ । ଆପଣ ସରୋଜିନୀ ସହ ମିଳିତ ହେବା ପାଇଁ ଅହରହ କାମନା କରୁଛନ୍ତି । ଅଥଚ ଏ ସୁନ୍ଦର ପୃଥିବୀର ମୋହରେ ପଡ଼ି କିଛି ଗୋଟାଏ କରି ପାରୁ ନାହାନ୍ତି । ତେଣୁ ଆପଣଙ୍କ ଚିନ୍ତାଧାରା ହିଁ ସ୍ୱପ୍ନରେ ରୂପାୟିତ ହେଉଛି । ସରୋଜିନୀଙ୍କ ପ୍ରେତ ପକୃତରେ ଆସୁନାହିଁ । ମଣିଷର ଅସମ୍ଭବ ଆଶା ସ୍ୱପ୍ନ ମାଧ୍ୟମରେ ପୂରଣ ହେଉଥିବାରୁ ମଣିଷ ମନର ସ୍ୱରସାମ୍ୟ ରକ୍ଷା ହୋଇପାରୁଛି । ଏଥିରେ ବିଚଳିତ ହେବାର କିଛି ନାହିଁ ।

ଅମ୍ବିକା ଦେବୀଙ୍କର ମୁଖ ଏକବାର ବିବର୍ଣ୍ଣ । ସେ ଜାଣନ୍ତି ମନ ସମୀକ୍ଷକଙ୍କ ସାମ୍ନାରେ ମନଟାକୁ ଉନ୍ମୋଚନ କରି ନ ଦେଲେ—ରୋଗର ଉପଶମ ହୁଏ ନାହିଁ । ସେ କହିଲେ ଡା: ମହାନ୍ତି, ଅପଣ ମଣିଷର ଗଭୀର ମନସ୍ତତ୍ତ୍ୱ ସହ ପରିଚିତ । ଅପଣ କ'ଣ ଜାଣନ୍ତି ନାହିଁ ଯେ ସଭାସମିତିରେ ଯାହା ଓଜସ୍ୱିନୀ ଭାଷାରେ କୁହାଯାଏ, ତାହା ମନର କଥା ନୁହେଁ ବୋଲି ? ଏ କଥା ମଧ୍ୟ ଆପଣ ଜାଣନ୍ତି, ମଣିଷ ଯାହା ପ୍ରକାଶ କରେ ତାହା ଅନ୍ତରର ଭାଷା ବହନ କରି ନ ଥାଏ ବୋଲି ? ମୁଁ ସରୋଜିନୀକୁ ଭଲ ପାଉଥିଲି, ତା' ସହ ଥିଲା ମୋର ପ୍ରଗାଢ଼ ବନ୍ଧୁତା । ମାତ୍ର ତା'ର ମୃତ୍ୟୁରେ ମୁଁ ତା' ପାଇଁ ନୁହେଁ ମୋ ନିଜ ପାଇଁ ବିବ୍ରତ—ବ୍ୟସ୍ତ । ତା'ର ମୃତ୍ୟୁ ମୋ ନିଜ ଦିନାନ୍ତର ଯେମିତି ଏକ ରେଖାବନୀ । ତା'ର ଶବାଧାରରେ ମୁଁ ମୋ ନିଜକୁ ହିଁ ଦେଖୁଥିଲି । ତା'ର ଶୋକ ସଭାରେ ମୁଁ ନିଜ ପାଇଁ ଅଶ୍ରୁ ଢାଳୁଥିଲି । ନିଜ ପାଇଁ ଆଶଙ୍କାରେ ଥରୁଥିଲି । ଆମ ଭିତରୁ ସେ ଚାଲିଗଲା । କିଏ ଜାଣେ ଆମ ପାଳି ମଧ୍ୟ କେତେବେଳେ ପଡ଼ି ନ ଯିବ ? ଏମିତି ଏକ ଚିନ୍ତାରେ ମୁଁ ବିବ୍ରତ । ବିଶ୍ୱାସ କରନ୍ତୁ, ସରୋଜିନୀ ପରିବର୍ତ୍ତେ ମୁଁ ମରିବାକୁ ଚାହିଁବା ଏକ ମୂହୂର୍ତ୍ତିକର ଭାବାବେଗର କଥା । ତା' ଅଶରୀରୀ ଆତ୍ମା ସହ ମୁଁ ଆଲାପ କରିବାକୁ ଚାହେଁ ନାହିଁ । ଏବେ ସରୋଜିନୀ କୌଣସି ଅଲୌକିକ ଶକ୍ତି ବଳରେ ସତକୁ ସତ ଯଦି ଜୀବନ୍ୟାସ ପାଇ ମୋ ସମ୍ମୁଖରେ ସଶରୀରରେ ଉପାସ୍ତ ହୁଏ, ତେବେ ମୁଁ ପଛକୁ ଅରେ ନ ଚାହିଁ ଧାଇଁବାକୁ ଆରମ୍ଭ କରିବି ! ତାକୁ ସ୍ୱପ୍ନରେ ମଧ୍ୟ ଦେଖିବାକୁ ମୁଁ ଭୟ କରେ । ତଥାପି ପ୍ରତି ରାତିରେ ସେଇ ଅଶୁଭ ସ୍ୱପ୍ନ ମୁଁ ଦେଖୁଛି ।

ମୁଁ କ'ଣ ଏପରି ମିଥ୍ୟା କହୁଛି ବୋଲି ସର୍ବେଶ୍ଵରୀର ପ୍ରେତ ମୋତେ ଦେଖା ଦେଇ ପ୍ରତିଶୋଧ ନେବାକୁ ଚାହୁଁଛି ? ଅମ୍ବିକା ଦେବୀ କ୍ଲାନ୍ତ ଭଙ୍ଗୀରେ ସୋଫାରେ ଡାଳି ଆଖି ବୁଜି ଦେଲେ । ଡାକ୍ତର ମହାନ୍ତି ପ୍ରତ୍ୟୟ ଭରା ଗଳାରେ କହିଲେ— ସେ ଶୋକ ସଭାରେ କେବଳ ଆପଣ ନୁହନ୍ତି, ସମସ୍ତେ ନିଜ ପାଇଁ କାନ୍ଦିଛନ୍ତି—ଉଦ୍‌ବେଗ ପ୍ରକାଶ କରି ଅଛନ୍ତି ମିଥ୍ୟା କହି ସାମାଜିକତାର ନିୟମ ରକ୍ଷା କରିଛନ୍ତି, ସୁସ୍ଥ ଜୀବନ ଯାତ୍ରା ପାଇଁ ଏହା ଆବଶ୍ୟକ । ମଣିଷ ସବୁ ସତ୍ୟ ପ୍ରକାଶ କରିଦେଲେ ଏ ସୃଷ୍ଟି ପ୍ରଳୟ ହୁଅନ୍ତା ! ଆପଣ ମିଥ୍ୟା କହିଛନ୍ତି ବୋଲି ସର୍ବେଶ୍ଵରୀ ଆପଣଙ୍କୁ ପ୍ରେତ ହୋଇ ଦେଖା ଦେବା ଟା ଆପଣଙ୍କର ଭ୍ରମ ଧାରଣା । କାରଣ ଆପଣ ତ ଏକା ମିଥ୍ୟାବାଦିନୀ ନୁହନ୍ତି—ପରଦାରାସକ୍ତ ପୁରୁଷଟି ନିଜ ସ୍ତ୍ରୀ ପ୍ରତି ଭଲ ପାଇବାର ଉର୍ଣ୍ଣିମ ପିଟେ । ମଦ୍ୟପ ସୁରାପାନର କୁପରିଣାମ ବିଷୟରେ ସାରଗର୍ଭକ ଭାଷଣ ଦିଏ । ଅସାଧୁ ସାଧୁତାର ନାମାବଳୀ ପକାଇ ବୁଲେ । ସାମାଜିକତାର ଏ ମୁଖାଟି ତ ସମସ୍ତେ ପିନ୍ଧନ୍ତି ।

ଅମ୍ବିକା ପ୍ରଶ୍ନ କଲେ—କିନ୍ତୁ ମୁଁ ଯଦି ତାକୁ ଦେଖିବାକୁ ଚାହୁଁ ନାହିଁ ମୋର ଅବଚେତନ ମନ ତଳେ ତା' ସହି ମିଳିତ ହେବାର କାମନା ଯଦି ନାହିଁ, ଏଭଳି ସ୍ଵପ୍ନର ତାତ୍ପର୍ଯ୍ୟ ବା କ'ଣ ? ଡାକ୍ତର ଗମ୍ଭୀର କଣ୍ଠରେ କହିଲେ—ତେବେ ଆପଣ ଆଦୌ ସ୍ଵପ୍ନ ହିଁ ଦେଖୁନାହାନ୍ତି । ଅମ୍ବିକା ଦେବୀ ଏକବାର ଫିକା ପଡ଼ିଗଲେ । ମୁହଁଟା ଏକବାର ରକ୍ତଶୂନ୍ୟ, କମ୍ପିତ କଣ୍ଠରେ ସେ କହିଲେ "ଏହା ଯଦି ସ୍ଵପ୍ନ ନୁହେଁ ତେବେ କ'ଣ ପ୍ରକୃତରେ ସର୍ବେଶ୍ଵରୀର ପ୍ରେତ ହିଁ ପ୍ରତି ରାତିରେ ମୋତେ ଦେଖା ଦେଉଛି ? ମୋର ପିଛା କରୁଛି ?"—ନା ତା' ମଧ୍ୟ ନୁହେଁ । ଡାକ୍ତରଙ୍କର ଗମ୍ଭୀର ସ୍ଵର । ଆପଣ କ'ଣ କହିବାକୁ ଚାହାନ୍ତି ମୋର ସ୍ଵପ୍ନ ମିଥ୍ୟା ? ସର୍ବେଶ୍ଵରୀର ପ୍ରେତ ମିଥ୍ୟା ? ଅଥଚ ମୁଁ ପ୍ରତି ରାତିରେ ତାକୁ ଦେଖୁଛି । ଭୟରେ ମୁଁ ଜଡ଼ ପାଲଟି ଯାଉଛି । ମନେ ହେଉଛି ସର୍ବେଶ୍ଵରୀ ମୋତେ ନ ନେଇ ଛାଡ଼ିବ ନାହିଁ । ତେବେ—ତେବେ ମୁଁ କ'ଣ ପାଗଳୀ ହୋଇ ଯାଇଛି ? ଏସବୁ କ'ଣ ମୋ ପାଗଳାମୀର ଉଦ୍ଭଟ କାହାଣୀ ? ଅମ୍ବିକା ଦେବୀଙ୍କ କଣ୍ଠରେ ଉତ୍ତେଜନାର ସ୍ପର୍ଶ ।

—ନାଁ— ଆପଣ ସମ୍ପୂର୍ଣ୍ଣ ସ୍ଵାଭାବିକ—ସୁସ୍ଥ—ସାମାଜିକ ବ୍ୟକ୍ତି । ଆପଣଙ୍କ ବ୍ୟକ୍ତିତ୍ଵରେ କୌଣସି ବିଲକ୍ଷଣ ନାହିଁ, ସ୍ଥିର ହେବା ଭଙ୍ଗୀରେ ଡାକ୍ତର କହିଲେ ।

ଅମ୍ବିକା ଅସହାୟ ଭଙ୍ଗୀରେ ବସି ରହିଲେ ନିଶ୍ଚୁପ ହୋଇ ।

ଡାକ୍ତର ମହାନ୍ତି ଦୁଇ କପ୍ ଗରମ କଫିର ବରାଦ କରି ବନ୍ଧୁତ୍ୱପୂର୍ଣ୍ଣ ଗଳାରେ କହିଲେ—ଅମ୍ବିକା ଦେବୀ—ଆପଣ ରାତିରେ ଆଦୌ ଶୋଉ ନାହାନ୍ତି । ସରୋଜିନୀର ମୃତ୍ୟୁ ପରଠୁ ନିଜ ପାଇଁ ଗୋଟାଏ ଅହେତୁକ ଉଦ୍‌ବେଗରେ ଆପଣଙ୍କର ନିଦ୍ରା ହେଉନାହିଁ । ଆପଣ କେବଳ ଆଖି ବୁଜି ପଡ଼ିରହି ନାନା କଳ୍ପନା କରି ବିବ୍ରତ ହେଉଛନ୍ତି । ସେଇ କଳ୍ପନା ହିଁ ଆପଣଙ୍କୁ ସ୍ୱପ୍ନ ପ୍ରାୟ ମନେ ହେଉଛି । ଆପଣ କିଛିଦିନ ଖୁବ୍ ବୁଲାବୁଲି କରନ୍ତୁ । ଅନ୍ତତଃ କିଛି ଦିନ ଧରି ଜୀବନର ଆଲୋକିତ ପାର୍ଶ୍ୱଟିକୁ ଅନୁଭବ କରନ୍ତୁ ଏବଂ ରାତିରେ ଶୋଇବା ପୂର୍ବରୁ ଗୋଟାଏ ଗ୍ଲାସ ଗରମ କ୍ଷୀର ସହିତ ନିଦ ଔଷଧର ବଟିକାଟିଏ ଖାଇ ଶୋଇ ଯାଆନ୍ତୁ । ଦେଖିବେ କିଛି ଦିନ ପରେ ଆପଣଙ୍କର ସ୍ୱାଭାବିକତା ଫେରି ଆସିବ । ନିଦ୍ରା ହିଁ ଏହାର ଏକମାତ୍ର ମହୌଷଧି ।

ଅମ୍ବିକା ଦେବୀ କିଛି ଦିନ ଡାକ୍ତରଙ୍କ ପରାମର୍ଶରେ ରହିଲା ପରେ ତାଙ୍କର ଧାରଣା ହେଲା ଡା. ମହାନ୍ତି ତାଙ୍କ ରୋଗ ପାଇଁ ଠିକ୍ ଧାରାରେ ଚିକିତ୍ସାର ସୂତ୍ର ପାଉ ନାହାନ୍ତି । ଡା: ମହାନ୍ତିଙ୍କ ଉପରୁ ତାଙ୍କର ଭରସା ତୁଟି-ଗଲା । କାରଣ ସରୋଜିନୀର ପ୍ରେତ ତାଙ୍କୁ ଗ୍ରାସ କରୁଛି ଇଏ ଛାଡ଼ିଲା ନାହିଁ । ମଝିରେ ମଝିରେ ସରୋଜିନୀଙ୍କୁ ସ୍ୱପ୍ନ ଦେଖିବା ସଙ୍ଗେ ସଙ୍ଗେ ତାଙ୍କ ଅନ୍ତିମ ସମୟ ଯେ ନିକଟତର ହେଉଛି, ଏମିତି ଏକ ଧାରଣା ତାଙ୍କର ହେଲା । ଅମ୍ବିକା ଦେବୀଙ୍କର କ୍ରମାଗତ ଅନୁପସ୍ଥିତି ଫଳରେ ଡାକ୍ତର ମହାନ୍ତି ଦିନେ ଖବର ନେଇ ବୁଝିଲେ ଅମ୍ବିକା ଦେବୀ ଚିକିତ୍ସା ପାଇଁ ଅନ୍ୟତ୍ର ବୁଲି ଯାଇଛନ୍ତି ।

କିଛି ଦିନ ପରେ ଅମ୍ବିକା ଦେବୀ ଫେରି ଆସିଲେ, ସମ୍ପୂର୍ଣ୍ଣ ସୁସ୍ଥ ହୋଇ ନୂତନ ଉତ୍ସାହ, ଉଦ୍ଦୀପନାରେ ଭରପୂର ହୋଇ । ସତେ ବା ନିଦାଘରେ ବସନ୍ତର ଆଚମ୍ବିତ ଆଗମନ ହୋଇଛି ।

ଖବର ପାଇ ଡାକ୍ତର ମହାନ୍ତି ସେଦିନ ସନ୍ଧ୍ୟାବେଳେ ଅମ୍ବିକା ଦେବୀଙ୍କ ଘରେ ପହଞ୍ଚିଲେ । ସେ ସମ୍ପୂର୍ଣ୍ଣ ସୁସ୍ଥ ହୋଇ ଉଠିଛନ୍ତି ଶୁଣି ସେ ଆନନ୍ଦ ପ୍ରକାଶ କରିବା ସଙ୍ଗେ ସଙ୍ଗେ ସେଇ ଅଭିଜ୍ଞ ଡାକ୍ତରଙ୍କର ପରିଚୟ ଜିଜ୍ଞାସା କଲେ । ଅମ୍ବିକା ଦେବୀ ହସି ଉଠି କହିଲେ—ଡାକ୍ତରମାନେ ଏ ରୋଗ ଭଲ କରନ୍ତି ନାହିଁ ଡା: ମହାନ୍ତି । ଆପଣ କଥାଟାକୁ ଗୋପନ ରଖିଲେ, ମୁଁ ସମସ୍ତ କହିବି । ଦେଖନ୍ତୁ ଏଇ ଏକ ମାତ୍ର ଔଷଧ ହିଁ ମୋତେ ସୁସ୍ଥ କରି ଦେଇଛି । ହାତରେ କଳା ଫିତାର ବନ୍ଧା ହୋଇଥିବା ରୁପାର ତାବିଜଟିଏ ସେ ଦେଖାଇଲେ । ଆଉ ଦେଖାଇଲେ ତାଙ୍କ ଦାଣ୍ଡ କବାଟରେ ଗୋଟାଏ

ଲୁହାର ବଡ଼ କଣ୍ଟା ପିଟା ହୋଇଛୁ । କେଉଁ ଅନାମଧେୟ ଗ୍ରାମର ଏକ ତାନ୍ତ୍ରିକ ଅମ୍ବିକା ଦେବୀଙ୍କର ହାତ ଦେଖି ଭବିଷ୍ୟତ ବାଣୀ କରିଛୁ ଯେ ତାଙ୍କର ଆୟୁରେଖା ଅତ୍ୟନ୍ତ ଦୀର୍ଘ ଏବଂ ସରୋଜିନୀଙ୍କ ପ୍ରେତକୁ ନିର୍ବାସିତ କରିବା ପାଇଁ ଦେଇଛନ୍ତି ତାବିଜ ଓ ଘରର ଚାରିପଟେ ବାଡ଼ିଆ ହୋଇଛୁ ଗୁରିଟା ଲୁହା କଣ୍ଟା । ବାସ୍ ଏତିକରେ ସେ ସୁସ୍ଥ । ଡା: ମହାନ୍ତି କହିଲେ ମୁଁ ଆପଣଙ୍କୁ ପରିହାସ କରିବି ନାହିଁ ଅମ୍ବିକା ଦେବୀ । ଆପଣଙ୍କର ଔଷଧ ହେଉଛୁ ଆପଣଙ୍କର ମନର ବିଶ୍ୱାସ । ଆପଣ ଯେ ନିଶ୍ଚୟ ଦୀର୍ଘଜୀବୀ ହେବେ ଏବଂ ସରୋଜିନୀଙ୍କର ପ୍ରେତ ଯେ ନିର୍ବାସନ ଦଣ୍ଡ ପାଇଛୁ ଏହି ବିଶ୍ୱାସରେ ହିଁ ଆପଣ ସୁସ୍ଥ ହୋଇଛନ୍ତି । ବିଶ୍ୱାସର ତ ଅନ୍ୟ ନାମ ଜୀବନ, ସନ୍ଦେହ ଓ ଅବିଶ୍ୱାସର ଅନ୍ୟ ନାମ ମୃତ୍ୟୁ ।

ଡାକ୍ତର ମହାନ୍ତିଙ୍କୁ ବିଦାୟ ଜଣାଇବା ପୂର୍ବରୁ ଅମ୍ବିକା ଦେବୀ ଚୁପ୍ ଚୁପ୍ କରି ଅନୁରୋଧଭରା ଗଳାରେ କହିଲେ—କଥାଟା ଯେମିତି ପ୍ରଘଟ ନ ହୁଏ । ସରୋଜିନୀ ମୋର ଅନ୍ତରଙ୍ଗ ବାନ୍ଧବୀ । ତା' ପାଇଁ ଜୀବନ ଉତ୍ସର୍ଗ କରିଥାନ୍ତି ବୋଲି ଶୋକ ସଭାରେ ଘୋଷଣା କରିଥିଲି । ତାକୁ ଥରେ ଦେଖିବା ପାଇଁ କେତେ ବ୍ୟାକୁଳ ହୋଇ ଅଶ୍ରୁ ଝରାଇ ଥିଲି । ଅଥଚ ତାକୁ ସ୍ୱପ୍ନରେ ମଧ୍ୟ ନ ଦେଖିବା ପାଇଁ ମୁଁ ଯେ ଗୁଣିଆଠାରୁ ତାବିଜ ଆଣି ପିନ୍ଧିଛୁ, ଏ କଥା ସମସ୍ତେ ଜାଣିଲେ ମୁଁ କାହାକୁ ମୁହଁ ଦେଖାଇବି, କୁହନ୍ତୁ ତ ?

ଡା. ମହାନ୍ତି ହସି ହସି କହିଲେ—ଆପଣ ନିଜେ ହିଁ ଜଣେ ମନସ୍ତତ୍ତ୍ୱବିତ୍ । ସମାଜରେ ସମ୍ମାନର ସହ ବଞ୍ଚି ରହିବାର ଉପାୟ ଆପଣଙ୍କୁ ଜଣା । ତେଣୁ ଏ ଘଟଣାଟି ମୋ ପାଇଁ ଶିକ୍ଷଣୀୟ । ଅମ୍ବିକା ଦେବୀ ଆତ୍ମ-ପ୍ରସାଦର ହସ ହସୁ ହସୁ କହୁଣୀ ପର୍ଯ୍ୟନ୍ତ ଖସି ଆସିଥିବା ହାତର ତାବିଜଟାକୁ ଠିକ୍ କରି ନେଉଥିଲେ ।



# ଉପସର୍ଗ

**କାଳୀ ଚରଣ ଦାସ**

ଏମିତି ବର୍ଷଟାଏ ପୁଣି କମିତି ବିତିଗଲା, ନୀରବ, ଶୂନଶାନ୍ ବିନା ହଲଚଲରେ ! ପୁନଶ୍ଚ ଘଣ୍ଟା କଣ୍ଟାଟି ନିର୍ଦ୍ଦିଷ୍ଟ ଗତିପଥରେ ପରିକ୍ରମା କରି ଫେରି ଆସିଛି ତା'ର ପୂର୍ବ ଜାଗାକୁ; ଆରମ୍ଭ ବା ଶେଷ ଯାହା କୁହ !! ଦୋ' ମୁଣ୍ଡିଆ ସାପର ଲାଞ୍ଜ ମୁଣ୍ଡ କେଉଁଟା କ'ଣ, କିମିତି ବାରି ହେବ ! କଳ ମୋଡ଼ି ଦେଇ କିଏ ଯେପରି ନିରୂଜ ଜାଲ ବିଛେଇ ଚଉରାସ୍ତାରେ ବସି ରହିଛି । ସେଠି ମାଛି ପଡ଼ିଲେ ନିବଣ୍ଟେ । କିନ୍ତୁ ଘଣାପେଲା ବଳଦର କ'ଣ ଯାଏ ଆସେ ! ଚହ୍ଲା ମୁହଁକୁ ଘୂରି ଘୂରି ସେ ବିଶ୍ବବ୍ରହ୍ମାଣ୍ଡ ଘୂରୁଛି । ନିଶ୍ଚିନ୍ତ, ନିର୍ବିକାର । ଗ୍ରହ ନକ୍ଷତ୍ର ଛିଣ୍ଡି ପଡ଼ିଲେ ବି ସେ ପଳେଇବ ନାହିଁ । ସମୟର ଜାଲ ତା'ର ବା କ'ଣ କରିପାରେ ? ତା'ର ତ ବେଢ଼ପା ଭୁଡ଼ିଯିବାର ଭୟ ନାହିଁ ??

ବର୍ଷଟେ ହାତରୁ ପିଚିଗଲା ଭଳି ଲାଗୁଛି । ଖୁବ୍ ସନ୍ତର୍ପଣରେ ଯେପରି ଖସିଗଲା । ସ୍ବର ଶବ୍ଦ କିଛି କୁଆଡ଼େ ହେଲନାହିଁ । ଟେଲ ପଢ଼ୁଆର କାଠ·ଚେୟାର, ଘୋଡ଼ା, ହାତରେ ବସି ମଦଗୁଲ ଥିଲାବେଳେ ଉରୁଚଣ୍ଡି

ସମସ୍ତଙ୍କୁ ତଳ ଉପର, ଉଠ୍ ବସ୍‌କର ବୋକା ବନେଇ ବର୍ଷଟିଏ ହାତରେ ଧର ଯେପର ଲୁଚଗଲ ।

ବର୍ଷଟା କନ୍ଥ କୁଆଡ଼େ ଗଲ ଭଲ କାହିଁକ ଜଣା ପଡ଼ୁନ । ଅଥଚ ମୁଣ୍ଡଟା ବେଶ ଭାର ଭାର । ବର୍ଷଟା ମୁଣ୍ଡ ଉପରେ ଜବରଦସ୍ତି ଯେପର ଲଦ ହୋଇଯାଇଛ । କଳା ଘୁମର ବାଦଲ ଖଣ୍ଡେ ପଥର ବୋଝ ଭଲ ମାଡ଼ ମାଡ଼ ପଡ଼ୁଛ । ବୋଝ ଉପରେ ନଳତା ବଡ଼ା ଭଲ ନେସି ହୋଇ ଯାଉଛ, ତା' ଉପରକୁ, ତା' ଉପର ଥାକ, ଥାକ, ଖାଲ ବର୍ଷ ଅଉ ବର୍ଷ । ମାସରୁ ମାସ ବର୍ଷରୁ ବର୍ଷ । ପୁରୁଷାନୁକ୍ରମିକ ଠକାମି, ବାପର ପୁଅକୁ— ତା' ପୁଅର ତା' ପୁଅକୁ । ଦଣ୍ଡ ଲଣ୍ଡାର ମାଳାଗୁଡ଼ାକ ନାଗଫାଶ ଭଲ ଗଳାରେ ଝୁଲ ପଡ଼ୁଛ । ଫାଶୀ ଆଦେଶ ପାଇଥିବା ଅସାମୀ ଭଲ ମନରେ କୋଳୁଆ ଭୟ । ସେ ଭୟ ହଜିବାର, ହଜାଇବାର । ହଜ ଯାଉଥିବା ଗୋଟାକ ପରେ ଗୋଟାଏ ମାଇଲ ଖୁଣ୍ଟ । ବେଶ୍ ସମ୍ବେଦନଶୀଳ । ଗ୍ରାନ୍ଦ୍ରିଦ । ଅଥଚ ମୁଣ୍ଡପୋଡା ବଳଦର ସେଆଡ଼କୁ ଲକ୍ଷ୍ୟ ନାହିଁ । ଏକ ଲୟରେ ଚ଼ୁଲଛ ତ ଚ଼ୁଲଛ । ଚକ ଅମଡ଼ା ମାଡ଼ଗଲେ ବ ବାଦ ପ୍ରତବାଦ ଜଣାଇବାକୁ କେହ ନାହିଁ । ସବୁ ଚ଼ୁଲଛ ଯନ୍ତ୍ର ଭଲ, ତା' ପଛକୁ ତା' ପଛ । ସେ ସ୍ରୋତ ଅସରନ୍ତ । ଆଗକୁ ଲମ୍ବି ଯାଇଛ, ଯିମିତ ସରିବାର ନୁହେଁ । ବର୍ଷର ଧକ୍‌କାରେ ଖୁଣ୍ଟ ପରେ ଖୁଣ୍ଟ ଉପୁଡ଼ ଯାଉଛ ବନା ବାଧାବିଘ୍ନରେ, ନଶବ୍ଦରେ ।

ମନରେ ଦମ୍ଭ ଧର ସମସ୍ତଙ୍କୁ ଏଥର ବାଟ ଓଗାଳିବାକୁ ହେବ । କଛ ନ ହେଲେ ତା' ଦୋ' ମୁହାଁ ନୀତର, ପକ୍ଷପାତତାର ପ୍ରତବାଦ, ଭେଳିକ ଲଗେଇବାର ରହସ୍ୟ ଉଦ୍‌ଘାଟନ କରିବାକୁ ହେବ । କ୍ଷମତା ହ୍ରାସ କରିଯିବାର ଉଦ୍ୟମ କରିଯିବ । ହେଲେ ଛପ୍ପିକ୍ଷୁ ଶରୀରଟା ଏବେ ଅଉ ଅକ୍ତିଆରରେ ରହୁନ । ପଘା ଛିଣ୍ଡା ହେଲ ଭଲ ଅବୋଲକରା ହୋଇ ଯାଉଛ । ତା' ପାଇଁ ସବୁ ଅସାର; ସବୁ ଫିକା ଫିକା । ଦେହରୁ ମାଂସ ଖସି ଆସୁଛ, ଭରା ନଈ ଅତଡ଼ା ଖାଇଲା ଭଲ । ସବୁ ଭଲ ଢେଲ ତା'ର ଭିତରେ, ଗୋଳ ପାଣିରେ, ପଟୁମାଟିରେ ଦନ ଗଣୁଛନ୍ତ । ଓଦା କାନ୍ଥରୁ ମାଟି ଧସି ହୋଇଗଲଣି କାହିଁ କେତେବେଳୁ । ଏମିତ ଏମିତ ମେଘନାଦ ପାଚେରି ଦଦରା ହୋଇ ଆସିଲଣି । ଗଡ଼ଖାଇରେ ଧସାମାଟିର ସେତୁବନ୍ଧ ଶତ୍ରୁ ପ୍ରବେଶ ପାଇଁ ଶୁଭ ସୂଚନା ଦେଇଛ । ମନକୁ ଆଉ କ'ଣ ସମ୍ଭାଳ ହେବ । ତା'ର ବା ଯୁ' କେତେ ? ନଈ ସୁଅରେ କାଠି କୁଟା ପକାଇ କିଏ ବା ଗତରୋଧ କରିବ । ଫୁର୍‌ସତ ବା କାହାର ଅଛ; ସମସ୍ତେ ତ ନୂଆ ନୂଆ ତାମସାରେ ବ୍ୟସ୍ତ ।

ଓଦା କାନ୍ଥରେ କଣ୍ଟା ପିଟିବା ଖୁବ୍ ସହଜ । ଏବେ କଏ ଗୋଟାଏ ନୂଆ କ୍ୟାଲେଣ୍ଡରଟାଏ ଟାଙ୍ଗି ଦେଇଛି । ନ୍ୟୁଣବଦ୍ଧ ମନୀଷୀଙ୍କ ଭଳି ସେ ଧନ ମାପୁଛି ଝୁଲି ଝୁଲି, ଝୁଲି ଝୁଲି । ଏ ଭିତରେ ତା' ଦେହରୁ ଦ'ଟନ ପରସ୍ତ ଚମଡ଼ା ଉତୁରି ଗଲଣି । କି ବିଭତ୍ସ ସତେ ! ଆଉ କେତେ ପରସ୍ତ ପରେ ସେ ବି ଅଦରକାଣ୍ଡ ହୋଇଯିବ । ପୁଣି ସମସ୍ତେ ନୂଆଁ ଖୋଜିବେ । ପୁରୁଣାରୁ ନୂଆ, ନୂଆରୁ ପୁରୁଣା । ପୋରୁଦ୍ଦାଁ ସୂତାର ତାକତ ବା କେତେ ? ସେ ଅକ୍ଟାମନକୁ କାହୁଁ ବାନ୍ଧି ରଖିବ ! ମନୁଆ ବଳଦଟା କିନ୍ତୁ ତା' ବାଟରେ ଘୂରୁଛି । ସୂର୍ଯ୍ୟଘଡ଼ିର ସମସ୍ତ ତାକୁ ସଚେତନ କରି ପାରୁନାହିଁ । ସମସ୍ତ କାଳର ମଝି ଘାଟର ବୁଢ଼ିଆଣୀ କିନ୍ତୁ ଲାଲ ସରସର । ହେଲେ ବଳଦର କ'ଣ ପରବାଏ ଅଛି ? ବେକର ଘୁପସଣ୍ଡି ଠେଲ ପାଦତଳର ମାଟିକୁ ଦେଖିଲେ ସିନା ବୁଝନ୍ତା !

ମୁଁ ପିଙ୍ଗଳା ବେଶ୍ୟାର ଏକ ନୂତନ ସଂସ୍କରଣ ଭଳି କ୍ୟାଲେଣ୍ଡରଟି-ଆଡ଼େ ଚାହିଁଛି । ନିର୍ଜନ ସେଲ୍ ଭିତରେ ମୁଁ ଓ ମୋ ପାର୍ଶ୍ୱବର୍ତ୍ତୀ ଅସହ୍ୟ ବେଦନାର ରାଶି ରାଶି କାରୁଣ୍ୟ । ମୋ ସମ୍ମୁଖରେ ଅପରନ୍ତୁ ବୃତ୍ତ ଚକ୍ର । କ୍ୟାଲେଣ୍ଡର ଓ ମୋ ଭିତରେ ବ୍ୟବଧାନ ସଙ୍କୁଚିତ ହୋଇ ଅସୁଛି । ମୋ ଭିତରେ ହେଣ୍ଡାଳ ଯିମିତି ମନୁଆ ବଳଦର ଓ ମୋ ଅଖିରେ ବୁଢ଼ୀଅଣି ଜାଲର ପରଦା । ମୁଁ କ୍ୟାଲେଣ୍ଡରକୁ ଟିକି ଟିକି କରି ଚିରି ଦେବାକୁ ଚାହୁଁଛି; କିନ୍ତୁ ମୁଁ ବସିବା ଜାଗାରୁ ଉଠି ପାରୁନି । ମୋ ଶରୀରର ସମସ୍ତ ଶକ୍ତି ଯେପରି ଲୋପ ପାଇ ଆସୁଛି । ମୁଁ କାଠଘୋଡ଼ାର ଦୋଳରେ ବସି ଖାଲି ତଳ ଉପର, ଉପର ତଳ ହେଉଛି । ମୋ ଅବୟବ ଭିନ୍ନ ଭିନ୍ନ ଭାବେ କ୍ରମାଗତ କକ୍ଷଚ୍ୟୁତ ହୋଇ ସେ କ୍ୟାଲେଣ୍ଡର ଭିତରେ ଲୀନ ହୋଇ ଯାଉଛନ୍ତି । ମୁଁ ଅତ୍ୟନ୍ତ ଭୀତତ୍ରସ୍ତ ହୋଇ ଆଖିବୁଜି ନିଜ ଭିତରେ କ'ଣ ଗୋଟାଏ ଅଣ୍ଡାଳି ହେଉଛି ।

ସବୁ ହଜିବା ଜିନିଷ ପାଇଁ ମୋର ଅବଶୋଷ ଏତେଟା ନ ଥିଲା, ଯେତେଟା ଉପୁଥିଲା ନିଜକୁ ହଜାଇ ଦେବାର ଆଶୁ ସମ୍ଭାବନା । ଅଷ୍ଟାଙ୍ଗ କ୍ୟାଲେଣ୍ଡର ଭିତରେ ଚଉଦ ବ୍ରହ୍ମାଣ୍ଡର ଜୀବଜଗତ । ଅଥଚ ମୁଁ କିଛି ଦେଖିପାରୁ ନ ଥିଲି, ଲାଲ ରଙ୍ଗର ଗୁଡ଼ାଏ ଅନାବନା ଚକ୍ର ବ୍ୟତୀତ । ଦେଖି ପାରୁଥିଲି ଆଉ କିଛି ଘନ ଆସ୍ତରଣ, ଯେଉଁଠି ଥଳକୂଳ ନ ପାଇ ସମସ୍ତେ ବୁଡ଼ି ଯାଉଥିଲେ । ତା'ରି ଭିତରୁ ଛିଟିକି ପଡ଼ୁଥିଲା ଗୁଡ଼ାଏ ଲାଲ ତରଳ ପଦାର୍ଥ । ମୁଁ ନିଜକୁ ବଞ୍ଚାଇବା ପାଇଁ ଚେଷ୍ଟା କରୁଥିଲି । କିନ୍ତୁ ଏଯାଏଁ ଦେଖି ପାରି ନ ଥିଲି ମୋ ବୃଦ୍ଧାଙ୍ଗୁଳିରେ ନେସି ହୋଇଥିବା ମେଞ୍ଚାଏ ଲାଲ ରଙ୍ଗକୁ । ମୋ

# ପ୍ରାର୍ଥନାର ସ୍ୱର

## ଜ୍ୟୋତ୍ସ୍ନା ରାଉତରାୟ

● ବାହାରେ ଜ୍ୟୋତ୍ସ୍ନା ପୁଲକିତ ରାତି । ସ୍ୱପ୍ନଭରା । କିଏ ଜାଣେ ଏଇ ନିର୍ଜନ ପ୍ରହରରେ ? ମନା କର ତାଙ୍କୁ । ମୁଁ ଆଜି ପ୍ରତୀକ୍ଷାମାଣା ବିଳାସିନୀ । ମୂର୍ଚ୍ଛିତ ଆକାଶରେ ଚନ୍ଦ୍ରର ମୁକୁରକୁ ବୁଝି ସୁଝି ମୋର ମୁହୂର୍ତ୍ତ କଟୁଛି । ମୁଁ ଆଜି କୁସୁମିତା ଅପରାଜିତା ପ୍ରେମିକା । ଅଳକ୍ତ ରଞ୍ଜିତ ମଞ୍ଜୀର ବେଷ୍ଟିତ ମୋର ଦୁଇ ଚରଣ ପ୍ରିୟ ମିଳନ ସଙ୍ଗୀତରେ ମୂର୍ଚ୍ଛନାମୟ । କ୍ଷୀଣ କଟି ତଳେ ବର୍ତ୍ତୁଳ ଜଘନ । ନୀଳ କାଞ୍ଚୁଲି ବେଷ୍ଟିତ ପୀନସ୍ତନ ବକ୍ଷୋଦ୍ଧ ବକ୍ଷର ଲୀଳାୟିତ ଭଙ୍ଗିମା, ଅପ୍ଲୁତ ନେତ୍ରରେ ପ୍ରତୀକ୍ଷାର ସ୍ପୃହା, ଦୁଇଗାର ରଞ୍ଜିତ ଓଷ୍ଠାଧର ଏକ ଅବ୍ୟକ୍ତ ପ୍ରଶ୍ନରେ କମ୍ପିତ—ସେ ଆସିବେ ତ ! ସତ ସେ ଆସିବେ ତ !!



●● ଆଜି ତମକୁ ଖୁବ୍ ପାଖରୁ ନିରୀକ୍ଷଣ କରୁଛୁ । ଶ୍ୱେତ ଅଥଚ ତୀକ୍ଷ୍ଣ କଥାକୁହା ଆଖି ଦୁଇଟି । ସହଜ ସଙ୍କୋଚରେ ଦୃଷ୍ଟି ମିଳାଇ ପାରୁନାହିଁ । ବାରମ୍ବାର ନତ ହୋଇ ଯାଉଛି । ମନେ ମନେ ମିନତି କରୁଛି,

"ଏମିତ ମୁଗ୍ଧ ଚାହାଣିରେ ମତେ ଅପହାସ୍ଯ କରନାହିଁ । ଦୁର୍ବଳ କର ଦଅ ନାହିଁ । ପୁନାଶ୍ଚ ପରା, ଦୃଷ୍ଟି ଫେରାଇ ନିଅ । ମୋର ସମଗ୍ର ସତ୍ତାରେ କାମନାର ପ୍ରାଦ ଧ୍ୱନି । ମୋର ଶରୀର ଆଚ୍ଛନ୍ନ । ମୋ ପ୍ରାଣ ଚମକୁ । ଦୃଷ୍ଟି ଫେରାଇ ନିଅ ।" କ'ଣ ଥିଲା ସେ ଚାହାଣିର ଅର୍ଥ ? କ'ଣ ଥିଲା ସେ ପ୍ରଶାନ୍ତ ମୁଖର ଭାଷା ? କାହା ପାଇଁ ମୋର ସକଳ ପ୍ରଶାନ୍ତ ଲୋପ ପାଇ ଯାଇଛୁ । ମୋର ସମସ୍ତ ସମ୍ଭ୍ରମ ସ୍ଖଳିତ ହୋଇ ଯାଇଛୁ ।

● ଅହା, ଏଇ ତ ପୁଣି କିଏ କାନ୍ଦେ । ଦୟା କରି ବାରଣ କର ତାକୁ. ଏଇ ଅଶରୀରୀ ଜ୍ୟୋତ୍ସ୍ନାର ଭୁବନ ମୋହିନୀ ରୂପ ଓ ସୌନ୍ଦର୍ଯ୍ୟ ଭିତରେ ମୋର ଆତ୍ମା ତୃଷ୍ଣାବଦ୍ଧ । ମୁଁ ଯେ କ୍ରନ୍ଦନ ସହିପାରୁ ନାହିଁ । ଏକ ଆନନ୍ଦର ଅନୁଭବ ସାରା ଅଙ୍ଗରେ ମୋର । ସେ ଆସିବେ ! ଏଇ ନିର୍ଜନ ଶୀତଳ ରାତ୍ରିରେ ସେ ମୋର ଶରୀର ସ୍ପର୍ଶ କରିବେ । ମୋ ହୃଦୟର ଅମାପ ତୃଷ୍ଣାରେ ସେ ଗଭୀର ବର୍ଷାଜଳ ହୋଇ ଝରିଯିବେ । ଏଇ ସଫେଦ ଜ୍ୟୋତ୍ସ୍ନାକୁ ମିଥ୍ୟାକରି ସ୍ୱପ୍ନେଟି ଆଖିର ଦୀପ ଜଳିବ କେବଳ । ଶେଷ ଶୀତର ନିଶାବ୍ଦରେ ବସନ୍ତର ବାସ୍ନା ଭାସି ଆସିବ । ଆବେଗ ଆଉ ମମତାର ପୀଡ଼ନରେ ଆଚ୍ଛନ୍ନ ହୋଇ ମୁଁ ଓଠ ରଖିବି ସେଇ କ୍ଷୁଦ୍ର ଅଥଚ ତୀକ୍ଷ୍ଣ ଆଖି ଦୁଇଟି ଉପରେ । ଏକ ଅନିର୍ବଚନୀୟ ପୂର୍ଣ୍ଣତା ଭିତରେ ଦେହ ଓ ଆତ୍ମା, ମାଂସ ଓ ପ୍ରାଣ / ରୂପ ଓ ଅରୂପ ସବୁ ଏକାକାର ହୋଇଯିବ । ଦେହ ଦେହାତୀତ ହୋଇ ବିଦେହରେ ପରିଣତ ହୋଇଯିବ । ଏଇ ବିନିଦ୍ର ଅଳସ ବସନ୍ତ ରାତି / ଏଇ ଅସ୍ଥିରତା, ଏହି ସାନ୍ତ୍ୱନାହୀନ ବିଳାପର ଶେଷ ହେବ । ଶୁଣ, ସେ ଆସିବେ ତ !

●● ତମେ ମୋର କିଏ ? ତମେ ମୋର ସର୍ବସ୍ୱ । କ'ଣ ଯାଏ ଆସେ କିଏ ଜାଣୁ କି ନ ଜାଣୁ ତମେ ମୋର କ'ଣ ! ତମେ ମୋର କୋଣାର୍କ । ତମେ ମୋର ବାରବାଟୀ । ତମେ ମୋର ଜ୍ଞାନ କୋଷ । ତମେ ମୋର ଭାଗ-ବତ । ତମରି ଆଖି ହିଁ ମୋର ଏକମାତ୍ର ପଢ଼ା ବହି । ତମେ ମୋର ସର୍ବସ୍ୱ । ତମରି କାରଣରୁ ମୁଁ ଏକ ନୂତନତ୍ୱ ଐଶ୍ୱର୍ଯ୍ୟରେ ପରିପୂର୍ଣ୍ଣ । ତମେ ମୋର ସତ୍ୟ, ତମେ ମୋର ପୁଣ୍ୟ । ତମେ ମୋର ସ୍ୱପ୍ନ । ତମେ ମୋର ଜୀବନ ତମ ସହିତ ମୋର ଯୁଗ ଯୁଗର ସମ୍ପର୍କ । ତମେ ମୋ ପାଖେ ଚିର ବର୍ତ୍ତମାନ । ଚିର ସବୁଜ । ତମେ ମୋର ଅତି ପ୍ରିୟ ଛବି । ମୋର ସ୍ମୃତି, ମୋର ଉଚ୍ଛ୍ୱାସ, ମୋର ବିଶ୍ୱାସ, ତମ ସହିତ ମୋର ହୃଦୟର ସମ୍ପର୍କ । ଟେଲି-ପାଥିକ୍ ଯୋଗସୂତ୍ର । ତମ ସହିତ ସବୁ ଯୁଗରେ, ସବୁ କାଳରେ ମୁଁ ମୂହୂର୍ତ୍ତ ବଞ୍ଚିଛି । ଅପରାହ୍ନର ଶାଗୁଆ କ୍ଷେତ, ଚ୍ଛୁଇଁଥିବା ଆମ୍ବ ତୋଟା, ଅପରାହ୍ନର

ଅଙ୍କାବଙ୍କା ଧୂଳିଆ ରାସ୍ତାରେ ଝାଳନାଳ ହୋଇ, ଫ୍ରକ୍‌ରେ ମୁହଁ ପୋଛୁ ପୋଛୁ ତମର କବାଟର ହାତ ଧରି ଦୌଡ଼ୁଛୁ, ତମେ କିନ୍ତୁ ଧରା ଦେଉନ । ଥକ୍କା ହୋଇ ଅଟକି ଯାଉଛୁ । ଗୋଟିଏ ନିର୍ଜନ ନୀରବ ମୁହୂର୍ତ୍ତ ପାଇଁ । ଯେଉଁଠି ଥିବ ଗୋଟିଏ ରୂପ, ଗୋଟିଏ କଣ୍ଠସ୍ୱର, ଗୋଟିଏ ସ୍ପର୍ଶ । ଅଣ୍ଡାଭଙ୍ଗା ଖଜୁରି ଗଛର ଗୁଳିରେ , କାଣତଣ୍ଡୀ ବଣର ଧାରେ ଧାରେ ତମର ନାଗେଶ୍ୱରି ଆଳାପ ପଛରେ ଛୁଟିଛୁ । ସେ ଆକାଂକ୍ଷିତ ମୁହୂର୍ତ୍ତ ଆସି ନାହିଁ । ଏକ ଫୁଲଭରି ଶିରିଷ ଗଛ ପାଖରେ ତମ ପାଇଁ ଅପେକ୍ଷା କରିଛୁ । ତମେ ହସି ହସି ହାତ ଠାରି ଦୂରରେ ଡାକଛ । ଏକୁଟିଆ ଶାଳଗଛକୁ, ଫୁଲଭରି ଶିରିଷକୁ ପଛରେ ପକାଇ ପୁଣି ଛୁଟିଛୁ ତମରି ଆଶାରେ । ତମେ ପୁଣି ଧରା ଦେଉନ । କି ନିଦାରୁଣ ତମେ ! ବଂଶୀରେ ନାଗେଶ୍ୱରି ତୋଳି, କବାଟରେ ପ୍ରାଣ ସଙ୍ଗୀତ ସୃଷ୍ଟି କରି, ମଧୁ ମାଳତୀରେ ବାମ୍ନା ଭରି, ନୀଳ ପାହାଡ଼ର ଛବି ହୋଇ ତମେ ମତେ କେବଳ ରାତି ରାତି ଉଜାଗର ରଖିଛ । ସବୁଦିନ ଖରାବେଳେ, ନିଶୂନ୍ ରାତିରେ ମନ୍ତ୍ରମୁଗ୍ଧା ଅଳସୀ ପରି ମୁଁ କେବଳ ତମକୁ ଦେଖେ, ତମ କବାଟର ପ୍ରତି ଛନ୍ଦରେ ତମରି ମୁହଁ, ତମରି ଆଖି, ତମରି ଓଠ, ବ୍ୟାକୁଳରେ ଛୁଇଁବାକୁ ହାତ ବଢ଼ାଏ । ନିଷ୍ଠୁର ତମେ ଦୂରେଇ ଯାଅ । ଧରା ଦିଅନା । ଦୂରରୁ ତମରି ହସନ୍ତ ମୁହଁ ଦେଖୁ ଦେଖୁ ମର୍ମାନ୍ତକ ଯନ୍ତ୍ରଣାରେ ମୁଁ ଆର୍ତ୍ତନାଦ କରିଉଠେ । ତଥାପି ତମକୁ ଦୋଷ ଦେଇ ପାରେନା । ମୁଁ ଜାଣେ ତମେ ମତେ ଛୁଅଁ । ମତେ ଆଶା ଦିଅ । ତମ ସହିତ ଯେ ମୋର ବହୁ ଯୁଗର ବନ୍ଧନ । ଗୋଟିଏ ଜନ୍ମରେ ସବୁ ସାରି ଦେବା କ'ଣ ଭଲ !

● ଆହା କିଏ କାନ୍ଦେ ! ଏଇ ପ୍ରସ୍ଫୁଟିତ ମୂର୍ଚ୍ଛିତ ଜ୍ୟୋତ୍ସ୍ନାର ଗଭୀର ଅନ୍ତଃସ୍ଥଳ ମଥିତ କରି, ବିଦୀର୍ଣ୍ଣ କରି କିଏ ସେହି ଅଶରୀରୀ ଆକୁଳ ହୁଏ ! ମୋର ସବୁଜ କାମନାର ପ୍ରମତ୍ତ ଆଲୋଡ଼ନ ଭିତରେ ଏଇ ବାରମ୍ବାର ଛନ୍ଦ ପତନ କାହିଁକି । ଇଏତ ଚକୋରର ବିଳାପ ନୁହେଁ । ତେବେ ! ମୁଁ ଯେ ଅଧୀର ମୁଁ ଯେ ବଧୁର ! ମୋ ମନ ଭିତରେ ସୁଖର ଆଶାର ଭିଡ଼ । ଅସଂଖ୍ୟ କାମନାର ଉଦ୍ଦାମ କୋଳାହଳ ଭିତରେ ମୋର ଆକାଶ ଆଚ୍ଛନ୍ନ, ସର୍ବାନ୍ତ । କେତେ ଅଳସ ମନ୍ଥର ଦିନ, କେତେ ସ୍ତବ୍ଧ ରାତିର ଦୁର୍ଲଭ ଅବକାଶକୁ ଆଲୋଡ଼ିତ, ପୀଡ଼ିତ କରି ଏଇ ଜ୍ୟୋତ୍ସ୍ନାସ୍ନିତ ରାତି ଆସିଛୁ । ଅଭିଳାଷର ରୁପ୍ତା ମୂର୍ତ୍ତି ସବୁ ଉଚ୍ଛୃଙ୍ଖଳ ହୋଇ ଉଠିଲେଣି । ଶୂନ୍ୟ ଗର୍ଭ ମନ୍ତ୍ରୋଚ୍ଚାରଣ ଭିତରେ ମୋର ଅସ୍ତିତ୍ୱ ବିକଳ ହେଲଣି । କୁହ, ତାଙ୍କର ଏତେ ବିଳମ୍ବ କାହିଁକି ? ଅଳ୍ପ ବୟସର ରାତ ଆଉ ଅଳ୍ପ କ୍ଷଣ ପରେ ପୂର୍ଣ୍ଣ ଯୌବନା, ତା'ପରେ ପ୍ରୌଢ଼ା ହୋଇଯିବ । କଉଣସି ପୃଥିବୀ, ଯୁବତୀ ପଛରେ ବୁଢ଼ା

ହୋଇଯିବ । ତା' ପୂର୍ବରୁ ମୋର ସାରା ଜୀବନର ଆବେଗ ସଞ୍ଚିତ ଅର୍ଘ୍ୟ ମୁଁ ତାଙ୍କରି ପାଦ ତଳେ ଅଜାଡ଼ି ଦେବାକୁ ଚାହେଁ । ଏ ଅର୍ଘ୍ୟ ଗ୍ରହଣ କରି ସେ ମତେ ନିଃଶେଷ କରିଦେବେ ତାଙ୍କରି ଅଧର ସୁଧା ସ୍ପର୍ଶରେ । ମୁଁ ଏକ ସୁଖୀ ମୃତ୍ୟୁ ବରଣ କରିବାର ସୁଯୋଗ ପାଇବି । କିନ୍ତୁ, ସେ କ'ଣ ଆସିବେ ନାହିଁ ?

●● ଅନେକ ଦୀର୍ଘ ଅଲୌକିକତା ଭିତରେ ଆଜି ତା' ସହିତ ପରିପୂର୍ଣ୍ଣ ଲୌକିକ ପରିଚୟ । ମୃଦୁ ମୃଦୁ, ଚହ୍ଲା ଚହ୍ଲା । ତମର ତୀକ୍ଷ୍ଣ ଆଖିର ଚାହାଣି ଆଉ ତା'ରି ଭିତରେ ଜଡ଼ସଡ଼ ମୋର୍ ଅସ୍ତିତ୍ୱ । ଫ୍ରକ୍‌ର ଧୂଳି ଧୂସରିତ ମୁହୂର୍ତ୍ତ ନୁହଁ, ଶାଢ଼ୀର ଅଞ୍ଚଳ ପାଦରେ ଛନ୍ଦି ଯାଇଛି । ଗୀତ ଆଠ ବର୍ଷ କମ୍ବା ଆହୁରି କିଛି ବେଶି ସମୟର ସୂର୍ଯ୍ୟାଲୋକ ଓ ଝେଲ୍‌ପାଥର ଅବସାନ । ତମର ପ୍ରାୟ ସାମ୍ନାରେ ମୁଁ । ତମର ନିଶ୍ୱାସ ଦେହରେ ବାଜୁଛି । ତମ ଦେହର ବାସ୍ନା ଭିତରେ ମୋର ସତ୍ତା ଆବେଗ ମଥିତ ହୋଇ ଯାଇଛି । ନ ଛୁଇଁ, ନ ଦେଖି ମଧ୍ୟ ଅନୁଭବ କରିଛି ତମ ଉପସ୍ଥିତିର ଉତ୍ତାପ । ଚାରିପଟେ ଅନେକ ଗୁଡ଼ିଏ ଦୃଷ୍ଟିର ଶାସନ । ସଂଯମୀ ହୋଇ ଯାଇଛି ସମସ୍ତ ଆବେଗ । ଉନ୍ମାଦନାରେ, ଶିଥିଳତାର ଭଟ୍ଟା ପଡ଼ିଛି । ଏସବୁ ସତ୍ତ୍ୱେ ବି ମୁଁ ଜାଣେ ଏହା ପାପ ନୁହେଁ, ଏହା ପାରିଜାତ ପରି ପବିତ୍ର ଓ ରମଣୀୟ । ଫୁଲର ଗନ୍ଧ ଯଦି ପାଖୁଡ଼ାର ଶାସନ ନ ମାନି ପବନରେ ମିଶି ଯିବାକୁ ଚାହେ, ନଦୀର ଚଳଚଞ୍ଚଳ ଢେଉ ଯଦି ସଙ୍କେତ ଦିଏ ସମୁଦ୍ରର ବକ୍ଷରେ ମିଶିଯିବା ପାଇଁ, ପ୍ରଥମ ସୂର୍ଯ୍ୟର କିରଣ ଆଶାରେ ଯଦି ପଦ୍ମକଳି ଧୀରେ ଅବଗୁଣ୍ଠନ ଖୋଲିଦିଏ ତେବେ କ'ଣ ତାହା ପ୍ରକୃତ ବିରୋଧୀ ହୁଏ ? ଏ ମୋର ଜୀବନର ଆବେଗ, ଦୁର୍ବଳତା ନୁହଁ । ଏହା ସତ୍ୟ, ଏହା ଚିରନ୍ତନ । ଏହା କେବଳ ପ୍ରାଣ ସହିତ ପ୍ରାଣର ସମ୍ବନ୍ଧ । ଏହା ମିଥ୍ୟା ନୁହେ । ତମେ ଏକ ଚିରନ୍ତନ ନର । ମୁଁ ଏକ ଚିରକାଳୀନ ପ୍ରେମିକା । ସୃଷ୍ଟିର ପ୍ରଥମରୁ ବର୍ତ୍ତମାନ ପର୍ଯ୍ୟନ୍ତ ଯାବତୀୟ ପ୍ରବାହିତ ଦ୍ରୁତ୍ୟସ୍ତ ଉପାଖ୍ୟାନ ସହିତ ତମେ ଓ ମୁଁ ପରିଚିତ । ପ୍ରେମର ସ୍ରୋତରେ ଅବଗାହନ କରି ଆମେ ଧନ୍ୟ । ଶୋକ ଭଲି ଆମର ଦିନ । ଅଶ୍ରୁ ଭଳି ଆମର ରାତି । ସ୍ୱର୍ଣ୍ଣ କମଳ ପରି ଆମର ଜୀବନ; କିନ୍ତୁ ଚେଇଁ ଉଠିଛି ଏଇ ବଧିର ଯୌବନ । ଅସମାହିତ ତା'ର ସମସ୍ୟା । ହୃଦୟର ଆକର୍ଷଣ ଗାଢ଼ ହେଉଛି । ହୃଦୟର ଆଦିମ ସତ୍ୟ ରୂପ ପାଇବା ପାଇଁ ବ୍ୟାକୁଳ ହେଉଛି ରାତିର ଏଇ ଜ୍ୟୋତ୍ସ୍ନା ବିଧୌତ ପରିବେଶରେ । ବ୍ୟାକୁଳ ହେଉଛି ସମସ୍ତ ସତ୍ତା । ନୀଳ କାଞ୍ଚନୀ ହସ୍ତୁଳା ହୋଇ ଯାଉଛି କ୍ଳାନ୍ତିରେ । ଆଖିର କଜ୍ଜ୍ୱଳ ପ୍ରତୀକ୍ଷାର ଶରରେ ନିଶ୍ଚିହ୍ନ ହେବାକୁ ବସିଲାଣି । ମଞ୍ଜୀର ବେଷ୍ଟିତ ଦୁଇ ଚରଣରେ ଅସମ୍ଭବ ବ୍ୟଥା । ଆଖିର ନିଦ ଅପସରି ଯାଉଛି । ଚନ୍ଦ୍ର ଦିଗ୍‌ବଳୟମୁଖୀ ।

କିଶୋରୀ ପୃଥିବୀର ବୟସ ବଢ଼ି ବଢ଼ି ଯାଉଛି । ସାଥୀହୀନ ତୃଣଶଯ୍ୟା । ବୃକ୍ଷ ଶାଖାରେ ନିଦ୍ରାହୀନ ପକ୍ଷୀ ଦମ୍ପତିଙ୍କର ମୁଗ୍ଧ କଳରବ । କୁହ, ତମର ଏତେ ବିଳମ୍ବ କାହିଁକି ?

● ଆଃ, କିଏ କାନ୍ଦେ ! ଦୟାକରି କେହିଜଣେ ହୋଇ ମନା କର ତାକୁ । ସେ କ'ଣ କ୍ରନ୍ଦନ ଭିତରେ ମୋ ସ୍ୱପ୍ନକୁ ଉପହାସ କରୁଛି । ? ମୁଁ ଯେ ତା'ର କ୍ରନ୍ଦନ ସହ୍ୟ କରି ପାରୁନାହିଁ । ଏ କ'ଣ ତେବେ ସେଇ କୁଙ୍କୁମ୍ ରାତିରେ ଉଦାସୀ ହରିଣୀର କ୍ରନ୍ଦନ ? କିଶୋରୀ ରାତି ବର୍ତ୍ତମାନ ପ୍ରୌଢ଼ା । ବିଲୟ-ମୁଖୀ ଚନ୍ଦ୍ରର ମ୍ଲାନ କରୁଣ ଜ୍ୟୋତ୍ସ୍ନା ରେଖା ଭିତରେ କେବଳ ଶୂନ୍ୟତା, ଯନ୍ତ୍ରଣା, ଅନ୍ଧାର । ଶଯ୍ୟା କଣ୍ଟକିତ । ସାଥୀ ନାହିଁ । ସାଥୀ ଆସିବ ନାହିଁ । କିଏ ଯେମିତି କରୁଣ କ୍ରନ୍ଦନ ଭିତରେ କହି ଯାଉଛି ଏଇ ଧ୍ରୁବ ସତ୍ୟ କଥାଟିକୁ । ହଁ, ସେଇ ଉଦାସୀ ହରିଣୀର ଭାଷା ଇଏ । ତେବେ କ'ଣ ପୁଣି ଥରେ ଏ ଜନ୍ମ ପାଇଁ ଅତୃପ୍ତ ରହିଗଲା ଆକାଂକ୍ଷା । ଆଖିରେ ଅଶ୍ରୁ । ଓଠରେ ପ୍ରହାରର ଭାର । ମାୟା କଜ୍ଜ୍ୱଳ ଅଶ୍ରୁ ହୋଇ ଦୁଇ ଗଣ୍ଡରେ ପ୍ରବାହିତ । ବିଦାୟ ବନ୍ଧୁ । ଏ ଜୀବନ ପାଇଁ ଏଇ ଶେଷ । ଆଉ କିଛି ନାହିଁ ବୁଝିବାର, ପାଇବାର । ରାତି ଶେଷ ହୋଇ ଆସୁଛି । ଅସ୍ତମୁଖୀ ଚନ୍ଦ୍ରର ମଳିନ ଜ୍ୟୋତ୍ସ୍ନା ଭିତରେ କେଉଁ ଶଶକର ଦୀର୍ଘଶ୍ୱାସ । ଯଦି ପୁଣି ଜନ୍ମ । ପୁଣି ଜୀବନ ଥାଏ, ତେବେ ପୁଣି ପ୍ରତୀକ୍ଷା । ପୁଣି ଅଭିସାରିକା । ପୁଣି ଆକାଂକ୍ଷା, ସ୍ୱପ୍ନ । ମଞ୍ଜୀରର ସଙ୍ଗୀତ । ନୀଳ କାଞ୍ଚୁଲିର ଆବେଗ । ଏ ଜନ୍ମ ପାଇଁ ବିନିଦ୍ର ରାତିର, ଜ୍ୱାଳାମୟ ମୁହୂର୍ତ୍ତର ସମାପ୍ତି । ବେଦନାର ନିଷ୍ଠୁର ଜ୍ୱଳନର ଅବସାନ । ପୁଣି ଥରେ ସେଇ କୁନ୍‌ମୁନ ଝିଅ । ସେଇ ନାଗେଶ୍ୱରର ଆଳାପ । ସେଇ ଘଞ୍ଚ ବାଉଁଶ ବଣ ଭିତରେ କଣ୍ଢି ଧରୁ ଧରୁ କାହାକୁ ପାଇବାର ତୃଷ୍ଣା । ଶାଢ଼ୀ ଅଞ୍ଚଳର ଜଡ଼ତା । ପୁଣି ଥରେ ପ୍ରତୀକ୍ଷା କାମନା ବାସନା ଆଉ ଅମୃତର ସନ୍ଧାନ ।

ଆହା, ସେଇ ଉଦାସୀ ହରିଣୀ ପୁଣି କାନ୍ଦୁଛି । ସେଇ ଉଦାସୀ ହରିଣୀ !! କେଡ଼େ ହୃଦୟ ବିଦାରକ ସେ ରାଗିଣୀ । ସେଇ ଉଦାସୀ ହରିଣୀ ପ୍ରିୟ ବିରହରେ ଗୁମୁରୁଛି । ମରିଯିବାକୁ ଇଚ୍ଛା ହେଉଛି । ମନା କରନାହିଁ ତାକୁ । କାନ୍ଦୁ । ମନଭରି କାନ୍ଦୁ । ଦୟାକରି ତାକୁ କାନ୍ଦିବାକୁ ଦିଅ । ଲୁହ ଭିତରେ ତ ପରା ସେଇ ଏକମାତ୍ର ପ୍ରାର୍ଥନା । ତା' ଆଖିର ଲୁହ ପୋଛ ନାହିଁ । ଏ ବେଦନାର ଭାଷା ଯେ ନାହିଁ ॥



# ଅଂଧୁଣୀ

## ରାମଚନ୍ଦ୍ର ବେହେରା

କେଳାର ଡମ୍ବରୁ ବାଦନ ଶୁଣିବି; କିନ୍ତୁ ସାପ ଦେଖିବି ନାହିଁ—ଏଇ କଥା ସ୍ଥିର କଲି ମନେ ମନେ । ମୋର ଡାହାଣ ପାଖରେ ମା' ଠିଆ ହୋଇଥାଏ, ବାଁ ପାଖରେ ଟିକି ନାନୀ । ଗାଁର ଆହୁରି କେତେ ଛୁଆପିଲା ରୁଣ୍ଡ ହୋଇଥାନ୍ତି ଆମ ଅଗଣାରେ । ମୁଁ ସେତେବେଳେ ଚତୁର୍ଥ ଶ୍ରେଣୀର ଛାତ୍ର ।

କଳା ମଚମଚ ଦେହ, ଝଆଁସା-ବାବୁରି କେଶ, ବିଶାଳ ନିଶ, ଲାଲ ଆଖି ଓ ଓଠ । ସାପୁଆ କେଳା ଜଣକ ଭୟଙ୍କର ଓ ସାଙ୍ଘାତିକ ଦେଖା ଯାଉଥିଲା । ଯେଉଁ ରାଜ୍ୟରେ ହିଂସ୍ରତା ଓ ବିଷ ଏକାନ୍ତ ଭାବେ ଦୈନନ୍ଦିନ ତଥା ବାସ୍ତବ ଘଟଣା, ସେ ସେଇ ରାଜ୍ୟର ଜଣେ ପରାକ୍ରମଶାଳୀ ଅଧିବାସୀ ବୋଲି ଜଣା ଯାଉଥାଏ । ଏଇଥିପାଇଁ ମୋ ମନରେ ତା' ପ୍ରତି ଥିଲା ଭୟ ମିଶ୍ରିତ ସମ୍ମାନ ।

ଅପରାହ୍ଣର ନୀରବ ଅଗଣାରେ ବାଜି ଉଠିଲା ଡମ୍ବରୁ । ଏହା ସହିତ ଶୁଣାଗଲା ଘାଘଡ଼ା ସ୍ୱରରେ କେଳାର ଗୀତ । ସାମନାରେ ଥୁଆ ହୋଇଥିବା

ପେଡ଼ିର ଢାଙ୍କୁଣିଟିକୁ ଉଠାଇବା ପାଇଁ ସେ ହାତ ବଢ଼ାଇଲା । ଟିକି ନାଗିର ଡାହାଣ ହାତକୁ ଖୁବ୍ ଜୋର୍‌ରେ ଧରି ମୁଁ ଆଖି ବନ୍ଦ କଲି ।

ବେଳେ ବେଳେ କେଳାର କଣ୍ଠସ୍ୱର ଉଦ୍‌ବେଗ ହୋଇ ପଡ଼ୁଥାଏ ଏବଂ ଡମ୍ବରୁ ଅସ୍ଥିର ହୋଇ ବାଜୁଥାଏ । ସମବେତ ହୋଇଥିବା ଟୁଆ-ପିଲାଙ୍କ ପାଟିରୁ ବାହାରି ଆସୁଥାଏ ଆଶଙ୍କା ଓ ବିସ୍ମୟର ଉଦ୍‌ଗାର । ଆଖି ବୁଜିଥିବାରୁ ମୋ ପାଇଁ ଅନ୍ଧକାର ବ୍ୟତୀତ ଆଉ କିଛି ସତ୍ୟ ନ ଥିଲା । ତଥାପି ମୁଁ ଅନୁମାନ କରି ପାରୁଥାଏ, କେଉଁ ମୁହୂର୍ତ୍ତରେ ସାପଟି କଭଳି ବ୍ୟବହାର ଦେଖାଉଥିବ । ସମ୍ଭବତଃ ଏଇକ୍ଷଣି ସାପଟି ଫଣା ଟେକି କେଳାକୁ ଦଂଶନ କରିବା ପାଇଁ ଚେଷ୍ଟା କରୁଛି; ନହୁଁବା ସେଇଟା ମାଡ଼ି ଆସୁଛି ଗୁରିପଟେ ଘେରି ରହି ମଜା ଦେଖୁଥିବା ଦର୍ଶକଙ୍କ ଆଡ଼କୁ ।

ଏଇ କାରଣରୁ ଆଖି ବୁଜି ନିର୍ଲିପ୍ତ ଭାବରେ ଠିଆ ହୋଇ ରହିବା ମୋ ପାଇଁ କଷ୍ଟକର ହୋଇ ପଡ଼ିଲା । ଏହା ପୂର୍ବରୁ ମୁଁ ଢେର୍ ଥର ସାପ ଖେଳ ଦେଖିଛି, ଡମ୍ବରୁ ବାଦନ ଶୁଣିଛି । ସ୍ୱଚ୍ଛ ଆଲୁଅରେ ନିଜକୁ ନିରାପଦ ବ୍ୟବ-ଧାନରେ ରଖି ଏଭଳି ମଜା ଦେଖିବା ଓ ଆଖି ବନ୍ଦ କରି, 'ହେଇ, ମୋ ଆଡ଼େ ସେଇଟା ମାଡ଼ି ଆସିଲା' ବୋଲି ଶଙ୍କିତ ହେବା ଭିତରେ ବହୁତ ଫରକ ଅଛି । ଯଦି ଜନ୍ମ ହେବାଦିନୁ ମୁଁ ଅନ୍ଧ ହୋଇଥାଆନ୍ତି, ତେବେ କଥାଟା ଭିନ୍ନ ପ୍ରକାର ହୋଇଥାଆନ୍ତା । ଯେତେ ବିଶଦ ବର୍ଣ୍ଣନା ଶୁଣିଥିଲେ ମଧ୍ୟ ସାପ ସମ୍ପର୍କରେ ମୋର ଧାରଣା ଅସ୍ପଷ୍ଟ ହୋଇଥାଆନ୍ତା ଏବଂ ତା' ପ୍ରତି ମୋର ଭୟ ଏତେଟା ତୀବ୍ର ହୋଇପାରି ନ ଥାନ୍ତା ।

ଟିକି ନାଗିର ହାତକୁ ଧରିଥିଲେ ବି, ମା' ପାଖରେ ଠିଆ ହୋଇଛି ବୋଲି ଭାବୁଥିଲେ ବି ମୋତେ ଜଣା ଯାଉଥାଏ, ସତେ ଯେମିତି ମୁଁ ନିଃସଙ୍ଗ ହୋଇ ହଜି ଯାଉଛି ଅନ୍ଧକାରର ଗୁମ୍ଫା ଭିତରେ । ମୋ ଗୁରିପଟେ ଅଗଣିତ ସାପୁଆ କେଳା; ଅଥଚ ସେମାନଙ୍କର ବ୍ୟାକୁଳ ଡମ୍ବରୁ ବାଦନ ଓ ଘାଘଡ଼ା ସ୍ୱରର ଗୀତ ସଙ୍ଗେ ସାପଗୁଡ଼ାକ ଅମାନିଆଁ ହୋଇ ଖେଦି ଆସୁଛନ୍ତି ମୋ ଆଡ଼କୁ ।

ଡାହାଣ ଆଖିପତା ଖୋଲି ମୁଁ କ୍ଷଣକ ପାଇଁ ପରିସ୍ଥିତିଟା ଦେଖି ନେଲି । ନିଜ ନିର୍ମିତ ଅନ୍ଧକାର ଭିତରେ ଯେଉଁ ସାପ ସହସ୍ର ସାପ ହୋଇ ବିଶୃଙ୍ଖଳ ହୋଇ ପଡ଼ୁଥିବାର ଆଶଙ୍କା କରିଥିଲି, ତାହା ଆସ୍ତେ ଆସ୍ତେ ବାଘ ପିଲିଟି ଭଳି ଅସ୍ତ ହୋଇ ଯାଉଥିଲା ପେଡ଼ି ଭିତରେ । ତାହାର ଲାଞ୍ଜକୁ ଧରି

କେଳାଟି ନିର୍ଦ୍ଦେଶ ଦେଉଥିଲି ଏବଂ ତା' ଉପରେ ନଜର ରଖିବା ନିୟନ୍ତ୍ରଣ କଥା ମନେଇ ଦେଉଥିଲି ।

କିନ୍ତୁ ନିଜ ଉପରେ ମୁଁ ରଖିଲି ପ୍ରତିଜ୍ଞା ଭଙ୍ଗ କରି ଦେବାରୁ । ଜାଣି ବୁଝି ଆଖି ଖୋଲି ନାହିଁ, କେମିତି କେଜାଣି ତାହା ମୁହୂର୍ତ୍ତିକ ପାଇଁ ଖୋଲିଗଲା ବୋଲି ଯେତେ ବୁଝେଇଲେ ମଧ୍ୟ ମନଟା ମାନିଲା ନାହିଁ । ଆଉ କେବେ ସାପୁଆ କେଳା ଆସିଲେ ନିଶ୍ଚୟ ଆଖି ବୁଜି ଏକ ନୂଆ ଅଭିଜ୍ଞତା ଅର୍ଜନ କରିବି ବୋଲି ଶପଥ ନେଲି ।

ସେଦିନ ସନ୍ଧ୍ୟାରେ ଲଣ୍ଠନ ସାମ୍ନାରେ ବସି ମୁଁ କେତେ କ'ଣ ଭାବୁଥାଏ । ସନ୍ତୁ ମା' ଖୁଡ଼ୀ କଥା ମୋତେ ବିଚଳିତ କରୁଥାଏ । ମୋର ଭାବନା ଗଣ୍ଡଗୋଳିଆ ହୋଇ ଯାଉଥାଏ ।

ଆମ ଘରଠାରୁ ଅଳ୍ପ ବ୍ୟବଧାନରେ ଯେଉଁ କୁଆଁଣିଆ ଚାଳ ଘରଟି ଅଛି, ତହିଁରେ ତିନିଜଣ ମଣିଷ ରହନ୍ତି—ସନ୍ତୁ, ନିରାକାର ଦାଦା ଆଉ ସନ୍ତୁ ମା' ଖୁଡ଼ୀ । ଘର ଚାରିପଟେ ହତାବାଡ଼ । ଭିତରେ ଦୁଇଟି ପ୍ରକାଣ୍ଡ ଆମ୍ବ ଗଛ । ହତା ବାଡ଼ର ଡାହାଣକୁ ଗୁହାଳ । ହଳେ ବଳଦଙ୍କୁ ସେଠାରେ ପାକୁଳି କରୁଥିବାର ଦେଖାଯାଏ । ତା' କଡ଼କୁ ଛୋଟିଆ କୁକୁଡ଼ା ଘର । ହତାର ବା ପଟକୁ ରୋଷେଇ ଘର ଏବଂ ତାକୁ ଲାଗି ଦୁଇ ବଖରା ଶୋଇବା ଘର । ଗୋବର ଲିପା ପିଣ୍ଡା । ହତା ଭିତରେ ପରିବା ବଗିଚା, ସଜନା, ଲେମ୍ବୁ ଓ ପିଜୁଳି ଗଛ ଇତ୍ୟାଦି ।

ସ୍କୁଲ ଛୁଟି ଦିନମାନଙ୍କରେ ଆମେ ଉଚ୍ଛୃଙ୍ଖଳ ହୋଇପଡ଼ୁ । ପୋଖରୀରେ ପହଁରିବା, ଡାଳ-ମାଙ୍କୁଡ଼ି ଖେଳିବା, ପାହାଡ଼ ଉପରକୁ ଚଢ଼ି ନାଚ ତାମସା କରିବା କମ୍ବା ନଈରେ ମାଛ ମାରିବାରେ ସମସ୍ତ କେଉଁବାଟେ କଟିଯାଏ । ଆମ୍ଭମାନଙ୍କର ଖେଳ ଯେତେବେଳେ ଜମି ଆସୁଥିବ, ଠିକ୍ ସେତିକବେଳେ ଅଶୁଭ ଲକ୍ଷଣ ଭଳି ପବନରେ ପହଁରି ଆସେ ଗୋଟାଏ ଡାକ—"ସନ୍ତୁ, ସନ୍ତୁରେ,···ଏ ସନ୍ତୁ··· ।"

ମାଛ ମାରିବାରେ, ଗଛ ଚଢ଼ିବାରେ ଧୁରନ୍ଧର ସନ୍ତୁ ବିରକ୍ତିର ସହିତ କହେ—'ମା' ଡାକିଲାଣି । ଯାଉଛି ।'

କହିବା ବାହୁଲ୍ୟ, ଆମେ ତାକୁ ମନା କରୁ ଏବଂ ଖୁଡ଼ୀ ଚିହାଇ ଚିହାଇ ସନ୍ତୁ ଉଦ୍ଦେଶ୍ୟରେ ଡାକ ଛାଡ଼େ ।

ଏବେ ମନେ ପଡ଼ୁଛି, ସେ ଡାକର ଚେହେରା । ତାହା ସତେ ଯେପରି ଖୁଡ଼ୀର ମର୍ମସ୍ଥଳରୁ ବାହାରି ଦଶ ଦିଗକୁ ବ୍ୟାପି ଯାଏ । ପାହାଡ଼ର ଶିଳା-ପ୍ରଶିଳା, ନଈ ପଠାର ବାଲି ଏବଂ ଗଛର ଡାଳ-ପତ୍ର ଉପରେ ସେ ଡାକ ଗୁଞ୍ଜରିତ ହୋଇ ଦଉଣ୍ଡି ପକାଏ ସନୁକୁ । ସେ ଡାକର ଶେଷ ପ୍ରତିଧ୍ୱନି ଦିଗ୍‌ବଳୟ ରେଖାରେ ମୁଣ୍ଡ ଛେଚି ମିଳାଇ ଯିବା ପୂର୍ବରୁ ପୁଣି ଶୁଭେ— 'କୁଆଡ଼େ ଗଲୁରେ ସନୁ··· ପଖାଳ ଗଣ୍ଡାଏ ପରି ନେଇ ଯିବୁ ବଲକୁ ! ବାପାର ହଂସା ଉଡ଼ି ଯିବଣି ଶୋଷରେ ।'

ଆମ ଭିତରୁ କେହି ଜଣେ ସନୁ ସ୍ୱରକୁ ଅବିକଳ ନକଲ କରି ଉତ୍ତର ଦିଏ—"ମୁଁ ଅବିକା ଯାଇ ପାରିବି ନାହିଁ । ସେ ଘରକୁ ଆସି ପଖାଳ ଖାଉ; ନ ହେଲେ ତୁ ଯା ବଲକୁ ।"

ଆମେ କିନ୍ତୁ ଅସ୍ପର୍ଯ୍ୟ ହେଉ ଏହି ଫିସାଦର ପରିଣାମ ଦେଖି । କାରଣ ପର ମୁହୂର୍ତ୍ତରେ ଜବାବ ଆସେ—'କିଏରେ ତୁ ଅଲପେଇସା ? ମୋ ସନୁକୁ ମୁଁ ଡାକୁଚି । ତୁ ମୋର ଗାଡ ନା ଚୂଲି ?'

ସୃଷ୍ଟିର କି ଅନୁପମ ବୈଚିତ୍ର୍ୟ ! ଆମ ଜାଣିବାରେ ସନୁ ଯେତେବେଳେ ଖୁଡ଼ୀ ପେଟରେ ଥିଲା ସେତେବେଳେ ଆମ ଗାଁରେ ବସନ୍ତ ବ୍ୟାପିଲା । ଠାକୁରାଣୀଙ୍କୁ ପଣା, ଖେଚିଗ, ବୋଦା, କୁକୁଡ଼ା—ଏଇମିତି କେତେ କ'ଣ ଭୋଗ ଦିଆଗଲା । ତାଙ୍କର କୋପ କମିଲା ନାହିଁ । ଦିନକୁ ଗୋଟାଏ, ଦୁଇଟା ଲେଖା ମୁର୍ଦ୍ଦାର ମଶାଣିକୁ ଗଲା । ବସନ୍ତ ପ୍ରକୋପ ପରେ ଗାଁର ଅଧାଅଧି ଲୋକ ଦର୍ପଣରେ ନିଜର ଚେହେରାକୁ ଅବିଶ୍ୱାସ କଲେ । ଆଉ କେତେକ ଲୋକଙ୍କ ପାଇଁ ସମଗ୍ର ବ୍ରହ୍ମାଣ୍ଡର ଫର୍ଚ୍ଚା ପର୍ଯ୍ୟବସିତ ହେଲା ଅନନ୍ତ ଅନ୍ଧକାରରେ । ସେମାନଙ୍କ ପାଇଁ ସୂର୍ଯ୍ୟୋଦୟ ଅର୍ଥହୀନ ହେଲା । ସେମାନେ ଦର୍ପଣ ଉପରୁ ଧୂଳି ଝାଡ଼ିବାର ଆବଶ୍ୟକତା ଅନୁଭବ କଲେ ନାହିଁ । ପରିଚିତ ରାସ୍ତାଘାଟ, ଚାଳିଆ ମଣିଷର ଗତି ସତେ ଯେମିତି ସେମାନଙ୍କ ଆଗରେ ଲୁଚକାଳି ଖେଳ ଆରମ୍ଭ କରିଦେଲା ନିର୍ମମ ଆନନ୍ଦରେ ।

ସନୁ ମା' ଖୁଡ଼ୀ ଅନ୍ଧୁଣୀ ହୋଇଗଲା । ସେତେବେଳେ ଆମେ ଅବଶ୍ୟ ଜନ୍ମ ହୋଇ ନ ଥିଲୁ; କିନ୍ତୁ ଆମେ ଶୁଣିଚୁ ଖୁଡ଼ୀ ଖୁବ କଷ୍ଟ ପାଇଲା ଏହାର କିଛି ଦିନ ପରେ । ସାରା ରାତିର ଯନ୍ତ୍ରଣା ପରେ ସକାଳେ ଜନ୍ମ ହେଲା ସନୁ । ସେ ଜନ୍ମ ହେଲା କ୍ଷଣି ଖୁଡ଼ୀର ପ୍ରଥମ ପ୍ରଶ୍ନ ହେଲା—'ଦେଖିଲ, ପିଲାଟିର ଆଖି ଭଲ ଅଛି କି ନାହିଁ । ତା' ଦେହରେ ବସନ୍ତ ଚିହ୍ନ ଅଛି କି ?'

ତା'କୁ କୁହାଗଲା ଯେ ପୁଅର ଆଖି ଭଲ ଅଛି ଏବଂ ଦେହରେ ବସନ୍ତ ଚିହ୍ନ ନାହିଁ । ଏତକ ଶୁଣିବା ପରେ ତା'ର ପ୍ରାଣହୀନ ଆଖିରୁ କୁଆଡ଼େ ଦୁଇ ଧାର ଲୁହ ଝରି ଆସିଥିଲା ଆବଡ଼ା ଖାବଡ଼ା ଖାଲ ଉପର ଦେଇ ।

ଆମେ ଏ କଥାକୁ ଆବାକାବା ହୋଇ ଶୁଣୁ । ତୁମେ ଯଦି କେବେ ଆମ ଗାଁକୁ ଆସନ୍ତ, ତେବେ ଖୁଡ଼ୀକୁ ଦେଖେଇ ଦିଅନ୍ତି । ଆଖି ପତା ମଝିରେ ଲେଞ୍ଚଡ଼ା ଲଗିଥିବା ଦୁଇଟି ଗହ୍ୱର । ଏହା ଭିତରକୁ ଆଲୁଅ ଯାଇ ପାରେନା; କିନ୍ତୁ ହୃଦୟକୁ ଉଦ୍‌ବେଳିତ ଓ ବିହ୍ୱଳ କରି ପାରୁଥିବା ଯନ୍ତ୍ରଣା କିମ୍ବା ଆନନ୍ଦର ବନ୍ୟା ଏଇ ନିଷ୍ପ୍ରାଣ ଗହ୍ୱର ବାଟେ ଉଚ୍ଛୁଳି ଆସିପାରେ—ଏ କଥା ଭାବି ଆଚମ୍ବିତ ହୋଉ । ଦେଖି ପାରିବାର ଶକ୍ତି ସହିତ ଲୁହ ଝରାଇବାର ବୋଧହୁଏ କୌଣସି ସମ୍ପର୍କ ନାହିଁ ।

ଖୁଡ଼ୀ ସବୁକୁ ଦେଖିନାହିଁ । ତା' ପାଟିରେ ସ୍ତନ ଗୁଞ୍ଜି କ୍ଷୀର ଖୁଆଇଛି; ତା' ଦେହର ଉତ୍ତାପ ଓ ସ୍ପନ୍ଦନର ଆଚରଣ ସେ ମନେଇରଖି ପାରିଛି । ତଥାପି ସବୁ ସ୍ୱରକୁ ଯେତେ ବିଶ୍ୱସ୍ତ ଭାବରେ ଅନୁକରଣ କଲେ ବି ସେ କେମିତି ବାରିପାରେ ଯେ, ସେ ସ୍ୱର ସବୁର ନୁହେଁ ? ପିଲା ଥିବାବେଳେ ଆମେ ଏ ପ୍ରଶ୍ନର ଉତ୍ତର ଆଦୌ ଜାଣିପାରୁ ନ ଥିଲୁ ।

ଆହୁରି ଆଶ୍ଚର୍ଯ୍ୟ ହେବା ପାଇଁ ଆମେ ମଲ୍ଲି ଫୁଲଟାଏ କିମ୍ବା ସିଲଟ ଖଣ୍ଡିଟାଏ କିମ୍ବା ଖେଳନା ବେଲୁନ୍‌ଟାଏ ତା' ହାତରେ ଧରାଇ ଦେଉଁ ଏବଂ ପଚାରୁ—'କହିଲୁ ଦେଖି, ତୋ ହାତରେ କ'ଣ ଅଛି ?' ସେ କହିଦିଏ ନିର୍ଭୁଲ ଭାବରେ ।

ମାତ୍ର ଆମେ ସେତିକିବେଳେ ଭୟଭୀତ ହେଉଁ, ଯେତେବେଳେ ସେ ଆମକୁ କହେ ଯେ ଯାତ୍ରା କେଳାର ସାପ ସେ ଦେଖି ପାରେନାହିଁ । ଯେଉଁ ବର୍ଷ ମକରଯାତ୍ରାବେଳେ ଆମ ଗାଁକୁ ଗୋଟିଏ ଗ୍ରେଟ ସର୍କସ ପାର୍ଟି ଆସି ପହଞ୍ଚିଲା, ସେ ବର୍ଷ ଆମ ଆନନ୍ଦ ଦେଖେ କିଏ ? କିନ୍ତୁ ପରେ ଆମେ ଶୁଣିଲୁ, ଖୁଡ଼ୀ ଥରୁଟିଏ ବି ସର୍କସ ଦେଖି ଯାଇନାହିଁ । କାହିଁକି ବୋଲି ପଚାରିବାରୁ କହିଲା—'ବାପ, ସର୍କସ ଯିବି କେଉଁଥି ପାଇଁ ? ସର୍କସ ଦେଖାଯାଏ ; ଶୁଣାଯାଏ ନାହିଁ । ମୋତେ କ'ଣ କିଛି ଦେଖାଯିବ ଯେ ଟିକଟ କାଟି ସେଠାକୁ ଯାଇଥାନ୍ତି ?'

ତେବେ ସେ ଯେଉଁ ସାପ ? ଏଡ଼େ ବଡ଼ କୁକୁର ? ଏ ସବୁକୁ ତା' ହେଲେ ଖୁଡ଼ୀ ଦେଖିନାହିଁ ! ଆମେ ଭାରି ଦୁଃଖିତ ହେଉଁ ।

ଏ ପୃଥିବୀରେ ଯଦି କେବଳ ମଲ୍ଲିଫୁଲ, ସିଲ୍‌ଟ ଖଡ଼ି ଓ ଷ୍ଟେକଲ୍ଲ ବେଲୁନ ଥା'ନ୍ତା, ତେବେ ହୁଏତ ଦୃଷ୍ଟିଶକ୍ତିର ଆବଶ୍ୟକତା ଏତେ ଅନୁଭବ କରଯାଉ ନ ଥାନ୍ତା। ଭୟର କୌଣସି କାରଣ ନ ଥିବା ଏକ ଜଙ୍ଗଲରେ ଦୁଇ ହାତରେ ଅଜସ୍ର ଫୁଲ ଧରି ଶୋଇପଡ଼ିବା ଭଳି ଜୀବନର ମୁହୂର୍ତ୍ତ ସତର୍କତାହୀନ ଓ ଆଶଙ୍କାହୀନ ହୋଇଥାନ୍ତା। ମାତ୍ର ଏଠାରେ ବାଘର ଭୟ ଅଛି, ସାପର ବିଷ ଅଛି, କୁକୁରର ତୀକ୍ଷ୍ଣ ଦାନ୍ତ ଅଛି, କଣ୍ଟା ଅଛି। କେମିତି ତେବେ ଖୁଡ଼ୀ ଚଲାପ୍ରଚଲା କରେ ଗାଁ ଭିତରେ ? କେମିତି ସେ ନିଜର ଅବସ୍ଥିତି ସମ୍ପର୍କରେ ଆଶ୍ୱସ୍ତ ହେଉଥିବ ?

ଏଇଭଳି ପ୍ରଶ୍ନ ମୋତେ ବିବ୍ରତ କରେ। ପ୍ରତ୍ୟକ୍ଷଜ୍ଞାନ ଅର୍ଜନ କରିବା ସକାଶେ ସେଦିନ ଅପରାହ୍ଣରେ ଶପଥ ନେଇଥିଲି – କେଳାର ଡମ୍ବରୁ ବାଦନ ଶୁଣିବି; କିନ୍ତୁ ସାପ ଦେଖିବି ନାହିଁ। ଅଥଚ କେମିତି କେଜାଣି, ସାବଧାନତା ଅବଲମ୍ବନ କରିବାର ପ୍ରବୃତ୍ତି ଯୋଗୁଁ ହେଉ କି ଅନ୍ୟ କେଉଁ କାରଣରୁ ହେଉ ମୁହୂର୍ତ୍ତିକ ପାଇଁ ମୋର ଆଖି ଖୋଲି ଯାଉଥିଲା। ସନ୍ଧ୍ୟାରେ ଲଣ୍ଠନ ସାମନାରେ ବସି ଭାବୁଥିଲି—କେଜାଣି, ଖୁଡ଼ୀ ହୁଏତ ଏମିତି ମଝିରେ ମଝିରେ ଆଖି ଖୋଲି ପକାଉଥିବ। ମାତ୍ର ସହସ୍ର କାକୁସ୍ଥ ଚେଷ୍ଟା ସତ୍ତ୍ୱେ ସେ ଯେ ଆଦୌ ଦେଖି ପାରିବ ନାହିଁ—ଏଇ ଅପ୍ରୀତିକର ବାସ୍ତବତା ସହିତ ମୋ ର ସେଦିନର ଜ୍ଞାନ ଆଦୌ ସାଲିସ୍ କରି ପାରୁ ନ ଥିଲା।

ବାଁ ହାତରେ ଧରିଥାଏ ବ୍ୟାଗ୍, ଡାହାଣ ହାତରେ ଟର୍ଚ୍ଚଲାଇଟ। ରାତି ସେତେବେଳକୁ ଆଠଟା ପାଖାପାଖି। ଆଉ ପନ୍ଦର ମିନିଟ୍‌ର ବାଟ। ସାଇକେଲ ଯଦି ଖରାପ ହୋଇ ନ ଥା'ନ୍ତା, ତେବେ କେତେବେଳୁ ଘରେ ପହଞ୍ଚି ସାରିଥାନ୍ତି। ରାସ୍ତା କଡ଼ରେ ଥିବା ଗୋଟିଏ ପାନ ଦୋକାନର ଦରଦୀ ମାଲିକ ମାର୍ଫତରେ ସେଇଟାକୁ ଛାଡ଼ି ଦେଇ, ଚାଲିଚାଲି ଗାଁକୁ ଯିବି ବୋଲି ସ୍ଥିର କଲି। କାଦୁଅ ଯୋଗୁଁ ରାସ୍ତା ଖରାପ ହୋଇଥାଏ। ସେଇଥିପାଇଁ ଦୋକାନୀଟି ନିଜ ସାଇକେଲ ଯାଚୁଥିଲେ ବି, ଧନ୍ୟବାଦର ସହିତ ମୁଁ ସେ ପ୍ରସ୍ତାବ ପ୍ରତ୍ୟାଖ୍ୟାନ କରିଥିଲି।

ରାସ୍ତା ଦୁଇକଡ଼ରେ ବୁଦୁବୁଦୁକିଆ ଜଙ୍ଗଲ। ଅନ୍ଧାର ରାତି। ପରିଚିତ ରାସ୍ତା ଓ ଟର୍ଚ୍ଚଲାଇଟ ସତ୍ତ୍ୱେ ମୁଁ ଭୟାତୁର ହୋଇ ପଡ଼ିଥିଲି। ଏଠାରେ ମୁଁ ଏତିକି କହିପାରେ ଯେ, ମୋ ମନର ସାହସ ମୋତେ ଆଗକୁ ଯିବାପାଇଁ ଉତ୍ସାହିତ କରୁ ନ ଥିଲା; କାରଣ ମୋଠାରେ ସାହସ ନ ଥିଲା। ମୁଁ ଆଗଉଥିଲି

ଭୟ ଓ ଆଶଙ୍କା ଯୋଗୁଁ । ଚଞ୍ଚଳ ଘରେ ପହଞ୍ଚିଲେ ଆଶ୍ୱସ୍ତ ହେବ ଏବଂ ମନର ଦର୍କା ଉଭେଇ ଯିବ ବୋଲି ଭାବି, ମୋର ଗତି ଦ୍ରୁତ କରିଥିଲି ।

ବସ୍ତୁତଃ ଏଇଭଳି ନିଃସଙ୍ଗ ହୋଇ ଅନ୍ଧକାରରେ ଗଲାବେଳେ ଖୁଡ଼ୀ କଥା ମନେ ପଡ଼ି ଯାଉଥାଏ । ଅନ୍ଧକାର ସତ୍ତ୍ୱେ ଜୀବନର ଶକ୍ତି ଓ ବଞ୍ଚି ରହିବାର ଆବଶ୍ୟକତା ବଡ଼ ବିସ୍ମୟକର ଭାବରେ ତାହାକୁ ଠେଲି ଦେଇ ପାରୁଛି ଆଗକୁ; ଅଥଚ ମୋତେ ଘରକୁ ଠେଲି ଦେଉଛି ଅସ୍ତିତ୍ୱହୀନ ଆଶଙ୍କା ଓ ଭୟର ଗ୍ରନ୍ଥି !

ତେବେ ଅନ୍ଧକାର ଏକ ଚିରନ୍ତନ ସତ୍ୟ ନୁହେଁ ତ ଆଉ କ'ଣ ? ଆଲୋକର ସୀମା ଦିଗ୍‌ବଳୟ ହୋଇପାରେ, ଆକାଶ ହୋଇପାରେ । ଆଲୋକ ଆମର ସ୍ଥିତି ସମ୍ପର୍କରେ ଆମକୁ ସଚେତନ କରିଦିଏ, ଏକ ଅପୂର୍ବ ସାହସ ଆଣିଦିଏ, ଆତ୍ମ-ପ୍ରତ୍ୟୟ ବଢ଼ାଇଦିଏ; କିନ୍ତୁ କେତେ ସୀମିତ ଏ ଆଲୋକ ! ମାତ୍ର ଅନ୍ଧକାର ଯେ କୌଣସି ସୀମାରେଖାକୁ ଅସ୍ୱୀକାର କରେ । ଏହା ଲଙ୍ଘନ କରେ ଦିଗ୍‌ବଳୟର ବାଡ଼କୁ । ଏହା ଉପହାସ କରେ ଆକାଶର ବ୍ୟାପ୍ତିକୁ । କହ ତ ଭଲା, ତୁମେ ଆଖି ବୁଜି କିଭଳି ଭାବରେ ମାପି ପାରିବ ତୁମ ଚାରି ପାଖରେ ଘେରି ରହିଥିବା ଅନ୍ଧକାରର ପରିଧିକୁ ?

କିନ୍ତୁ ଏ କ'ଣ ? ଅଜାଣତରେ ମୁଁ ଠିଆ ହୋଇ ପଡ଼ିଲି । ମୋ ହାତର ଟର୍ଚ୍ଚ ଲିଭିଗଲା । ମୋତେ ଜଣାଗଲା ସତେ ଯେମିତି କିରକିରୁ ଅନ୍ଧକାରର ଗହ୍ୱର ଭିତରେ କିଛି ଗୋଟାଏ କମ୍ପି ଉଠୁଛି । ମୁଁ କାନ ଡେରି ଶୁଣିବାକୁ ଚେଷ୍ଟା କଲି ।

ଦୂରରୁ ଶୁଭିଲା—'ସନୁ, ସନୁରେ···ଏ ସନୁ···।'

ଅସ୍ପଷ୍ଟ ହେଉ ପଛେ, ଏ ଡାକର ଉତ୍ତର ଆସିଲା—'ହଁ ହଁ···।'

ପୁଣି ଶୁଭିଲା—'ଆରେ ଚଞ୍ଚଳ ଆ । ଏଣେ ପଖାଳ ବଢ଼ା ହେଲାଣି । ଶୀତଳ ହୋଇଯିବ ଯେ ।'

ଉତ୍ତର ଆସିଲା—'ଯାଉଚି ।'

ଦାଣ୍ଡ ଘର କବାଟ ବାଡ଼େଇବାର ଅଳ୍ପ ସମୟ ପରେ ତାହା ଖୋଲିଲା । ଲଣ୍ଠନ ଟେକି ମୋ ମୁହଁକୁ କିଛି କ୍ଷଣ ପାଇଁ ଚାହିଁବା ପରେ ମା' ପଚାରିଲା —'କିରେ, ଏତେ ବେଳରେ ? ଆଗରୁ ଚିଠି ଖଣ୍ଡିଏ ହେଲେ ପଠେଇଥାନ୍ତୁ । ଏକୁଟିଆ ଆସିଲୁ ?'

—'ହୁଁ ।' ଏତିକ କହି ମୁଁ ଆଗକୁ ପାଦ ବଢ଼ାଇଲି । କବାଟ ବନ୍ଦ କରି ମା' ମୋତେ ଅନୁସରଣ କଲା ।

—'ତୋ ସାଇକେଲ କାହିଁ ?'

'ବାଟରେ ଖରାପ ହେଲା ।' ସେତେବେଳେ ବାରଣ୍ଡାରେ ପଡ଼ିଥିବା ବେଞ୍ଚ ଉପରେ ମୁଁ ବସି ସାରିଲିଣି । ଗୋଡ଼ରୁ ଯୋତା କାଢ଼ୁ କାଢ଼ୁ କହିଲି —'ଏ ଯେଉଁ ରାସ୍ତା ! ସାଇକେଲ ଚଳେଇବା ବି କଷ୍ଟ ହୋଇଥାନ୍ତା । ଗୋଟାଏ ପାନ ଦୋକାନରେ ସେଇଟା ଛାଡ଼ି ଚାଲି ଚାଲି ଆସିଲି ।'

ଲଣ୍ଠନଟା ତଳେ ରଖି ମା' କହିଲା—'ତୁ ଜାଣିବା, ଶୁଣିବା ପିଲା ହୋଇ ଏମିତି ମୂର୍ଖଙ୍କ ଭଳି କାହିଁକି ହେଉ କହିଲୁ ? ବସ୍ ରାସ୍ତାଠୁ ଗାଁ ସାତ କୋଶ ଦୂର । ଏତେ ଗୁଡ଼ାଏ ବାଟ ଏ ରାତିଟାରେ ଚାଲିଚାଲି ଏକୁଟିଆ ଅସୁଛୁ ! ବାଟରେ କ'ଣ ନାଇଁ କ'ଣ ।'

—'କ'ଣ ବାଟରେ ?' ପଚାରିଲି । 'ବାପା ଶୋଇଲେଣି ।'

'ଖିଆପିଆ ହେଇନ'—ସେ କହିଲା ଏବଂ ଯୋଗ କଲା—'ଏଇ ସେଦିନ ପରା ଏଡ଼େ ବଡ଼ ସାପଟେ ଶୋଇଥିଲା ବାଟ ଉପରେ । ଏ ଜଙ୍ଗଲରେ ବାଘ ନ ଥିଲେ । କୁଆଡ଼ୁ ଗୋଟାଏ ବାଘ ଆସି ତିନିଟା ବାଛୁରି ମାରି ସାରିଲଣି ।'

ମା' ଏସବୁ କହୁଥାଏ । ପ୍ରୀତି ଥୋଇଥିବା ପାଣି ଢାଳଟା ଉଠାଇ ମୁଁ ଗୋଡ଼-ହାତ ଧୋଇ ହେଲି । ତା' ହାତରୁ ଗାମୁଛା ନେଇ ପୋଛୁ ହେଲା-ବେଳେ ଦେଖିଲି, ଦୁହିଁଙ୍କ ମୁହଁ ଅଦ୍ଭୁତ ଭାବେ ଗମ୍ଭୀର ଓ ଶଙ୍କାଗ୍ରସ୍ତ ଦେଖା ଯାଉଛି ।

ରାତିରେ ପ୍ରୀତି ମୋତେ ଚେତାବନୀ ଶୁଣେଇଲା—'ଦେଖ, ଏମିତି ଅନ୍ଧାର ରାତିରେ ଯଦି ଆଉ କେବେ ଏକୁଟିଆ ଘରକୁ ଫେର, ତେବେ ତୁମର ଦାନେକୁ ମୋର ଦାନେ ।'

ଆଖି ଖୋଲି ଦେଖିଲି, କୋଠରୀଟା ଅନ୍ଧାର । ଏଦ୍ୱାର, କାନ୍ଥ, ଛାତ—ସବୁ ଯେମିତି ମିଳେଇ ଯାଇଚି ସର୍ବଗ୍ରାସୀ ଅନ୍ଧାର ଭିତରେ । ପ୍ରୀତି କେଡ଼େ ପାଖରେ ଶୋଇଛି । ଅଥଚ ତା' ଉପସ୍ଥିତି ସମ୍ପର୍କରେ ମୁଁ ଆଦୌ ସଚେତନ ହୋଇ ପାରି ନ ଥାନ୍ତି, ତା'ର ଚାପାକଣ୍ଠର କୋହ ନ ଶୁଣିଥିଲେ । ମୁଁ ହାତ ବଢ଼ାଇ ତା'ର ପିଠି ଥାପୁଡ଼ିଲି ।

ବହୁତ ସମୟ ପରେ ପଚ୍ଚରିଲି—'କେବେ କଲେଜ ଖୋଲିବ ?'
—'ବାଇଶି ଦିନ ପରେ । ପାଞ୍ଚ ତାରିଖ ଦିନ ।' କିଛି ସମୟର ନୀରବତା ପରେ ପଚ୍ଚରିଲି—'ତୁମର ଏଠାରେ ଅସୁବିଧା ହେଉଛି ?'

—'ନା' ତ !' ପରେ ପରେ ତା'ର ଦୀର୍ଘଶ୍ୱାସ ।

'ଝିଅ କିମିତି ଅଛି ?'

—'ଭଲ ।'

ପରଦିନ ପ୍ରାୟ ନ'ଟାବେଳେ ବଲିଆଡ଼ୁ ଯେମିତି ବୁଲି, ଘରକୁ ଫେରୁଥାଏ । ଦେଖିଲି ମୁଣ୍ଡରେ ଗୋଟିଏ ବୋଝ ଥୋଇ ଖୁଡ଼ୀ ନୀରବରେ ଚାଲିଛି । ଡାହାଣ ହାତରେ ଧରିଛି ଗୋଟାଏ ଝାଡ଼ୁ ।

କ'ଣ ପାଇଁ କେଜାଣି, ମୋର ମନ ବେଦନାଗ୍ରସ୍ତ ହୋଇଗଲା । କେଡ଼େ ଅଦ୍ଭୁତ ଜୀବନ ସ୍ତ୍ରୀର ! ପ୍ରତିବାଦ ନାହିଁ, ଆପତ୍ତି ନାହିଁ । ଅନ୍ଧାରରେ ଅଣ୍ଡାଳି ଅଣ୍ଡାଳି ଯେତେବେଳେ କାମକୁ ବାହାରି ପଡ଼େ, କେହି ତ ସ୍ତ୍ରୀକୁ ସେଥିରୁ ନିବୃତ୍ତ କରନ୍ତି ନାହିଁ । ଯା'ନା, ଝୁଣ୍ଟି ହେବୁ, ଜାଣିଛୁନା, କେତେ ରକ୍ତ ଝରିବ ? ବାଟରେ କଣ୍ଟା ପଡ଼ିଥିବ, ମ ଫୁଟିଲେ ଭାରି ଯନ୍ତ୍ରଣା ହେବ—ଏମିତି ଚେତାବନୀ ସ୍ତ୍ରୀକୁ କିଏ ଦିଏ ? ଅଥଚ କେତେ ବଡ଼ ପ୍ରତାରଣା, ବିଶ୍ୱାସଘାତକତା କରି ନ ଯାଇଛି ଏଇ ଖୁଡ଼ୀ ପାଖରେ ! ଯେଉଁ ସୃଷ୍ଟିକୁ ସେ ଦେଖି ପାରୁଥିଲା, ତାହାକୁ ଗ୍ରେରାଇ ନେଇ ଏ ଅନନ୍ତ ଅନ୍ଧକାର ଭିତରେ ତାକୁ ଛାଡ଼ି ଦେବାର ଅର୍ଥ କ'ଣ ? ତା' ପାଖରେ ସିଲଟ ଝଡ଼ କେଉଁଠା, ସକସର ବାଘ କେଉଁଠା ?

କେଡ଼େ ନିଃସଙ୍ଗ ବୋଧ କରୁ ନ ଥିବ ସେ । ସତକଥା, ଅନ୍ଧକାରର ସର୍ବପ୍ରଥମ ପ୍ରଭାବ ହେଉଛି ନିଃସଙ୍ଗତା ବୋଧ ।

ପାଖରେ ପହଞ୍ଚି ଦେଖିଲି, ଖୁଡ଼ୀ ବହୁତ ବଦଳି ଯାଇଛି ସ୍ତ୍ରୀ ଭିତରେ । ଚମ ଧୁଡ଼ୁ ଧୁଡ଼ୁ ପାକୁଆ ପାଟି, ବସନ୍ତ ଚିହ୍ନ ସତ୍ତ୍ୱେ ମୁହଁରେ ବୟସର ସ୍ପଷ୍ଟରେଖା ସବୁ । ମୁଁ ଦୀର୍ଘଶ୍ୱାସ ତ୍ୟାଗ କରି କିଛି କହିବା ପାଇଁ ଉଦ୍ୟତ ହେଉଥିଲି । ମାତ୍ର ମୋର ପାଦ ଆଗକୁ ମାଡ଼ି ଚାଲିଲା ।

—'କିଏ ? କିଏ ଯାଉଛି ?'

ଭାବିଲି, କହିଦେବି କି, ମୁଁ ସନୁ ବୋଲି ? କିନ୍ତୁ ନା । ମୁଁ ତ ଆଉ ମଣିଷର ଭାଗ୍ୟ ନୁହେଁ ଯେ, ତାକୁ ଉପହାସ କରିବି । କୌଣସି ଉତ୍ତର ନ ଦେଇ ମୁଁ ତାକୁ ଅତିକ୍ରମ କଲି ।

ମଧ୍ୟାହ୍ନ ଭୋଜନ ପରେ ଦାଣ୍ଡ ପିଣ୍ଡାରେ ବସିଲି । ମୋ ବସିବା ସ୍ଥାନରୁ ପ୍ରାୟ ପଚିଶ ମିଟର ବ୍ୟବଧାନରେ ସିମେଣ୍ଟ ପଲସ୍ତର ହୋଇଥିବା ଗୋଟାଏ ଚଉଡ଼ା ଚଉତରା । ଦେଖିଲି, ଚଉତରା ଉପରେ ଧାନ ଶୁଖା ଯାଇଛି । ଚଉ-ତରାର କଣକୁ ଥୁଆ ହୋଇଛି ଗୋଟିଏ ବୋଝେ ଏବଂ ଗୋଟିଏ ଝାଡ଼ୁ ।

ମଝିଘେ ଉଚ୍ଚର ଠେଙ୍ଗାଟିଏ ଧରି ଜାଗ୍ରତ ପ୍ରହରୀ ଭଳି ତଳେ ଠିଆ ହୋଇଛି ସନୁ ମା ଖୁଡ଼ୀ । ତା'ର ଠିଆ ହେବାର ଭଙ୍ଗୀ ବିଦ୍ରୂପ କରୁଥିଲା, ତା' ଗୃହପୃଷ୍ଠେ ଘେରି ରହିଥିବା ଅସୀମ ଅନ୍ଧକାରକୁ । ତା' ଜୀବନର ସେହି ଚିରନ୍ତନ ପ୍ରତିକୂଳ ସ୍ରୋତ ଅତିକ୍ରମ କରି ବଞ୍ଚି ରହିବାର ସଂଘର୍ଷ ଓ ଦାୟିତ୍ୱ ସହିତ ଯେମିତି ଝୁଙ୍କିତ ଠେଙ୍ଗା ଭଳି ମୁଣ୍ଡ ଟେକି ରହିଥିଲା । ସେ ହୁଏତ ସୂଚେଇ ଦେଉଥିଲା ଯେ, ଭବିଷ୍ୟତର ଅନ୍ଧକାର ଓ ଅନିଶ୍ଚିତତା ଅପେକ୍ଷା ବର୍ତ୍ତମାନର ଆହ୍ୱାନ ବେଶୀ ଗୁରୁତ୍ୱପୂର୍ଣ୍ଣ ।

ହେଲେ ଦେଖ, ଚଉତରା ଉପରେ ଚଢ଼େଇ ନାହିଁ, କୁକୁଡ଼ା ବି ନାହିଁ । ଶୁଖିଥିବା ଧାନ ବେଶ ନିରାପଦ ଅଛି । ତଥାପି ସେ ପ୍ରହରୀଟି ବାରମ୍ବାର ଭୂଇଁ ଉପରେ ଠେଙ୍ଗା ପିଟି ଅସ୍ଥିର ଭାବରେ ଚିତ୍କାର କରୁଛି—ହାଏ୍...ହାଏ୍... ଛେଏ୍...ଛେଏ୍...ହାଏ୍...

ଅବସାନ ଭାବରେ ଏ ଶବ୍ଦ ବାହାରି ହୋଇ ପଡ଼ୁଛି ସ୍ୱରଆଡ଼େ । ଏହା ତୁଳନାରେ ମୋ ମା'ର ବ୍ୟାକୁଳତା କମ୍ବା ସ୍ତ୍ରୀଙ୍କର କୋହ କେତେ ଦମ୍ଭନୀୟ ଓ ଅଯଥା ମନେ ହେଉଛି, ପ୍ରକୃତରେ !

ଘର ଭିତରକୁ ଓଜନଥା ମନ ନେଇ ଫେରିବା କ୍ଷଣି ସ୍ୱର ବର୍ଷର ଝିଅ ପ୍ରସ୍ତାବ ଦେଲା—'ବାପା, ଲୁଚକାଳି ଖେଳ ଖେଳିବା ।'

—'ହଉ ।' ମୁଁ ରାଜି ହେଲି ।

ପରିଚିତ ହେଉ ପଛେ, କୋଠରୀଟିକୁ ଆତୁର ଥରେ ଦେଖିନେଲି । ମଝିରେ ଡବଲ ଖଟ । ମୁଣ୍ଡ ପାଖକୁ ଅଲମିରା । ତା' କଡ଼କୁ ଦୁଇଟା ଖୋଲା ସେଲ୍ଫରେ ଅଛି ଟ୍ରଙ୍କ, ସୁଟ୍କେଶ୍ । ଏପଟ କାନ୍ଥ କଡ଼ରେ ର୍ୟାକ୍ । ସ୍ତ୍ରୀଙ୍କର ଶାଢ଼ୀ, ବ୍ଲାଉଜ୍, ଝିଅର ଜାମା ଇତ୍ୟାଦି ଯତ୍ନର ସହିତ ରଖା ଯାଇଛି । ଏ କଣରେ ଟେବୁଲ । ଦୁଇଟି ଚେୟାର ଲୁଚି ରହିବାର ସମ୍ଭାବ୍ୟ ସ୍ଥାନ ଗୁଡ଼ିକୁ ଭଲ ଭାବରେ ଦେଖି ନେଲି ।

ମୋ ହାତକୁ ଗାମୁଛାଟିଏ ବଢ଼ାଇ ଦେଇ ଝିଅ ନିର୍ଦ୍ଦେଶ ଦେଲା— 'ଏଇଟା ଆଖିରେ ବାନ୍ଧ ।'

ତାକୁ କହିଲି—'ଗାମୁଛା କ'ଣ ହେବ ? ମୁଁ ସେଇମିତି ଆଖି ବନ୍ଦ କରି ଖୋଜିବି ।'

ସେ ମୋତେ ରାଜି ହେଲା ନାହିଁ । ମୋ ରାଲକ ବୁଦ୍ଧିପାରି ସେ ଉତ୍ତର ଦେଲା—'ନାଇଁ, ସେ କଥା ହେବ ନାଇଁ । ତୁମେ କେତେବେଳେ ନାଇଁ କେତେବେଳେ ଚୁପ୍‌କରି ଦେଖି ଦେବ ।'

ମୁଁ ଖୁବ୍ ଆମୋଦିତ ହେଲି । ଗାମୁଛା ନେଲି ତା' ହାତରୁ । ଆଖି ଅଗ ଦେଇ, ମୁଣ୍ଡ ପଛରେ ତାହା ବାନ୍ଧିବାବେଳେ ସେ କହିଲା—'ମୁଁ ଦଶ ଗଣିଲେ ତୁମେ ଖୋଜିବ । ତା' ଆଗରୁ ନୁହେଁ ।'

ଏଇ ନିୟମକୁ ମାନିବି ବୋଲି ପ୍ରତିଶ୍ରୁତି ଦେଲି ।

ମୋ ସାମନାରେ ସୃଷ୍ଟି ହେଲା ଅନ୍ଧକାର । ନିଜ କୋଠରି ଭିତରେ ମୁଁ ଖୋଜିବି ମୋ ନିଜ ଝିଅକୁ ।

ସ୍ତ୍ରୀ ଭିତରେ ସେ ଦଶ ଗଣି ସାରିଲାଣି ।

ଶେଷ ଶବ୍ଦଟି ଟେବୁଲ ପାଖରୁ ଆସିବା ଭଳି ଜଣାଗଲା; କିନ୍ତୁ ସେ କ'ଣ ଟେବୁଲ ତଳେ ଥିବ ? କେଉଁଠି ଥିବ ସେ ? କେଉଁଠି ?

ଖେଳ ପୂର୍ବରୁ କୋଠରିଟିକୁ ଭଲ କରି ଦେଖିଥିଲେ ମଧ୍ୟ, ଆସବାବର ଅବସ୍ଥିତି ସାରା ଅନିର୍ଣ୍ଣିତ ଜଣାପଡ଼ୁଛି ବର୍ତ୍ତମାନ । ବୋଧ ହେଉଛି, ଖାଲି ମୋ ଝିଅ ନୁହେଁ; କୋଠରିର ର୍‍ୟାକ୍, ଆଲମିରା, ଟେବୁଲ, ଚେୟାର ମୋତେ ଆହ୍ୱାନ କରୁଛନ୍ତି—ଆ, ତୋ ସାମନାରେ ସୃଷ୍ଟି ହୋଇଥିବା ଅନ୍ଧାର ଭିତରେ ଆମକୁ ଚିହ୍ନଟ କର ।

କେବଳ ସେତିକି ନୁହେଁ । ମୋ ଚାରିପଟେ ରହିଥିବା ସମସ୍ତ ବସ୍ତୁ, କ୍ଷିପ୍ର ଗତିରେ ପରସ୍ପର ମଧ୍ୟରେ ସ୍ଥାନ ପରିବର୍ତ୍ତନ କରୁଛନ୍ତି । ମୋତେ ଜଣାଗଲା, କୋଠରିର ଅନ୍ଧକାର ଆସନ୍ନ ପ୍ରସବ ମୁହୂର୍ତ୍ତ ହେତୁ ତୀବ୍ର ଯନ୍ତ୍ରଣା ବୋଧ କରୁଛି ଏବଂ ମୁଁ ଅସ୍ଥିର ହୋଇ ତା' ଭିତରୁ ଖଲାସ ହେବା ପାଇଁ ବାଟ ଖୋଜୁଛି—ଯେଉଁ ବାଟ ମୋତେ କଢ଼ାଇ ନେବ, କୋଠରି ଭିତରେ ଲୁଚି ରହି ମୋତେ ଆହ୍ୱାନ କରୁଥିବା ସେଇ ନିର୍ଦ୍ଦିଷ୍ଟ ସ୍ୱର ପାଖକୁ ।



# ଦୁର୍ବଳ ମୁହୂର୍ତ୍ତ

ପ୍ରୀତମ

ଦିନବେଳେ ହୋଇଥିଲେ ହୋଇ ନ ଥାନ୍ତା ।

ରାତି ବେଶୀ ହୋଇ ନ ଥିଲେ ଏବଂ ନିଦ ଲାଗିଯାଇଥିଲେ ଘଟି ନ ଥାନ୍ତା ।

ଆଲୁଅଟା ଲିଭି ନ ଥିଲେ ମଧ୍ୟ ।

ମଶାରି ଭିତରେ ଛଟପଟ । ନିଦ ବଟିକା ଖାଇଥିଲେ କିମ୍ବା ନିଶା ଖାଇ ଶୋଇଥିଲେ ଭଲ ହୋଇଥାନ୍ତା ।

ଆଉ ଜମା ଘଟି ନ ଥାନ୍ତା ଯଦି ଠିକ୍ ସେତିକିବେଳେ ମତେ କିଏ ମନେ ମନେ କୋଳ କରି ନିଜର ବୋଲି ଭାବୁଥାନ୍ତା ।

କେହି ନାହିଁ । ନିର୍ଜନ ବରଗଛ ଡାଳରେ ଫାଶି ଦଉଡ଼ି ଝୁଲିଲା ଭଳି ଅବସ୍ଥା । ନିଜକୁ କେବଳ ନଷ୍ଟ କରିବା, ଅବକ୍ଷୟ କରିବା, ଅପଚୟ କରିବା, ଆତ୍ମାର ଆଲୁଅ ଲିଭାଇ ଦେବା, କପାଳର ଉଜ୍ଜ୍ୱଳ ଅଙ୍କ ପରିବର୍ତ୍ତେ କଳା କଳା ଦାଗ ।

ଥରେ ନୁହେଁ, ଦୁଇଥର ନୁହେଁ, ବାରମ୍ବାର, ଯେତେ ଥର ପ୍ରତିଜ୍ଞା, ସେତିକି ଉଦ୍ଦାମ ପ୍ରମତ୍ତ ପ୍ରବୃତ୍ତି, ସେତିକି ପଙ୍କିଳ ପୃଥିବୀ ।

ନିଜ ପ୍ରତି ଦୟା ହୁଏ । ଯେମିତି ଦମ୍ଭ ଓ ଦୃଢ଼ତା ବୋଲି କିଛି ନାହିଁ । ସ୍ଖଳନ ହିଁ ଯେମିତି ଏକାନ୍ତ ବାସ୍ତବତା ଏବଂ ସ୍ଖଳନ ପରବର୍ତ୍ତୀ ପ୍ରତ୍ୟେକଟି ମୁହୂର୍ତ୍ତ ମର୍ମାନ୍ତିକଭାବେ ଶୂନ୍ୟଗର୍ଭ ।

ଠାକୁରଙ୍କ ସାମନାରେ ସବୁ । ସେ ଏଡ଼େ ଏଡେ ଆଖି କରି ଅନେଇ-ଥିଲେ । କୋଠରୀର ଅନ୍ଧାରକୁ ଭେଦ କରି ସମଗ୍ର ସତ୍ତ୍ୱାକୁ ଆବୋରି ରହିଥିଲା ତାଙ୍କର ଉଦାର ଦୃଷ୍ଟି ଓ ଅବାରିତ କରୁଣାର ଧାରା ।

ସେତେବେଳକୁ ମୁଁ ମଶାରି ଭିତରୁ ଆହୁରି ପଦାକୁ ବାହାରି ନାହିଁ । ରାତି ବହୁତ ହେଲାଣି । ମୁଁ ଶେଯରେ ପଡ଼ି ଛଟପଟ ହେଉଥିଲି । ନିଦ ଆସି ଯାଇଥିଲେ ଭୋର ହୋଇ ଯାଇଥାନ୍ତା, ଅର୍ଥାତ୍ ବ୍ରାହ୍ମମୂହୂର୍ତ୍ତ ଓ ପ୍ରାର୍ଥନା ।

ମଶାରି ଭିତରୁ ମୁହଁ ବାହାର କରି କାନେଇ ଶୁଣିଲି—ବାରିଆଡ଼ୁ କିଛି ସୋର୍ ଶବ୍ଦ ଅଛି କି ? ନାଁ ତ ! କେହି ନାହିଁ । କେହି ଯେମିତି ଥିବା ଉଚିତ ଥିଲା । ବଳେଇଟିଏ ଅନ୍ତତଃ । ଖୁଡ଼ଖାଡ଼ କିଛି ନାଇଁ । ମୁଁ ତ ଭିତରୁ କବାଟ ବନ୍ଦ କରିଛି । ଆଉ ସେଆଡ଼ୁ କିଏ ଆସିବ ? ( ସତେ ଯେମିତି ମୋର ଏଭଳି ଅବସ୍ଥାକୁ ଅନୁମାନ କରି କେହି ଆସି ମତେ ସାନ୍ନିଧ ଯାଚି-ଥାଆନ୍ତା ! )

ରାତି ଅଛି । ଅନ୍ଧାର ହୋଇଚି । ଶେଯ ଅଛି, ତକିଆ ଅଛି, ମଶାରି ଭିତରେ ରେଜେଇ ଭିତରେ ଉଷ୍ମତା ଓ ନିରାପତ୍ତା ଅଛି; ସବୁ ଅଛି ଅଥଚ କେହି ନାହିଁ, ଏଇ ନିର୍ଦ୍ଦିଷ୍ଟ ମୁହୂର୍ତ୍ତରେ ।

ମନ ଭିତରେ ଗୋଟାଏ ଉତ୍ତେଜନା, ଯାହାର କୌଣସି ନିର୍ଦ୍ଦିଷ୍ଟ କାରଣ ବା ଭିତ୍ତି ନାହିଁ; ତଥାପି ମଶାରି ଭିତରୁ ବିନା କାରଣରେ ମୁହଁ ପଦାକୁ ବାହାର କରି ଏଇ ପରିସ୍ଥିତିକୁ ଅସ୍ୱୀକାର କରିବାକୁ ଇଚ୍ଛା ହେଲା । ଶେଯରୁ ଉଠି ବସିଲି । ନିଦରୁ ଉଠିଥିଲେ ପ୍ରଥମେ ଏଭଳି ବସି, ହାତଯୋଡ଼ି ଆଖି ବୁଜି ଧ୍ୟାନସ୍ଥ ହୋଇଥାନ୍ତି ଅଭ୍ୟାସଗତଭାବରେ ଠାକୁରଙ୍କୁ ପ୍ରଣିପାତ ପାଇଁ; କିନ୍ତୁ ବର୍ତ୍ତମାନ ଶେଯରୁ ଉଠି ବସୁ ବସୁ ଖଟ ତଳକୁ ଓହ୍ଲାଇ ଠିଆ ହୋଇ ପଡ଼ିଲି ।

ଠିଆ ହୋଇ ପଡ଼ିଲି ଅନ୍ଧାର ଭିତରେ । ମନେ ହେଲା ଯେମିତି ମୁଣ୍ଡଟା ଠୋ କିନା ବାଜିଲା ଛାତରେ । ମୁଁ ନଇଁ ପଡ଼ିଲି । ଚକିତ ହୋଇ ଦେଖିଲି ଛାତ ଯାଇ କେତେ ଉଚ୍ଚରେ । ମୁଣ୍ଡ ବାଜିବାର ପ୍ରଶ୍ନ ଉଠୁନି !

ଯୁଆଡ଼କୁ ମୁହଁ କରି ଠିଆ ହୋଇଥିଲି; ସେ ଦିଗରେ କାଠର ଆଲମିରା ଓ ତାରି ଭିତରେ ଠାକୁରଙ୍କ ବଡ଼ ବଡ଼ ଆଖି ଦୁଇଟା ଅନ୍ଧାରରେ ମତେ ଚାହିଁଛନ୍ତି । ଶୋଇବା ପୂର୍ବରୁ ଲଗାଇଥିବା ଧୂପକାଠି ସରି ସରି ଆସୁଛି ।

"ତମେ ସାକ୍ଷୀ ତ ?" ମୁଁ ମନେ ମନେ ପଚାରିଲି । ପାଟି କରି ପଚାରି ଦେଇଥିଲେ ମୁଁ ଖୁବ୍ ଶୀଘ୍ର ପ୍ରକୃତିସ୍ଥ ହୋଇ ଯାଇଥାନ୍ତି । କିନ୍ତୁ ଠାକୁର କିଛି କହିଲେ ନାହିଁ । ଅନ୍ଧାର ଭିତରେ ଚାହିଁ ରହିଲେ ।

ଅନ୍ଧକାର ଦୂର କରି ଦେଇ ପାରିଥାନ୍ତେ ଠାକୁରେ ନିଶ୍ଚୟ । କିନ୍ତୁ ସେ ନିଜେ ଅନ୍ଧାର ଭିତରେ ବିରାଜମାନ କଲେ ।

ମନେହେଲା ସେ ଯେମିତି ମୁଣ୍ଡ ହୁଙ୍କାରି କହିଲେ—'ହୁଁ'—ଅର୍ଥାତ୍ "ମୁଁ ସାକ୍ଷୀ ରହିଲି, ମୁଁ ଅନାଉଛି, ତମେ ମତେ ମୁଣ୍ଡିଆ ମାରି ଶୋଇଥିଲ, ଏବେ ଉଠିଲ, କାନେଇଲ, ପୃଥିବୀ ତମକୁ ଡାକୁନି । ତମେ କହିଲ 'କାହିଁକି ?' ସେଇଠୁ ଉଠି ଠିଆ ହେଲ, ମୁ ସବୁ ଦେଖୁଛି, ମୁଁ ସାକ୍ଷୀ, ତା'ପରେ—?"

ତା'ପରେ ମୁଁ କବାଟ ଆଡ଼କୁ ଆଗେଇଗଲି । ଠାକୁରେ ପଛରେ ପଡ଼ି ରହିଲେ । ସେ ତ ସବୁ ଦେଖୁଛନ୍ତି, ମୁଁ ତ କିଛି ଲୁଚଉନାହିଁ । କବାଟ ବାଡ଼ି ଉଠାଇ ଦୁଆର ଖୋଲିଲାବେଳକୁ ମୋ ଦେହରୁ ଗୋଟାଏ ଝାଳ ବାହାରି ଯାଇଥିଲା ।

ମତେ ଯେମିତି ପଛରୁ କିଏ ଟାଣି ଧରିଲା । ମୁଁ ପଦାକୁ ଗଲିନି । କବାଟ ଆଉଜାଇ ଘର ଭିତରେ କାକୁସ୍ଥ ହୋଇ ଠିଆ ହେଲି, ଭାବିଲି ଥାଉ, କବାଟ ବନ୍ଦ କରି ଯାଇ ଶୋଇ ପଡ଼ିବି, କେତେବେଳେ କ'ଣ ଘଟିବ !

ଘଟିବ ଅର୍ଥାତ ଭୁଲଭଟକା, ସ୍ଖଳନ ଓ ତଜ୍ଜନିତ ଅନୁତାପ ଦଗ୍ଧ ଚିନ୍ତା । ପାଦତଳୁ ପୃଥିବୀ ଖସିଗଲା ଭଳି ଦୁର୍ଯୋଗ ।

ଠାକୁରେ ଯେମିତି ଏକ ଦୃଷ୍ଟିରେ ଡେଲି ଆଖିରେ ଅନେଇ ରହିଛନ୍ତି ଅନ୍ଧାର ଭିତରେ ।

ସୁନାପିଲି ପରି ଆସି ଖଟରେ ଶୋଇଲି । ଗାଢ଼ ନିଦ ଲାଗି ଯାଇଥିଲା । କେତେବେଳେ ପୁଣି ଚାଉଁକିନା ନିଦ ଭାଙ୍ଗିଲା । ଛଟପଟ ଲାଗିଲା, ବ୍ୟସ୍ତ ଲାଗିଲା, ନିଦ ହେଲାନି, ଟିକିଏ ବାରିକି ଯାଇ ଆସେ ।

ଏଥର ସ୍ୱାଭାବିକ ଭାବରେ ମୁଁ କବାଟ ଖୋଲି ବାରି ଅଗଣାକୁ ଆସି ଉପରକୁ ଚାହିଁ ଦେଖିଲି ଆକାଶ ଅନ୍ଧକାର । ଶିତ ମାଡ଼ି ପଡ଼ୁଛି । ବାରି

ଘର ଭିତରଆଡୁ ବନ୍ଦ ଥିଲା । ମୁଁ ଠକ୍ ଠକ୍ କଲି । 'କିଏ' ବୋଲି ଗୃହକର୍ତ୍ତ୍ରୀ ନିଦରୁ ଉଠି ପଚାରିଲି । କହିଲି, "ଖୋଲ ଖୋଲ, ମୁଁ ।"

ଗୃହକର୍ତ୍ତ୍ରୀ କବାଟ ଖୋଲିଲି । ମୁଁ ସିଧା ବାଡି ଘର ଭିତର ଦେଇ ବାଡପଟ ଗାଧୁଆ ଘରଆଡ଼େ ଚାଲିଗଲି । ପିସାବ କଲି, ଗାଧୁଆ ଘରେ ଯେତିକି ସମୟ ଠିଆ ହେଲି, ମୋର ମନେ ହେଲା, ମୁଁ ଉଲଗ୍ନ ଓ ଉତ୍ତପ୍ତ ।

ଉତ୍ତେଜିତ ଅବସ୍ଥା ଭିତରେ ମୁଁ ନିଜକୁ ପ୍ରକୃତସ୍ଥ କରିବା ପାଇଁ ଗାଧୁଆ ଘର ଭିତରେ ଅନେକ ସମୟ ଚୁପ୍‌ଚାପ୍ ଠିଆ ହୋଇ ରହିଲି । ଠାକୁରଙ୍କୁ ଡାକିଲି । ମନରେ ଶାନ୍ତି ଆସିଲା । ମୁଁ ପ୍ରକୃତସ୍ଥ ହେଲି । ଆସ୍ତେ ଆସ୍ତେ ଫେରି ଆସିଲି, ବାଡି ଘର ଭିତର ଦେଇ ପୁଣି ମୋ ଶୋଇବା ଘରକୁ ।

କବାଟ ବନ୍ଦ କରି ଶୋଇବାକୁ ଗଲି ଗର୍ଭୀର ଅଶାନ୍ତି ସତ୍ତ୍ୱେ ଯେ କୌଣସି ଦୁର୍ଘଟଣା ଘଟିନାହିଁ ।

ଆଖି ମୁଦି ପଡ଼ି ରହିଲି । ଭାବିଲି ଏଥର ଶୋଇ ପଡ଼ିବି ନିଶ୍ଚିନ୍ତରେ ।

କିନ୍ତୁ କାହିଁ, ବାଡି ଘର କବାଟ ବନ୍ଦ ହେବାର ଶବ୍ଦ ତ ଶୁଣାଗଲା ନାହିଁ ? ହୁଏତ ଗୃହକର୍ତ୍ତ୍ରୀ ଗାଧୁଆ ଘରକୁ ଯାଇଥିବ ଓ ତା'ପରେ ଆସି ବାଡି ଘର ଦୁଇଆଡୁ ବନ୍ଦ କରି ଶୋଇବ, ଶୋଉ ।

ଆଖି ପଡ଼ି ଆସୁଥିଲା, ପୁଣି ଭାବିଲି, ଏତେ ସମୟ ହେଲା କାହିଁ ବାଡି ଘର କବାଟ ବନ୍ଦ ହେବାର ଶବ୍ଦ ତ ହେଲାନାହିଁ ? ମନରେ କୌତୂହଳ ହେଲା । ଯାହାକୁ କୁହାଯିବ ଅହେତୁକ ।

ଉଠିଲି । କବାଟ ଖୋଲି ଅଗଣା ପାର ହୋଇ ଯାଇ ଦେଖିଲି ସତକୁ ସତ ବାଡି ଘର ଖୋଲାଅଛି । ଆସ୍ତେ ଆସ୍ତେ ଘର ଭିତରେ ପ୍ରବେଶ କରି ଅନ୍ଧାର ଭିତରେ ଅନୁଭବ କଲି ଗୃହକର୍ତ୍ତ୍ରୀ ଘର କଣଆଡ଼କୁ ତା' ଶୋଇବା ଜାଗାରେ ଶୋଇଛି ନିଶ୍ଚିନ୍ତ । ବାଡି ଘର କବାଟ ବନ୍ଦ କରିବାକୁ ଭୁଲିଯାଇଛି । ନିଦ ଲାଗିଯାଇଛି ବୋଧହୁଏ । ମୁଁ ଆସ୍ତେ ଆସ୍ତେ ବାଡି କବାଟ ବନ୍ଦ କଲି । କବାଟ ବାଡ଼ା ଦେଲାବେଳକୁ ମୋ ଛାତି ଧଡ଼ପଡ଼ ହେଲା । ମୁଁ ଆସ୍ତେ ଆସ୍ତେ ଘର କଣଆଡ଼କୁ ଆଗେଇ ଯାଇ ଗୃହକର୍ତ୍ତ୍ରୀ ଶେଯ ପାଖରେ ଅନ୍ଧାରରେ ଅଥଚ ନୀରବରେ ପଥର ମୂର୍ତ୍ତି ଭଳି ଠିଆ ହୋଇ ରହିଲି ।

ମୋର ଗୋଡ଼ହାତ ଥରୁଥିଲା । ମୁଁ ଠାକୁରଙ୍କୁ ଡାକୁଥିଲି ମତେ ଦୁର୍ଘଟଣାରୁ, ପ୍ଲାସ୍ଟିକ ଅସ୍ଥିରତାରୁ ଉଦ୍ଧାର କରିବା ପାଇଁ ।

ସ୍ୱିକଗଣୀ ଚିତ୍ ହୋଇ ଶୋଇଯାଇଛି । ତା'ର ନିଶ୍ୱାସର ଶବ୍ଦ ଅନ୍ଧାର ଘରକୁ ବିଦୀର୍ଣ୍ଣ କରି ମନେହେଲା ମତେ ବାତ୍ୟାରେ ଉଡ଼ାଇ ନେଉଛି ଓ ମୋର ନିଜ ଉପରେ କିଛି ଅକ୍ତିଆର ନାହିଁ । ମୁଁ ତା'ର ଶେଯକୁ ଲାଗି ବସି ପଡ଼ିଲି । ଆସ୍ତେ ଆସ୍ତେ ମୋ ହାତ ସ୍ୱିକଗଣୀର ସ୍ତନ ଉପରେ ଥୋଇ ହୋଇଗଲା ।

ଥୋଇ ହୋଇଗଲା ଟାଣି ହୋଇ, ଯେମିତି ମୋର ଆଉ କର୍ତ୍ତୃତ୍ୱ କିଛି ନାହିଁ । ଦରକାର ଥାଉ-ବା ନ ଥାଉ, ଯାହା ହେବାର ଥିଲା, ହେଉଛି । ଅନେକ କହନ୍ତି ଏ ମରଣଶୀଳ ସୃଷ୍ଟିର ସ୍ୱାଭାବିକ ଗତି ସେୟା । ଜନ୍ମ ହେଲେ ମରଣ ଅଛି, ଯୌବନ ପରେ ଜରା, ଆଲୋକ ସହିତ ଅନ୍ଧାର, ଅନ୍ଧାର ଭିତରେ ଶୂନ୍ୟତା, ଶୋଇବା ଘରୁ ଅଗଣା ଦେଇ ବାଡ଼ି ଘର ପର୍ଯ୍ୟନ୍ତ ଯାଇ ଫେରି ଆସ, ପୁଣି ଉଠ, ପୁଣି ଯାଅ ସ୍ୱିକଗଣୀର ସ୍ତନ ପର୍ଯ୍ୟନ୍ତ ପହଞ୍ଚିଲା ଯାଏଁ କାଳ, କ୍ଷୟିଷ୍ଣୁ ସୃଷ୍ଟି, ଚିରନ୍ତନର ଅପରପକ୍ଷ, ଯୋଗ ନାହିଁ, ଦୁର୍ଯୋଗ; ଯୋଗୀ ନାହାନ୍ତି, ଭୋଗୀ; ସ୍ୱର୍ଗ ନୁହେଁ, ମର୍ତ୍ତ୍ୟ; ସ୍ୱର୍ଗକୁ ନିଶୁଣି ନାହିଁ, ଉପରକୁ ଯିବାର ଅବକାଶ ନାହିଁ, ସବୁଥିରେ ଗୋଟାଏ ସୀମା, ଶୋଇବା ଘରୁ ବାଡ଼ି ଘର ପର୍ଯ୍ୟନ୍ତ ଓ ବାଡ଼ି ଘର ଅନ୍ଧକାର ଭିତରେ ଶୋଇ ରହିଥିବା ସ୍ୱିକଗଣୀର ନିଶ୍ୱାସ ପର୍ଯ୍ୟନ୍ତ ।

କ୍ରମଶଃ ନିଶ୍ୱାସ ପ୍ରଖର ହେଉଛି ।

ଏଇଟା ମୁହୂର୍ତ୍ତର ଦୋଷ, ମୋର ନୁହେଁ ବୋଲି ଦୃଢ଼ ଭାବରେ ଆତ୍ମପକ୍ଷ ସମର୍ଥନ କଲି ।

ଅସମୟରେ ଏଭଳି ଅବାଞ୍ଛିତ ଇଚ୍ଛା, କାମନା, ଉତ୍ତେଜନା ଅନାହୂତ ଭାବରେ ଆସିଯାଏ । ସ୍ନାତପୂତ ହୋଇ ଠାକୁରଙ୍କୁ ଫୁଲ ଦେଲାବେଳେ ମଧ୍ୟ ଅବାଧଭାବରେ ଅସଂଯତ କାମନା ସବୁ ଆସିଯାଏ ।

ମାଟିର ମର ସଂସାର । ସବୁ କ୍ଷଣସ୍ଥାୟୀ । ସବୁ କ୍ଷୟଶୀଳ । ଚିରନ୍ତନର ଉପହାସ ।

ଏଇଟା ମୋର ଦୁର୍ବଳତା ନୁହେଁ । ଏଇ କ୍ଷଣସ୍ଥାୟୀ କ୍ଷୟଶୀଳ ସୃଷ୍ଟି ଓ ତା'ର ମୁହୂର୍ତ୍ତ ଏଥିପାଇଁ ଦାୟୀ ବୋଲି ମୁଁ ନିଜକୁ ବୁଝାଇ ଦେଲି । ମୋର ହାତ ସେମିତି ଥାପନା ହୋଇଥିଲା । ଅନୁଭବ କରୁଥିଲି ହାତ ଦେଇ ତଡ଼ିତ୍

ପ୍ରବାହ । ମୁହୂର୍ତ୍ତି ପରେ ମୁହୂର୍ତ୍ତି । ମୁଁ ପୁଣି ବୁଝି ପାରିଲିନି ଏ ମୁହୂର୍ତ୍ତି କ'ଣ ଓ କାହିଁକି ? ଏଭଳି ଦୁର୍ବଳତାର ଅର୍ଥ କ'ଣ ହୋଇପାରେ !

ରୁକ୍ମିଣୀର ନିଦ ରୁଷିକରି ଭାଙ୍ଗିଗଲା । ସେ ଧଡ଼ପଡ଼ ହୋଇ ଉଠି ବସି ପଡ଼ିଲା । ମୋ ହାତ ଖସି ପଡ଼ିଲା । ଗ୍ରୁଡ଼ ଧଡ଼ପଡ଼ ହେଲା । ମୁଁ ହଠାତ୍ କହି ପକାଇଲି—'ମୁଣ୍ଡ ବଥାଉଚି, ସେଇଥିପାଇଁ ଉଠିଥିଲି ।'

ରୁକ୍ମିଣୀ କିଛି କହିଲା ନାହିଁ । ମୁଁ ପଥର ଭଳି ବସି ରହିଲି । ମୋ ଦେହ ହାତ ଥଣ୍ଡା ଲାଗିଲା ।

ରୁକ୍ମିଣୀ ଉଠି ଠିଆ ହେଲା ଓ କିଛି ସମୟପାଇଁ କ'ଣ କରିବ, କିଛି ଭାବି ନ ପାରି ବାରଆଡ଼କୁ ଗଲା । ମୁଁ ହନୁଭଳି ନିର୍ବେଦ ଭାବରେ ଗୋଟାଏ ଠୁଙ୍କା ପାହାଡ଼ ଚୂଳରେ ଏକା ଏକା ବସିଥିଲି ଭଳି ଲାଗିଲି । ରୁକ୍ମିଣୀ ବାରପଟୁ ଆସି ବାର ଘର ଦୁଆର ପାଖରେ ଠିଆ ହୋଇ ରହିଲା ।

ମୋ ଅଜାଣତରେ ମୁଁ କେତେବେଳେ ଆସି ଶୋଇବା ଘର ଖଟ ଉପରେ ଶୋଇଛି । ମନେ ମନେ ଭାବୁଛି ମୁଁ ମୋର କର୍ତ୍ତବ୍ୟ କରିଛି । ମୁଣ୍ଡ ବଥାଉଛି ବୋଲି କହିଛି । ତେଣିକି ଶେଯରେ ଶୋଇଛି । କବାଟ ଖୋଲା ରଖିଛି । ରୁକ୍ମିଣୀ ଆସିବ । ଖଟ ଉପରେ ଏଇଠି ବସି ମୋ ମୁଣ୍ଡ ଚିପି ଦେବ ।

ଏଣିକି ଆଉ ବ୍ୟସ୍ତ ଲାଗୁନି । ମୁହୂର୍ତ୍ତିର ଦୁରନ୍ତ ଇଚ୍ଛା ପୂରଣ ପାଇଁ ଯାହା କରିବାର କଥା, ସବୁ କରିଛି । ଯେତକ ନିଗୁଡ଼ିଲା, ସେତକ ଢେଳିଛି । ଆଉ କିଛି କରିବାର ନାହିଁ ।

ଶୋଇ ରହି ଅପେକ୍ଷା କଲି ନିଶ୍ଚିନ୍ତରେ ।

ମୁହୂର୍ତ୍ତି ପରେ ମୁହୂର୍ତ୍ତି ବଢ଼ି ଯାଉଛି । ଅନ୍ଧାର । କିଛି ଦେଖାଯାଉନି । କେବଳ କାନ୍ଥ ଆଲମିରାରୁ ଠାକୁରଙ୍କ ତେଲା ତେଲା ଆଖି ।

ସେ ସବୁ ଦେଖିଛନ୍ତି, ସବୁ ଜାଣିଛନ୍ତି । ପ୍ରତ୍ୟେକଟି ମୁହୂର୍ତ୍ତି ତାଙ୍କର । ମୁଁ ଓ ରୁକ୍ମିଣୀ ମଧ୍ୟ ।

ଅପାର ତାଙ୍କ କରୁଣା ।



# ଉତ୍ତର ପୁରୁଷ

**ଚନ୍ଦ୍ରଶେଖର ରଥ**

ସରଜମିନ୍ ତଦନ୍ତରେ ଆସିଥିବା ଦାରୋଗାବାବୁଙ୍କ ଇସାରା ପାଇ ସେମାନେ ବେଣୁଧର ଓଝାଙ୍କୁ ପୁଣିଥରେ ଟାଣି ବସାଇ ଦେଲେ ।

'ଆପଣ ମୋ ଉପରେ ଜୁଲମ୍ କରୁଛନ୍ତି । ମୋର ବିପତ୍ତିବେଳେ ଆପଣମାନଙ୍କର ଟିକଏ ହେଲେ ଦୟା ହେଉନାହିଁ । ମୁଁ କୌଣସି କେସ ଶୁଣିବାକୁ ଚାହେଁନା । ମୋତେ ଛାଡ଼ିଦିଅ । ମୁଁ ଆଉ ବଞ୍ଚିବାକୁ ଚାହେଁନା ।'

ଚିତ୍କାର କରି ବେଣୁଧର ଓଝା ଓଟାର ହେଲେ ଖଟରୁ ଉଠି ପଡ଼ିବାକୁ । ତାଙ୍କ ମୁହଁରେ ଚାରିପାଞ୍ଚ ଦିନର ଦରପାଚିଲା ଦାଢ଼ି । କପାଳଯାକ ଝାଳ ।

"ଆପଣ ଏଭଳି ଉତ୍ତ୍ୟକ୍ତ ହେଲେ ବାଧ୍ୟ ହୋଇ ଆପଣଙ୍କୁ ଥାନାକୁ ଚାଲାଣ କରି ନେବାକୁ ପଡ଼ିବ । ଆମେ ଆସିଛୁ ସରୋଜ କାନ୍ତ ଓଝା, ଓରଫ୍ ବାବୁଲା, ବୟସ ଏକୋଇଶି, ମୁକାମ ବଳରାମପୁରଙ୍କ ଅପମୃତ୍ୟୁରେ ତଦନ୍ତ କରିବା ସକାଶେ । ଘଟଣାରୁ ପ୍ରକାଶ ଯେ ଏଇ ଗାଁରୁ ସାତମାଇଲ ଅନ୍ତରରେ ଥିବା ତ୍ରିଶୂଳବନ୍ଧ ମୋଡ଼ ପାଖରେ ଗୁଳିମାଡ଼ରେ ସେ ନିହତ ହୋଇଛନ୍ତି । ମୃତ୍ୟୁବେଳକୁ ତାଙ୍କ ପାଖରେ କେବଳ ଆପଣ ହିଁ ଥିଲେ । ଆପଣଙ୍କ ହାତରେ ବନ୍ଧୁକ ଥିବା ସେ ପାଖରେ ଗାଈ ଚରଉଥିବା ଟୋକା ଦେଖିଛି । ଆପଣଙ୍କ ଡାହାଣ ହାତରେ ବନ୍ଧୁକ ଏବଂ ବାଁ ହାତରେ ଡଜନୋଟି ମଲ ହରଡ଼ ଚଢ଼େଇର ବେକ ଗୁନ୍ଥି ଓହ୍ଲାଇଥିଲେ ବୋଲି ସେ ସାକ୍ଷ୍ୟ ଦେଉଛି । ଆପଣ ଏ ଅପମୃତ୍ୟୁ ବିଷୟରେ ଯାହା ଜାଣନ୍ତି କହନ୍ତୁ ।"

ବେଣୁଧର ଓଝା କେବଳ ହୁଁ କରି ଅନେଇ ରହିଲେ । ତାଙ୍କ ତଳପାଟି ଓହଳି ରହିଗଲା ।

ଦାରୋଗା ବାବୁ ତାଙ୍କ ନୋଟ୍ ବହି ଉପରେ କଲମ୍ ଠପ୍ ଠପ୍ କରି କହିଲେ "କୁହନ୍ତୁ; ଆପଣ ଯାହା ଜାଣିଛନ୍ତି କୁହନ୍ତୁ ।'

ଖୁବ୍ ଅସ୍ପଷ୍ଟ ସ୍ୱରରେ ଶୁଭିଲା—

"ଆପଣ କ'ଣ ସନ୍ଦେହ କରୁଛନ୍ତି ଯେ······ ।"

ମୁହଁ ପୋତେଇ ପକେଇଲେ ବେଣୁଧର ଓଝା । ଦାରୋଗା ଅପେକ୍ଷା କଲେ । କଲମ ମୁଣ୍ଡିକୁ ପାଟିରେ କାମୁଡ଼ି ସେ ଘଣ୍ଟାକୁ ଦ'ଥର ଚାହିଁ ନେଲେ । ମୁହଁକୁ ହାତ ଖସେଇ ଆଣି ବେଣୁଧର ବାବୁ ମିଟ ମିଟ ଚାହିଁଲେ ।

"ଅସମ୍ଭବ ।···ଆପଣଙ୍କର କ'ଣ ପୁଅ ନାହିଁ ଦାରୋଗା ବାବୁ । ବାବୁଲି ମୋ ପୁଅ, ଗୋଟିଏ ବୋଲି ପୁଅ । ଆପଣ କ'ଣ ବିଶ୍ୱାସ କରି ପାରୁଛନ୍ତି ଯେ ମୁଁ କଦାପି···।" ପୁଣି ମୁହଁ ପୋତେଇ ପକେଇଲେ ସେ ।

"ମୁଁ କ'ଣ ସନ୍ଦେହ କରୁଛି ବା ସନ୍ଦେହ କରୁନାହିଁ ସେଥିରେ ଆପଣଙ୍କର କିଛି ଯାଏ ଆସେ ନାହିଁ । ମୁଁ କେବଳ ଜାଣିବାକୁ ଚାହେଁ— ଆପଣ ଧରିଥିବା ବନ୍ଧୁକ ଗୁଳିରେ ସରୋଜକାନ୍ତ ଓଝାଙ୍କର କିପରି ମୃତ୍ୟୁ ଘଟିଲା ।"

କିଛି ସମୟ ନୀରବରେ ବିତିଗଲା ।

ଖୁବ୍ ଗମ୍ଭୀର ହୋଇ ଦରବୁଜା ଆଖିରେ ବେଣୁଧର ଚାହିଁଲେ ଦାରୋଗାଙ୍କ ମୁହଁକୁ । ତା'ପରେ ଦୁଇଆଣ୍ଠୁ ସନ୍ଧିରେ ହାତ ଯୋଡ଼ିକୁ ଭର୍ତ୍ତିକରି ସେ ଅଧେ ମୁଣ୍ଡନୁଆଇଁ ନେଲେ ତଳକୁ । ଓଠ ଚିପି ମନକୁମନ କଥା ହେଲା ଭଳି କହିଲେ—

"ଅନେକ ଲେଖାଲେଖି ପରେ ସେ ରାଜିହେଲା ବଡ଼ଦିନ ଛୁଟିରେ ଗାଁକୁ ଆସିବାକୁ ।···ଆସିଲାଦିନୁ ତା'ର ଗୋଟେ ଜିଦ୍ ଚଢ଼େଇ ଶିକାର କରିବ । ଜିଶିଳ ବନ୍ଧରେ ହଂସରାଳି ଓହ୍ଲେଇବା ସେ ଜାଣେ । ଏବେ ନୁହେଁ—ପିଲାଦିନୁ ଜାଣେ । କେମିତି ଦଳ ଦଳ ହୋଇ ସେ ପକ୍ଷୀ ସବୁ ପାଣି ଉପରକୁ ଓହ୍ଲେଇ ଆସନ୍ତି । କେମିତି ସେ ଭଙ୍ଗା ହୁଡ଼ା ଉପର କଣ୍ଟାଗଛମୂଳେ ଲୁଚିଗଲେ ସେମାନେ ପାଖକୁ ପହଁରି ଆସନ୍ତି । ପରସ୍ପରକୁ ଥଣ୍ଟରେ ଖୁମ୍ପି କଥାବାର୍ତ୍ତା କରନ୍ତି । ସେତିକିବେଳେ ବନ୍ଧୁକର ଘୋଡ଼ା

ଦବେଇ ଦେଲେ ଖଇ ଫୁଟିଲା ପରି ଉଠି ଯାଆନ୍ତି ପାଣି ଉପରୁ; ଆଉ ଢ଼ଙ୍କ ଗୁଡ଼ାକ କେମିତ ଚଡ଼୍‌ମାଡ଼୍ ହୋଇ ଲାଗିଥାନ୍ତି—ଏ ସବୁ ସେ ଜାଣିଛି ।

ଶିକାର କରିବାକୁ ଟୋକା ବୟସରେ ମନ ହେବା କଥା ।......"

ବେଣୁଧରଙ୍କ ଆଖିରେ ପଲକ ନାହିଁ ଅସିଲା । ସ୍ୱର ଗଦ୍‌ଗଦ ହୋଇଗଲା ।

ଦାରୋଗା ବାବୁ ଅଟ୍ଟେ ଗଳା ସଫା କରିନେଲେ ।—ମନେ ପକେଇଲା ପରି ଶୁଣେଇଲେ "ସେଦିନ କ'ଣ ହେଲା ।"

ବେଣୁଧର ଚେଇଁପଡ଼ି ଶାନ୍ତେଇ ଗଲେ । ଦାନ୍ତ ଦାବି ଦାରୋଗାଙ୍କ ମୁହଁକୁ ଚାହିଁ ପୁଣି ଆଖି ନୁଆଇଁ ନେଲେ ।

"ହୁଁ—ସେ ଦିନ...ସେଇଆ ହେଲା । ଆଉ କ'ଣ ହେବ । ଖାଇ ସାରି ସେ ଆଉ ଥୟ ହେଲା ନାହିଁ । ମୁଣ୍ଡା ବନ୍ଧୁକ ଧରି ତା'ର ସେ ନୂଆ ଜଙ୍ଗଲ ଟୋପିଟା ପିନ୍ଧି ବାହାରି ପଡ଼ିଲା ।"—

"ତା'ପରେ—।"

"ତା'ପରେ ତା' ମା' ମୁଣରେ ଆଣି ଜଳଖିଆ ପୁଡ଼ାଟାଏ ଯୋଇ ଦେଇ ଦୁଆର ମୁହଁରେ ଠିଆ ହୋଇ କହିଲା—"ବେଗି ପଳେଇ ଆସିବ । ଆଜି ବାବୁଲା ଖାଇବ ବୋଲି ସାଢ଼ି ପାଇଁ ଗଳା ଖେଚେଡ଼ି କରୁଛି । ହେଇଟି, ଅଦା ପକେଇଲେ ବାବୁଲାକୁ ଖୁବ ପ୍ରିୟ ।"

ସେ ତା' ମା'କୁ ହସି ହସି ଚାହିଁ କହିଲା, "କାହିଁକି ବୃଥାରେ ହଇରାଣ ହଉଛ ? ମୁଁ ଆଗ ଫେରିଆସେ, ତା'ପରେ ଯାହା ହେଲେ ଲାଗିବା ।"

ତା ମା' ଶୁଣେଇ ଶୁଣେଇ କହିଲା, "ହେଇ ଦେଖ ପିଲାକୁ ସାଙ୍ଗରେ ନେଇ ଯାଉଛ । ବୁଝି, ଖବର ଦାର୍ । ବେଳ ଥାଉ ଥାଉ ଫେରି ଆସିବଟି ।"

ଦାରୋଗା ପୁଣି ଘଣ୍ଟାକୁ ଚାହିଁ କଲମ କାମୁଡ଼ିଲେ, ଅପେକ୍ଷାକରି କହିଲେ, "ସେଇଠୁ..."

"ସେଇଠୁ ଆମେ ଗଛ ଗୁଲ୍‌ଗୁଲିରେ ଗାଁ ଗୋହିରି ପାରି ହୋଇଗଲୁ । ଗୁଡ଼ାଏ ଗେଣ୍ଡାଳିଆ ଉଷ୍ଣ ପଡ଼ିଆ ଉପରେ ଓହ୍ଲେଇ ଥାନ୍ତି । ସେ ଟୋକା ଚଙ୍ଗ ଚଙ୍ଗ ହେଲା ଗୁଳି ଫୁଟାଇବାକୁ । ତା' ଢ଼ଙ୍ଗରେ ଲାଗୁଲି ବାଉଛି କାହାଁକା । ଲକ୍ଷ ବସେଇଲାବେଳେ ହାତ ଗୋଡ଼ ଲଡ଼ ଲଡ଼ କଲେ, କ'ଣ ହୁଏ ? ତା'ର

ସେ ଲମ୍ବ ବାଳ, ଲମ୍ବ ଜଟ, ସେ ଲହୁର ଝିପର ସେଣ୍ଟ ଦେଖିଲେ ମୋ ହାଡ଼ ଜଳିଯାଏ ରାଗରେ । ସେଗୁଡ଼ାକ ଦେଇ କ'ଣ ହେବ ଭଲ । ଉଡ଼ିଗଲେ ଗେଣ୍ଡାଳିଆଯାକ । ମୋ ମୁହଁକୁ ବୁହିଁ ସେ ଟଗଲ ହସିଦେଲା । କହିଲା 'ଏଥର ତୁମେ ମାର, ନ ହେଲେ ଗୁଳିଯାକ ନଷ୍ଟ ହଉଚ । ଫାୟାର କଲେ ଯଦ ଜନ୍ତୁ ମଲା ନାହିଁ, ତେବେ କ ଲାଭ ।"—ମୁଁ ତା' ହାତରୁ ବନ୍ଧୁକ ଛଡ଼େଇ ନେଇଥିଲି ।

ବେଣୁଧର ବାବୁ ନୀରବ, ଆଖିରେ ପଲକ ନାହିଁ ।

ଦାରୋଗାଙ୍କ ନୋଟ ବହି ଉପରେ ପେନ୍‌ସିଲର ଠପ୍ ଠପ୍ ।

"ସେ ନାଳ ପାଖ ଢିମ୍ବିରି ଉପରେ ଥୋକେ ହରଡ଼ ଆସି ବସିଗଲେ । ବୁଦାରୁ ବୁଦାକୁ, ଗଛରୁ ଗଛକୁ ଛପିଛପି ମୁଁ ପାଖେଇଲି । ସେ ଡେଇଁ ଡେଇଁ ଆସୁଥାଏ ମୋ ପଛେ ପଛେ । ଢନୋଟି ଚଢ଼େଇ ଝିଙ୍କି ପଡ଼ିଲେ । ସେମାନଙ୍କ ଫଡ଼୍ ଫଡ଼୍ ହେଉଥିବା ଡେଣାମାନଙ୍କୁ ଏକାଠି କରି ସେ ଆସି ପହଞ୍ଚିଲା । ବନ୍ଧୁକରେ ସେମାନଙ୍କୁ ଓହଳାଇ ଆମେ ଅଗେଇଲୁ......ତ୍ରିଶୂଳ ବନ୍ଧ ଉପରେ ପାଞ୍ଚଶ ବର୍ଷର ପୁରୁଣା ବଟ ଗଛ । ଗର୍ଭ ଜଳିଯାଇଥିବା ଗୋଟାଏ ବରଗଛ ଜାମୁକୋଳି ଗଛ । ତା' ପାଖକୁ ସେଇ ଗହଳିଆ କଣ୍ଟା ବବୁଲ ।... . ହଂସ-ରାଜଙ୍କ ବେଳା ଆଉରି ହେଇ ନ ଥାଏ । ଗୋଟିଏ ଖଣ୍ଡ ପାରି ହେଇଗଲେ ଛାଇରେ ବିଶ୍ରାମ ନେବାକୁ ଟାଉ ଟାଉ ଗୁଳିଆହି । ସେ କେଜାଣି କାହିଁକି ମଁଙ୍କୁ ନୂଆ ଦେଖିଲା ଭଳି ହସି ହସି କହିଲା—"ତମ ଗୋଡ଼ ଯୋଡ଼ାକ ଏମିତ ଆଣ୍ଠୁ ପାଖରୁ କାହିଁକି ଓସାରି ହୋଇ ଯାଉଚ । ମୋର କାହିଁ କି ମା'ଙ୍କର ମଧ୍ୟ ନାହିଁ ? ମୋତେ କଥାଟା ଅସୁଖ ଲାଗିଥିଲା । ମୁଁ ଅଲଟ ବୁଲିବାକୁ ରାହିଁ ଦେଲି ।......ଏତିକିବେଳେ ଶଗଡ଼ ଗୁଳା ଉପରେ ଗୋଟେ ଖଣାରେ ଗୋଡ଼ ପଡ଼ିଗଲା । ମୁଁ ପଡ଼ିଗଲି ଆଉ ସେ ଏମିତ ଚଟ୍‌କରି ବନ୍ଧୁକ ନଳୀଟାକୁ ଧରିନେଲା । ମୁଁ ଧଡ଼ପଡ଼ ହୋଇ ଉଠିଲାବେଳକୁ ହଠାତ୍ ବନ୍ଧୁକର ଆବାଜ ହେଲା ।......ଦେଖିଲାବେଳକୁ ସବୁ ସରି ଯାଇଛି—।"

ଦାରୋଗା ବାବୁ ବାଁ ହାତରେ ମୁହଁଟାକୁ ପୋଛି ଦେଇ ନୋଟ ବହିଧରି କଲମ ଟେକଲେ, ପଚାରିଲେ—

"ଆପଣ ଯାହା କହିଲେ ଶୁଣିଲି ଏବଂ ନୋଟ କଲି, ଆପଣ ମୋର କେତୋଟି ପ୍ରଶ୍ନର ଉତ୍ତର ଦେବେ ?"

ବେଣୁଧର ନ ବୁଝିଲା ଭଳି କେବଳ ଅନେଇ ରହିଲେ ।

"ଆପଣ ବନ୍ଧୁକରେ ଭସ୍ନ ଦେଇ ଉଠି ନ ଥିଲେ କ'ଣ ବନ୍ଧୁକ ଫୁଟିଥାନ୍ତା ?"

"ନା, ମୁଁ ଘୋଡ଼ା ଆଦୌ ଟିପି ନାହିଁ ।...ଅସମ୍ଭବ । ଏଇ ହାତରେ ତାଙ୍କୁ ଏଣ୍ଟ୍ରେଟିଏ କରିଛୁ...ଏଇ ହାତରେ ପୁଣି ମୁଁ ବନ୍ଧୁକ ଟିପି ତାଙ୍କୁ... ନା, ନା !"

"ଆପଣ ମୋ ପ୍ରଶ୍ନର ଉତ୍ତର ଦେବାକୁ ଚେଷ୍ଟା କରନ୍ତୁ । ଘୋଡ଼ା ନ ଟିପିଲେ କ'ଣ ବନ୍ଧୁକ ଫୁଟେ ?"

"ନା !"

"ତେବେ ଆପଣ ଯଦି ଟିପି ନାହାନ୍ତି, ତା ହେଲେ ମୃତ ସରୋଜକାନ୍ତ କ'ଣ ନିଜେ ସେ ଘୋଡ଼ାକୁ ଟିପିଛନ୍ତି ?"

"ନା ।"

"ତେବେ ସେ ବନ୍ଧୁକ ଫୁଟିଲା କେମିତି, କହି ପାରିବ ?"

କିଛି ଉତ୍ତର ନାହିଁ ।

"କହନ୍ତୁ ।"

"କ'ଣ କହିବି ?"

"ଆପଣଙ୍କ ହାତରେ ହିଁ ସେ ବନ୍ଧୁକ ଫୁଟିଛି ।"

"ବୋଧହୁଏ ଫୁଟିଛି ।"

"ବୋଧହୁଏ ନୁହେଁ, ନିଶ୍ଚୟ ଫୁଟିଛି ।"

କିଛି ନୀରବତା ।

"କହନ୍ତୁ, ହଁ ନା ନାହିଁ ।"

"ହଁ ।"

"ତା ହେଲେ, ଆପଣ ନିଜ ଇଚ୍ଛାରେ ବନ୍ଧୁକର ଘୋଡ଼ା ଟିପି ନାହାନ୍ତି ବୋଲି ପ୍ରମାଣ କ'ଣ ?"

"ଷ୍ଟପ୍ ବେ !"—ବେଣୁଧର ଓଝା ଧଡ଼ାସ କିନା ଉଠି ପଡ଼ିଲେ-ବେଳକୁ ଦୁଇଜଣ କନେଷ୍ଟବଲ୍ ତାଙ୍କୁ ପୁଣି ଖଟ ଉପରେ ବସାଇ ଦେଲେ ।

"ଶଇତାନ୍ ଗୁଣ୍ଡା, ହାରାମଜାଦା କୁକ୍କୁର ଶାଳା ? ନିକଲ୍ ଯା, ମୋ ଆଗରୁ । ନ ହେଲେ ମୁଁ ସମସ୍ତଙ୍କୁ ଗୁଳି ମାରି ଉଡ଼େଇ ଦେବି ।"

ଦାରୋଗାଙ୍କ ସ୍ୱର ଅବଚଳିତ ?

"ଆପଣ ଉନ୍ନବର୍ଷ ତଳେ ବନ୍ଧୁକ ଉଠେଇଥିଲେ ମୃତ ସତ୍ୟେନକାନ୍ତକୁ ଗୁଳି କରି ଦେବାକୁ ?"

"ନା, ନା, ନା !—ମିଛୁଆ, ଜୁଆଚ୍ଚୋର, ମଦୁଆ କାହାଁକା !"

"ଆଜ୍ଞା, ହଁ ! ତା'ର ସାକ୍ଷ୍ୟ ପ୍ରମାଣ ଅଛି । ସେଦିନ ଦ୍ୱିପ୍ରହରବେଳେ ସତ୍ୟେନକାନ୍ତ ତାଙ୍କ ମା' କୋଡ଼ରେ ଶୋଇଯାଇ ଥିଲେ । ଆପଣ କୌଣସି କାରଣ ନ ଦେଖାଇ ଭୟଂକର ରାଗି ଯାଇଥିଲେ ଗୁଳି କରିଦେବାକୁ ।"

ଗୋଟାଏ କଳାଧୂଆଁର ଗୁଳି ଉଡ଼ି ଆସିଲା, ବେଣୁଧର ବାବୁଙ୍କର ପ୍ରଖର ରାଗ ଜରଜର ମୁହଁ ଉପରକୁ । ଭ୍ରୂ କୁଞ୍ଚେଇ ଗଲା । ଖଟ୍ କନା ମୁହଁ ଟେକି ସେ ଚିତ୍କାର କଲେ "ମୁଁ ଅସ୍ୱୀକାର କରୁଛି ।—କିଏ କହିଲା, ମୁଁ ବନ୍ଧୁକ ଟେକିଥିଲି ଗୁଳି କରିବାକୁ । ଯଦିବା ଘର କଳିରେ ରାଗିଗଲେ ସେମିତି ହୋଇଥାଏ, ମୁଁ କ'ଣ ସତେ ଗୁଳି କରିଥାନ୍ତି—କିନ୍ତୁ ଏ ସବୁ ମିଛ । କିଏ ଦେଖିଛି ମତେ କହ ।"

"ଏହା ସତ । ସତ୍ୟେନକାନ୍ତଙ୍କ ମା' ନିଜେ ଦେଖିଛନ୍ତି ।"

"ଓ, ବୁଝିଲି ।"—ବେଣୁଧର ଓଝାଙ୍କ ସ୍ୱର ଅନେକ ଗହିରିଆ ।···

···ସେଦିନ ଅଶିଣ ସର ଅଂସୁଥାଏ । ଧୋବ ଫରଫର ହାଲୁକା ବିଦେଶିନୀ ଶୀତ ଗୁଡ଼ିଏ ଏଠି ସେଠି ଗୁଳି ଦେଖି ମନ୍ଦା ବାନ୍ଧିଥାନ୍ତି । ଷ୍ଟେସନକୁ ଗଲା ବାଟରେ ଗୃହିଣୀଙ୍କ ପିଣ୍ଡାରେ ମଧୁମାଳତୀର ଗଂଧବାସ ସେ ଦ୍ୱିପ୍ରହର ବେଳା ନିଘୋଳା ଦେଖି ଉଠି ଯାଇଥିଲେ । କବାଟ ଫିଟାଇଲେ ମିଷ୍ଟର ଗୃହିଣୀ । ସେଦିନ ଶନିବାର ଛୁଟିନେଇ ସେ ଘରେ ସହଳ ଖାଇ ପିଇ ସାରିଥିଲେ । ମିସେସ୍ ଗୃହିଣୀଙ୍କ ହାତରୁ ଚଡ଼୍ ଚଡ଼୍ ହୋଇ କପେ ଚା ପିଇଦେଇ ବେଣୁଧର ବାବୁ ସ୍ଥିରକଲେ ଯେ ଆଉ କଟକ ଯିବେ ନାହିଁ । ଘରକୁ ସିଧା ଫେରି ଆସି ବାଡ଼ କବାଟ ଫିଟେଇ ସେ ଶୋଇବା ଘରକୁ ପଶି ଯାଇଥିଲେ । ଗୃହର ଉପରକୁ ଦୁଇଟି ମୁହଁ ଦେଖି ସେ ଭୟଂକର ଉତ୍କ୍ଷିପ୍ତ ହୋଇ ଯାଇଥିଲେ । ଆହୁରି ଉତ୍କ୍ଷିପ୍ତ ହୋଇଥିଲେ, ବାବୁଲିର ଗଜୁରି ଜଣ ଦେଖି । ଅଭଦ୍ର ! ନାଲାଏକ ! ସୁଅର୍ କା ବଚ୍ଚା ! !······

ବେଣୁଧର ଓଝାଙ୍କ ଆଖିରେ ଝଲକାଏ ଅଗ୍ନି ଉର୍ବଉବ ଲୁହ ଉପର ଦେଇ ପଡ଼ି ଗଲା ।

"ଆଉ ଦିନେ ଆପଣ ସାମାନ୍ୟ ନିଶା ଖାଇ ସ୍ତ୍ରୀଙ୍କ ସାଙ୍ଗରେ ଯୁକ୍ତି କରିଥିଲେ ଯେ ମୃତ ସରୋଜକାନ୍ତ ଆପଣଙ୍କ ପୁଅ ନୁହେଁ । ଆପଣ ନିଃସନ୍ତାନ । ଆଉ ତାହା ପୁଅଟାଏ ମରିଗଲେ ବରଂ ଆପଣ ଅପମାନ ଆଉ କଳଙ୍କରୁ ମୁକ୍ତ ହେବେ । ପ୍ରମାଣ ସ୍ୱରୂପ ଆପଣ ସରୋଜ ଆଲବମ୍‌ରେ ତା' ଫଟୋଟିକୁ ଫଳକଟା ଛୁରୀରେ ଚିରି ଦେଇଥିଲେ । ସେଇଟା ଏବେ ମଧ୍ୟ ଅଛି ।"...

...ମାଧୁସ୍ମି ଦାସଙ୍କୁ ବେଣୁଧର ବାବୁ ପ୍ରେମକରି ବିଭା ହୋଇଥିଲେ । ସେ କନ୍ୟା ବୁଝି ପାରି ନ ଥିଲେ କାହିଁକି ବାବୁଲା ଜନ୍ମହେବା ପରେ ତାଙ୍କର ଆଉ ସନ୍ତାନ ହେଲେ ନାହିଁ ଏବଂ ଅନେକ ଦିନ ଧରି ବିଶ୍ୱାସ କରି ପାରୁ ନ ଥିଲେ କାହିଁକି ବାବୁଲାର ଚେହେରା ଭିତରେ ସେ ନିଜକୁ ଆବିଷ୍କାର କରି ପାରୁ ନାହାନ୍ତି ।

"ଏଇଟା ନିହାତି ସ୍ୱାଭାବିକ କଥା । ସବୁ ପିଲାଙ୍କ ବିଷୟରେ ବାପା ମା'ଙ୍କ ଭିତରେ ଏମିତି କଳହ ହୁଏ । ତାହାର କେତେ ଚେହେରା କିଏ ଉତାରି ଆଣିଛି, ଜାଣିବାକୁ ଆଗ୍ରହ ହୁଏ ।"

ଖୁବ୍ ନୁଆଁଣିଆ ସ୍ୱରରେ ବେଣୁଧର ଓଠ୍ୟା ନିଜକୁ ବୁଝାଇବାର ଶୁଣାଗଲା ।

"ଆପଣ ଟିପଚନ୍ଦ୍ର ମାଝି ଗ୍ରହରେ ଥରେ ରସିଦ ତିଆରି କରୁଥିଲା-ବେଳେ ସରୋଜକାନ୍ତ ହଠାତ୍ ପଶି ଆସିଥିଲେ ଏବଂ ଆପଣଙ୍କ ସବୁ ଆଙ୍ଗୁଠିରେ କଳା ଲାଗିଥିବା ଦେଖି ହସି ଦେଇଥିଲେ । ଆପଣ ରୁଲ୍‌ବାଡ଼ିରେ ତାଙ୍କୁ ମାରିବାକୁ ଗୋଡ଼େଇ ଯିବାରୁ ସେ ବାଥ୍‌ରୁମ୍‌ରେ ଆଶ୍ରୟ ନେଇଥିଲେ । ଆପଣ ଝରକାକୁ ବାଡ଼େଇ ଭାଙ୍ଗି ଦେଇଥିଲେ । ଆପଣଙ୍କ ସ୍ତ୍ରୀ ବାଧା ଦେବାରୁ ରୁଲବାଡ଼ିରେ ତାଙ୍କୁ ଅପମାନସୂଚକ ଆଘାତ କରିଥିଲେ ଏବଂ ତାଙ୍କ ସତୀତ୍ୱ ଉପରେ ଆକ୍ଷେପମୂଳକ ମନ୍ତବ୍ୟ ପ୍ରକାଶ କରିଥିଲେ ।"

"ସଟ୍ ଅପ୍, ରାସ୍କେଲ, ଇଡ଼ିଅଟ୍, ସ୍କାଉଣ୍ଡ୍ରେଲ୍ । ତୁ ମୋ'ର ପ୍ରାଇଭେଟ୍ ଲାଇଫ୍ କଥା ଜାଣିବାକୁ କିଏବେ ଶାଳା ?"

କନଷ୍ଟେବଲ୍ ତାଙ୍କୁ ଜବରଦସ୍ତି ବସେଇ ରଖିଲେ ।

ସେ ଗୋଟାକର ହାତକୁ ଗାଉଁକିନା କାମୁଡ଼ି ପକେଇଲେ । ଠୋ କିନା ଗୋଟାଏ ଚଟକଣା ପକେଇଲା କନଷ୍ଟେବଲ ।

ଦାରୋଗା ଅଉ ଖଣ୍ଡିଏ କାଗଜ ଦେଖିନେଲେ ।

"ଆପଣ ମୃତ ସର୍ବେଶକାନ୍ତଙ୍କୁ ଘୃଣା କରୁଥିଲେ । ସେ ଖାଇଲା-ବେଳେ ତାଙ୍କ ଖାଇବା ଢଙ୍ଗ ଆପଣଙ୍କୁ ପସନ୍ଦ ହେଉ ନ ଥିଲା । ଏକାଠି ବସିଲେ ଆପଣ ଚିଡ଼ୁଥିଲେ । ବଡ଼ କଲର୍‌ ଥିବା ଖଦଡ଼ ଜାମା କିଣିଲା ଦିନ ଜବରଦସ୍ତି ଆପଣ ତାଙ୍କୁ ଘରୁ ଚଡ଼ି ଦେବାକୁ ଧମକ ଦେଇଥିଲେ ।··· ଆପଣଙ୍କ ସାହିରେ ଜଣେ କହୁଥିଲେ ଯେ ସର୍ବେଶକାନ୍ତ ଆପଣଙ୍କଠାରୁ ଆହୁରି ବଡ଼ଲୋକ ହେବେ । ଆପଣ ସେଦିନ ଘରେ ନ ଖାଇ ରାତିଅଧ ପରେ ନିଶା ଖାଇ ଫେରିଥିଲେ ।"

ବେଣୁଧର ଓଝାଙ୍କ ଆଖି ତରଳି ହୋଇ ରହିଥାଏ । ଓଠ ପାଖରୁ ଲାଳ ନିଗିଡ଼ି ଆସିଥାଏ । ତାଙ୍କ ମୁହଁ ପାରି ହଠାତ୍‌ କୁଞ୍ଚେଇ ଗଲା ଏବଂ ସେ ହସି ପକେଇଲେ । ତା'ପରେ ଖୁବ୍‌ ଜୋରରେ ହୋ ହୋ ହୋଇ ହସି ଉଠିଲେ । ଦାରୋଗା ଅପେକ୍ଷା କରିଥାନ୍ତି ।

"ଅଚ୍ଛା ଦାରୋଗା ବାବୁ; ଏକ୍‌ସକ୍ୟୁଜ୍‌ ମି । ଆପଣ ତ ମୁଁ ଦେଖୁଚି, ଜଣେ ଓ୍ୱାଣ୍ଡରଫୁଲ୍‌ ଲୋକ । ଆପଣ ଏତେ କଥା ଯୋଗାଡ଼ କଲେ କେମିତି ? ମୁ ଆପଣଙ୍କୁ ଅଭିନନ୍ଦନ ଜଣାଉଚି । ଏଇଟା ବାସ୍ତବିକ୍‌ ଫେଣ୍ଟାଷ୍ଟିକ ।"

ତାଙ୍କ କପାଳରେ ଝାଳ ଗଳୁଥିଲା, ମେଘ ଜମି ଆସୁଥାଏ ଭ୍ରୂରୁ ଉପରକୁ ।

"ଆପଣ କିନ୍ତୁ ଯାହା ପ୍ରମାଣ କରିବାକୁ ବସିଛନ୍ତି, ସେଇଟା ଏବସର୍ଡ, ଏକେବାରେ ଏବସର୍ଡ ।" ହସିବାକୁ ଚେଷ୍ଟା କଲେ । ଖୁବ୍‌ ଓଜନ ଗୋଟାଏ କ'ଣ ତାଙ୍କ ମୁହଁ ଉପରେ ମଡ଼େଇ ହୋଇ ପଡ଼ିଲା । ସେ ଗମ୍ଭୀର ହୋଇ କେବଳ ଦାରୋଗାଙ୍କୁ ଚାହିଁ ରହିଲେ ।

"ଆପଣ ଖୁବ୍‌ ଭିତରେ ସର୍ବେଶକାନ୍ତଙ୍କ ମୃତ୍ୟୁକାମନା କରୁଥିଲେ । କିନ୍ତୁ ଅନେକ ପ୍ରେମହର ଅଭିନୟ କରିବାକୁ ପଡ଼ୁଥିଲା ଆପଣଙ୍କୁ । ସର୍ବେଶକାନ୍ତ ଆପଣଙ୍କ ଆଖିରେ ଜଣେ ପ୍ରତିଦ୍ୱନ୍ଦ୍ୱୀ । ଆପଣ ଜୀବନସାରା ଅନେକ ପ୍ରତିଦ୍ୱନ୍ଦ୍ୱୀଙ୍କୁ ପରାସ୍ତ କରି ଆସିଛନ୍ତି । ପରାସ୍ତ କରିବା ଅପେକ୍ଷା ହତ୍ୟା କରିବା ପାଇଁ ଆପଣଙ୍କର ଇଚ୍ଛା ଅନେକ ପରିସ୍ଥିତିରେ ପ୍ରକାଶ ପାଇ ସାରିଚି । ଅତଏବ···।"

ଝଲମଲ ଇସ୍ପାତର ଗୋଟିଏ ବାକ୍ୟ ଦାରୋଗାଙ୍କ ମୁହଁରୁ ନ ବାହାରି ତାଙ୍କ ସ୍ଥିର ଆଖିର କୁଣ୍ଡମାନଙ୍କରେ ଓହଳି ରହିଲା । ବେଣୁଧର ଓଝା ସେ

ବାକ୍ୟଟିକୁ ପଢ଼ି ପାରିଲେ ଦାରୋଗାଙ୍କ ଆଖିରେ ଏବଂ ଝରିପଡ଼ୁଥିବା ସେଇ ଆକାଶଟିରେ ।

“ଖୁବ୍ ନବେଲା ରାସ୍ତା । ଝିଣୁଲବନ୍ଧ ପାଖକୁ କେହି କେବେ ଯାଆନ୍ତି ନାହିଁ । ସେଇଠି ପ୍ରେତାତ୍ମା ଉପଦ୍ରବ କରନ୍ତି ବୋଲି ଲୋକଙ୍କ ବିଶ୍ୱାସ । ...ବନ୍ଧୁକର ନଳୀଟିକୁ ଦୁଇ ହାତରେ ନିଜ ତଣ୍ଟି ପାଖରେ ଧରି ରଖି ଯେଉଁ ମୁହଁଟି ତଳକୁ ଝୁଲୁଥିଲା, ତା'ର ନାକ ଆଖି ଭ୍ରୂ ଉପରେ ଅପରିଚିତର ଛାପ । ତଳେ ପଡ଼ିଯାଇ ଯେଉଁ ଅତି ସାଧାରଣ ପ୍ରୌଢ଼ ମୁହଁଟି ଝୁଲି ରହିଥିଲା ସେ ବହୁ ଦିନରୁ ଅପେକ୍ଷା କରିଥିଲା ସେଭଳି ଗୋଟାଏ ମୁହୂର୍ତ୍ତକୁ । ତେଣିକି ଉଠିବାଆଳରେ ବନ୍ଧୁକର ଘୋଡ଼ା ଟିପିଦେବା ଅତିବଡ଼ ଗୋଟାଏ ଖୁନ୍ସ ।”

ବେଣୁଧର ଓଝାଙ୍କ ଦୀର୍ଘଶ୍ୱାସରେ ଶୁଭିଲା “ହୁଁ, ତାହେଲେ ଆପଣ ହିଁ ପ୍ରମାଣ କରିଦେଲେ ଯେ ବେଣୁଧର ଓଝା ଜାଣି ଶୁଣି ତା' ପୁଅ ସରୋଜକାନ୍ତକୁ ଗୁଳିକରି ମାରିଛି । ...ନା କ'ଣ ?”

“ବର୍ତ୍ତମାନ ସୁଦ୍ଧା ତା' ପ୍ରାୟ ସେଇଆ ଜଣା ପଡ଼ୁଛି ।”

“ଏଥିରେ ହତ୍ୟାକାରୀର ଲାଭ କ'ଣ ?”

“ଅନେକ ! ଯାହାକୁ ସେ ଘୃଣା କରି ଆସିଛି ଏବଂ କୌଣସି ପ୍ରକାରେ ଦୂରେଇ ପାରିନାହିଁ, ତାକୁ ସେ ଚିରଦିନ ପାଇଁ ଅପସାରିତ କରି ପାରିଛି । ଦୁର୍ଘଟଣାକୁ ଆଳକରି ବହୁଲୋକଙ୍କର ସହାନୁଭୂତି ଏବଂ ଆଦର ଲାଭ କରିଛି । ସେ ହୁଏତ ଆଶା କରି ପାରୁଛି ଯେ ଶ୍ରୀମତୀ ଓଝାଙ୍କ ସମ୍ପୂର୍ଣ୍ଣ ଆନୁଗତ୍ୟ ପାଇବାରେ ଆଉ କିଛି ବାଧା ଏଣିକି ନାହିଁ ।”

“ମନ୍ଦ ନୁହେଁ । ଏତେ ସବୁ ପ୍ରମାଣ କରିବାରେ ତୁମର କ'ଣ ଲାଭ ହେବ ଶୁଣେ ।” ଓଝାଙ୍କ ଓଠ କଣରେ ଅଳ୍ପ ଟିକିଏ ହସ ମେଘ ଗହଳରେ ହଠାତ୍ ଦିଶି ଲିଭିଗଲା । ଦାରୋଗା ସାମାନ୍ୟ ଅଟକି ଗଲେ ।

ଗୋଟିଏ ଦୀର୍ଘଶ୍ୱାସର ବ୍ୟବଧାନ ପାରି ହୋଇଗଲା ।

“ମୋର ଆଉ ଲାଭ କ'ଣ ? କିଛି ନାହିଁ । କର୍ତ୍ତବ୍ୟ କରିବାରେ ଲାଭ କ୍ଷତିର ବିଷୟ ନାହିଁ ।”

“ତଥାପି ତୁମେ ତ ମୋର ବୟସର ଜଣେ ବାପ । ଧର, ବାବୁଲା ଯଦି ତୁମର ପୁଅ ହୋଇଥାନ୍ତା ।”

ଦାରୋଗାଙ୍କ ମୁହଁ ହଠାତ୍ ନଇଁ ପଡ଼ିଲା । ବର୍ଷାକ୍ରାନ୍ତ ମେଘ ପରି ଫଣ ଫଣ ହୋଇ ଉଠୁଥିଲା ପଡ଼ିଲା ଏବଂ ଟୋପିଟା ଖସି ପଡ଼ିଲା ଅକସ୍ମାତ୍ ।

ବେଣୁଧର ଓଝା ଚମକି ପଡ଼ିଲେ ନା କ'ଣ ।

ଦାରୋଗା ଟୋପିଟି ଗୋଟେଇ ଆଣି ଆଉ ପିନ୍ଧିଲେ ନାହିଁ । ବେଣୁଧର ବାବୁଙ୍କୁ ଥରେ ଚାହିଁଦେଇ ମୁହଁ ଫେରେଇ ବସି ରହିଲେ ।

"ଆଚ୍ଛା, ଦାରୋଗା ବାବୁ, ଆପଣଙ୍କୁ କେଉଁଠି ଦେଖିଛି ବୋଲି ମନେ ହେଉଛି ।"

"ଦେଖିଥିବେ ।"

"ଆପଣଙ୍କ ଘର ?"

"ସେଥିରେ ଆପଣଙ୍କର କ'ଣ ଯାଏ ଆସେ ?"

"ଓ, ଢେର ଯାଏ ଆସେ । ଆପଣଙ୍କ ଘର ରାଣୀପୁର ନୁହେଁ ?"

ବେଣୁଧର ଓଝାଙ୍କ ଆଖି ଘୋଡ଼ାର ଖୁର ପରି ଦାଉଆ । ସ୍ୱରରେ ଗୋଟାଏ କେମିତି ଧମକ ।

"ହଁ, ମୋର ଘର ରାଣୀପୁର । କ'ଣ ହେଲା ସେଇଠୁ ?"

"ହେ, ହେ ହେ । ସେଇଟା ମୋ ଶ୍ୱଶୁର ଘର ଗାଁ ।—"

ହଠାତ୍ ଓହ୍ଲାଇ ଆସିଲେ ବେଣୁଧର ଓଝା । —ଦାନ୍ତ ସନ୍ଧାରୁ ଶୁଭିଲା—"ଆପଣ ମଣିଧର ସାମନ୍ତରାୟ ? ?"

ଦାରୋଗା ଉଠି ଠିଆ ହେଲେ ।

ବେଣୁଧର ଓଝାଙ୍କ ଦୁଇ ଡେଣାରେ ଦୁଇଟି କନେଷ୍ଟବଲ ଓହ୍ଲାଇ ରହିଗଲେ ।

ଦାରୋଗାଙ୍କ ପିଠି ମାରବରେ ଘୂରିଗଲା ଦୂରରୁ ଦୂରକୁ—



# ଭାବକୁ ନିକଟ ସେ ଯେ !

ରାଧାବିନୋଦ ନାୟକ

ଏକ ଗତାନୁଗତିକ, ନିର୍ଦ୍ଦିଷ୍ଟ ଜୀବନକୁ କିଛି ସମୟ ପାଇଁ ଆଲୋଡ଼ିତ କରିବା ପାଇଁ ସମ୍ବାଦଟିରେ ପ୍ରଚୁର ଉପାଦାନ ଥିଲା । ସକାଳର ହକର ସମ୍ବାଦଟିକୁ ନେଇ କିଛି ଉତ୍ତେଜନା ପ୍ରକାଶ କରୁଥିଲା ନୁହେଁ; ବରଂ ତା' ସାଇକେଲଟିକୁ ମନ୍ଥର କରି ନିର୍ଦ୍ଦିଷ୍ଟ କ୍ୱାର୍ଟରମାନଙ୍କରେ କାଗଜଟିକୁ ମୋଡ଼ିମାଡ଼ି ଫିଙ୍ଗିଦେଲାବେଳେ ଚମକପ୍ରଦ ସମ୍ବାଦଟିକୁ କାଗଜରୁ ପଢ଼ି ବୁଝିବାର ଧୈର୍ଯ୍ୟ ହରାଇ ଗୃହସ୍ୱାମୀ / କର୍ତ୍ତ୍ରୀ ତା' ମୁହଁରୁ ସମ୍ବାଦଟିର ବିଶେଷ ବିବରଣୀ ଶୁଣିବା ପାଇଁ ଆଗ୍ରହରେ ଗେଟ୍ ପାଖକୁ ଚାଲିଗଲାବେଳେ ସେ ପରବର୍ତ୍ତୀ କ୍ୱାର୍ଟର ସାମ୍ନାରେ ଅନୁରୂପ ଦୃଶ୍ୟ ଓ ତତ୍ପରତା ପ୍ରକାଶ କରି କ୍ରମେ ଦୂରକୁ ଚାଲି ଯାଉଥାଏ ଏବଂ ଏଇ ଚାଲିଯିବା ଭିତରେ ସେ ହକର୍ ଟି ଯେମିତି ଏକ ସାହାଡ଼ା ସମାନରୂପ ବିଶିଷ୍ଟ କ୍ୱାଟରମାନଙ୍କ ସାମ୍ନାରେ ଗୋଟିଏ ନିର୍ଦ୍ଦିଷ୍ଟ ଛବି ଆଙ୍କି ଦେଇଗଲା । ଗତ ରାତିରେ ଏକାନ୍ତ ନିଜସ୍ୱ ଗୋପନୀୟ ଜୀବନକୁ ଭୁଲିଯାଇ ସକାଳୁ ସକାଳୁ ଅବ୍ୟବସ୍ଥିତ ଶରୀର ଓ ମନ ନେଇ ଯେଉଁ ଗୃହସ୍ୱାମୀ / କର୍ତ୍ତ୍ରୀମାନେ ବୈଠକଖାନାର ଆଭିଜାତ୍ୟରେ ନିଜକୁ ସାମିଲ କରି କପେ କଫି / ଚା ସହିତ ଖବର କାଗଜ ପୃଷ୍ଠାମାନଙ୍କ ମଧ୍ୟ ଦେଇ ସର୍ବସାଧାରଣ ଜୀବନରେ ମିଶିଯିବା ପାଇଁ ସେ ଦିନର ପ୍ରାଥମିକ ପ୍ରସ୍ତୁତି କରନ୍ତି, ସେମାନେ ଏସବୁ ଗତାନୁଗତିକ କାର୍ଯ୍ୟକ୍ରମ ଭୁଲି ଯିଏ ଯେଉଁ ଅବସ୍ଥାରେ ଥିଲେ, ହକରର ଚମକପ୍ରଦ ସମ୍ବାଦ ପରିବେଷଣରେ, ସେଇ

ଅବସ୍ଥାକୁ ଆଦର ନେଇ ନିଜ ନିଜର ଗାର୍ଡ଼ନମାନଙ୍କରେ ସମ୍ବାଦଟିକୁ ଆମୂଳ-ଚୂଳ ପଢ଼ିଗଲେ ଓ ପରେ ପରେ ଅନ୍ୟ ସମ୍ବାଦଗୁଡ଼ିକୁ ଗୌଣ ମନେକରି କେହି ଉପରକୁ ଗ୍ଲୁହିଁ ଘଟଣାଟି ପଛରେ ଥିବା ରହସ୍ୟକୁ ଉନ୍ମୋଚନ କରିବାର ବାଟ ଖୋଜିଲ, କେହି ବାଁ ହାତରେ କାଗଜଟିକୁ ଝୁଲାଇ ଦେଇ ଚଲନ୍ତ୍ୟ ଝୁଙ୍କି ପଡ଼ିଥିବା ଭିଉନୋନ୍ତ୍ର ମୁଣ୍ଡରେ ଆଙ୍ଗୁଳିରେ ଟିକା ମାରୁ ମାରୁ ସମ୍ବାଦଟିରେ ବିସ୍ମୟ ପ୍ରକାଶ କରୁଥିଲ ଓ ଆଉ କେତେକ ଯଥାସମ୍ଭବ ସମ୍ବାଦଟିର ଗୁରୁତ୍ୱରୁ ମୁକ୍ତ ହୋଇଯିବା ପାଇଁ ବାରବଡ଼ ଓ୍ୱାରର ସୀମା ନିକଟରେ ପ୍ରତିବେଶୀ ସହିତ ଉତ୍ତେଜନାମସ୍ତ ଆଲୋଚନାରେ ବ୍ୟସ୍ତ ।

ସମ୍ବାଦଟି ନେଇ ସକାଳର ସହର ହଠାତ୍ ଏକ ସଜୀବ ସକ୍ରିୟତାରେ ଚଞ୍ଚଳ ହୋଇ ଉଠିଲ । କାରଣ ଘଟଣାଟିର ସମ୍ବନ୍ଧ ସେହି ସହର ସହିତ ସଂପୃକ୍ତ, ଯେହେତୁ ସହରଠାରୁ ଅଳ୍ପ କେତେ କିଲୋମିଟର ବ୍ୟବଧାନର କୌଣସି ଶାଖା ଅଫିସରେ ଏହା ଘଟିଥିଲ ଏବଂ ପ୍ରତ୍ୟେକଟି ବ୍ୟକ୍ତି ସେହି ଘଟଣା ସହିତ ସଂପୃକ୍ତ ବ୍ୟକ୍ତିଙ୍କୁ ଠିକ୍ ରୂପେ ଚିହ୍ନି ନ ଥିଲେ ବି ତାଙ୍କର ପଦବୀ ଗୋଟାଏ ସାଧାରଣ ପରିଚୟ ସୃଷ୍ଟି କରିଥିଲ ସେଇ ସହରର ଲୋକମାନଙ୍କ ପାଇଁ ।

ଘଟଣାଟି ଘଟିଥିଲ ପୂର୍ବଦିନ ପୂର୍ବାହ୍ଣ ଦଶଟା ତିରିଶ ମିନିଟ୍‌ରେ ଯେତେ-ବେଳେ ପୋଷାକୀ ସହରର ଲୋକମାନେ ସେମାନଙ୍କର ଆନୁପାତିକ ପଦବୀ-ମାନଙ୍କୁ ନେଇ ଏକ ନିଜସ୍ୱ ଅହଂରେ ନିଜକୁ ଆବିଷ୍କାର କରନ୍ତି ଏବଂ ସେହି ଅନୁଭବଟିକୁ ଦିନ ଗୁଟାଏ ପର୍ଯ୍ୟନ୍ତ ବନ୍ଧାଇ ରଖନ୍ତି । ଅଥଚ ସେଇ ଅହଂବୋଧ ତାଙ୍କ ପାଇଁ ଗୋଟାଏ ବୋଝ ଥିଲ କି କ'ଣ, ଫଳରେ କ୍ୱାର୍କ ଏଣ୍ଡ୍ କୋ: ଶାଖା ଅଫିସର ଜେନେରାଲ ମେନେଜର ମି. ପ୍ରସାଦ ନିଜ ଦୁଇନଳିଆ ବନ୍ଧୁକ ଫୁଟାଇ ସେଇ ବୋଝରୁ ମୁକ୍ତ ହେଲେ ଯେମିତି !

ବାସ୍, ଘଟଣାଟିର ପୂର୍ଣ୍ଣଚ୍ଛେଦ ସେତିକରେ ପଡ଼ିଥିଲେ ଲୋକମାନଙ୍କର ବିଶେଷ କିଛି କ୍ଷତି ହୋଇ ନ ଥାନ୍ତା । ଏମିତି ଅନେକ ଘଟଣା / ଦୁର୍ଘଟଣା ଘଟୁଛି ପ୍ରତି ମୁହୂର୍ତ୍ତରେ ଦେଶର ପ୍ରତ୍ୟେକ କୋଣ ଅନୁକୋଣରେ; କେଉଁଠି ସ୍ୱଞ୍ଚଳ୍ୟ ଅଛି, ନାହିଁ । କିନ୍ତୁ ଏଇ ଘଟଣାଟି ପଛରେ କିଛି ବିଶେଷତ୍ୱ ଥିଲ, ଫଳରେ କେବଳ ସେଇ ସକାଳଟି ନୁହେଁ, ପରବର୍ତ୍ତୀ ଦିନମାନଙ୍କର ପ୍ରତ୍ୟେକ ସକାଳର ହକର ଡାକକୁ ସେ ସହରର ଲୋକମାନେ ଉଦ୍‌ଗ୍ରୀବ ହୋଇ ଗ୍ଲୁହିଁ ରହିଲେ ।

## ଆଗ୍ରହର ପ୍ରଥମ ପର୍ଯ୍ୟାୟ :

ଏହା ଏକ ଦୁର୍ଘଟଣା କମ୍ବା ଇଚ୍ଛାକୃତ ଆତ୍ମହତ୍ୟା, ଏ ସମ୍ପର୍କରେ ସମ୍ବାଦପତ୍ରର ବିବରଣୀ ଅସ୍ପଷ୍ଟାଚ୍ଛନ୍ନ ଥିଲା—ଯେହେତୁ କେବଳ ଲୋକମାନେ ଜାଣିଥିଲେ ମି: ପ୍ରସାଦ ତାଙ୍କର ଦୈନନ୍ଦିନ କାର୍ଯ୍ୟକ୍ରମରୁ କିଛି ସ୍ୱତନ୍ତ୍ର ସମୟ ନିଅନ୍ତି ତାଙ୍କ ଅଫିସ ଯିବା ପ୍ରସ୍ତୁତିରେ । ସେଦିନ ସେ ଅସ୍ୱାଭାବିକ ଥିଲେ ଏବଂ ଘରର ଅନ୍ୟମାନଙ୍କ ଧାରଣାରେ ତାଙ୍କ ପ୍ରସ୍ତୁତି ପର୍ବ ଭିତରେ ବନ୍ଧୁକର ଶବ୍ଦ ସମସ୍ତଙ୍କୁ ବିସ୍ମିତ କରିଥିଲା ଓ ପରେ ପରେ ଯେଉଁ ଦୃଶ୍ୟକୁ ଘରଲୋକଙ୍କ ଠାରୁ ଅଫିସର କେତେକ କର୍ମଚାରୀ ପ୍ରତ୍ୟକ୍ଷ କଲେ ତାହା ବଡ଼ ବୀଭତ୍ସ ଓ ଭୟଙ୍କର । ମି: ପ୍ରସାଦ ତାଙ୍କ ପଢ଼ା ଟେବୁଲରେ ବେକ ଭାଙ୍ଗି ଶୋଇଯାଇ-ଥିଲେ ଯଦିଓ ବନ୍ଧୁକଟି ସ୍ୱାଭାବିକ ଭାବରେ ତାଙ୍କ ହାତମୁଠାରେ ଦୃଢ଼ ଥିଲା । କିଛି ରକ୍ତ ଟେବୁଲ ଉପରୁ ଗଡ଼ି ଆସି ତଳ ଗାଲିଚାକୁ ଲାଲ କରି ଦେଇଥିଲା ।

ବନ୍ଧୁକ ସହିତ ଖେଳିବା ମି: ପ୍ରସାଦଙ୍କର ଗୋଟାଏ ହବି । ହୁଏତ ଏଇ ଖେଳରୁ ଦୁର୍ଘଟଣା ଘଟିଥିବାର ସମ୍ଭାବନାକୁ ଏଡ଼ାଇ ଦିଆଯାଇ ନ ପାରେ ।

## ଆଗ୍ରହର ଦ୍ୱିତୀୟ ପର୍ଯ୍ୟାୟ :

ଅନ୍ତତଃ ଏକ ସାମୟିକ ଉତ୍ତେଜନା ପାଇଁ ଏମିତି ସିଦ୍ଧାନ୍ତ ନିଆ-ଯାଇପାରେ ଯେ ମି: ପ୍ରସାଦଙ୍କର ଏବଂବିଧ ମୃତ୍ୟୁ ଇଚ୍ଛାକୃତ ଆତ୍ମହତ୍ୟା ଓ ବିଶେଷ କରି ଏହା ପ୍ରେମଜନିତ । ଲୋକମାନଙ୍କର ଏଇ ଧାରଣାକୁ ଅଧିକ ସର୍ନିସ୍ଥ କରୁଥିଲା ସମ୍ବାଦପତ୍ରରେ ପୋଲିସ ଅନୁସନ୍ଧାନର ପରବର୍ତ୍ତୀ ବିବରଣୀଗୁଡ଼ିକ । ଘଟଣାଟିର ସତ୍ୟାସତ୍ୟ ବୁଝିବା ପାଇଁ ପୋଲିସ ଅବଶ୍ୟ ଅନେକ ସୂତ୍ର ସହିତ ଯୋଗାଯୋଗ ସ୍ଥାପନ କରିଥିଲେ; କିନ୍ତୁ ସହର ଲୋକଙ୍କ ପାଇଁ ଦୁଇଟି ଚରିତ୍ରଙ୍କର ମତାମତ ଗୁରୁତ୍ୱପୂର୍ଣ୍ଣ ଥିଲା ଓ ସେ ଦୁଇଜଣ ହେଲେ ମି: ପ୍ରସାଦଙ୍କର ବିଧବାପତ୍ନୀ ଏବଂ ତାଙ୍କର ଷ୍ଟେନୋ କୁମାରୀ ଲୀନା ।

## ମିସେସ୍ ପ୍ରସାଦଙ୍କ ବକ୍ତବ୍ୟ :

ମି: ପ୍ରସାଦ ଅତିମାତ୍ରାରେ ସ୍ନେହୀ ସ୍ୱାମୀଟିଏ ଥିଲେ । ତାଙ୍କୁ ସେ ପୂର୍ଣ୍ଣ ପ୍ରେମ ଦେଉଥିଲେ, ତାଙ୍କୁ ଅନ୍ୟମାନଙ୍କ ଭିତରେ ଗୋଟାଏ ସ୍ୱତନ୍ତ୍ର ଷ୍ଟେଟସ୍

ନେବାପାଇଁ ସବୁ ପ୍ରକାର ଉଦ୍ୟମ କରୁଥିଲେ । ମିଃ ପ୍ରସାଦଙ୍କର ଇଚ୍ଛା ଥିଲା ତାଙ୍କୁ କାଚ ଆଲମିରାର ଗୋଟିଏ ଲେଭମାପ୍ସ କରେଇ କମ୍ବା ପଞ୍ଜୁରୀର ଗୋଟିଏ ବାଟମାପୀ ଚଢ଼େଇ ପରି ସଜାଇ ରଖିବାକୁ; ଯେ ଭିନ୍ନ ଋତୁରେ ନିଜର ରଙ୍ଗ ପରିବର୍ତ୍ତନ କରୁଥିବ ଓ ଜଣେ ମୁଗ୍ଧ ଦର୍ଶକ ପରି ସେ କେବଳ ଅନୁଭବ କରୁଥିବେ ନିକଟରୁ ଓ ଦୂରରୁ ।

ଏସବୁ ସତ୍ତ୍ୱେ ଅନେକ ସମୟରେ ମିଃ ପ୍ରସାଦଙ୍କର ଜୀବନର କେତେକ ବ୍ୟତିକ୍ରମ ତାଙ୍କୁ ବଡ଼ ଅସ୍ୱାଭାବିକ ମନେହୁଏ । ବେଳେ ବେଳେ ତାଙ୍କ ମନକୁ କ'ଣ ଆସେ କେଜାଣି, ସେ ଠିଆ ହୋଇପଡ଼ନ୍ତି ଲନ୍‌ର ଗୋଲାପଗଛ ନିକଟରେ । କ୍ରମେ କେମିତି ସମ୍ମୋହିତ ହୋଇ ପଡ଼ନ୍ତି ଓ ଫୁଲଟିକୁ ଦୁଇ ହାତରେ ଧରି ନେଇ ଏକ ନିବିଡ଼ ତନ୍ମୟତାରେ ଛିନ୍ନ ହୋଇପଡ଼ନ୍ତି । ତା'ପରେ ସେ ଅବଶ ମନେ ହୁଅନ୍ତି ଓ ଅନ୍ଧାର ଆସିବା ପର୍ଯ୍ୟନ୍ତ ଲନ୍‌ରେ ଘୂରି ବୁଲନ୍ତି କାହାକୁ କିଛି ନ କହି । ଆଉ କେବେ ଉଦାସ ଉଦାସ ଭାବ ନେଇ ଅଫିସରୁ ଫେରନ୍ତି । ବାରଣ୍ଡାର ଚୌକିରେ ବସି ରହି ଝାପ୍‌ସା ଦିଶୁଥିବା ପାହାଡ଼ କମ୍ବା ସନ୍ଧ୍ୟା ଆକାଶର ଜହ୍ନ ଉପରେ ଆଖି ରଖି ଚୁପ୍‌ଚାପ୍ ରହିଯିବେ କିଛି ସମୟ; ସେତେବେଳେ ଘରଲୋକ ସାହସ କରି କିଛି କଥାବାର୍ତ୍ତା କରନ୍ତି ନାହିଁ । ବରଂ ଇଚ୍ଛା ହେଲେ ତାଙ୍କ ପୋଷା କୁକୁରକୁ ଧରି କ'ଣ ଯେମିତି କଥାବାର୍ତ୍ତା କରନ୍ତି ତା' ସହିତ···ବାସ୍ । ପୁଣି କେତେବେଳେ ପାଗଳଙ୍କ ପରି ଶୀତ ରାତିରେ ବିଛଣାରୁ ଉଠିଯିବେ ଓ ଖୋଲା ଦେହରେ ଟାୱେଲଟା ବେଢ଼ାଇ ଦେଇ ଘୂରି ଘୂରି ଫେରିବେ ଠିକ୍ ସକାଳୁ ସକାଳୁ ।

ଏମିତି ଅଦ୍ଭୁତ କ୍ଷଣ ସମୟରେ ମିସେସ୍ ପ୍ରସାଦଙ୍କୁ ଧାରଣା ହୁଏ ଯେ ମିଃ ପ୍ରସାଦ ଜଣେ ଏବନରମାଲ୍ ବ୍ୟକ୍ତି । ବାହାର ଲୋକଙ୍କ ପାଇଁ ତାଙ୍କର ଯେଉଁ ମନ୍ତବ୍ୟ ଅତ୍ୟଧିକ ଗୁରୁତ୍ୱପୂର୍ଣ୍ଣ ଥିଲା ସେଇଟା ହେଲା ମି. ପ୍ରସାଦଙ୍କର ସୁନ୍ଦରୀ ନାରୀମାନଙ୍କ ପ୍ରତି ପ୍ରବଣତା ।

ଶେଷରେ ମିସେସ୍ ପ୍ରସାଦ କେତୋଟି କଥା ଉପରେ ଗୁରୁତ୍ୱ ଦେଇଥିଲେ । ଘଟଣାଟି ଘଟିବାର କିଛିଦିନ ପୂର୍ବରୁ ମିଃ ପ୍ରସାଦ କ୍ରମେ ଅନ୍ୟମନସ୍କ ହୋଇପଡ଼ୁଥିଲେ ଓ ଠିକ୍ ପୂର୍ବଦିନ ରାତିରେ ନିବିଡ଼ ଆଲିଙ୍ଗନ ଭିତରେ ମିସେସ୍ ପ୍ରସାଦଙ୍କୁ କିଛି କହିବାକୁ ମନ କରୁଥିଲେ···ସେତେବେଳେ ତାଙ୍କ ଆଖି ଦୁଇଟିରେ ଅସହାୟ ଭାବ ସ୍ପଷ୍ଟ ଥିଲା । ତା'ପରେ ହଠାତ୍ ବିଛଣାରୁ ଉଠିପଡ଼ିଲେ ଓ ଝରକାଦେଇ ବାହାରର ଅନ୍ଧକାରକୁ ଗୋଟାଏ ବ୍ଲାଙ୍କ ଫାୟାର କଲେ ଏବଂ ବନ୍ଧୁକଟି ଷ୍ଟାଣ୍ଡରେ ଥୋଇଦେଇ ପୁନର୍ବାର ମିସେସ୍

ପ୍ରସାଦଙ୍କୁ ଜାବୁଡ଼ି ଧରି ପ୍ରଶ୍ନ କଲେ—ବଞ୍ଚିବା ମଣିଷ ପାଇଁ କ'ଣ ଗୋଟାଏ ପ୍ରକାରର ଅନୁଭୂତି ?

ସେ ଏମିତି ଏକ ଆକସ୍ମିକ ପ୍ରଶ୍ନ ପାଇଁ ପ୍ରସ୍ତୁତ ନ ଥିଲେ ଏବଂ ସେ ବାଜେକଥା ଉପରେ ଗୁରୁତ୍ୱ ନ ଦେଇ ତାଙ୍କୁ କୋଳେଇ ପକାଇବା ପାଇଁ ନିଜ ଦେହରେ ଜଡ଼ାଇ ନେଇଥିଲେ ।

## ମିସ୍ ଲୀନା ସମ୍ପର୍କରେ :

ମି. ପ୍ରସାଦଙ୍କ ସ୍ୱଳ୍ପକାଳ ଜୀବନରେ ଲୀନା ଚତୁର୍ଥ ଲେଡିଷ୍ଟେନୋ । ସେ ସମୟକ୍ରମେ ଅନ୍ୟ ଅଫିସରଙ୍କୁ ଅନ୍ୟ ବିଭାଗମାନଙ୍କୁ ବଦଳି କରାଇ ଦେଇଥିଲେ । ଲୀନା ଖୁବ୍ ଆର୍ଟିଷ୍ଟିକ୍ ବୋଲି ତା' ମୁହଁରେ ମି. ପ୍ରସାଦ ଅନେକ ଥର ପ୍ରଶଂସା କରିଛନ୍ତି ଓ ଟୁର୍‌ମାନଙ୍କରେ ପି.ଏ. ପରିବର୍ତ୍ତେ ସେ ତାଙ୍କୁ କେବଳ ସାଙ୍ଗରେ ନିଅନ୍ତି । ଅଫ୍ ଆୱାରରେ ଲୀନାକୁ ସାମ୍ନାରେ ବସାଇ ଘଣ୍ଟା ଘଣ୍ଟା ଗଳ୍ପ ଜମେଇବା ମି ପ୍ରସାଦଙ୍କର ଗୋଟାଏ ସଉକ ଏବଂ ସେଇ ଭିତରେ ସେ ଡ୍ରିଙ୍କ କରନ୍ତି ଓ ଏତେ ପରିମାଣରେ ଯେ ଶେଷରେ ଲୀନା ତାଙ୍କୁ କୌଣସି ପ୍ରକାର ବିଛଣାକୁ ନେଇଯାଏ ।

ଅଥଚ ସେମାନଙ୍କର ଦୈହିକ ସମ୍ପର୍କ ନେଇ ଲୀନା ନୀରବ ରହିଥିଲା । (ସହରର ଲୋକଙ୍କ ପାଇଁ ଏଇଟା ଅବଶୋଷର କଥା ଥିଲା) । ତେବେ ଗୋଟାଏ ନିର୍ଦ୍ଦିଷ୍ଟ ସନ୍ଧ୍ୟାର ଘଟଣାକୁ ନେଇ ଲୋକମାନେ ସିଦ୍ଧାନ୍ତରେ ପହଞ୍ଚିଥିଲେ ଯେ ମି: ପ୍ରସାଦଙ୍କ ମୃତ୍ୟୁ ଦୁର୍ଘଟଣା ନୁହେଁ, ଆତ୍ମହତ୍ୟା; ତାହା ପୁଣି ସମ୍ପୂର୍ଣ୍ଣ ଭାବରେ ପ୍ରେମ କାରବାରକୁ କେନ୍ଦ୍ର କରି ।

ସେଦିନ ଗୋଟାଏ ଜଙ୍ଗଲ ଅଞ୍ଚଳକୁ ମି: ପ୍ରସାଦଙ୍କର ଟୁର୍ ପ୍ରୋଗ୍ରାମ ଥିଲା । ଠିକ୍ ସନ୍ଧ୍ୟାରେ ସେମାନେ ନିର୍ଦ୍ଦିଷ୍ଟ ବଂଲୋରେ ପହଞ୍ଚିଲେ । ବଂଲୋଟି ଗୋଟାଏ ପାହାଡ଼ ଉପରେ ଓ ତା'ର ପାଦଦେଶକୁ ଲାଗି ଶାଳର ଅରଣ୍ୟ । ସେଇ ଅରଣ୍ୟର କେଉଁଠି କେମିତି ଆଦିବାସୀ ବସ୍ତି ଗୋଟିଏ ଗୋଟିଏ ।

ସନ୍ଧ୍ୟା କ୍ରମେ ଘନେଇ ଆସିଲା ଓ ହଠାତ ସେଇ ଶାଳବଣ ଭିତରୁ ମାଦଳର ଐକ୍ୟତାନ ସହିତ ଆଦିବାସୀ ସଙ୍ଗୀତର ମୂର୍ଚ୍ଛନା ଭାସି ଆସିଲା ଧୀର ପବନରେ । ସେତେବେଳେ ମି: ପ୍ରସାଦ ଖଣ୍ଡିଏ ବେତ ଚୌକିରେ ରିଲାକ୍ସ କରୁଥିଲେ ଓ ଲୀନା ସାମାନ୍ୟ ଦୂରରେ ଠିଆହୋଇ ବନ ପ୍ରକୃତିରେ ନିଜକୁ ହଜାଇ ଦେଇଥିଲା । ମି: ପ୍ରସାଦ କେମିତି ଅନ୍ୟମନସ୍କ ହୋଇଗଲେ ଓ ପରେ

ଯରେ ଚୁପ୍‌ଚାପ ବଙ୍ଗଳାର ପାହାଚ ଦେଇ ତଳକୁ ଓହ୍ଲାଇ ଗଲେ ଶାଳ ବଣରେ ଅଦୃଶ୍ୟ ହୋଇଯିବା ପର୍ଯ୍ୟନ୍ତ । ଅବଶିଷ୍ଟ ସମସ୍ତ କାଟିବା ଲୀନା ପାଇଁ ଏକ ସମସ୍ୟା ଥିଲା ।

ଏଇ ନିର୍ଜନତା ଭିତରେ ଲୀନା ମନକୁ ଗୋଟିଏ କଥା ବାରମ୍ବାର ଆନ୍ଦୋଳିତ କଲା । ମି: ପ୍ରସାଦ କହନ୍ତି ସେ ଖୁବ୍ ଅର୍ଟିଷ୍ଟିକ୍ । ଏଇ ଆର୍ଟିଷ୍ଟିକ୍ କଥାଟି କ'ଣ ବୋଲି ଜାଣିବାକୁ ଲୀନାର ଇଚ୍ଛା ହେଲା ଓ ସେ ଡ୍ରେସିଂ-ମିରର୍ ସାମ୍ନାରେ ଠିଆ ହେଲା । ନିଜକୁ ଖୁବ୍ ଦେଖିଲା ସେ···ଏମିତି ତ ଅନେକ ଝିଅ ଦେଖିବାକୁ, ଦୁଇଟି ସ୍ୱାଭାବିକ ସ୍ତନ, ଗୋଲଗାଲ ହାତ, ପ୍ରପରସୋନେଟ୍ ବଡ···ବେଶି ହେଲେ ମୁଣ୍ଡର ଝୋପା ଲାଲ କମ୍ବା କଳା ନୁହେଁ, କୌଣସି ଫିକା ରଙ୍ଗର; ଶାଢ଼ୀ ମଧ୍ୟ । ତେବେ ଆର୍ଟିଷ୍ଟିକ୍ କ'ଣ ।

ବିଭିନ୍ନ ଭଙ୍ଗୀରେ ଲୀନା ଦେଖୁଥିଲା ନିଜକୁ ମିରର୍‌ରେ······ ଯେତେ ବେଶି ସେ ଦେଖୁଥିଲା, ସେଇ ଶବ୍ଦଟି ଗୋଟିଏ ରହସ୍ୟ ଘନ ତାକୁ ବେଢ଼ି ଯାଇଥିଲା ଓ ଶେଷରେ ଏମିତି ଏକ ଅନୁଭବରେ ତାକୁ ପହଞ୍ଚାଇ ଦେଲା ଯେତେବେଳେ ଲୀନାର ଇଚ୍ଛା ହେଲା ମି. ପ୍ରସାଦ ଫେରିଲା ପରେ ସେ ତାଙ୍କ ପାଖରେ ଶୋଇପଡ଼ିବ ଓ ଗୋଟିଏ ଗେହ୍ଲେଇ ଝିଅ ପରି ପଚାରିବ—ମୁଁ ଭାରି ଆର୍ଟିଷ୍ଟିକ୍ ନା !

ରାତି ସନ୍ଧ୍ୟାକୁ ଅତିକ୍ରମ କରିଯାଇଥିଲା । ମି. ପ୍ରସାଦ ଫେରିଲେ ଥୋଡ଼ାଏ କଣ୍ଡି୍ଲକର ଗୃପାରେ । ଡିନର୍ ପରେ ସେ ବିଛଣାରେ ଗଡ଼ିଯାଇ ସେଇ ଅଦ୍ଭୁତ ମାଦଳ ଓ ଆଦିବାସୀ ସଙ୍ଗୀତକୁ କାନ ଡେରିଥିଲେ । ପାଖ ସୁଟ୍‌ରେ ଲୀନା । କେମିତି ଏକ ଦୁର୍ବଳ ମାନସିକତାରେ ସେ ମି: ପ୍ରସାଦଙ୍କ ନିକଟକୁ ଗୁଞ୍ଜିଗଲା ଓ ମିସେସ୍ ପ୍ରସାଦଙ୍କ ପରି ବ୍ୟବହାର କଲା । ସେଇ ଅର୍ଦ୍ଧଚେତନ ଅବସ୍ଥାରେ ମି: ପ୍ରସାଦ ସ୍ୱଗତୋକ୍ତି କଲାପରି କହୁଥିଲେ : ଦୋଜ୍ ଆଦିବାସୀ ଗାର୍ଲ୍‌ସ ···ସୋ' ଇନ୍‌ଫରମାଲ୍···ସୋ ସିମ୍ପଲ୍ ···ବଟ ଇଯୁ ପ୍ରଫେଶନାଲ୍‌ସ ! ଖୁବ୍ ସ୍ୱପାଗଳାରେ ସେ କହିଲେ : ପ୍ଲିଜ୍ ଅଫ୍···ପ୍ଲିଜ୍ ଅଫ୍ ।

ଲୀନା କିନ୍ତୁ ଅନ୍ୟ ବିଛଣାକୁ ସ୍ଥାନାନ୍ତରିତ ହୋଇ ନ ଥିଲା । କାରଣ ସେତେବେଳକୁ ମି: ପ୍ରସାଦଙ୍କର କେମିତି ଏକ ଅନ୍ୟମନସ୍କ ଭାବ ସୃଷ୍ଟି ହୋଇ ସାରିଥାଏ ଓ ତା'ର ଅଳ୍ପ କେତେ ଦିନ ପରେ ଏହି ଘଟଣାଟି ।

ଢନକୁ ଢନ ସମ୍ବାଦଟି ପୁରୁଣା ହୋଇ ଆସିଲା ଓ ନୂଆ ନୂଆ ଚମକପ୍ରଦ ସମ୍ବାଦରେ କ୍ରମେ ସହରର ଲୋକେ ମି: ପ୍ରସାଦଙ୍କ କଥା ଭୁଲିଗଲେ ।

× × × ×

ସ୍ୱା' ଭିତରେ କିଛି ବର୍ଷ ଅତିକ୍ରାନ୍ତ ହୋଇ ଯାଇଛି । ଚିରାଚରିତ ନିୟମସୂତ୍ରରେ ମୁଁ ଅନ୍ୟ ସହରକୁ ସ୍ଥାନାନ୍ତରିତ ହୋଇଛି । ଏଠି କିଛି ବର୍ଷ, ପୁଣି ଆଉ କେଉଁ ସହରକୁ । ତା'ପରେ ଦାନ୍ତ କାଟିବ, ଆଖିର ପରଦାରେ ଧୂଳି ଜମିବ ଓ କେଉଁ ଏକ ସକାଳରେ ଡ଼ାକ ପିଅନର ଖାକି ପୋଷାକ କମ୍ବା କାର୍ଯ୍ୟାଳୟ ପିଅନର ଖଦଡ଼ ପୋଷାକ ଦେଇ ଷ୍ଟାମ୍ପଟିଏ ଅସି ସତର୍କରେ ପିଠିରେ ଚିହ୍ନ ଦେଇଯିବ—ତୁମେ ଜଣେ ଅଦରକାରୀ ବ୍ୟକ୍ତି ।

ବଞ୍ଚିବାକୁ ହେଲେ ଏମିତି ଅନେକ କଥା ଦୁନିଆରେ ଘଟେ ବୋଲି ଧରିନେବାକୁ ହେବ, ଯଦିଓ ମାଢ଼ ମାଢ଼ ବସନ୍ତ ଅନେକ ସମୟରେ ।

ଦୁଃଖ, ଖାଲି ଗୁଡ଼ାଏ ଅପ୍ରକାଶିତ ଦୁଃଖ । କଏ ଛୁଇଁ ପାରୁଛି ମ କା ଦେହର ଉଷ୍ମତାକୁ କମ୍ବା କୋହଲ ସ୍ୱରକୁ ! ସ୍ୱଳଛି ତ ଗୋଟାଏ ହୋ···ହୋ ଆଲୋକ, ମେକ୍-ଅପ୍ ର ଇଲୁଜନ୍ ସତ । ଥୋକାଏ ଆନନ୍ଦିତ, ଥୋକାଏ ଗୁମ୍ସୁମ୍ ଭାବ ନେଇ ଭାବାକ୍ରାନ୍ତ ।

ଜାଣେନା କାହିଁକି ସେଦିନ ସନ୍ଧ୍ୟାରେ ସେମାନେ ଏମିତି ଗୋଟିଏ ପ୍ରତିଛବିକୁ ଡାକି ଆଣିଲେ । ସେମାନେ ତ ପିଲା । ମନର ଜଟିଳ ସ୍ତରଗୁଡ଼ିକ ସହିତ ପରିଚିତ ହେବାକୁ ନା ଅଛି ବୟସ, ନା ଅନୁଭୂତି ! ଖାଲି ଦ'ପଦ କଥା, ମନର ଜଟିଳ ଅବସ୍ଥାକୁ କୋହଲ କରିଦେବା ପାଇଁ କେତେପଦ କଥାର ବନ୍ଦମସ୍ତ । ଏଇ ସୂତ୍ରକୁ ଧରି ପ୍ରତିଛବିଟି ଭ୍ଲଲି ଅସିଲା·· ଶବ୍ଦ ସବୁ ଦୁର୍ବଳ ହୋଇଗଲେଣି···ବହନ କରିବାର ଶକ୍ତି ହ୍ରାସ ପାଇଗଲାଣି···ମନକୁ ଛୁଇଁବା ପାଇଁ ମାଧ୍ୟମ ବଦଳି ଗଲାଣି···ଆସିଲେଣି ପ୍ରତୀକ, ଚିତ୍ରକଳ୍ପ ଚକ୍ରାନ୍ତଶକ୍ତି—ତାକୁ ବୁଝେଇ ଦେବା ପାଇଁ ।

ମୁଁ ହଠାତ୍ ଗୋଟିଏ ଟିଙ୍ଗ୍ ଲିଆ ବୃକ୍ଷ ପରି ଡେଇଁ ପଡ଼ିଲି··· କ'ଣ ଲାଭ ଅଛି ଏ ପ୍ରତୀକ ଚିତ୍ରକଳ୍ପ ଖେଳ ଭିତରେ ମଣିଷ ମନକୁ

ଲୁଚିଁ ଦେବା ପାଇଁ ଉଦ୍ୟମ କରିବା : ପୁଣି ବି ଦିନେ ରଙ୍ଗ ବଦଳେଇବ—ଏମିତି ସବୁ ଚାଲିଛି ।

ସେମାନେ ଆସ୍ତେ ଉଠି ଚାଲିଗଲେ । କାରଣ ମୋର ଏ ଆକସ୍ମିକ ଭାବ ସହିତ ସେମାନେ କିଛିଟା ଅଭ୍ୟସ୍ତ । ମୁଁ ଏକୁଟିଆ ରହିଗଲି ମୋ ଡ୍ରଇଂ ରୁମ୍‌ରେ । ସେତେବେଳେ ସେଇ କେତେବର୍ଷ ତଳର ସମ୍ବାଦଟି ମୋ ମନକୁ ଆସିଲା—ମି: ପ୍ରସାଦଙ୍କ ଆତ୍ମହତ୍ୟା କିମ୍ବା ଦୁର୍ଘଟଣା ଓ ମୋ ବ୍ୟକ୍ତିଗତ ଜୀବନର ଗୋଟିଏ ଅନୁଭୂତି ।

ସୁଷମା ମହାନ୍ତି ସହିତ ବନ୍ଧୁତ୍ୱ ଉଦ୍ୟମସାପେକ୍ଷ ନୁହେଁ । ଏମିତି ବସି ବସି କଥାବାର୍ତ୍ତା ଭିତରେ...ଏମିତି ହୁଏତ ହୋଇଥିବ ମୋର କେତେଟା କଥା ତାକୁ ଭଲ ଲାଗିଥିବ କିମ୍ବା ତା'ର କେତେଟା କଥା ମୋତେ । ମୁଁ ଖଣ୍ଡେ ପାନ ଦେଇଥିଲେ ସେ କପେ କଫି ବା ସେ ଖଣ୍ଡେ ପାନ ଦେଇଥିଲେ ମୁଁ କପେ ଚା' । ଏତିକି ମାତ୍ର, ବଞ୍ଚିବାର କେତୋଟି ମୁହୂର୍ତ୍ତକୁ ଖାଲି ଟିକେ ଜୀବନ୍ତ କରିଦେବା କଥା—ଆଉ ଅଧିକ କ'ଣ ।

ଅଥଚ ଦିନେ ସୁଷମା ମହାନ୍ତି ସମୁଦ୍ର ପରି ଗମ୍ଭୀର ହୋଇଗଲା । ମୁଁ ତ କୂଳର ମଣିଷ, କ'ଣ ମାପିବି ତା'ର ଗଭୀରତାକୁ । ମୋର ସେଇ ଶବ୍ଦଗୁଡ଼ାକ୍କୁ ନେଇ କିଛି ସନ୍ଦେହ ସୃଷ୍ଟି ହେଲା—ହୁଏତ ଏମାନେ ପ୍ରକୃତ ଅର୍ଥ ବହନ କରିବାର କ୍ଷମତା ହରାଇଛନ୍ତି କିମ୍ବା ଅର୍ଥକୁ ଅର୍ଥାନ୍ତର କରିବାର ଶକ୍ତି ହାସଲ କରିଛନ୍ତି । ତଥାପି ମୁଁ ଅନେକ ଶବ୍ଦ ପ୍ରୟୋଗ କରିଥିଲି; କିନ୍ତୁ ଶବ୍ଦ ସବୁ ଅର୍ଥାନ୍ତର ହେବା କ'ଣ ମୋ ହାତର କଥା ! କାରଣ ସୁଷମା ମହାନ୍ତି ଡରେ ଅନ୍ଧାରକୁ/ଆଲୋକକୁ/ମଣିଷକୁ ଓ ମଣିଷର ସ୍ୱଭାବକୁ । ମୁଁ କେବଳ ଭାବ ପ୍ରକାଶ କରିଥିଲି : ଭଲ ହୋଇଥାନ୍ତାରେ ସୁଷମା ମହାନ୍ତି ! ମିଛର ଅପପ୍ରୟୋଗରେ କାନ୍ଦି କାନ୍ଦି ଆଖିକୁ ଲାଲ୍ ନ କରି କବାଟ ଝରକା ବନ୍ଦ କରି ବିଚ୍ଛିନ୍ନ ହୋଇଯାଇଥାନ୍ତୁ ବାହାର ଜଗତରୁ । ଭସ୍ମ ଓ ଜୀବନ ତୋ ଦେଖିବାରେ କେଉଁଠି ମିଶି ବସିଲେଣିକି ରେ !

ପିଲାମାନଙ୍କର ପ୍ରତୀକ, ଚଞ୍ଚଳତା, ମି: ପ୍ରସାଦ ଓ ସୁଷମା ମହାନ୍ତି, ସବୁ ମିଶି ସେ ସନ୍ଧ୍ୟାକୁ ଏମିତି ଭାରାକ୍ରାନ୍ତ କରିଦେଲେ, ଫଳରେ ମୁଁ ହଜିଗଲି ନିଜ ଭିତରେ ନିଜ ଚିନ୍ତାର ଅଥଳ ସମୁଦ୍ରରେ ମୁଁ କେମିତି ସେତେବେଳେ ଭାବିଥାନ୍ତି ଆଉ ଘରେ ମୋ ପିଲାମାନେ ପରଦିନର ପାଠ ପ୍ରସ୍ତୁତ କରୁଛନ୍ତି, ମୋ ସ୍ତ୍ରୀ ଖାଦ୍ୟ ପ୍ରସ୍ତୁତ କରୁଛି ଓ ମୋ ପରିବାର ଯେମିତି ଚାଲିବା କଥା ଠିକ୍ ଚାଲିଛି ବୋଲି ।

ହଠାତ୍ କାହିଁକି ଇଚ୍ଛା ହେଲା ସୁଷମା ମହାନ୍ତି ପାଖକୁ ଦଉଡ଼ି ଯିବି ଓ ପୂର୍ବରୁ ଉଚ୍ଚାରଣ କରିଥିବା ଶବ୍ଦମାନଙ୍କୁ ପୁଣି ଥରେ ଦୋହରାଇ ନେବି । ଏଥର ଯଦି କିଛି ଅର୍ଥ ପ୍ରକାଶ କରନ୍ତି !

ମୋ ଡାକରେ ସୁଷମା ମହାନ୍ତି ବାହାରକୁ ଆସିଲେ ଓ ମୁଁ ଯେତେବେଳେ କହିଲି ତୁମ ସହିତ ଅନେକ କଥାବାର୍ତ୍ତା ଅଛି, ସେ କହିଲେ— କୁହନ୍ତୁ ।

ଆମେ ଦୁଇଜଣ ଠିଆ ହୋଇଥିଲୁ । ସନ୍ଧ୍ୟାର ଅନ୍ଧକାର ଆକାଶ ଓ ପୃଥିବୀକୁ ଘୋଟି ଦେଇଥିଲା—ଆମେ ଯେମିତି ଅପରେସନ୍ ଟେବୁଲ ଉପରେ ଯନ୍ତ୍ରଣାଗ୍ରସ୍ତ ରୋଗୀ ଦୁଇଟି । କେମିତି ଗୋଟାଏ ଭୟ ମୋତେ ମାଡ଼ିବସିଲା— ଏଥର ଯଦି ଶବ୍ଦଗୁଡ଼ିକ ଅର୍ଥ ପ୍ରକାଶ ନ କରନ୍ତି !

ଅନେକ ମୁହୂର୍ତ୍ତ ଆମେ ସେମିତି ଠିଆ ହୋଇଥିଲୁ । ସୁଷମା ମହାନ୍ତି ପ୍ରତିବାଦ କଲେନି । ମୋର ମନେହେଲା ଏଇ ନୀରବତା ମଧ୍ୟରେ ଅନେକ କଥା ମୁଁ କହିଦେଇଛି ଯାହା ଶବ୍ଦମାନଙ୍କ ମାଧ୍ୟମରେ କୁହାଯାଇ ପାରି ନ ଥାନ୍ତା ।

କିଛି ମୁହୂର୍ତ୍ତ ପରେ ସୁଷମା ମହାନ୍ତି ତା'ର କୋଠରି ବନ୍ଦ କରିଥିବେ ଓ ମୁଁ ମଧ୍ୟ ଫେରି ଆସିଥିବି, ସର୍ବୋପରି ଭଦ୍ର ସହର ତା' ନିଜ ବାଟରେ ଅତିବାହିତ ହେଉଥିବ !



### ଆଧୁନିକ ପଞ୍ଚତନ୍ତ୍ର :

# ଗଙ୍ଗଦତ୍ତ ଉପାଖ୍ୟାନ

ନିମାଇଁ ପଟ୍ଟନାୟକ

ସେ ଦିନ ରାତିରେ ବି ତାଙ୍କୁ ନିଦ ହେଲା ନାହିଁ ।

ରାତି କେତେ ନା କେତେ ହେବ କେଜାଣି । ନିକଟସ୍ଥ କୂପ, ବାପି ତଡ଼ାଗ ଜଳାଶୟମାନଙ୍କରୁ ମଣ୍ଡୂକମାନଙ୍କର ସମ୍ମିଳିତ ସ୍ୱର ଶୁଣା ଯାଉଥାଏ । ରାତିସାରା ସେଇ ଧ୍ୱନି—ଅବିରାମ ଓ ଅବ୍ୟାହତ ।

ରାଜା ଗଙ୍ଗଦତ୍ତ ପୁଣି କଡ଼ ଲେଉଟାଇଲେ । ଦୀର୍ଘ ନିଃଶ୍ୱାସ ଛାଡ଼ିଲେ ।

ପୁଣି ସେଇ ଧ୍ୱନି । ପୁଣି ସେଇ ଚିତ୍କାର ।

ନାଃ । ଗଙ୍ଗଦତ୍ତ ଉଠି ବସିଲେ । ଆଙ୍ଗୁଠିମାନ ଫୁଟାଇଲେ । କାନ ଭାଁ ଭାଁ ହେଉଥାଏ । ମୁଣ୍ଡ ଗରମ ଲାଗୁଥାଏ—ଲାଗୁଥାଏ ଯେମିତି ମୁଣ୍ଡର ଖପୁରି ଗରମରେ ଫାଟିଯିବ ।

ନିକଟରେ ଶ୍ରୀମତୀ ଗଙ୍ଗଦତ୍ତ ନିଦ୍ରା ଯାଇଥାନ୍ତି । ବିକୃତ ଦିଶୁଥାଏ ତାଙ୍କର ମୁହଁ । ସମ୍ଭବତଃ କେଉଁ ଭୟଙ୍କର ସ୍ୱପ୍ନରେ ଶିହରି ଉଠୁଥାନ୍ତି ।

ରାଜା ଗଙ୍ଗଦତ୍ତ ଚଟାଣରେ ଏପାଖ ସେପାଖ ହେଲେ । ମୁଣ୍ଡ ଧକ୍ ଧକ୍ ହୋଇ ବିଧିଲା ପରି ଲାଗୁଥାଏ । ସେଇ ଅଶାନ୍ତି । ସେଇ ଅସ୍ଥିରତା । ଅଶାନ୍ତି କଟୁ ନ ଥାଏ । ଅସ୍ଥିରତା ଦୂର ହେଉ ନ ଥାଏ ।

ପାଖ କୋଠରୀରେ ଯମୁନା ଦେଉଛନ୍ତି ମଧ୍ୟ ଖୁବ୍ ସମ୍ଭବ ନିଦ ହୋଇ ନ ଥାଏ ବା କୌଣସି ଦୁଃସ୍ୱପ୍ନରେ ନିଦ ଭାଙ୍ଗି ଯାଇଥାଏ ଓ ଆଉ ନିଦ ହେଉ ନ ଥାଏ । ସେ ସେପାଖେ ଛଟପଟ ହେଉଥାନ୍ତି, ମାନସିକ ଦହନରେ ଦଗ୍ଧ ହେଉଥାନ୍ତି ।

ପାର୍ଶ୍ୱ ଘନ ଘନ ଧରି ତାଙ୍କ ପ୍ରାସାଦ ସମ୍ମୁଖରେ ମଣ୍ଡୁକ ନେତାମାନଙ୍କର ସଭା, ଶୋଭାଯାତ୍ରା ଓ ସ୍ଲୋଗାନ୍ ଚାଲିଥିଲା । ଭିନ୍ନ ଭିନ୍ନ ପତାକା ତଳେ ଦେଶର ବିଭିନ୍ନ ଅଞ୍ଚଳର ମଣ୍ଡୁକ ନେତାମାନେ ସମବେତ ହୋଇ ସ୍ଲୋଗାନ ଦେଉଥିଲେ—ସମସ୍ତେ ଉତ୍ତ୍ୟକ୍ତ, ଉଦ୍‌ଭ୍ରାନ୍ତ, ଉତ୍ତେଜିତ, ସେମାନଙ୍କର ଉତ୍ତେଜିତ ଧ୍ୱନିରେ ଚତୁର୍ଦ୍ଦିଗ କମ୍ପୁଥାଏ ।

: ରାଜୁଡ଼ା ଶାସନ ଚଳିବ ନାହିଁ (ଯାନ୍ତ୍ରିକ ସ୍ୱର)
: ଚଳିବ ନାହିଁ, ଚଳିବ ନାହିଁ (ସମବେତ ସ୍ୱର)
: ଆମେ ଚାହୁଁ ବଞ୍ଚିବାକୁ (ଯାନ୍ତ୍ରିକ ସ୍ୱର)
: ସ୍ୱାଧୀନ ଭାବେ ବଞ୍ଚିବାକୁ (ସମବେତ ସ୍ୱର)
: ମରିବୁ ପଛେ ଡରିବୁ ନାହିଁ···(ଯାନ୍ତ୍ରିକ ସ୍ୱର)
: ଗଙ୍ଗୁ ରାଜାକୁ ଛାଡ଼ିବୁ ନାହିଁ···(ସମବେତ ସ୍ୱର)
: କୂପ ତଡ଼ାଗରେ ନିଆଁ ଜଳିବ···(ଯାନ୍ତ୍ରିକ ସ୍ୱର)
: ନିଆଁ ଜଳିବ, ନିଆଁ ଜଳିବ····(ସମବେତ ସ୍ୱର)
: ରାସ୍ତା ଘାଟରେ ନିଆଁ ଜଳିବ···(ଯାନ୍ତ୍ରିକ ସ୍ୱର)
: ନିଆଁ ଜଳିବରେ ନିଆଁ ଜଳିବ···(ସମବେତ ସ୍ୱର)
: ମଣ୍ଡୁକେଶ୍ୱର ଆଜ୍ ସ୍ତ୍ରାସ୍ତ୍ୟ କେନ ଗଙ୍ଗୁରାଜ ଜବାବ ଦାଓ···

(ଯାନ୍ତ୍ରିକ ସ୍ୱର)

: ଜବାବ ଦାଓ, ଜବାବ ଦାଓ···(ସମବେତ ସ୍ୱର)
: ବାପ୍ ହଟୋ, ବେଟା ହଟୋ···(ଯାନ୍ତ୍ରିକ ସ୍ୱର)
: ହଟୋ ହଟୋ, ହଟୋ ହଟୋ···(ସମବେତ ସ୍ୱର)
: ସ୍ୱୈରତାନାସାହି ନେହିଁ ଚଲେଗି···(ଯାନ୍ତ୍ରିକ ସ୍ୱର)
: ନେହିଁ ଚଲେଗି, ନେହିଁ ଚଲେଗି···(ସମବେତ ସ୍ୱର)
: ଲି···ଙ୍ଗ୍ ଲି···ଭ୍ ଫ୍ରଗସ୍ ଇ···ଉ···ନି····ଟି (ଯାନ୍ତ୍ରିକ ସ୍ୱର)
: ଲି···ଙ୍ଗ୍ ଲି···ଭ୍ ; ଲି···ଙ୍ଗ୍ ଲିଭ୍ (ସମବେତ ସ୍ୱର)
: ଲଙ୍ଗ୍ ଲିଭ୍ ଫ୍ରଗ୍ସ୍ ଇଉନିଟି (ଯାନ୍ତ୍ରିକ ସ୍ୱର > ଦ୍ରୁତତର)
: ଲଙ୍ଗ୍ ଲିଭ୍, ଲଙ୍ଗ୍ ଲିଭ୍ (ସମବେତ ସ୍ୱର > ଦ୍ରୁତତର)

ମଣ୍ଡୂକରାଜ ଗଙ୍ଗାଦତ୍ତ ଅସ୍ଥିର ହୋଇପଡ଼ିଲେ ।

ଦିନଦିନ ଧରି ତାଙ୍କ ରାଜପ୍ରାସାଦ ସମ୍ମୁଖରେ ଚାଲିଥିବା ଶ୍ରୁତିକଟୁକର ସ୍ଲୋଗାନ୍ ଏଇ ସନ୍ଧ୍ୟାରୁ ବନ୍ଦ ଅଛି ।

ଝରବ ରାତିରେ ମଟର ସାଇକେଲ୍‌ରେ ଅନେକ ବାଟ ଆସି ସାରିଲା ପରେ ପରେ ଆଖିକୁ ନିଦ ଆସିବା ଯାଏଁ କାନକୁ ସେଇ ଘିଁ ଘିଁ ଶବ୍ଦ ଯେପରି ଅତିଷ୍ଠ କରୁଥାଏ, ଦିନଯାକର ସ୍ଲୋଗାନମାନଙ୍କର ସମ୍ମିଳିତ ଧ୍ୱନି ତାଙ୍କୁ ସାରା ରାତି ସେହିପରି ଅସ୍ଥିର କରୁଥିଲା ।

ପାଖ କୋଠରୀରୁ ଯୁବରାଜ ଯମୁନା ଦତ୍ତଙ୍କର ଅସନ୍ତୁଷ୍ଟି ଭରା ଅନୁନାସିକ ଶବ୍ଦ ମଝିରେ ମଝିରେ ଶୁଣାଯାଉଥାଏ ।

ସନ୍ଧ୍ୟା ପୂର୍ବରୁ ମଣ୍ଡୂକ ନେତାମାନଙ୍କର ପରବର୍ତ୍ତୀ କାର୍ଯ୍ୟକ୍ରମ ପ୍ରଚାର ହୋଇ ସାରିଥାଏ—

ପରଦିନ ସକାଳେ ବିଭିନ୍ନ ଅଞ୍ଚଳରୁ ୧୦ ହଜାର ମଣ୍ଡୂକ ରାଜ ପ୍ରାସାଦ ଚାରିପଟେ ସମବେତ ହେବେ । ମାନିବେ ନାହିଁ ୧୪୪ ଧାରା । ପ୍ରହରୀମାନଙ୍କର ଦଉଡ଼ି ଘେରି ଖର୍ଗି ଭିତରେ ପଶିବେ ।

ମଣ୍ଡୂକରାଜ ଗଙ୍ଗାଦତ୍ତ ପୁଣି ଶେଯ ଉପରେ ଆସି ବସିଲେ । ମନ ଭଲ ଲାଗୁ ନ ଥାଏ । ପୁଣି ଉଠି ଠିଆ ହେଲେ ଓ ପୁଣି ଲଥ କରି ବସି ପଡ଼ିଲେ ।

ଏହା ବି ଘୋଷଣା କରାଯାଇଥାଏ—

ଏ ଆନ୍ଦୋଳନ ପ୍ରାଦେଶିକ ସ୍ତରରେ ଜିଲ୍ଲାମାନଙ୍କର ମୁଖ୍ୟ ପୀଠ, ସବୁ ନଗର, ସବୁ ସହର ଓ ଗ୍ରାମ-ଗ୍ରାମାନ୍ତର ଓ ତତ୍ରତ୍ୟ କୂପ ବାପୀ, ତଡ଼ାଗ ଓ ଅନ୍ୟାନ୍ୟ ଜଳାଶୟମାନଙ୍କରେ ବ୍ୟାପକ ହେବ ।

ତାଙ୍କୁ ଗାଦିଚ୍ୟୁତ କରିବା ନିମିତ୍ତ ଜାତୀୟ ମଣ୍ଡୂକ ସଂଗଠନ, ପଦାତିକ ଭେକ ସଂଘ, ଜଳଚର ମଣ୍ଡୂକ ସାମ୍ମୁଖ୍ୟ, ବ୍ରାହ୍ମଣ-ମଣ୍ଡୂକ ପ୍ରତିକ୍ରିୟାଶୀଳ ଦଳ, ପ୍ରଗତିବାଦୀ ଲମ୍ଫୁଲମ୍ଫନକାରୀ ଭେକ ସଂଘ ଏବଂ ଯୁବ-ମଣ୍ଡୂକ ତରଫରୁ ସମଗ୍ର ମଣ୍ଡୂକ ଜାତିକୁ ମିଳିତ ଆହ୍ୱାନ ଦିଆଯାଇ ଥାଏ ।

ତାଙ୍କ ବିରୁଦ୍ଧରେ ପରସ୍ପର ବିରୋଧୀ ସବୁ ମଣ୍ଡୂକ ଦଳର ଦିନେ ଏମିତି ମହାମେଣ୍ଟ ହେବ ତାହା ସେ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲେ । ମଣ୍ଡୂକମାନଙ୍କର ଉନ୍ନତି ଲାଗି ସେ କ'ଣ କରି ନାହାନ୍ତି ? କ'ଣ କରି ନାହାନ୍ତି ତାଙ୍କର ପୂର୍ବ-ପୁରୁଷମାନେ ?

ଗଙ୍ଗାଦତ୍ତ ଥିଲେ ସୁଚତୁର, ଶକ୍ତିଶାଳୀ ରାଜା ଏବଂ କୂଟନୀତିଜ୍ଞ ମଧ୍ୟ । ରାଜସୁଲଭ ସୁଚତୁରତା ଓ କୂଟନୈତିକତା ତାଙ୍କର ବ୍ୟକ୍ତିତ୍ୱକୁ ବହୁଗୁଣିତ କରିଥିଲା । ତାଙ୍କର ସ୍ୱରବାଣୀରେ ଯେପରି ମଧୁ ଥିଲା, କଥାରେ ମଧ୍ୟ ସେହିପରି ଯାଦୁ ଥିଲା ।

ତାଙ୍କର ଦୀର୍ଘ ଏତେ ବର୍ଷର ରାଜତ୍ୱ ଭିତରେ ମଝିରେ ମଝିରେ ତାଙ୍କ ବିରୁଦ୍ଧରେ ଶ୍ରେଷ୍ଠ ବଡ଼ ଆନ୍ଦୋଳନ ସୃଷ୍ଟି ହୋଇଛି । ମାତ୍ର ପ୍ରତିଥର ସେ ଏକ ଏକ ନୂଆ ଖେଳ ଖେଳିଥାନ୍ତି । ବକ୍ତୃତାର ଯାଦୁରେ ପ୍ରତିଥର ସମସ୍ତଙ୍କ ମନରେ ନୂଆ ଭେଲକି ଲଗାଇ ଦିଅନ୍ତି । ଫଳରେ ତାଙ୍କ ବିରୁଦ୍ଧରେ ସୃଷ୍ଟି ହୋଇଥିବା ପ୍ରତିକ୍ରିୟାମାନ ବେଲୁନ୍ ପରି ଫୁଲି ଫୁଲି ହଠାତ୍ ଫାଟିଯାଏ ଓ ଶତ୍ରୁମାନେ ଲାଜରେ ମୁହଁ ଦେଖାଇ ପାରନ୍ତି ନାହିଁ ।

ମାତ୍ର ତାଙ୍କର ଏଇ ଉତ୍ତର କାଳରେ ସମ୍ଭବତଃ ତାଙ୍କ ସ୍ୱାନବଳ ଖିବ ତାଙ୍କ ବିରୁଦ୍ଧରେ ସବୁ ନେତାମାନେ ଏକାଠି ହୋଇଛନ୍ତି ।

ରାଜା ଗଙ୍ଗାଦତ୍ତ ଦୀର୍ଘ ନିଃଶ୍ୱାସ ପକାଇଲେ ।

ରାତି ସେତେବେଳକୁ କେତେ ନା କେତେ ହୋଇଥାଏ ।

ସେ କ୍ଳାନ୍ତ ଅନୁଭବ କଲେ । ଦେହ, ମୁହଁ, ଆଖିପତା ଓଜନ ଲାଗିଲା ଏବଂ ସେ ଶେଯରେ ଦେହ ଢାଳି ନିଦ ଆସିବା ଲାଗି ଆଖି ବନ୍ଦ କରି ପଡ଼ି ରହିଲେ ।

ଯଥା ସମୟରେ ତାଙ୍କ ନିଦ ଆସିଗଲା ଓ ସେ ଉପସ୍ଥିତ ମାନସିକ ଯନ୍ତ୍ରଣାରୁ ରକ୍ଷା ପାଇଗଲେ ସେ ରାତିର ଅବଶିଷ୍ଟ ସମୟଟିକ ପାଇଁ । ନିଦରେ ସେ ଗୋଟିଏ ଅଦ୍ଭୁତ ସ୍ୱପ୍ନ ଦେଖିଲେ —

ଦେଖିଲେ :

ଜଣେ ଦୀର୍ଘକାୟ ସାଧୁ ତାଙ୍କ ଆଗରେ ଛିଡ଼ା ହୋଇଛନ୍ତି । ଲଣ୍ଡିତ ମୁଣ୍ଡ । ଗୌର ଦେହ । ଉଦାସ ଆଖି । ହାତରେ ଅଭୟମୁଦ୍ରା । ରାଜା ଗଙ୍ଗାଦତ୍ତ ତାଙ୍କ ପାଦତଳେ ଲମ୍ବ ହୋଇ ପଡ଼ିଗଲେ । ତାଙ୍କ ପାଦ ଧରି କହିଲେ —

ମୋର ସକଳ ଦୋଷାଦୋଷ ଖଣ୍ଡନ କରି ଉପସ୍ଥିତ ବିପଦରୁ ମୋତେ ଉଦ୍ଧାର କରନ୍ତୁ ବାବା !

ସାଧୁ ବାବା କୋମଳ ସ୍ୱରରେ କହିଲେ,—

ଉଠ ବତ୍ସ ! ଉଠ, କ'ଣ ତମେ ଚାହଁ ?

ରାଜା କହିଲେ—

ମୁଁ କିଛୁ ଚାହେଁ ନାହିଁ ବାବା ! ମତେ ଏ ଉପସ୍ଥିତ ବିପଦରୁ ଉଦ୍ଧାର କରନ୍ତୁ । ମୁଁ କେବଳ ରାଜା ହୋଇ ରହି ସମଗ୍ର ମଣ୍ଡୁକ ଜାତିର ସେବା କରିବାକୁ ଚାହେଁ । ଏ ରାଜଗାଦି ପ୍ରତି ମୋର ଟିକେ ହେଲେ ଲୋଭ ନାହିଁ । ଦେଖିବେ, କିଛି କାଳ ପରେ ମୁଁ ମୋର ପୁତ୍ରକୁ ରାଜ୍ୟଭାର ଦେଇ ବାନପ୍ରସ୍ଥ କରିଯିବି, ବାବା ।

ସାଧୁ କହିଲେ—

ଆଚ୍ଛା, ଆଚ୍ଛା । କାଲି ସକାଳେ ତମେ ଏକ କୃଷ୍ଣସର୍ପ ଦେଖିବ ।

ନାମ ପ୍ରିୟ-ଦର୍ଶନ । ତୁମେ ତା'ର ସାହାଯ୍ୟ ପ୍ରାର୍ଥନା କଲେ ସେ ଅବଶ୍ୟ ସାହାଯ୍ୟ କରିବ ।

ସାଧୁ ବାବା ଏତିକ କହି ଅଦୃଶ୍ୟ ହୋଇଗଲେ । ଗଙ୍ଗଦତ୍ତ ଚିତ୍କାର କଲେ – ବାବା ! ବାବା ! ବାବା !

ନିଜ ଚିତ୍କାରରେ ତାଙ୍କର ନିଦ ଭାଙ୍ଗିଗଲା । ଦେଖିଲେ ସକାଳ ହୋଇଗଲାଣି । ଚିତ୍କାର ଶୁଣି ସ୍ତ୍ରୀ, ପୁତ୍ର ଆସି ଠିଆ ହୋଇଛନ୍ତି ।

ରାଜା କହିଲେ—

ଦେଖ, ମୋତେ ସ୍ୱପ୍ନାଦେଶ ହୋଇଛି । ଦେଖ ମୋର ଦେହ କେମିତି ରୋମାଞ୍ଚିତ ହୋଇଯାଇଛି । ଆଉ ଭୟ କରିବାର କିଛି ନାହିଁ । ଓଃ……

ରାଜା ସକାଳେ ପ୍ରାତଃକର୍ମାଦି ସାରି ଚିନ୍ତିତ ମନରେ ମନ୍ତ୍ରଣା କକ୍ଷରେ ବସିଥିଲେ । ଦେଖିଲେ ତାଙ୍କ ଚଉକି ତଳୁ କୃଷ୍ଣସର୍ପଟିଏ କେମିତି ଆଶ୍ଚର୍ଯ୍ୟଜନକ ଭାବରେ ବାହାରି ଚାଲିଯାଉଛି । ରାଜା ଚମକି ପଡ଼ିଲେ । ଭୟ କମ୍ପିତ କଣ୍ଠରେ ଡାକିଲେ,—

ସଖେ ! ପ୍ରିୟ ଦର୍ଶନ !

ସର୍ପଟି ଲେଉଟି ଫଣା ଟେକି ଚାହିଁଲା ।

କହିଲା – କସ୍ତ୍ୱମ୍ ? ତୁମେ କିଏ ?

ରାଜା କହିଲେ—

ମୁଁ ଗଙ୍ଗଦତ୍ତନାମ ମଣ୍ଡୁକ ରାଜ । ସପ୍ରତି ଶତ୍ରୁଙ୍କ ଦ୍ୱାରା ଆକ୍ରାନ୍ତ ହୋଇ ତୁମର ସାହାଯ୍ୟ ଭିକ୍ଷା କରୁଛି ।

ପ୍ରିୟ ଦର୍ଶନ କହିଲେ,—

କସ୍ମାତ୍ ତେ ପରାଭବଃ ?

କାହାଠାରୁ ତୁମର ଏ ପରାଭବ ?

ରାଜା କହିଲେ,—

ଦାସ୍ପାଦମାନଙ୍କଠାରୁ । ସ୍ୱଜନମାନଙ୍କଠାରୁ । ସେମାନେ ମୋତେ ରାଜ୍ୟଚ୍ୟୁତ କରିବାକୁ ଏକଜୁଟ ହୋଇଛନ୍ତି । ରାଜକୀୟ ଶାସନ ଲୋପ କରିବାକୁ ଏକଜୁଟ ହୋଇଛନ୍ତି ।

(ରାଜାଙ୍କ ସ୍ୱରରେ ସାମାନ୍ୟ ଉତ୍ତେଜନା ପ୍ରକାଶ ପାଇଲା)
ସେମାନେ···ସେମାନେ ଆମର ବଂଶାନୁକ୍ରମିକ ରାଜତ୍ୱକୁ···
ପ୍ରିୟ ଦର୍ଶନ କହିଲେ,—

ଆଚ୍ଛା ! ଆଚ୍ଛା ! ତୁମେ ସେମାନଙ୍କର ନାମ ତାଲିକା କରି ତାଲିକା ମୁତାବକ ଦୈନିକ ଆମ୍ଭ ନିକଟକୁ ପ୍ରେରଣ କର । ଆମ୍ଭେ ଯଥା ବିହିତ ପ୍ରତିକାର କରିବୁ ।

ରାଜା ତାଙ୍କର ପାତ୍ର, ମନ୍ତ୍ରୀ, ସ୍ତାବକ ଓ ପୁତ୍ର ଯମୁନାଦତ୍ତଙ୍କ ସହ ଏକତ୍ର ଆଲୋଚନା କରି ଦେଶରେ କୃଷ୍ଣସର୍ପୀୟ ଶାସନ ଜାରି କଲେ ।

ଅତଃପର ଯୁବରାଜ ଶ୍ରୀ ଯମୁନାଦତ୍ତ ରାଜଶତ୍ରୁ ଓ ସ୍ୱଶତ୍ରୁମାନଙ୍କର ଏକ ବିସ୍ତୃତ ତାଲିକା ପ୍ରସ୍ତୁତ କଲେ । ରାଜାଜ୍ଞା ଅନୁସାରେ ସେହି ଅନୁକ୍ରମେ ଦେଶର ଅନ୍ୟାନ୍ୟ ଅଞ୍ଚଳରୁ ଆଞ୍ଚଳିକ ଶାସକମାନେ ମଧ୍ୟ ତଥାକଥିତ ରାଜଶତ୍ରୁ, ନିଜଶତ୍ରୁ ଓ ନିଜବନ୍ଧୁ ସ୍ୱଜନଙ୍କର ଶତ୍ରୁମାନଙ୍କୁ ରାଜଦ୍ରୋହ ଅପରାଧରେ ଗିରଫ୍ କରି ପ୍ରିୟଦର୍ଶନଙ୍କ ପାଇଁ ପଠାଇବାକୁ ଲାଗିଲେ ।

ତାଲିକା ମୁତାବକ ଧରା ହୋଇ ଆସୁଥିବା ମଣ୍ଡୁକ ନେତା ଓ ଅନ୍ୟାନ୍ୟ ମଣ୍ଡୁକମାନେ ଦୈନନ୍ଦିନର ପାଳି ଅନୁସାରେ କୃଷ୍ଣସର୍ପଙ୍କର ଆହାର ହେଲେ ।

ବିନା ତାଲିକାରେ ଧରାହୋଇ ଯାଉଥିବା ମଣ୍ଡୁକମାନଙ୍କ ନାମ ଅନତି-ବିଳମ୍ବେ ତାଲିକାଭୁକ୍ତ କରିବାକୁ ରାଜାଙ୍କର ଓ ତସ୍ୟ ପୁତ୍ରଙ୍କର ମଧ୍ୟ କଡ଼ା ଆଦେଶ ଥିଲା । କାରଣ ରାଜା ଆଦର୍ଶ ଓ ନୀତିରେ ବିଶ୍ୱାସ କରିବାକୁ ମଣ୍ଡୁକପ୍ରଜାଙ୍କୁ ସୁଯୋଗ ଛଳରେ ଉପଦେଶ ଦେଉଥିବାରୁ ତାଲିକା ବହିର୍ଭୂତ କାର୍ଯ୍ୟକୁ କଦାଚନ ପସନ୍ଦ କରୁ ନ ଥିଲେ ।

'ମରିବୁ ପଛେ ଡରିବୁ ନାହିଁ' ବୋଲି ଯେଉଁ ସଂଗ୍ରାମୀ ନେତାମାନେ ସ୍ଲୋଗାନ୍ ଦେଇଥିଲେ, ପ୍ରଥମ ଦଫାରେ କେବଳ ସେହିମାନଙ୍କର ପାଳି ପଡ଼ିଥିଲା । ସେମାନେ ପ୍ରିୟଦର୍ଶନଙ୍କ ଦ୍ୱାରା କବଳିତ ହେଲାବେଳେ ରାଜା ଗଙ୍ଗଦତ୍ତ ମଧ୍ୟ ଉପସ୍ଥିତ ଥିଲେ । ଦେଖିଲେ,—ଭୟରେ ଶେତା ପଡ଼ିଯାଇଛି ସେମାନଙ୍କର ମୁହଁମାନ । ପ୍ରିୟଦର୍ଶନଙ୍କର ତୀକ୍ଷ୍ଣ ଓ ନୃଶଂସ ଦାନ୍ତ ମଧ୍ୟରେ ଚାପି ହୋଇ ରହିଥିଲାବେଳେ କି ବିକୃତ ଦିଶୁଥାଏ ସେମାନଙ୍କର ମୁହଁ ଓ ଆଖି । ସାହସୀ ନେତାମାନେ ମଧ୍ୟ ଇତର ମଣ୍ଡୂକଙ୍କ ଭଳି ଆକୁଳ ସ୍ୱରରେ ଚିତ୍କାର କରୁଥାନ୍ତି ।

କେଁ···କେଁ···କେଁ···କେଁ

ପ୍ରିୟଦର୍ଶନଙ୍କର ତୀକ୍ଷ୍ଣ ବିଷାକ୍ତ ଦାନ୍ତ କ୍ରମେ ସେମାନଙ୍କର ଦେହ ଭିତରକୁ ଚପ୍ କରି ଫୁଟିଗଲା । ଦାନ୍ତ ଚାପରେ ଭାଙ୍ଗିଗଲା ହାଡ଼ମାନ । ତା'ପରେ ସେ କ୍ରମେ ସେମାନଙ୍କୁ ଗିଳି ପକାଇଲେ । ଏ ଦୃଶ୍ୟ ଦେଖି ଅନ୍ୟ ବନ୍ଦୀ ମଣ୍ଡୂକମାନେ ଭୟରେ ଅଧୀର ହୋଇ ବିକଳ ସ୍ୱରରେ କାନ୍ଦିବାକୁ ଲାଗିଲେ ।

ଓଃ, କି ଶୋଚନୀୟ ସେ ଦୃଶ୍ୟ । ରାଜା ଗଙ୍ଗଦତ୍ତ ସେ ଦୃଶ୍ୟ ଦେଖି ପ୍ରଥମେ ସମ୍ଭାଳି ପାରିଲେ ନାହିଁ । ପିଲାଙ୍କ ପରି 'ହୋ' କରି କାନ୍ଦି ପକାଇଲେ । ରାଜାଙ୍କର ଏ ଅବସ୍ଥା ଦେଖି ପ୍ରିୟଦର୍ଶନ ମଧ୍ୟ ଆଖି ଛଳ ଛଳ କରି ପକାଇଲେ । ଲୁହରେ ରାଜାଙ୍କର ରୁମାଲ ପ୍ରାୟ ଓଦା ହୋଇଯାଇଥିଲା ।

ଗଙ୍ଗଦତ୍ତ ରାଜକର୍ମଚାରୀମାନଙ୍କ ଆଗରେ ମଧ୍ୟ ଆଖି ଛଳ ଛଳ କରି କହିଲେ,—

ରାଜ୍ୟର ମଙ୍ଗଳ ଦୃଷ୍ଟିରୁ ଏହା କରିବାକୁ ବାଧ୍ୟ ହେଲି ସିନା ! ରାଜା ହେଲେ ମଧ୍ୟ ମୋର ତ ପୁଣି ଗୋଟାଏ ହୃଦୟ ଅଛି । ମୁଁ ସେମାନଙ୍କର ଦୁଃଖ ସହି ପାରୁ ନାହିଁ । ହେଲେ ଉପାୟ କ'ଣ ଅଛି ? ଆମେ ସମସ୍ତେ ତ ନିୟମର ଦାସ ।

ତା'ପରେ ସେ ଅପେକ୍ଷାକୃତ ନମ୍ର ସ୍ୱରରେ ପୁଣି କହିଲେ,— ଆପଣମାନେ ଜାଣନ୍ତି ନାହିଁ, ଆମର ଏ ନେତାମାନେ ବହିଃଶତ୍ରୁ ପ୍ରରୋଚନାରେ ଯେଉଁ କାଣ୍ଡ କରିବାକୁ ଯାଉଥିଲେ ନା, ଏ ବିପଦପୂର୍ଣ୍ଣ ପରିସ୍ଥିତିରେ ଆମେ କୃଷ୍ଣସର୍ପୀୟ ଶାସନ ଜାରି ନ କରିଥିଲେ କ'ଣ ଯେ ହୋଇଥାନ୍ତା···

ପୂର୍ବର ଶାନ୍ତି ଶୃଙ୍ଖଳା ଫେରି ଆସିବାକୁ ବେଶିଦିନ ଲାଗିଲା ନାହିଁ । ଦେଶର ପରିସ୍ଥିତି ଅନୁଧ୍ୟାନ କରିବାକୁ ଯୁବରାଜ ଶ୍ରୀ ଯମୁନାଦତ୍ତ କୂପ, ବାପି ତଡ଼ାଗାଦି

ସମେତ ବିଭିନ୍ନ ଅଞ୍ଚଳ ପରିଦର୍ଶନ କଲେ । ବାଟରେ ବହୁ ସ୍ଥାନରେ ବିବିଧ ଅନୁଷ୍ଠାନ ତରଫରୁ ତାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦିଆଗଲା ।

କୃଷ୍ଣସର୍ପୀୟ ଶାସନ ସମ୍ପର୍କରେ ମଣ୍ଡୁକମାନଙ୍କର ପ୍ରଶଂସା ଶୁଣି ଯୁବରାଜ ଅନେକ ସ୍ଥାନରେ କହିଲେ ଏସବୁ ତ କେବଳ ଦେଶର ତଥା ଆପଣମାନଙ୍କର ହିତ ପାଇଁ—ହେଃ...ହେଃ... ହେଃ...

ମଣ୍ଡୁକମାନେ ଯୁବରାଜଙ୍କ ଆନନ୍ଦରେ ଆନନ୍ଦିତ ହୋଇ କହିଲେ,—

ଆଜ୍ଞା ।....ହେଁ....ହେଁ....ହେଁ ସେମାନଙ୍କର ହସରେ ଉତ୍ସାହିତ ହୋଇ ବାବୁ ଯମୁନା ଦତ୍ତ ପୁନର୍ବାର ହସିଲେ,—

ହେଃ...ହେଃ...ହେଃ...ହେଃ... ।

ଯମୁନା ଦତ୍ତ ହସିବାର ଦେଖି ମଣ୍ଡୁକମାନେ ପୁଣି ଥରେ ହସିଲେ,—
ହେଁ....ହେଁ...ହେଁ...ହେଁ ।

ମାତ୍ର ସାମନା ଧାଡ଼ିର ମଣ୍ଡୁକମାନଙ୍କର ହସ ବ୍ୟତୀତ ଅନ୍ୟମାନଙ୍କ ହସ ତାଙ୍କୁ ଶୁଣାଗଲା,—

କେଁ...କେଁ...କେଁ...କେଁ । କ୍ରମେ ଶତ୍ରୁ ନାମେ ଖ୍ୟାତ ମଣ୍ଡୁକମାନେ ନିପାତିତ ହେଲେ ।

ଅତଃପର ଶ୍ରୀ ପ୍ରିୟଦର୍ଶନ ବୁଢ଼ାଦିନ ଧରି ଏକାଦଶୀ ପାଳିଥିବା ଜଣାଇଁ ଆପତ୍ତି କରିବାରୁ ରାଜା ଦୁଃଖିତ ହେଲେ । କୃଷ୍ଣସର୍ପ ଆଉ ଫେରିଯିବାକୁ ଇଚ୍ଛା କଲେ ନାହିଁ । ଅତଏବ ଦୁଃଖର ସହ ରାଜା ଅଗତ୍ୟା ଆତ୍ମୀୟ ସ୍ୱଜନମାନଙ୍କ ମଧ୍ୟରୁ ଦୈନିକ ଗୋଟିଏ ହିସାବରେ ସ୍ୱତନ୍ତ୍ରତଃ ବ୍ୟାଲଟ୍ ଆଉଟ୍ ପ୍ରକ୍ରିୟାରେ ପାଳିକରି ତାଲିକା କରି ଦେଲେ । ମାତ୍ର ପ୍ରିୟଦର୍ଶନ ପ୍ରତିଦିନ ରାଜାଙ୍କ ଅଗୋଚରରେ ତାଲିକା ବହିର୍ଭୂତ ମଣ୍ଡୁକମାନଙ୍କୁ ମଧ୍ୟ ଶେଷ କରିବାକୁ ଲାଗିଲେ ।

ଆତ୍ମୀୟସ୍ୱଜନମାନଙ୍କ ସଂଖ୍ୟା ଶୀଘ୍ର ହ୍ରାସ ପାଉଥିବା ଦେଖି ରାଜା ହିତାଶ ଓ ଆତଙ୍କିତ ହୋଇପଡ଼ିଲେ ।

ରାଜାଙ୍କ ନିକଟରେ ହଠାତ୍ ଏକ ବିସ୍ମୟକର ସମ୍ବାଦ ପହଞ୍ଚିଲା ।

ପ୍ରିୟଦର୍ଶନ ଯମୁନା ଦତ୍ତଙ୍କୁ ଆଉ ଇହଧାମରେ ରଖିନାହାନ୍ତି ।

ଏ ସମ୍ବାଦରେ ରାଜା ଅତ୍ୟନ୍ତ ମର୍ମାହତ ହୋଇଗଲେ । ଆକୁଳରେ ଚିତ୍କାର କଲେ—

ଓଃ ! ମୁଁ କ'ଣ କଲି ! ଏ କ'ଣ କଲି !

ଭିତରୁ ଶୁଣାଗଲା ଶ୍ରୀମତୀ ଗଙ୍ଗାଦେଈଙ୍କର ବୁକୁଫଟା କରୁଣ କ୍ରନ୍ଦନ । ରାଜାଙ୍କୁ ଧିକ୍କାର କରି ସେ କାନ୍ଦୁଥାଆନ୍ତି । ପୁତ୍ରର ଗୁଣ ଗାଇ ଭୂଇଁରେ ଲୋଟି ଯାଉଥାନ୍ତି ।

ରାଜା ମୁଣ୍ଡରେ ହାତ ଦେଇ ଲଥ୍‌କରି ଭୂଇଁରେ ବସିପଡ଼ିଲେ । ପାଟିରୁ କଥା ବାହାରୁ ନ ଥାଏ । ଆଖି ଛଳ ଛଳ ହୋଇ ଥୋପା ଥୋପା ଲୁହ ବୋହି ଯାଉଥାଏ । ଶୁଦ୍ଧ ମର୍ଚ୍ଛିତ ହେଉଥାଏ ।

ପରେ ପରେ ସେ ଜାଣିବାକୁ ପାଇଲେ,—

ଶ୍ରୀମତୀ ଗଙ୍ଗାଦେଈ ମଧ୍ୟ ଇତମଧ୍ୟରେ ପ୍ରିୟଦର୍ଶନଙ୍କର ଶିକାର ହୋଇ ସାରିଲେଣି ।

ରାଜା ଉନ୍ମାଦ ପ୍ରାପ୍ତ ହୋଇ ଫୋପାଡ଼ି ଦେଲେ ରାଜମୁକୁଟ । ଚିରି ପକାଇଲେ ରାଜକୀୟ ପୋଷାକ ପରିଚ୍ଛଦ । ପାଗଳ ପରି ଚିତ୍କାର କଲେ,—

ହମ୍ ରାଜା ହେ ।

ହମ୍ ରାଜା ହେ ।

ହମ୍...ରାଜା...ହେ...।

ଏବଂ ଏବଂବିଧ ଚିତ୍କାର କରି କରି ପାଗଳ ପରି ଦୌଡ଼ି ଦୌଡ଼ି ପଳାଇ ଗଲେ ।

ବାଟରେ କଶ୍ଚିଦ୍ ଯୋଦ୍ଧା ତାଙ୍କୁ ଭେଟି କହିଲା,—

ତୁମର ବନ୍ଧୁ ପ୍ରିୟଦର୍ଶନ ତୁମକୁ ଅପେକ୍ଷା କରିଅଛନ୍ତି । କହିପଠାଇଛନ୍ତି ଶୀଘ୍ର ଫେରିଯାଅ । ତୁମପରି ପ୍ରିୟବନ୍ଧୁର ବିଚ୍ଛେଦ ସେ ସହିପାରୁ ନାହାନ୍ତି । କହିଛନ୍ତି, ସେ ତୁମର କିଛି ଅନିଷ୍ଟ କରିବେ ନାହିଁ ।

ଗଙ୍ଗାଦେଈ କହିଲେ —

ବୁଭୁକ୍ଷିତ କି ପାପ ନ କରେ ?

ତାଙ୍କୁ କହିଦେବ—ଆଜିଠୁ ହଜାରେ ବର୍ଷଯାଏ ମୁଁ ଆଉ ତା' ମୁହଁ ଚାହିଁବି ନାହିଁ ।

ପ୍ରିୟଦର୍ଶନ ମୋତେ ଭାବିଛି ବୋକା....ହାଃ...ହାଃ, ଆରେ ପ୍ରିୟଦର୍ଶନ ମୋତେ ପାଗଳ ଭାବିଛି—ହାଃ....ହାଃ....ହାଃ...।

ଆହେ ଶୁଣ ହୋ ! ପ୍ରିୟଦର୍ଶନ ମୋତେ କେମିତି ପାଗଳ ବୋଲି ଭାବିଛି—

...ହାଃ....ହାଃ...ହାଃ...ହାଃ...।

ତାଙ୍କର ହସ କ୍ରମଶଃ କ୍ରନ୍ଦନ ପରି ଶୁଣା ଯାଉଥିଲା ।



# ତାରା ଫୁଟିବାର ବେଳା

**ବନଜ ଦେବୀ**

ତମେ ରତ୍ନା ନା ?

ସେଇ ଭୁବନମୋହିନୀ ନାରୀଟି ମୁହଁ ତୋଳି ଚମକି ଚାହିଁଲେ । ସାମ୍ନାରେ ନୀଳକଇଁ ପରି ଆୟତ ଆଖି ଯୋଡ଼ିଏ ଜିଜ୍ଞାସାରେ ଭରପୁର । ନହନହକା ପାତଳା ଶ୍ୟାମଳ ରଙ୍ଗର ଦେହକୁ ବେଢ଼ି ରହିଛି ସଫା ଧଳା ଶାଢ଼ୀଟିଏ । ତା' ସାଙ୍ଗକୁ ଆକାଶୀ ରଙ୍ଗର ବ୍ଲାଉଜଟିଏ । ଅପରିଚିତା ନାରୀଟିର ଚାହାଣୀ, କେଡ଼େ ମିଠା, ମିଠା ସତେ !

ଅପରାହ୍ଣର ଖରା ବିସ୍ତୃତ ପଡ଼ିଛି ଶ୍ରୀମନ୍ଦିର ପ୍ରାଙ୍ଗଣ ସାରା । କାର୍ତ୍ତିକର ଅଁଳା ନବମୀ । ବହୁ ଲୋକଙ୍କର ଯିବା ଆସିବା ଲାଗି ରହିଛି ବେଢ଼ା ସାରା । ଠେଲ ବୁହା ଚାଲିଛି । ମଝିରେ ମଝିରେ ହୋ ହୋ ପାଟିତୁଣ୍ଡ ଶୁଭି ଯାଉଛି । ସେଇ ଅସଂଖ୍ୟ ଲୋକ ଗହଳି ଭିତରେ ଜଗନ୍ନାଥ ଦର୍ଶନ ପାଇଁ ଆଗେଇ ଯିବା ବେଳେ ରତ୍ନା, ସବୁ ଥର ପରି ମନ୍ଦିର ଗାତ୍ରରେ ସତ୍ୟବାନଙ୍କୁ କୋଳାଗ୍ରତ କରିଥିବା ସାବିତ୍ରୀ ମୂର୍ତ୍ତି ପାଖରେ ଅଟକି ଗଲେ । ବର୍ଷ ବର୍ଷ ଧରି ଏହି ମୂର୍ତ୍ତିଟିକୁ ଦେଖି ଆସିଥିଲେ ମଧ୍ୟ ହଠାତ୍ ତାହା କେମିତି ତାଙ୍କର ଆଖିରେ ବିଶେଷ ଏକ ରୂପ ନେଲା । ସେ ଅପଲକ ଆଖିରେ ସେହି ମୂର୍ତ୍ତିଟିକୁ ଚାହିଁ ରହିଲେ କେତେ ମୁହୂର୍ତ୍ତ । ସେଇ ମୁହୂର୍ତ୍ତରେ ସତେ କି ସେ ଅନ୍ୟ ଜଗତକୁ ଚାଲି ଯାଇଥିଲେ । ତା'ପରେ ହଠାତ୍ ସେ ମୂର୍ତ୍ତି ଦେହରେ ହାତ ମାରି ମାରି, ତାକୁ ସ୍ପର୍ଶ ଦ୍ୱାରା ଅନୁଭବ କରିବାକୁ ଲାଗିଲେ । ଚାରି ପାଖରୁ ସ୍ତ୍ରୀଲୋକମାନେ ଆସି ସେଠି ମୁଣ୍ଡ ଆମାରି ଚାଲିଯାଉଥାନ୍ତି, ହଠାତ୍ ଯେତେବେଳେ ରତ୍ନା ପ୍ରକୃତିସ୍ଥ ହେଲେ, ଧଡ଼ପଡ଼ ହୋଇ

ସେଇ ମୂର୍ତ୍ତି ପାଖରେ ମୁଣ୍ଡ ଲଗାଇ ପ୍ରଣାମ କରି ଯେତେବେଳେ ନିଜର ହାତ ଛୁଆଁଇବାକୁ ଗଲେ, ହଠାତ୍ ସେ ଚମକି ପଡ଼ିଲେ ତାଙ୍କ ହାତରେ ସେ ହାତ ନାହିଁ ! ଯୁଗପତ୍ ଦୁଃଖ, ଲଜ୍ଜା, ଅପମାନରେ ସେ ଥରି ଉଠିଲେ । ତାଙ୍କର ମନେ ହେଲ ସବୁ ଯାତ୍ରୀଙ୍କର ଯିବା ଆସିବା ହଠାତ୍ ଦପ୍ କରି ବନ୍ଦ ହୋଇଯାଇଛି ଓ ଶହ ଶହ ଦୃଷ୍ଟି ତାଙ୍କରି ଉପରେ ହିଁ ନିବଦ୍ଧ ରହିଛି । ତାଙ୍କୁ ଗୃହିଁ ଠୋ' ଠୋ' ହୋଇ ଯେମିତି ସମସ୍ତେ ହସି ଉଠୁଛନ୍ତି । ସେଇ ଭୟଙ୍କର ଅଟ୍ଟହାସ୍ୟ ଭିତରେ ହଠାତ୍ ରତ୍ନାଙ୍କର ମୁଣ୍ଡ ଝାଙ୍କିଦେଲା । ତଳେ ପଡ଼ି ଯାଉଯାଉ ସେ ରହିଗଲେ ସେଇ ଅପରିଚିତା ନାରୀଟିର ହାତରେ ।

ତା'ପରେ ସେଇ ନୀଳକଣ୍ଠି ପରି ଆଖି ଦି'ଟିର ଗୃହାଣୀ, ଏକ କୋମଳ ଆଉଁସାରେ ତାଙ୍କୁ ଛୁଇଁ ଛୁଇଁ ଗଲା । ଏକ ସ୍ନେହଭରା କଣ୍ଠ କଳକଳ ହୋଇ କହି ଉଠିଲା, ତମେ ରତ୍ନା ନା ? ଅବନୀଶ ବାବୁଙ୍କ........

ଅବନୀଶର ନାଁ ଶୁଣୁ ଶୁଣୁ ରତ୍ନା କେମିତି ସପ୍ରତିଭ ହୋଇ ଉଠିଲେ । ମଥାରେ ଓଢ଼ଣା ଟାଣି ନେଇ ଲୁଗାପଟା ସେ ସଜାଡ଼ି ନେଲେ । କଣେଇ ଗୃହିଁ ପୁଣି ଅପରିଚିତା ନାରୀଟିକୁ ଦେଖିନେଲେ । ମୁହଁରେ ତାଙ୍କର କୁଣ୍ଠା ଓ ଲଜ୍ଜାର କ୍ଷୀଣ ଗ୍ରସ୍ତାଟିଏ ଘେରିଗଲା । ନାରୀଟି ଅବନୀଶର କେହି ଜଣେ ଆତ୍ମୀୟା ନିଶ୍ଚୟ । ସେ କ'ଣ ରତ୍ନାଙ୍କର ସେହି ଅପ୍ରତିଭ ଅସହଜ ଅବସ୍ଥାଟା ଦେଖି ନେଇଛନ୍ତି ? ଇସ୍, ରତ୍ନା ଆହୁରି ଲଜ୍ଜାରେ ସଂକୁଚିତ ହୋଇ ପଡ଼ିଲେ । ଦାଣ୍ଡ ଭିତ୍ରି କୌଣସି ପ୍ରକାରେ ଗୃଲିଯିବାକୁ ସେ ଓର ଉଣ୍ଡିଲେ ।

ଅପରିଚିତା ସେଇ ନାରୀଟି ଅବନୀଶର ଏହି ସୁନ୍ଦରୀ ସ୍ତ୍ରୀଟିକୁ ଦେଖିନେଲା ଭଲ କରି । ମୁହଁରେ ତାର ହସ ଫୁଟି ଉଠିଲା । ଅବନୀଶର ସ୍ତ୍ରୀଟି ସତେ କେଡ଼େ ସୁନ୍ଦରୀ ନୁହେଁ ? ଦହଦ୍ଧ ପରି ଦାଉ ଦାଉ ଜଳୁଛି ତା'ର ରୂପ । ବୟସାଧିକ୍ୟ ସତ୍ତ୍ୱେ ତେଜ ଟିକିଏ ମଉଳି ନାହିଁ ! ପ୍ରାଚୁର୍ଯ୍ୟ ଓ ପରିପାଟୀରେ ଅସମ୍ଭାଳ ତା'ର ଏଇ ରୂପ ମଧ୍ୟରେ, ବୈଧବ୍ୟ ଯେମିତି ବେଦନଭରା ବସନ୍ତଟିଏ ପରି ହାହାକାର କରୁଛି । ରତ୍ନାର ଗୋରା ଗୋରା ସେଇ କୋମଳ ହାତଟିକୁ ମୁଠେଇ ଧରିଲା ସେ, ଓଠ କଣରେ ଦୁଷ୍ଟ ହସଟିଏ ଫୁଟେଇ କହିଲା···ମତେ ଚିହ୍ନି ପାରୁଛ ?

ମୁଣ୍ଡ ହଲାଇ ରତ୍ନା ମନା କଲା ।

ଏଥର ଓଠରେ ଦାନ୍ତ ଚିପି, 'ହସି ହସି କହିଲା ନାରୀଟି, ' ଚିହ୍ନି ପାରୁନା ? ମୁଁ ଅତସୀ ।''

'ମୁଁ ଅତସୀ' ଏଇ ପଦକ ଶୁଣୁ ଶୁଣୁ ତ ରତ୍ନାଙ୍କର ସମସ୍ତ ସତ୍ତାରେ ଡିନାମାଇଟ୍‌ର ବିସ୍ଫୋରଣ ହେବା କଥା । ପାଦ ତଳରେ ଭୂମିକମ୍ପ ହେବା କଥା । ପ୍ରଜ୍ୱଳିତ କ୍ରୋଧ ନେଇ, ରତ୍ନା ତ ଅତସୀ ଉପରକୁ ଝାମ୍ପି ପଡ଼ିବା କଥା । ଯେଉଁ ଅତସୀ ପାଇଁ ଜୀବନଯାକ ସେ ଜଳିଛନ୍ତି ହୁତ୍ ହୁତ୍, ଏବଂ ଏବେ ବି ସେଇ ଜ୍ୱଳନର ଧ୍ୱଂସାବଶେଷମାନଙ୍କରେ ଢକ ଢକ ନିଆଁ ଫୁଲ ସବୁ ରହି, ସମସ୍ତ ଅସମୟରେ ତାଙ୍କୁ ଚେଙ୍ଗୁଛି, ପୋଡ଼ୁଛି, ସାମ୍ନାରେ ସେହି ଅତସୀ ଠିଆ ହୋଇ ନିର୍ଭୀକ, ଦୃଢ଼, ସ୍ପଷ୍ଟ କଣ୍ଠରେ ନିଜର ସ୍ଥିତି ଘୋଷଣା କରୁଛି, "ମୁଁ ଅତସୀ, ମୁଁ ଅତସୀ ।"

ସାମ୍ନାରେ ସ୍ୱାମୀଙ୍କର ସେହି ଏକାନ୍ତ ପ୍ରଣୟିନୀ ଅତସୀକୁ ଦେଖି, ରତ୍ନାଙ୍କର ଏତାଦୃଶ ଭାବାନ୍ତର ଜନ୍ମ ହେଲ ନାହିଁ । ସେ କେବଳ ବଡ଼ ବଡ଼ ଆଖି କରି ଅନେକା ହୋଇ ଚାହିଁ ରହିଲେ । ଏଇ ଅତସୀ ! ଏଇ ! ସେ ଯାହାକୁ ଭାବୁଥିଲେ ଉର୍ବଶୀଠାରୁ ଅଧିକ ସୁନ୍ଦରୀ, ଯା'ର ଆଖିର ଚାହାଣୀ ମାୟାବୀ ମୁହଁର ହସରେ ଲକ୍ଷେ ଚନ୍ଦ୍ରମଲ୍ଲିକା ଫୁଟି ଝରିଯାଏ, ସେଇ ଅତସୀ ଏଇ···! ଗେଗା ଗେଗା ପାତଳ ଚେହେରା, ଦେହରେ ନଅ ଟଙ୍କିଆ କଣ୍ଟ୍ରୋଲ ଶାଢ଼ୀ ଖଣ୍ଡିଏ । ଆଖିର ଚାହାଣୀ କେତେ ନିର୍ମଳ, ହସ ହସ । ରତ୍ନା ଯେମିତି ଚାହିଁଥିଲେ ତବ ତବ ହୋଇ, କେତେବେଳେ ହଠାତ୍ ସେ ଉଚ୍ଛ୍ୱସିତ ହୋଇ, ଅତସୀର ହାତଟିକୁ ଜାବୁଡ଼ି ଧରି କହିଲେ, "ତୁମକୁ ମୁଁ ଜୀବନଯାକ ଖୋଜୁଛି ଅତସୀ, ଜୀବନଯାକ···

ଏକଇ ପୁରୁଷକୁ କେନ୍ଦ୍ର କରି ଯେଉଁ ଦୁଇଟି ନାରୀ ନିଜ ନିଜର ସ୍ୱପ୍ନ ରଚନା କରିଥିଲେ, ସେଇ ସୁପୁରୁଷ ଅବିନାଶ, ଅଧାବାଟରେ ଚାଲି ଯାଇଥିଲ ଏଇ ଦୁଇଟି ନାରୀଙ୍କୁ ଠକି ଦେଇ । ସେଇ ପଳାତକ, ପ୍ରତାରକ ପୁରୁଷର ସ୍ମୃତିର ଭଗ୍ନାଂଶକୁ ଜପାମାଳି କରି ପଡ଼ି ରହିଥିବା, ପରସ୍ପରର ପ୍ରତି-ଦ୍ୱନ୍ଦ୍ୱୀ ସେଇ ନାରୀ ଦୁଇଟି, ହଠାତ୍ ଜଗନ୍ନାଥ ମନ୍ଦିର ବେଢ଼ାରେ ଭେଟି, ବିସ୍ମୟଭରା ଆଖିରେ ଚାହିଁ ରହିଥିଲେ ପରସ୍ପରକୁ, ଜୀବନଯାକର ସଞ୍ଚିତ, ଅନୁ-ସନ୍ଧିତ୍ସା ନେଇ ।

ରତ୍ନାଙ୍କର ହାତକୁ ପରମ ସ୍ନେହରେ ମୁଠେଇ ଧରିଲ ଅତସୀ । ଅକସ୍ମାତ୍ ଅବିନାଶର ସ୍ତ୍ରୀକୁ ଭେଟି ସେ ଖୁବ୍ ଖୁସି ହୋଇଯାଇଥିଲ । ରତ୍ନାର ହାତ ଧରି ଆଗେଇ ଯାଉ ଯାଉ ସେ କହିଲ···ଜୀବନଯାକ ମତେ କାହିଁକି ଖୋଜୁଥିଲ ରତ୍ନା ?

ରତ୍ନା ପୁଣି ଥରେ ଆଖି ଫେରେଇ ଚାହିଁ ନେଲେ ଅତସୀକୁ । ତାଙ୍କଠାରୁ କେତେ ବୟସ୍କା ଦିଶୁଛି ଏଇ ଅତସୀ । ଦେହର ରଙ୍ଗ ତାଙ୍କ ପରି ସଫା ନୁହେଁ, ତାଙ୍କପରି ରୂପ ବି ଅତସୀର କାହିଁ ? ପିନ୍ଧିଛି ଖଣ୍ଡେ କଣ୍ଟ୍ରୋଲ ଧଳା ଶାଢ଼ୀ, ନାଲି ଧଡ଼ିଆ । ସେଥିରେ ଠାଏ ଠାଏ ଚିରା, ଶାଢ଼ୀଟା ସାବୁନ୍‌ରେ କଚା ଯାଇଛି, ଇସ୍ତ୍ରୀ ଦିଆ ଯାଇନି, ମୁଣ୍ଡର କେଶ ଫୁରୁଫୁରୁ । ତଥାପି ଓଠରେ, ଆଖିରେ, ତାର ଉଚ୍ଛୁଳି ପଡ଼ିବା ହସ । ଓଃ, ଅତସୀ କଣ ହସର ଭଣ୍ଡାର ?

ରତ୍ନାଙ୍କୁ ନୀରବ ଦେଖି, ଅତସୀ ତାଙ୍କ ହାତରେ ମୃଦୁ ଚାପ ଦେଲା । କହିଲା···ଭୁଲିନା, କାହିଁକି ଖୋଜୁଥିଲ ମତେ ଜୀବନଯାକ ?

"ତମ ଭିତରେ ଭଲ କରି ଥରେ ତାଙ୍କୁ ଦେଖିବି ବୋଲି ।" କହିଦେଇ ରତ୍ନା କଣେଇ ଚାହିଁଲେ ଅତସୀକୁ ।

ରତ୍ନାଙ୍କର ଏହି କଥା ଶୁଣି ଶୁଣି, ଅତସୀ ମୁହଁଟି ଆହୁରି ଆହୁରି ହସରେ ଭରି ଉଠିଲା । ଆଖିର ଚାହାଣୀ ଟିକକ ଆହୁରି ସ୍ନିଗ୍ଧ ହୋଇଗଲା । ସତେକି ତା ଅନ୍ତର ଭିତରେ ହସର ବନ୍ୟା କୂଳ ଲଙ୍ଘନ କରିଛି ଓ ତାର ଆଖି ଓଠ, ଚିବୁକ ଦେଇ ସାରା ଦେହରେ ସଞ୍ଚରି ଯାଉଛି । ଏତେ ବେଶି ହସର ଔଜଲ୍ୟରେ, ରତ୍ନାଙ୍କର ଆଖି ଝଲସି ଗଲା ଯେମିତି । ତାଙ୍କର ହଠାତ୍ ମନେହେଲା, ସେଇ ଅମାପ ହସ ଭିତରେ ଅତସୀ ଯେମିତି କହି ଉଠୁଛି "ମୋ ଭିତର ଦେଇ ତାଙ୍କୁ ଦେଖିବ ? ଉଁହୁଁ···ପାରିବ ନାହିଁ ଗୋ ପାରିବ ନାହିଁ । 'ସ୍ୱାମୀ' ବୋଲି ଯାହାଙ୍କୁ ଗର୍ବର ସହ ଦୁନିଆ ଆଗରେ ଦେଖେଇ ହୁଅ, ଯାହାଙ୍କ ପାଇଁ ମଥାରେ ସିନ୍ଦୂର ପିନ୍ଧ, ଯାହାଙ୍କୁ ନେଇ ସିନେମା ଯାଅ ଓ ଅପରାହ୍ଣର ନିଗ୍ଧଟିଆ ଲନ୍‌ରେ ସାମ୍ନାସାମ୍ନି ବସି ଚା' ପିଅ, ନିତି ରାତିରେ ସେଇ ସ୍ୱାମୀଙ୍କର ଜଡ଼ ଦେହଟାକୁ ହିଁ ପାଅ । ରେଣୁ ରେଣୁ ହୋଇ ବିଛି ଯାଇଥିବା ଅବିନାଶର ସମସ୍ତ ପ୍ରାଣ ତରଙ୍ଗକୁ ସାଉଁଟି ସାଉଁଟି, ମୁଁ ଯେ ମୋର ମନର ସେଇ ସାତ ତାଳ ପାଣି ପଙ୍କ ତଳେ, ସୁନା ଫରୁଆରେ ସାଇତି ରଖିଛି । ସେତକ ମୋର । ସେତକ ଏକାନ୍ତ ମୋର । ତୁମେ ତାକୁ ଦେଖିବ, ମେ ଶକ୍ତି ତମର କାହିଁ ?"

ରତ୍ନାଙ୍କର ଝେକାଲି ଆଖି ନଇଁଗଲା ଯେମିତି । ଅତସୀ ମୁହଁର ସେଇ ଦାଉ ଦାଉ ହସର ଆଲୁଅ ତାଙ୍କୁ ପଦେ ପଦେ ଯେମିତି ପ୍ରତିହତ କରି ଦେଉଛି । ରତ୍ନା କେମିତି ଅପ୍ରତିଭ ହେଲେ, ଅସହଜ ମଧ୍ୟ । ପୁଣି ମନକୁ ମନ କହିହେଲେ, ସେ ଏମିତି ସଙ୍କୁଚିତ ହେଉଛନ୍ତି କାହିଁକି ? ସେ ଅବିନାଶର ପତ୍ନୀ । କୁଳର ଝିଅ । କୁଳର ବୋହୂ । ଏମାନେ ସବୁ ଭିନ୍ନ ଜାତି, ସେଇ ମାୟାବିନୀ, ପ୍ରଣୟିନୀର ଜାତି ।

ଏମାନେ ସୁନ୍ଦର, ସମର୍ଥ, ଧନୀ ପୁରୁଷ ଦେଖିଲେ, ବେଲ ଭର୍ତ୍ତି ଫାଶ ବସାନ୍ତି । ସେଇ ସତ୍ ସ୍ୱଭାବର ପୁରୁଷଗୁଡ଼ାଙ୍କୁ ବାଟ ଭୁଲାନ୍ତି, ସେମାନଙ୍କର ଧନ ଶୋଷନ୍ତି, ରକ୍ତ ବି । ଏମାନେ ଭାସିବେ ନାହିଁ ତ ଆଉ ଭାସିବେ କଣ କୁଳର ବୋହୂମାନେ ?

ରତ୍ନା ପୁଣି ଆଖି ଖୋଲିଲେ, ଅତସୀକୁ ଚାହିଁଲେ । ଅତସୀ ରତ୍ନାଙ୍କ ହାତ ଧରି, ସେଇ ଅସମ୍ଭବ ଜନଗହଳି ମଧ୍ୟରେ ମୁକ୍ତିମଣ୍ଡପ ଆଡ଼କୁ ଟାଣି ନେଇ ନେଇ କହିଲା, "ଏଇ ତ ଧୂପ ଉଠି ସାରିଲାଣି । ସାହାଣ ମେଲା ଦର୍ଶନ ମିଳିଯିବ । ଆସନ୍ତା ବେଗି ବେଗି ଯିବା । ନଚେତ୍ ପୁଣି ଦୁଆର ପଡ଼ିଗଲେ, ଭିଡ଼ ଭିତରେ ଯାଇ ହେବନି ।

ରତ୍ନାକୁ ତରବର କରି ଟାଣି ନେଇଗଲା ବେଳେ, ରତ୍ନା ହଠାତ୍ ଅତସୀକୁ ଦୁଇ ହାତରେ ଅଟକେଇ ଧରିଲେ । କହିଲେ, ନାଃ, ଜଗନ୍ନାଥ ଦର୍ଶନ ଆଜି କରିବ ନାହିଁ । ଆଜି କେତେ ଦିନକେ ତମ ଦେଖା ପାଇଛୁ । ତମ ସହିତ ମନ ଖୋଲି ଆଳାପ କରିବ । ଜାଣ ତ, ସେ ଚାଲିଯିବା ଆଜକୁ ଦଶ ବର୍ଷ ହୋଇଗଲା·······

ରତ୍ନାର ଏହି କଥାଟିକ ଏତେ ଆନ୍ତରିକ ଶୁଭିଲା ଯେ, ଅତସୀ ହସ ହସ ହୋଇ, ତା କଥାରେ ସମ୍ମତି ଦେଲା । ଏଣ୍ଡ଼ିଯିବା ଅପେକ୍ଷା, ନିକଟକୁ ଯିବାକୁ ତାର ଇଚ୍ଛା ଥିଲା ଅଧିକ । ସେ ରତ୍ନାର ହାତ ଧରି କହିଲା, 'ଆସନ୍ତା ଏଇଠି କୋଉଠି ନିରୋଳା ଦେଖି ବସିଯିବା ।"

ଦୁହେଁ ହାତ ଧରା ଧରି ହୋଇ ଆସି, ମହାଲକ୍ଷ୍ମୀ ମନ୍ଦିରର ଏକ କଣରେ ଲଗାଲଗି ହୋଇ ବସିଲେ । ସାମ୍ନାରେ ବହୁତ ଲୋକ ଯିବା ଆସିବା କରୁଥାନ୍ତି । କେହି କେହି ମଣ୍ଡପରେ ଲକ୍ଷ୍ମୀ ସ୍ତବ ପାଠ କରୁଥାନ୍ତି; କେହି କେହି ପୁରାଣ ମଧ୍ୟ । ଫୁଲ ଧରିଥିବା ମାଳି, ଫୁଲ ନିଅ, ଫୁଲ ନିଅ କହି ଚିତ୍କାର କରୁଥାଏ । ସେଇ ଆଡ଼କୁ ଚାହିଁଥାଏ ଅତସୀ ଖୁଣ୍ଟିକରି ଆଜିକ । ଅତି ପାଖରେ ତାର ରତ୍ନା । ସୁନ୍ଦରୀ ରତ୍ନା । ଦେହରେ ତାର ଖୁବ ଦାମୀ ଶାଢ଼ୀ, ହେଉପଛେ ଧଳା । ସେଇ ସୁନ୍ଦର ଶାଢ଼ୀରୁ ଆସୁଛି ଦାମୀ ଅତରର ସୁଗନ୍ଧ । ସେ ସୁଗନ୍ଧ ଖେଳି ଯାଉଛି ଚତୁଃପାର୍ଶ୍ୱରେ । ଏଇ ବଡ଼ଲୋକ ଅବନାଶର ପତ୍ନୀ ରତ୍ନା । ଖୁବ୍ ପାଠ ପଢ଼ିଛି । ବଡ ଲୋକମାନଙ୍କ ସମାଜରେ ଚଳପ୍ରଚଳ ହୋଇଛି । ଅତସୀ ତା ସହିତ କ ଆଳାପ କରିବ ? ଅତସୀ, ଯିଏ ଫୁଲମାଳ ବିକି ପେଟ ପୋଷେ···ରତ୍ନାର ସୁନ୍ଦର

ମୁହଁରୁ ଦୃଷ୍ଟି ଫେରାଇ ନେଲା ଅତସୀ, ଦୂରର ନୀଳଚକ୍ର ଉପରେ ଫର ଫର ଉଡ଼ୁଥିବା ସେଇ ପତିତପାବନ ବାନାକୁ ସେ ଏକ ଲକ୍ଷ୍ୟରେ ଚାହିଁ ରହିଲା ।

ଅତସୀର ଦେହକୁ ପ୍ରାଣ ଭରି ଆଉଜି ବସିଥିଲେ ରତ୍ନା । ସତେକି, ଅତସୀର ଦେହରୁ ସେ ମୃତ ସ୍ୱାମୀର ସ୍ପର୍ଶକୁ ଖୋଜି ପାଇବାର ପ୍ରୟାସ କରୁଥିଲେ । ବାହାରେ ଦୂରି ଘୂରି, ଅବିନାଶ ଘରକୁ ଫେରିଲେ ରତ୍ନା ନିଜର ସମସ୍ତ ଘ୍ରାଣ ଶକ୍ତିକୁ ଉଜ୍ଜୀବିତ କରି ଅବିନାଶର ପଞ୍ଜାବୀରୁ, ଦେହରୁ ଅତସୀକୁ ହିଁ ଖୋଜି ବସୁଥିଲେ । ଅହରହ ଲାଭ କରୁଥିବା ସାନ୍ନିଧ୍ୟରୁ କେବଳ ଅତସୀକୁ ହିଁ ପାଉଥିଲେ । ଅବିନାଶ ଗାଧିରେ ଶୋଇ ପଡ଼ିଲେ, ରତ୍ନା ତା ମୁହଁ, ବେକ, ତନ୍ନ ତନ୍ନ ଦେଖି କୁଙ୍କୁମ, ସିନ୍ଦୂର ଅଥବା ଲିପଷ୍ଟିକ୍‌ର ଦାଗ ହିଁ ଦେଖୁଥିଲେ । ଆଜି ସାମ୍ନାରେ ବସିଥିବା ଏଇ ନିରାଭରଣା ଅତସୀ ଦେହରେ, ସଂପୂର୍ଣ୍ଣ ଆଉଜି ପଡ଼ି ସତେ ଯେମିତି ରତ୍ନା ଅବିନାଶକୁ, ନିଜର ସ୍ୱାମୀକୁ, ପ୍ରଥମ ଥର ପାଇଁ ସ୍ପର୍ଶ କଲେ । ଧୀରେ ଧୀରେ ସେଇ ସ୍ପର୍ଶର ଯାଦୁକରୀ କାଠିଟି, ଦେହସାରା ଖେଳିଗଲା । ତାଙ୍କର ମନ ଅଧୀର ହୋଇ ଉଠିଲା । ଧୀରେ ଧୀରେ ହିଂସ୍ର ବି । ସେ କଣେଇ ଚାହିଁଲେ ଅତସୀକୁ । ଏଇ ସେଇ ଅତସୀ ! ଜୀବନସାରା ଖୋଜୁଥିବା ଅତସୀ ! ଅବିନାଶ ମରିଯିବାର ଦଶ ବର୍ଷ ପରେ ହିଁ ତା ସହ ତାଙ୍କର ଦେଖା ହେଲା । ସବୁ ନିଆଁ ନିଭିଯିବା ପରେ ହିଁ ! ସତେ କଣ ସବୁ ନିଆଁ ନିଭି ଯାଇଛି । ନାଃ...ନାଃ...କିଛି ବି ନିଭିନି ....କିଛିବି...ସାମ୍ନାରେ ଏଇ ତ ଅତସୀ ! କଣ ତାର ରୂପ ? କଣ ତାର ଚେହେରା ? ଦେହରେ ଖାଲି ହାଡ଼ ଚାରି ଖଣ୍ଡ ହିଁ ଅଛି, ଗାଲ ପଶି ପଶି ଯାଇଛି । ମୁଣ୍ଡର କେଶ ଗୋଟାଏ ଗୋଟାଏ ପାଚି ବି ଗଲାଣି । ଏଇ ରୂପରେ ପୁଣି ପୁରୁଷ ମରୁ ପାଗଳ ହୁଅନ୍ତି ? ସୁନ୍ଦର କହିଲେ, ସେଇ ହାଡ଼ୁଆ ମୁହଁରେ ଥିବା ନୀଳକାଇଁ ପରି ଆଖି ଦିଓଟି । ଅବିନାଶ କଣ ସେଇ ଆଖି ଦୁଇଟାର ମାୟାରେ ପଡ଼ିଥିଲା ? ସେ ଆଖି ଦୁଇଟାର ମାୟା ପୁଣି ଏତେ ଯେ ଅବିନାଶ ସୁନ୍ଦରୀ ସ୍ତ୍ରୀକୁ, ପଦେ ପଦେ ଉପେକ୍ଷା କରି ଗୋଟିପଣେ ବନ୍ଧା ପଡ଼ିଥିଲା ଏଇ ଅପରିଚ୍ଛନ୍ନ ଅତସୀ ପାଖରେ ?

ରତ୍ନା ଦୀର୍ଘଶ୍ୱାସ ଛାଡ଼ିଲେ । ଥରେ ସେଇ ଫରଫର ଉଡ଼ୁଥିବା ପତିତପା-ବନ ବାନାକୁ ଚାହିଁଲେ; ତା' ପରେ ଚାହିଁଲେ ଅତସୀକୁ । ଅତସୀ ପାଇଁ ତାଙ୍କର ଜୀବନ ଏକ ନାଟକ ହୋଇ ଯାଇଛି । ଅବିନାଶ ପରି ସ୍ୱାମୀ ପାଇ ବି ସେ ସୁଖୀ ହୋଇ ପାରିଲେନି । ଧନ-ରତ୍ନ, ଦାସ-ଦାସୀ ଚାରିପଟେ ତାଙ୍କୁ ଘେରି ରହି-ଥିଲେ । ଅବିନାଶ ନାମଜାଦା ବ୍ୟବସାୟୀ । ସମାଜରେ ପ୍ରତିଷ୍ଠିତ । ରତ୍ନାଙ୍କର କ'ଣ ଅଭାବ ଥିଲା ? ଦିନେ ସେ ଶୁଣିଥିବା କଥାଟାକୁ ସ୍ୱାମୀଙ୍କୁ ପଚାରି ବସିଲେ !

ଆଉ ଅବିନାଶ ନିର୍ମଳଙ୍କ ପରି ସ୍ୱୀକାର ହିଁ କରିଗଲା । ସେଇଦିନଠୁ, ଗୋଡ଼େ ଗୋଡ଼େ ଲାଗି ବସିଲେ ରତ୍ନା ଅବିନାଶଙ୍କୁ । ଅବିନାଶ ବ୍ୟବସାୟ ସନ୍ଧାନରେ ପ୍ରାୟ ବାହାରକୁ ଯାଉଥିଲେ । ରତ୍ନାଙ୍କର କଡ଼ା ନଜର ସତ୍ତ୍ୱେ କେଉଁ ଛଟକରେ ସେ ଅତସୀ ସହିତ ମିଳିତ ହେଉଥିଲେ । ତା ପିଛା ପ୍ରଚୁର ପଇସା ଉଡ଼ାଉଥିଲେ । ସ୍ୱାମୀଙ୍କୁ ଜବଦ କରିବାର ଆପ୍ରାଣ ସଂଗ୍ରାମ, ଚୂଡ଼ାନ୍ତ ହୋଇ ଉଠିଲା ବେଳେ ହିଁ, ଅବିନାଶ ରତ୍ନାଙ୍କୁ ଜବଦ କରି, ସେପାରିକୁ ଚାଲି ଯାଇଥିଲେ । ଅବିନାଶ ଚାଲିଗଲା ପରେ ରତ୍ନା ନିଜକୁ ଦେଖି ଚମକି ପଡ଼ିଥିଲେ । ନିଜକୁ ଯେମିତି ଆଜି ଯାଏ ସେ ଦେଖି ନ ଥିଲେ ! ଚିହ୍ନି ଚିହ୍ନି କରି ଦେଖି ସେ ଜାଣିଲେ ତାଙ୍କ ଝୁଲିରେ, କିଛି, କିଛି ବି ନାହିଁ । ଗୋଟିଏ ନୂଆ ପଇସା ବି ସଞ୍ଚୟ ନାହିଁ । ସେ ଦରିଦ୍ର, ସେ ଭିକାରିଣୀ ।

ରତ୍ନାଙ୍କ ଆଖିରେ ଲୁହ ଜକେଇ ଆସିଲା । ଲିଭି ଯାଉଥିବା ଅପରାହ୍ଣର ଈଷତ ନାରଙ୍ଗୀ ଖରା ସେ ଲୁହ ଟୋପାଟିକୁ ଜଡ଼େଇ ଧରିଲା ଅବା । ରତ୍ନାଙ୍କୁ ଚାହିଁ ଦେଇ ଚମକି ପଡ଼ି ଅତସୀ କହିଲା—ତମେ କାନ୍ଦୁଛ···? ଛିଃ,

ଜରିଲଗା ସେଇ ଧଳା ଶାଢ଼ୀର ପଣତରେ, ଆଖି କୋଣରେ ସେଇ ଲୁହ ଦି'ଟୋପାକ ପୋଛି ନେଉ ନେଉ, ରତ୍ନା ମଳିନ ହସ ହସିଲେ । ହସ ଓ ଅଶ୍ରୁର ମିଶ୍ରଣ ସେ ମୁହଁକୁ କେମିତି ଛମ ଛମ କରି ତୋଳିଲା । ସେ ଗାଢ଼ ସ୍ୱରରେ କହିଲେ, ଜୀବନରେ କୋଠା, ଗାଡ଼ି, ଶାଢ଼ୀ, ଗହଣା, ଦାସ ଦାସୀର ଜାକଜମକ ଏତେ ବେଶୀ ଯେ ତା ଭିତରେ ଏ ଲୁହ ଦି ଟୋପାକ, କେଉଁ କୋଣରେ କେତେ ଟିକିଏ ହୋଇ ଲୁଚି ଯାଉଥିଲା । ହେଲେ ତମେ ତ ଜାଣ ଅତସୀ, ସେଇ ବିପୁଳ ଐଶ୍ୱର୍ଯ୍ୟ, ତାର ଜାକଜମକ ସବୁ ମୋ ପାଇଁ ତୁଚ୍ଛ ହୋଇ ଯାଇଛି । ମୁଁ ହାରି ଯାଇଚି, ଜୀବନରେ, ମୁଁ ହାରି ଯାଇଛି । ଦଶବର୍ଷର ବିବାହିତ ଜୀବନରେ ମୋର ସ୍ୱାମୀଙ୍କୁ ଯେ ମୋର ବୋଲି କହି ପାରିଲି ନାହିଁ ଦମ୍ଭରେ, ଏହି ହାହାକାର ମତେ ଝୁଣି ଝୁଣି ଖାଉଚି । ସେ ଆଜି ନାହାନ୍ତି । ତମ ସହିତ ମୋର ସବୁ ପ୍ରତି-ଦ୍ୱନ୍ଦ୍ୱିତା ଶେଷ ହୋଇ ଯାଇଚି । ତଥାପି ସେ ବଞ୍ଚିଥିବା ବେଳର ହାହାକାର, ତାଙ୍କର ଅବର୍ତ୍ତମାନରେ ପ୍ରବଳ ହୋଇ ଉଠିଛି । ମୋର ଏହି ସୁନ୍ଦର ଜୀବନପାତ୍ର ଯେ ଶୂନ୍ୟ ରହିଗଲା, ସେଇ ଶୂନ୍ୟତା ସର୍ପ ବାହୁ ମେଲି ମୋର ଗଳା ଚିପି ଦବାକୁ ଧାଇଁ ଆସୁଚି । ମୋର ଶାନ୍ତି କାହିଁ ? କେଉଁଠି ?

ଅତସୀ ରତ୍ନାଙ୍କୁ ଚାହିଁଲା କିଛି ମୁହୂର୍ତ୍ତ । ସୁନ୍ଦର ମୁହଁଟି ତାଙ୍କର ଢଳଢଳ ଦିଶୁଚି ଅଶ୍ରୁର ଗୁପ୍ତି ଗୁପ୍ତିକା ଆର୍ଦ୍ରତାରେ । ସେ ଶାନ୍ତ ସହଜ କଣ୍ଠରେ କହିଲା, ଜୀବନ ଭରିବା ପାଇଁ ଗୋଟିଏ ମୁହୂର୍ତ୍ତର ପ୍ରାପ୍ତି ହିଁ ଯଥେଷ୍ଟ । ସେଥିରେ କେବଳ

ଜୀବନ ଯାକ ପୁରେ ନାହିଁ, ଉଚ୍ଛୁଳି ବି ପଡ଼େ । ସେଥିପାଇଁ ବର୍ଷ ମାସର ମାପକାଠି ଦରକାର ବା କ'ଣ ? ଅସଲ କଥା ତମେ ତମର ସ୍ୱାମୀଙ୍କୁ ଚହ୍ନିପାରି ନଥିଲ । ତେଣୁ ତାଙ୍କର ଦାନକୁ ବି ଚହ୍ନି ପାରିଲ ନାହିଁ । ଅବିନାଶ ସୁପୁରୁଷ । ସେ ତମକୁ ତାଙ୍କର ଶ୍ରେଷ୍ଠ ଦାନ ଦେଇ ଯାଇଚନ୍ତି ।

ଅତସୀର ଏହି କଥାରେ ରତ୍ନା ଅତସୀକୁ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁଲେ । ହଠାତ୍ ଯେପରି ଉତ୍‌କ୍ଷିପ୍ତ ହୋଇ ପଡ଼ିଲେ । ସଜାଡ଼ି ହୋଇ ସିଧା ବସି କହିଲେ···ଶ୍ରେଷ୍ଠ ଦାନ ? ନାରୀ ପ୍ରତି ପୁରୁଷର ଶ୍ରେଷ୍ଠ ଦାନ କଣ ସନ୍ତାନ ? ଏକଥା ତମେ କହୁଚ କେମିତି ? ତାପରେ ଚାରିପାଖକୁ ଚାହିଁ ନଉନଉ କହିଲେ, ଏସବୁ ସେହି ମଧ୍ୟଯୁଗୀୟ୍ ନା'ରୀମାନଙ୍କର ଗୌରବ । ଆଜିର ନାରୀର ନୁହେଁ । ମାତୃତ୍ୱ ନାରୀର କାମ୍ୟ ହୋଇପାରେ, ମାତ୍ର ଚରମ କାମ୍ୟ ତ ନୁହେଁ । ଆଗ ନାରୀ ଓ ତାର ନାରୀତ୍ୱ । ତା' ପରେ ସିନା ମାତୃତ୍ୱ । ଅତୃପ୍ତ, ଅସାର୍ଥକ ନାରୀତ୍ୱ ବହନ କରି ମାତୃତ୍ୱ ଲାଭ କରିବା ଯେ ମସ୍ତ ବିଡ଼ମ୍ବନା··· । କହୁ କହୁ ରତ୍ନା ରହିଗଲେ । ତା'ପରେ ଢୋକ ଗିଳି କହିଲେ···ସେଇ କ୍ଷୁଧିତ ନାରୀତ୍ୱର ଭିକ୍ଷା ଥାଳକୁ ଅବିନାଶଙ୍କ ସାମ୍ନାରେ ଟେକି ଧରିଥିଲି । ଅନ୍ୟମନସ୍କ ଭାବେ ସେ କିଛି ଦାନ କରିଥିଲେ । ରାସ୍ତାକଡ଼ର ଭିକ୍ଷୁକ ଥାଳକୁ ପାଞ୍ଚ ପଇସି ଫିଙ୍ଗି ଦେଲା ଭଳି । କହ· ଅତସୀ, କେବେ କେଉଁ ସ୍ତ୍ରୀ ନିଜର ସ୍ୱାମୀର ଏହି ଅନ୍ୟମନସ୍କ ଦାନରେ ସନ୍ତୁଷ୍ଟ ରହିପାରେ ? ତାକୁ ସହ୍ୟ କରିପାରେ ?

କହି କହି ରତ୍ନା ଚୁପ୍ ହୋଇଗଲେ । ଏକାବେଳକେ ଅନେକ କଥା ସେ କହି ଦେଇଚନ୍ତି । ସନ୍ଦେହ ନାହିଁ ଯେ ସେ ଉତ୍ୟକ୍ତ । ଆଉ ଏହି ଉତ୍ୟକ୍ତ ଭାବ, ଦିନ ଦିନ, ବର୍ଷ ମାସର ପୁଞ୍ଜିଭୂତ ରୂପ ମାତ୍ର । ରତ୍ନା ଦୀର୍ଘଶ୍ୱାସ ନେଲେ । ଅତସୀକୁ ଚାହିଁଲେ । ଭାବଲେଶହୀନ ପାଷାଣ ପ୍ରତିମା ପରି ଅତସୀ ବସିଚ ସ୍ଥାଣୁ ହୋଇ । ଆଖିର ଦୃଷ୍ଟି ହଜି ଯାଇଚ ଶୂନ୍ୟରେ । ମୁହଁ ତାର ଉଦାସ, ବିପନ୍ନ । କିଛି ମୁହୂର୍ତ୍ତ ତଳର ସେଇ ହସର ଛଟା ଏବେ କାହିଁ ? ଏଇତ ଫୁଲେଇ ପଣ । କେମିତି ଚଗଲାଢ଼ୀ ଝିଅଟିଏ ସେ ପିଛ ଆସିଚ । ହାତରେ ଦେହରେ କେଉଁଠି ଏତେ ଟିକିଏ ଜିନିଷ ନାହିଁ । ଅବିନାଶ ତାର ବିପୁଳ ସମ୍ପତ୍ତି ଅତସୀ ପିଛୁ ଉଡ଼ାଇ ଦେଇଚ୍ଛ । ଆଉ ଅତସୀ ଏମିତି ନିରମାଖି ହୋଇ ଚଗଲାଢ଼ୀ ପିଛ ଆତଯାତ ହଉଛ ? ସ୍ୱାଙ୍କୁ ହିଁ କହନ୍ତି ସ୍ନେହପରି ପଣ । ଦେଖେଇ ହବା ଗୁଣ । ସେଥିପାଇଁ ସେ ଦେଖେଇ ହେଇ କହୁଚ ଅବିନାଶ ସୁପୁରୁଷ । ସେ ଅମୂକ । ସମୂକ । ରତ୍ନାର ପ୍ରସ୍ତପ୍ରସ୍ତ ଦୁଃଖକୁ ସେ ସହାନୁଭୂତ ଜଣାଉଚ୍ଛ ନାଁ ତାକୁ ପ୍ରଜ୍ୱଳିତ

କରୁଚ ? ସେ ତାକୁ କଣ ବ୍ୟଙ୍ଗ କରୁଛୁ ? ଏମିତ ନୀରବ ମୌନତାର ଗମ୍ଭୀରତାରେ ?

ରତ୍ନାଙ୍କର ଗ୍ଲାସ ଭିତରଟାରେ ଅନେକ ଅନେକ ଫେନା ତଳର କଥା ଝୁଲୁଛି ଏ ଯେମିତ ବୁଗୁ ବୁଗୁ ହେଲା । ଗ୍ଲାସ ଭିତରେ ତେର୍ଙ୍ଗିଲା, ଫେଣ୍ଟେଇଲା । ସେ ଛଟ ପଟ ହେଲେ, ଅସ୍ଥିର ହେଲେ ! ନିଜକୁ ନିଜେ ପ୍ରଶ୍ନ କଲେ...କଣ ପାଇଁ ସେ ଅତସୀକୁ ଗ୍ଲାସ୍ ନଦେଇ ଅଟକାଇ ରଖିଲେ ? କଣ ନିଜର ହେଇ ଭିକାରଣୀ ବେଶ ଦେଖାଇବାକୁ ? ସେଇ ଶୂନ୍ୟ ଝୁଲାକୁ ଅତସୀ ଆଗରେ ମେଲି ଧରିବାକୁ ?

ରତ୍ନା ଅତସୀକୁ ଚାହିଁଲେ । ତାପରେ ହଠାତ୍ କହିଲେ...ନାଷ୍ଟିର କ୍ଷୁଧା ଯେ କି ପ୍ରବଳ, ତା' ତମେ ବୁଝି ପାରିବ ନାହିଁ ଅତସୀ, ବୁଝି ପାରିବ ନାହିଁ । ତମେ ଖାଲି ଅର୍ଥ ଓ ଦେହ ଭିତରେ....

ଅତସୀ ରତ୍ନାଙ୍କୁ ଦୃଷ୍ଟି ତୋଳି ଚାହିଁଲା ।......ହସି ହସି କହିଲା କ'ଣ କହିଲ ...... ?

ଢୋକେ ଗିଳି ରତ୍ନା ତୂଣୀରରୁ ଭଲ ଏକ ତୀର ଖୋଜି ଲାଗିଲେ । ତା'ପରେ ତତ୍‌କ୍ଷଣାତ୍ କହି ଲାଗିଲେ...ଅବିନାଶ ତମକୁ ନେଇ ଫୁର୍ତ୍ତି କରିଥିଲେ । ତମ ପିଚ୍ଛା ପଇସା ଉଡ଼େଇଥିଲେ । ଜଣେ ବିବାହିତ ପୁରୁଷକୁ ତମେ ମୋହିନୀ ମାୟାରେ ବାନ୍ଧି ରଖିଥିଲ ।

ଆଃ...କହିଯାଅ ରତ୍ନା, କହିଯାଅ, ବେଶ୍ ଲାଗୁଚ ଏସବୁ ଶୁଣିବାକୁ ।

କ୍ଷିପ୍ର ସ୍ୱରରେ ରତ୍ନା ପୁଣି କହି ଲାଗିଲେ । ଭଲ ଲାଗିବ ନିଶ୍ଚୟ ତମକୁ; କିନ୍ତୁ ତମେ କହତ, ଅବିନାଶ ଯେ ମୋ ପାଇଁ ଧନ ସମ୍ପତ୍ତି, ସ୍ତ୍ରୀ, ପୁଅ ସବୁ ଛାଡ଼ିଥିଲେ ଏ କଥା ସାରା ସହରରେ କିଏ ଜାଣି ନାହିଁ ?

ହଠାତ୍ ହସି ଉଠିଲା ଅତସୀ । ହସି ହସି ଗଡ଼ିଗଲା । ତା'ପରେ ରତ୍ନାଙ୍କୁ କୁଣ୍ଢାଇ ଧରି କହିଲା...ସେତିକ ମୋର ଗୌରବ ରତ୍ନା । ସେତିକ ମୋ ଜୀବନର ସୌରଭ । ସେତିକ ନେଇ ମୁଁ ବଞ୍ଚି ରହିଚ ଓ ଅବଶିଷ୍ଟ ଦିନତକ ସୁରୁଖରୁରେ ବଞ୍ଚି ଯିବ ।

ଅତସୀ ଏତେ ଜୋରରେ ଏ କଥା ତକ କହିଲା ଓ ଏତେ ଜୋରରେ ରତ୍ନାଙ୍କୁ ଜାବୁଡ଼ି ଧରିଲା ଯେ, ରତ୍ନା ସତେ ବା ଅଣନିଶ୍ୱାସୀ ହୋଇଯିବେ । ସେ ତେଡ଼େଇଛୁ ଚାହିଁ ଦେଖିନେଲେ, ଅତସୀର ଶୁଖିଲା ମୁହଁ କେମିତ ନାଲି ପଡ଼ିଯାଇଚ । ହସର ସେ ଆଲୁଅ ଟିକକ ଝଲମଲ କରୁଛୁ ତାର ଏ କି ଭିନ୍ନ ରୂପ । ହୁଏତ ଖୁବ୍

ଜୋରରେ ହସି ଦେଇ ଅତସୀ ଧଇଁ ସଇଁ ହୋଇ ପଡ଼ୁଛୁ । କିନ୍ତୁ....କିନ୍ତୁ ହଠାତ୍ ଯେମିତି ସେଇ ମୁହୂର୍ତ୍ତିରେ ଅତସୀ ତାଙ୍କୁ ଭିନ୍ନେ ମନେ ହେଲା । ମୁହଁ ପୋଛୁ ନଉଚ ଅତସୀ ଲୁଗା କାନରେ । ଆଖି ଦୁଇଟିରେ ତାର ଏ କ'ଣ ? ଏ କ'ଣ ଲୁହ ? ପାଗଳାମି ଭଗ୍ର ଉଚ୍ଚତ ହସ ପରେ ପୁଣି କି ଲୁହ ?

ହଠାତ୍ ରତ୍ନା ଅତସୀର ହାତକୁ ଧରି ପକାଇଲେ । ସ୍ନେହାର୍ଦ୍ର କଣ୍ଠରେ ଡାକିଲେ ଅତସୀ···

—ହଁ, କହ···

କଣ୍ଠଖାଡ଼ି ସ୍ପଷ୍ଟ କହିଲେ ରତ୍ନା, ତମେ କଣ ସତରେ ଅବିନାଶର ଅର୍ଥକୁ ଭଲ ପାଉଥିଲ ? ନାଁ ଅବିନାଶଙ୍କୁ ?

ଅତସୀ ତାର ସେହି ହାଡ଼ୁଆ ମୁହଁରେ ମାଳକଇଁ ପରି ଆଖି ଦୁଇଟିକୁ ତୋଳିଧରି ରତ୍ନାଙ୍କୁ ଏକଲୟରେ ଚାହିଁ ରହିଲା ।

ଏଇ ଚାହାଣୀଟି ରତ୍ନାଙ୍କ ମନରେ ଯେମିତି ଏକ ନିବିଡ଼ ଛୁଆଁ ଦେଲା । ସେ ଅତସୀର ଆହୁରି ପାଖକୁ ଲାଗି ଆସି ଭଜା ଗଳାରେ କହିଲେ—

—ତମେ ତାଙ୍କୁ ସତରେ ଭଲ ପାଉଥିଲ ?

— ଏବେ ବି ତ ଭଲ ପାଉଚୁ । ଅତସୀର କଣ୍ଠ କୋମଳ ଅଥଚ ସ୍ପଷ୍ଟ ।

—ମୋଠାରୁ ବେଶୀ ଭଲପାଉଚ ? ରତ୍ନାର ଆଖି ଉତ୍ସୁକତ···

ଅତସୀ ରତ୍ନାଙ୍କୁ ଚାହିଁଲା, ତା'ପରେ ହସିଲା । କହିଲା ଭଲ ପାଇବା କମ୍ ବେଶି ହୁଏ କି ନା ମୁଁ ତା ଜାଣେ ନାହିଁ । କେଉଁଥିରେ ମପାଯାଏ ତା ବି ଜାଣେ ନାହିଁ । ଆଉ ତମେ ଅବିନାଶକୁ କେତେ ଭଲପାଅ, ମୁଁ ତା ଜାଣିବି କେମିତି ? ସ୍ତ୍ରୀମାନେ, ତାଙ୍କ ସ୍ୱାମୀମାନଙ୍କୁ କେମିତି ଓ କେତେ ଭଲପାନ୍ତି, ସେ କଥା ତ ମୁଁ ଜାଣେନି । ମୁଁ ଖାଲି ଅବିନାଶକୁ ଭଲପାଏ । ଯେମିତି ସୂର୍ଯ୍ୟମୁଖୀ ଭଲପାଏ ସୂର୍ଯ୍ୟଙ୍କୁ । କୋଇଲି ଭଲପାଏ ବସନ୍ତ ଋତୁକୁ । ଆଉ ବେଳେବେଳେ ମନେହୁଏ, ମୀରାବାଇ ଯେମିତି ଭଲପାଇଥିଲେ ଗିରିଧର ଗୋପାଳଙ୍କୁ ।

ଅତସୀର ଏହି କଥାରେ ରତ୍ନାଙ୍କର ଆଖିରେ ଆଶ୍ଚର୍ଯ୍ୟର ରଂଗ ଲାଗିଲା । ମୁହଁରେ ବିଦ୍ରୂପର ହସ ଫୁଟାଇ ସେ କହିଲେ ଯାହାଙ୍କୁ ଏତେ ଭାବେ, ଏତେ ରୂପେ ଭଲପାଅ, ତାଙ୍କୁ ବାହା ହେଲନି କାହିଁକି ?

ଅତସୀ ହସିଲା, ସେଇ ଶରତ ସକାଳର ନିର୍ମଳ ହସ । କହିଲା, ଭଲ ପାଇବା ମାନେ ଯେ ବିବାହ କରିବା, ଏ ଅପାଠୁଆ ମନରେ ଏ କଥା ଦିନେ ବି

ଆସି ନ ଥିଲ । ଅବନାଶ ଥରେ ଏକଥା ଉଠେଇଥିଲେ । କିନ୍ତୁ ଯାହାକୁ ଭଲପାଏ ତାକୁ କେମିତି ଗ୍ରେଟ କରି ଦେଇଥାନ୍ତି ଦୁନିଆ ଆଗରେ ? ଅବନାଶ ବଡ଼ଲୋକ, ବ୍ରାହ୍ମଣ ଘରର, ଶିକ୍ଷିତ, କିନ୍ତୁ ମୁଁ । ସାମାନ୍ୟ ଜଣେ ମାଲୁଣୀର ଝିଅ ! ମୁଁ କ'ଣ ଅବନାଶର ଯୋଗ୍ୟ ? ମୋ ପାଇଁ ଅବନାଶ କଳଙ୍କିତ ହୋଇଥା'ନ୍ତେ, ଏକଥା ମୁଁ ସହି ପାରନ୍ତି କେମିତି ? ଏଇ ପରିଏ କଥାରେ ପୁନାପିଲ୍ଲ ପରି ବୁଝିଗଲେ ଅବନାଶ, ଆଉ ଦିନେ ବି କଣ୍ଟାଳ କରି ନାହାନ୍ତି ତା'ପରେ....

—କିନ୍ତୁ ତମେ ବିବାହ କଲନି କାହିଁକି ?

— ମୁଁ ? ଅତସୀ ରତ୍ନାଙ୍କୁ ଚାହିଁଲା ବିସ୍ଫାରିତ ଆଖିରେ । ତା'ପରେ ଆଖି ନୁଆଇ ନେଇ, ମାଟିରେ ଗାରି କାଟୁ କାଟୁ କହିଲା, ହଁ ମୁଁ ବି ଯେ କାହିଁକି ବାହା ହେଲି ନାହିଁ, ତା ମୁଁ ନିଜେ ଜାଣେନି । ମାଆ ଥରେ ଦ'ଥର କହୁଥିଲା, ତା ପରେ କ'ଣ ବୁଝିଲି କେଜାଣି ଆଉ ଦିନେ ସେକଥା କହୁନି । ଜଗନ୍ନାଥ ମନ୍ଦିରରେ ଫୁଲମାଳ ବିକି ମୋ ମା'ର ଜୀବନ କଟିଥିଲା । ମୋ ଜୀବନ ବି କଟିଗଲା ସୁରୁଖୁରୁରେ···

କହୁ କହୁ ଗୁମ୍ ଖାଇଗଲା ଅତସୀ । ମୁହଁରେ ତା'ର ପ୍ରଶାନ୍ତିର ଚିହ୍ନ । ଆଖିରେ ଭରି ଭରି ଯାଇଥିବାର ପରିପୂର୍ଣ୍ଣତା । ରତ୍ନା ଅତସୀକୁ ଚାହିଁଲେ, ବିଦ୍ୱେଷରେ ତାଙ୍କର ମନ ଫୁଲି ଫୁଲି ଉଠୁଥିଲା । ସେ ଅତସୀକୁ ବିଦ୍ରୂପଭରା ଚାହାଣୀରେ ତୀକ୍ଷ୍ଣଭାବେ ଚାହିଁଲେ । ହୁଁଃ···କି ଛୋଟପରା କଥା ସବୁ ନୁହେଁ ? ମନ୍ଦିରରେ ଫୁଲମାଳ ବିକିବା ଭିତରେ ତମେ କି ବ୍ୟବସାୟ କରି ତା' ଦୁନିଆ ଜାଣେ । କଥା ପଢ଼ିଲେ ନାଟକ ନଭେଲରୁ ମୁଖସ୍ଥକରା ପ୍ରଳାପ ଆଣି, କି ଅବନାଶ ଠାରୁ ଶିଖି ଘୋଷି ତମେ ଏମିତି ବଡ ବଡ କଥା କହ । ତମର ସବୁ ଆବରଣ ଖୋଲିଦେବି ଅତସୀ, ଖୋଲିବି, ଖୋଲିବି !

ଝରର ରଙ୍ଗ ଘରଚ୍ ଲାଲ ହୋଇ ଉଠିଥିଲା । ମନ୍ଦିରରେ ଲୋକ ଗହଳି କ୍ରମଶଃ ବଢ଼ିବାରେ ଲାଗିଥିଲା । କେହି କେହି ଯାତ୍ରୀ ରତ୍ନା ଓ ଅତସୀକୁ ଚାହିଁ ଦେଇ ଚାଲି ଯାଉଥିଲେ । ମହାଲକ୍ଷ୍ମୀ ମଣ୍ଡପର ସେଇ ଖୁଣ୍ଟକୁ ଆଉଜି ଜୀବନଜାଳାରେ ଜର୍ଜରିତ ସେଇ ନାରୀ ଦୁଇଟି, ନିଜନିଜର ମନରେ ପ୍ରେମର ଭାର ବହନ କରି ଠିଆ ହେଲେ । ଜଗନ୍ନାଥଙ୍କ ଦର୍ଶନ ନ କରି ଦୁହେଁ ଦୁହିଙ୍କ ସହିତ ନିଜ ନିଜର ପ୍ରେମ ଓ ତା'ର ବ୍ୟର୍ଥତା ନେଇ ଗପି ଲାଗିଲେ । ଏହା ପରେ ଆଉ ଯେ ଜଗନ୍ନାଥଙ୍କ ଦର୍ଶନ ହେବନି, ଏହା ଭାବି ରତ୍ନା ଅତସୀକୁ ଚାହିଁ କହିଲେ, ଖୁବ୍ ବେଳ ହେଲା ଚାଲଣି । ଏଥର ଚାଲ ଫେରିବା !

—ଦର୍ଶନ କରିବା ନାହିଁ ?

ଅତସୀ ମୁହଁରେ ତୀକ୍ଷ୍ଣ ଦୃଷ୍ଟି ରଖି, ତାର ହାତଟିକୁ ଧରି ପକାଇ କହିଲା —ମତେ ତମ ଘରକୁ ନବ ?

—ମୋ ଘରକୁ ତମେ ଯିବ ? ଆନନ୍ଦରେ କୁରୁଳି ଉଠିଲା ଅତସୀ । ରତ୍ନାର ଦୁଇ ହାତକୁ ମୁଠେଇ ଧରି କହିଲା—ତମେ ସତେ, ସତେ ମୋ ଘରକୁ ଯିବ ରତ୍ନା ? କିନ୍ତୁ....

କିନ୍ତୁ ପାଖରେ ଅଟକି ଗଲା ଅତସୀ । ରତ୍ନାର ହାତ ଧରି ସେ ଭିଡ଼ ଭିତରେ ଠେଲି ପେଲି ହୋଇ ଆସି ବଡ଼ଦାଣ୍ଡରେ ପହଞ୍ଚିଲା । ରତ୍ନାଙ୍କୁ ପୁଣି କହିଲା—ପିଲାଙ୍କୁ ଆଣିଲନ ରତ୍ନା ? ଟିକେ ଦେଖିଥାଆନ୍ତି ।

ପ୍ରଶ୍ନଟାକୁ ଏଡ଼ିଯିବା ପାଇଁ ରତ୍ନା ଚୁପ ରହିଲେ । ଅତସୀକୁ ତୀକ୍ଷ୍ଣ ଆଖିରେ ଚାହିଁ ରହିଲେ । ତାପରେ ତା' ପଛେ ପଛେ ଚାଲିବାରେ ଲାଗିଲେ ।

ଦୁହେଁ ଆସି କେତେବେଳେକେ ସମୁଦ୍ର କୂଳରେ ପହଞ୍ଚିଲେ । ସେତେ-ବେଳକୁ ବେଳ ରତରତ । ସମୁଦ୍ର ଉପରେ ଅସ୍ତ ଯାଉଛି ସୂର୍ଯ୍ୟ । ନୀଳ ସମୁଦ୍ରଟା ଲାଲେ ଲାଲ । ସେଇ ଲାଲ ରଙ୍ଗ ଗୋଳି ହୋଇ ଉଡ଼ି ଆସୁଛନ୍ତି ସାମୁଦ୍ରିକ ପକ୍ଷୀ ।

ଗୋଟିଏ କୁଆଁଣିଆ ଚାଳ ଘରକୁ ଆଙ୍ଗୁଠି ଦେଖାଇ ଅତସୀ କହିଲା—ଏଇ ଗୋଟିକ ମୋ ଘର । କହି କହି ଅତସୀ ସେଇ ଘରର ପିଣ୍ଡାକୁ ଉଠିଗଲା ।

ରତ୍ନା ଦେଖି ଲାଗିଲେ ସେଇ ଘରଟିକୁ ତୀକ୍ଷ୍ଣ ଆଖିରେ । ବାଲିମାଟି ଓ ଗୋବରରେ ଲିପା ଯାଇଛି ତାର ଅଣଓସାର ବାରଣ୍ଡା ଓ କାନ୍ଥ ସବୁ । କବାଟ-ଝରକା କ ଜୀର୍ଣ୍ଣଶୀର୍ଣ୍ଣ । ସେଇ ବାରଣ୍ଡା ଉପରେ ଲଥ୍ କରି ବସି ପଡ଼ିଲେ ରତ୍ନା ଅବଶ ହୋଇ । ସତେକି ଏତେ ବାଟ ଚାଲି ଆସିଥିବା କ୍ଳାନ୍ତିରେ ।

ସେ କହିଲେ—ତମ ପାଇଁ ଯେ ସେ ସୁନ୍ଦରୀ କୋଠା ଘରଟିଏ ତୋଳି ଦେଇଥିଲେ ସମୁଦ୍ର କୂଳରେ ମୁଁ ଶୁଣିଥିଲି···

ଅତସୀ ତାଲା ଖୋଲୁଥିଲା, ମୁହଁ ବୁଲାଇ ରତ୍ନାଙ୍କୁ କଣେଇଁ ଚାହିଁ କହିଲା – ହଁ, ନବପଦ, ନର୍ଭରଶୀଳ ଆଶ୍ରୟର କୋଠାଟିଏ ସେ ମୋ ପାଇଁ ତୋଳି ଦେଇ ଯାଇଥିଲେ, ହେଲେ ଏ ସମୁଦ୍ର କୂଳରେ ନୁହେଁ·······ସେଇଟା ମୋ ମନ ଭିତରେ !

ଅତସୀ ମୁହଁରେ ସେଇ ମୁଠା ମୁଠା ଗଙ୍ଗଶିଉଳିର ହସ ଝରିଗଲା । ସେ ରତ୍ନାର ହାତ ଧରି ଭିତରକୁ ଟାଣି ନଉ ନଉ କହିଲା—ଆସ ରତ୍ନା, ଏ କୁଡ଼ିଆ ଘରେ ବସି ରହିବାକୁ ନିଶ୍ଚେ ତୁମର କଷ୍ଟ ହେବ ।

କିନ୍ତୁ ରତ୍ନା ଯେମିତି ଉଠିପାରୁ ନ ଥିଲେ । ତାଙ୍କର ସବୁ ଶକ୍ତି, ସବୁ ସାମର୍ଥ୍ୟ ହରାଇ ବସିଥିଲେ । ଅସମ୍ଭବ ଜଡ଼ତା ତାଙ୍କ ଦେହ ମନରେ ସଞ୍ଚାରି ଯାଇଥିଲା ।

ଅତସୀ ରତ୍ନାଙ୍କ ହାତଧରି ଟାଣିଲା । ଘର ଭିତରକୁ ନେଲା । ରତ୍ନା ଟଳ ଟଳ ହୋଇ ଭିତରକୁ ଗଲେ ।

ସେଇ ମାଟି ଗୋବର ଲିପା, ବଖୁରାଏ ଘର । ସାମ୍ନା କାରକୁ ଗ୍ରେଟ ଗ୍ରେଟ ଦୁଇଟି ଝରକା । ଯେଉଁ ବାଟେ ଦେଖା ଯାଉଥିଲା ଦୂରର ନୀଳସମୁଦ୍ର ଆଉ ରଡ଼ରଡ଼ ସୂର୍ଯ୍ୟ । ଝରକା ବାଟେ କେଇ ଛଟା ଲାଲ କିରଣ ପଶି ଆସି ଘରର ଏହି ଧୂସର ଅନ୍ଧକାରକୁ ଈଷତ ଲୋହିତ କରିଦେଇଥିଲା । ରତ୍ନା ଦେଖୁଥିଲେ ନିଷ୍ପଲକ ଆଖିରେ ଚତୁର୍ଦ୍ଦିଗକୁ । ଘରର ଗୋଟିଏ କଣକୁ ପଡ଼ିଛି ଅଧାଭଙ୍ଗା ପୁରୁଣା ଆରାମ ଚେୟାରଟିଏ । ଆର କଣକୁ ବାଉଁଶ ଅଲଗୁଣିରେ କେତୋଟି ଲୁଗା, ଚଦର ଓ ସତରଞ୍ଜି । ସପଟିଏ ଗୁଡ଼ା ହୋଇ ଥୁଆ ହୋଇଛି କଣରେ । ଗ୍ରେଟ ଟାବଲଟିଏରେ ନାଲି, ନେଳି କାଗଜ ମଢ଼େଇ ଦେଇ, ସେଥିରେ ଅତସୀ ରଖିଛି ତା'ର ଠାକୁର । ଜଗନ୍ନାଥ ଫଟୋଟିଏ, ଭିତର ପାଖକୁ ସଜାଯାଇ ଥୁଆ ହୋଇଛି । ଚକ୍ ଚକ୍ କରୁଥିବା ସିଲଭର ଓ କଂସା ବାସନ କେତୋଟି । ଉତ୍କଟ ଦାରିଦ୍ର୍ୟର ସ୍ତୂପ ଘରର ସର୍ବାଙ୍ଗ ।

ରତ୍ନାଙ୍କୁ କେଉଁଠି ବସାଇବ ପ୍ରଥମେ ଅତସୀ କିଛି ବି ସ୍ଥିର ପାରିଲାନି । ତା'ପରେ ସେଇ ପୁରୁଣା ଦଦରା ଆରାମ ଚେୟାରଟାକୁ ଘୋଷାରି ଆଣି, ନିଜଶାଢ଼ୀ କାନିରେ ଭଲ କରି ପୋଛିଦେଲା । ପରମ ସ୍ନେହରେ ରତ୍ନାଙ୍କୁ ସେଠି ବସାଇ କହିଲା···ଗରିବ ଘରେ ରଜା କୁଣିଆ । ତମକୁ ମୁଁ କେମିତି ଚର୍ଚ୍ଚା କରିବ ରତ୍ନା ?

ରତ୍ନାର ସେଇ ଉଦାସ ବିସ୍ଫାରିତ ଆଖିରେ ଅତସୀର ଆଖି ମିଶିଗଲା । ଭିତରେ ପାଖ ଦୁଆର ବାଟେ ଖୋଲା ଅଗଣାରେ ଦିଶୁଥିଲା ମାଡ଼ି ଯାଇଥିବା ଗୁମେଲା ଲତାଟି, ଓଳି ତଳେ ଟବେ ବୁଦା ବୁଦା ମଲ୍ଲୀ ଓ ଯୁଇଗଛ କେତୋଟି । ସେଇଆକୁ ଚାହିଁଥିଲେ ରତ୍ନା ନିମଗ୍ନ ଆଖିରେ ।

ଅତସୀ କହିଲା ବାଷ୍ପରୁଦ୍ଧ କଣ୍ଠରେ···ଯେତେବେଳେ ଆସିଲେ, ଏଇ ଚଉକିଟାରେ ସେ ବସୁଥିଲେ । ଆଉ କାହାକୁ ସେଥିରେ ମୁଁ ବସିବାକୁ ଦଏନା । କହୁ କହୁ ଅତସୀର କଣ୍ଠ କେମିତି ଘାର ଘାର ହୋଇଗଲା । ସେ ମୁହଁ ବୁଲାଇ ନେଇ ଝରକା ଆଡ଼େ ଚାହିଁଲା···

ରତ୍ନା ଥରେ ଚଉଦକଡିକୁ ଚାହିଁଲେ । ତା'ପରେ କ'ଣ ଭାବି ସେଇ ଚଉଦକଡିକୁ ସାଉଁଳିବାକୁ ଲାଗିଲେ, ଥରକୁ ଥର । ତା'ପରେ ଅବଶ ହୋଇ ଧୀରେ ଧୀରେ ସେ ଆଉଜି ପଡ଼ିଲେ ଗୋଟିଏପଣେ ଆର୍ମ ଚେଆର ଦେହରେ । ଆଖି ତାଙ୍କର ବୁଜି ହୋଇ ଆସିଥିଲା । ଦପ୍ ଦପ୍ ହେଉଥିବା ଛାତି ଉପରେ ଅବଶ ହାତ ଦୁଇଟି ପଡ଼ିଥିଲା ନିସ୍ତେଜ ହୋଇ ।

ଅତସୀ ରତ୍ନାଙ୍କ ମୁଦ୍ରିତ ଆଖି ଦୁଇଟିକୁ ଚାହିଁ ରହିଲା କେତେ ମୁହୂର୍ତ୍ତ, ତା'ପରେ କହିଲା···ତମେ ବସିଥାଅ ରତ୍ନା, ମୁଁ ଟିକିଏ ଚା କରି ଆଣେ ।

ରତ୍ନା ଆଖି ଖୋଲିଲେ । ଅତସୀକୁ ଚାହିଁଲେ । ତା' ପରେ ହଠାତ୍ ସଜାଡ଼ି ହୋଇ ବସି କହିଲେ, ଅତସୀ, ସେ ତମକୁ କିଛି ବି ପଇସା ପତ୍ର ଦିଅନ୍ତି ନାହିଁ କେମିତି ? ତମେ ଏତେ କଷ୍ଟରେ······

ଅତସୀର ଆଖି ଦିଓଟି ଉଜ୍ଜ୍ୱଳ ଉଠିଲା···ସେ ହସିଲା··· କହିଲା ନାଁ, ଅବିନାଶ ଖୁବ୍ ଉଦାର, ଖୁବ୍ ମହାନ । ସେ ପ୍ରାଣ ଦେଇ ସବୁ ହିଁ ବୁଝନ୍ତି ।' ମୁଁ ଯେ ପଇସା ଛୁଏଁନା, ଏକଥା ସେ ଜାଣି ପାରିଥିଲେ ।

କହି କହି ଅତସୀ ଭିତରକୁ ଚାଲିଗଲା । ରତ୍ନା ପୁଣି ଆଖି ବୁଜି ଚେଆରରେ ଆଉଜି ପଡ଼ିଲେ । ଆପେ ଆପେ ଦୀର୍ଘଶ୍ୱାସଟାଏ ଉଠିଗଲା ଛାତି ଭିତରୁ ।

ଅତସୀ ପତର ଜାଳି, ଚା' ଟିକିଏ କରି ଆଣିଲା । ଯେଉଁ କପ୍ ପ୍ଲେଟରେ ଅବିନାଶ ଚା' ଖାଉଥିଲେ, ସେଇ କପ ପ୍ଲେଟ ଧୋଇ, ଚା' ନେଇ ଭିତରକୁ ଆସିଲା ଅତସୀ । ରତ୍ନା ସେମିତି ଆଖିବୁଜି ଶୋଇଛନ୍ତି ଆରାମ ଚେଆରରେ । ଅତସୀ କହିଲା···ଚା' ନିଅ ରତ୍ନା, ଟିକିଏ ଚା' ମାତ୍ର ! ଗରିବ ଅତସୀ ତମକୁ ଆଉ କ'ଣ ଦେଇପାରେ ?

ରତ୍ନା ବିନାଦ୍ୱିଧାରେ, ଅତସୀ ହାତରୁ ଚା' କପ ନେଲେ । କଳା କଳା ଦିଶୁଥିଲା ସେଇ ଶସ୍ତା ଗୁଣ୍ଡ ଚା'ରେ ତିଆରି ଚା' । ଦାମି ଟିଣ ଚା' ଖାଇବାରେ ସଦା ଅଭ୍ୟସ୍ତ ରତ୍ନା ପରମ ଶ୍ରଦ୍ଧାରେ ସେହି ମିଠା ନ ଥିବା ପାଣିଚିଆ ଲୁଖୁରା ଚା'କୁ ପିଇ ଲାଗିଲେ ଚୁପି ଚୁପି । ମନେ ହେଲା ଏତେ ଦିନ ଧରି ଚା' ପିଇ ଆସୁଥିଲେ ମଧ୍ୟ, ଆଜି କେମିତି ତା'ର ଏକ ନୂତନ ସ୍ୱାଦ ସେ ପାଇଛନ୍ତି ।

ରତ୍ନାର ପାଦ ପାଖରେ ବସିପଡ଼ିଲା ଅତସୀ । ତା' ଆଣ୍ଠୁରେ ହାତ ରଖି ତାକୁ ଚାହିଁ ରହିଲା କେତେ ମୁହୂର୍ତ୍ତ । ତା'ପରେ ଝରକା ବାଟେ ବାହାରକୁ

ଚାହିଁଲା । କହିଲା···ବର୍ଷେ, ଛ' ମାସରେ, ଝଡ଼ ପରି ଦିନେ ଦିନେ ସେ ଚାଲି ଆସନ୍ତି ଏଠିକୁ । କେତେ କ୍ଲାନ୍ତ ଦିଶୁଥା'ନ୍ତି । ଏଇ ଚେୟାରରେ ବସନ୍ତି ଠିକ୍ ଏଇମିତି ଆଣ୍ଠୁକପଡ଼, ଆଖିବୁଜି, ଶୋଇ ରହନ୍ତି । କ୍ଷୀର ନ ଥିବା ନାଲି ଚା' ଟିକଏ ପିଅନ୍ତି କେତେ ଶ୍ରଦ୍ଧାରେ । କପାଳ ଉପରେ କେଉଁ କେଉଁ କେଶ ଝୁଲି ପଡ଼ୁଥାଏ । ଗ୍ରୀବରେ ବୋତାମ ଫିଟି ଫିଟି ଯାଇଥାଏ । ଲୁଗାକୁଞ୍ଚ ତଳେ ଲୋଟୁଥାଏ । ଗମ୍ ଗମ୍ ଝାଳ ବୋହି ଯାଉଥାଏ । ଦେହରୁ, କପାଳରୁ । କେତେ ଥର, ପ୍ରବଳ ଇଚ୍ଛା ହୋଇଛି—ଅନ୍ତରନିଗିଡ଼ା ସ୍ନେହର ସ୍ପର୍ଶ ଟିକିଏ ଦେଇ, ସେଇ ଅସଜଡ଼ା କେଶଗୁଚ୍ଛକୁ ସଜାଡ଼ି ଦିଅନ୍ତି । ସେଇ ଫିଟି ଯାଇଥିବା ବୋତାମ ଲଗାଇ ଦିଅନ୍ତି । ଶାଢ଼ୀ କାନିରେ ଯତ୍ନରେ ପୋଛି ଦିଅନ୍ତି ସେଇ କପାଳ ଉପରର ଟିପିଟିପି ଝାଳ । ହେଲେ ସବୁବେଳେ ମୁଁ ସଙ୍କୁଚିତ ହୋଇ ପଡ଼ିଛି, ସେ' ଯେ ବଡ଼ ଘରର, ରାଣୀଙ୍କର ଜନନ୍ତ, ମୁଁ ତାଙ୍କ ଦେହରେ ହାତ ଦେବି ? ତାଙ୍କର ଅମର୍ଯ୍ୟାଦା କରିବି ? ନିଜ ଲୋଭକୁ ନିଜେ ସାଉଁଟି ନିଏ । ନିଜକୁ ଧିକ୍କାର କରେ । କ୍ଷୀର ନ ଥିବା ଚା' ଟିକଏ ଦିଏ । ଘଣ୍ଟାଏ କି ଦେଢ଼ ଘଣ୍ଟା ସେ ବସନ୍ତି ମାତ୍ର, ସେମିତି ଆଖି ବୁଜି । ଦିନେ ଦିନେ କହନ୍ତି, "ପାନ ଦିଅନି ।" ଏତିକି କହନ୍ତି । ତାଙ୍କ ପାଇଁ ପାଟ କନାରେ ଲବଙ୍ଗ କେତୋଟି ଗଣ୍ଠି ପକାଇ ସାଇତି ରଖିଥାଏ । ପାନ ଭାଙ୍ଗି ଦିଏ, 'ପାନଟିକ ନେଇ ଯାଉଚି' ବୋଲି କହି ସେ ଥରେ ମାତ୍ର ଚାହିଁଦେଇ ଚାଲି ଯା'ନ୍ତି । ପୁଣି ବର୍ଷେ କି ଛ' ମାସ । ବଞ୍ଚିବାର ସଞ୍ଜୀବନୀ ମୁଁ ପାଇଯାଏ । ତାଙ୍କର ଯିବା ବାଟକୁ ଚାହିଁ ରହେ । ଖାଲି ଏତିକି ରତ୍ନା, ଖାଲି ଏତିକି । ଏହା ଛଡ଼ା ଆଉ ମୁ କିଛି ଜାଣେନା, କିଛି ବି ଜାଣେନା । ଅଥଚ ତା'ରି ଭିତରେ ମୁଁ ଅବିନାଶଙ୍କୁ ପାଇଛି; ଏ ସମସ୍ତ ଜୀବନ ପୂର୍ଣ୍ଣ କରି ।

କହୁ କହୁ ଅତସୀ ରତ୍ନାର କୋଳରେ ମୁଣ୍ଡ ରଖିଲା । ରତ୍ନା ତାଙ୍କର ଥର ଥର ହାତ ଦେଇ ତାର କେଶ ବାରମ୍ବାର ସାଉଁଳିବାକୁ ଲାଗିଲେ । ସ୍ନେହର ସ୍ପର୍ଶ ଦେଇ ଦେଇ । ତା'ପରେ ହଠାତ୍ ଅତସୀ ଠିଆ ହୋଇ ପଡ଼ି କହିଲା, "ସନ୍ଧ୍ୟା ହେଲାଣି ମୁଁ ସଞ୍ଜ ଦିଏଁ ।"

ରତ୍ନା ବାହାରକୁ ଚାହିଁଲେ । ସନ୍ଧ୍ୟା ନଇଁ ଆସିଲାଣି ନୀଳ ସମୁଦ୍ର ଉପରେ । ସନ୍ଧ୍ୟାର ପ୍ରାଗ୍ୱାନ୍ଧକାର ଛମ୍ ଛମ୍ ହେଉଛି । ଦିଗ୍‌ବଳୟର ଧାରେ ଧାରେ, ମାର୍ବଲ ବିନ୍ଦୁ ପରି ଫୁଟି ଉଠିଛି ଗୋଟି ଗୋଟି ତାରା । ଅନ୍ଧାରରେ ଚକ୍ ଚକ୍ କରୁଛି ସେସବୁ ।

ଅତସୀ ସନ୍ଧ୍ୟା ଆଳତି ଦେଇ ସାର ପ୍ରଣାମ କଲା । ତା'ପରେ ତାଙ୍କୁ ଭିତରୁ ମଲ୍ଲୀ କଢ଼ର ମାଳଟିଏ ଆଣି, ରତ୍ନାର ସାମ୍ନାରେ ଠିଆ ହୋଇ

କହୁଥିଲା···କେତେ ଥର ଭାବଛୁ, ଏଇ ଫୁଲବଣା ମାଲୁଣୀର ମଲ୍ଲୀକଢ଼ ମାଳଟି, ଅବିନାଶର ବେକରେ ଝୁଲାଇ ଦେବ କି ହାତରେ ଗୁଡ଼ାଇ ଦେବ । ହେଲେ କେବେ ବି ସାହସ ହୋଇ ନାହିଁ । କାଲି ସନ୍ଧ୍ୟାରେ ଅବିନାଶ ପାଇଁ ଗୁନ୍ଥୁଥିବା ଫୁଲ, ଜଗନ୍ନାଥଙ୍କୁ ହିଁ ଦେଇ ଦେଇଛୁ । ଆଜି ଏଇ ହାରଟି ତମେ ନିଅ ରତ୍ନା, ଅବିନାଶଙ୍କ ଫଟୋରେ ଝୁଲାଇ ଦେବ । କହୁ କହୁ ଅତସୀର କଣ୍ଠ ଥରି ଉଠିଲା । ତା'ପରେ ସେ ଚମକିଲା ପରି କହି ଉଠିଲା···ଚାଲ ତମକୁ ଛାଡ଼ିଦେଇ ଆସେ···ରାତି ହେଲାଣି···ଏଠି ନଚେତ୍ ରିକ୍‌ସା ମିଳିବ ନାହିଁ ।

ଏତେ ବେଳଯାଏଁ ଚୁପ୍ ହୋଇ ବସିଥିଲା ରତ୍ନା । ହଠାତ୍ ଅତସୀକୁ କୁଣ୍ଢାଇ ପକାଇ କହି ଉଠିଲେ, ମୁଁ ଆଉ ଘରକୁ ଫେରିବି ନାହିଁ ଅତସୀ, ମତେ ଏଇଠି, ତମ ପାଖରେ ରହିବାକୁ ଦିଅ ।

ଅତସୀର ଆଖି ଝେକ ହୋଇଗଲା । ସେ ହସି ହସି କହିଲା···ତମେ ଏଇଠି ରହିବ ? ଶାଗ, ପଖାଳ ଖାଇ ? ଏଇ କୁଡ଼ିଆରେ ?

ଅତସୀକୁ ଯେମିତି ଜାବୁଡ଼ି ଧରି ରତ୍ନା କହିଲା···ଦୂରତ୍ୱରେ, ବ୍ୟବଧାନରେ ତମେ ତାଙ୍କୁ କିପରି ଏତେ ନିବିଡ଼ ଭାବେ ପାଇଚ···ସେଇ କଥା ମତେ ଶିଖେଇ ଦିଅ ଅତସୀ ! ତାଙ୍କୁ ଗୋଡ଼େ ଗୋଡ଼େ ଜଗି ପ୍ରାଚୁର୍ଯ୍ୟ ଭିତରେ ମୁଁ ଯେ କେବଳ ହରାଇ ହିଁ ଆସିଲି, ସେଇ ଜୀବନଯାକର ହାହାକାର ଏଇଠି ଏଇ ତମର କୁଡ଼ିଆ ଘରେ, ନିଃସ୍ୱତା ଭିତରେ ବେଢି ରହିଥିବା ଅବିନାଶର ଆତ୍ମାକୁ ପାଇ ଦୂର ହୋଇଯାଉ ! ଏଇଠି ତମର ପାଖରେ, ତମର ଭିତରେ, ତମକୁ ଶ୍ରଦ୍ଧା କରି, ତାଙ୍କୁ ଥରେ ହେଲେ ମୁଁ ପାଏ ।

କହୁ କହୁ ରତ୍ନା କାନ୍ଦି ଉଠିଲା କହିଁ କହିଁ ହୋଇ, ଅତସୀର କାନ୍ଧରେ ମୁହଁ ନଦା । ଆଉ ଅତସୀ···ରତ୍ନା ପିଠିକୁ ସାଉଁଳି ସାଉଁଳି ଝରକା ବାଟେ ସେଇ ଅନ୍ଧାରକୁ ଗୃହିଁ ରହିଥିଲା । ମନେ ହେଉଥିଲା, ତା'ର ଜୀବନର ସେଇ ଧୂସର ଧୂସର ଅନ୍ଧକାର ଭିତରେ, ସେଇ ତଥାକଥିତ 'ପ୍ରାପ୍ତି'ର ଜୋନକୀଟିକୁ ଧରିବା ପାଇଁ, ସତେ ଯେମିତି ସେ କେବଳ ଭୁଆଁ ବୁଲୁଛି ।

ରତ୍ନାର ଆଖିରୁ ଲୁଚେଇ ନବା ପାଇଁ ଲୁହ ଦି'ଟୋପାକ ସନ୍ତର୍ପଣରେ ପୋଛିନେଲା ଅତସୀ ।



# ପରାଜୟ

## ପ୍ରସନ୍ନ କୁମାର ପାଟଶାଣୀ

ବନ ଗଙ୍ଗା । ଏକ ନଦୀର ନାମ । ବାଘୀ ପାଖୁଡ଼ାରେ ପଶୁ ବାସ୍ନାର ଢେଉ ଢୋଳି ବହିଯାଏ ଘନ ଜଙ୍ଗଲରେ । ଝିଁପକ୍ଷର ଡଙ୍ଗାରେ ବସି ଢେଉକୁ ଆହ୍ୱାନ କରେ ପତଙ୍ଗ । ଢେଉର ସ୍ୱର ମହୁମାଛିର ଗୁଣ୍‌ଗୁଣ୍ କଣ୍ଠଭଳି ଅରଣ୍ୟ-ବୀଣାରେ ମନ୍ତ୍ର ହୁଏ ବନଗଙ୍ଗା ।

ବନଗଙ୍ଗା ଠାରୁ ବାଲଘାଟ, ଖୁବ୍ ପାଖାପାଖି । ମଧ୍ୟପ୍ରଦେଶର ଏକ ଜିଲାର ସଦର ମହକୁମା । ବାଲଘାଟ ଯେତେବେଳେ ମ୍ୟୁନିସିପାଲ୍‌ଟି ନିର୍ବାଚନରେ ମୁଖରିତ, ସେତିକିବେଳେ ମୁଁ ମୋର ଅଳସ ସମୟ ବିତେଇବା ପାଇଁ ଚାଲିଆସେ ବନଗଙ୍ଗା କୂଳକୁ ।

ବନଗଙ୍ଗା କୋଳକରେ ଅରଣ୍ୟର ଶିଳାକୁ । ଗଛ କୋଳ କଲାଭଳି ପକ୍ଷୀର ବସାକୁ । ମେଘ କୋଳ କଲାପରି ଆକାଶକୁ । ପ୍ରଜାପତି କୋଳ କଲାପରି ଫୁଲର ପରାଗକୁ ମୋର ଦୃଷ୍ଟି କୋଳକରେ ନିଶୂନ ଦିଗନ୍ତର ନୀଳନୀରବତାକୁ ଅସ୍ତ ସୂର୍ଯ୍ୟର ରକ୍ତାଭ ଓଠକୁ ।

ନଦୀ ଉପରେ ଏବେ ତିଆରି ଚାଲିଛି ଶଙ୍କ । ଯାହା ଯୋଡ଼ିଦେବ ବାଲ-ଘାଟ ସହ ଆରପାରି ଶିବନୀ ସହରର ସମ୍ପର୍କ । ସିଟି ମାରି ଗ୍ରେଟ ରେଳଗାଡ଼ି ଯୋଡ଼ିଦିଏ ଶହର ସମ୍ପର୍କ । ଏଠାରେ ସମ୍ପର୍କ ଯୋଡ଼ିବା ପାଇଁ ଯେପରି ଲାଗି ଭିଡ଼ ।

ନଦୀକୂଳରେ ଯେଉଁ ଦେଉଳଟି ହୋଇଛି ସେଇଠି ଜଣେ ବାବାଜୀ ଏଇ କେଇ ଦିନ ଭିତରେ ବେଶ୍ ଧୂନୀ ଜଳାଇବାରେ ବ୍ୟସ୍ତ । ଦେଉଳକୁ ଲାଗି ଏକ ଗ୍ରେଟ ହୋଟେଲ ଏବେ ଖୋଲା ହୋଇଛି ।

ହୋଟେଲ ପାଖକୁ ଗୋଟିଏ ଗ୍ରେଟ କ୍ୟାବିନ୍ । ହୋଟେଲ୍‌ରେ ଚା' ପାଣି । କ୍ୟାବିନ୍‌ରେ ପାନଖିଲି ସିଗାରେଟ୍ କିଣି ଯେଉଁମାନେ ତଳକୁ ଗଡ଼ନ୍ତି

ବନଶୀ ଧରି, ସେମାନଙ୍କର ମାଛମରା ସଉକରେ ସାହାଯ୍ୟ କରନ୍ତି ହୋଟେଲ ବାଲାର ସୁଶ୍ରୀ ଝିଅ । କିଏ ଗହମବଟି ନେଇ ପହଞ୍ଚେଇ ଦିଏ ତ, କିଏ ଖିଲପାନ ଆଉ ସୁଦ୍ଧା ।

ଖାଲି ଚା' କପ ଗୋଟାଇ ନେଉଥିବା ଯୁବତୀର ହାତକୁ ପ୍ଲେଟ ବଢ଼େଇବା ବାହାନାରେ ଟିକିଏ ଚିପିଦେଇ ଯୁବକଟିଏ କହିଲା—ଟିକିଏ ଦେଖିକି ଆସୁନ ! ମାଛ ହୁରୁଡ଼ି ଯିବେ ଟି ? ତା ପାଖକୁ ଲାଗିକରି ବସିଥିବା ସାଥୀଲୋକଟି କହିଲା—ମାଛ ହୁରୁଡ଼ି ଗଲେ ଚଳିବ । କିନ୍ତୁ ତୁ ଶଳା ଯେମିତି ବ୍ୟବହାର କରୁଛୁ ନା ଯଦି ଝିଅଟା ହୁରୁଡ଼ି ଯାଏ, ତେବେ ଏଠିକି ଆସିବା ବେକାର ହୋଇଯିବ ?

ଏମିତି ହାସ୍ୟରୋଳ ଭିତରେ, ଠିଆ ସୋଲ ପାଣିରେ ଟୁବ୍ କିନା ଡୁବିଗଲା ଭଳି ଝିଅଟା ହାତ ମୁଠାରୁ ଖସିଗଲା ।

ମୁଁ ଅସ୍ୱସ୍ତିରେ ବୁଲୁବୁଲୁ ହେଲେ ଏମିତି ଗୋଟେ ଅଚିହ୍ନା ଟୋକା ବନଶୀରେ ବଢ଼େଇଦେଇ ମୋତେ କହିଲା ବାବୁ, ମାଛ ଧରିବେ କି ? ମାଛ ଧରିବା ଅପେକ୍ଷା ମୋତେ ଦେଖିବାକୁ ଭଲ ଲାଗେ ।

ବାବୁ ତମେ ମଜା ପାଇନ । ମାଛ ଧରିବାରେ ଯେଉଁ ମଜା, ଠିକ୍ ସେଇ ହୋଟେଲବାଲୀ ଝିଅର ଗାଲରେ ଚୁମ୍ ଦେଲା ଭଳି । ଅନେଇ ବସିଲେ ତ ବେଳ ବୁଡ଼ିଯିବ ।

ତା ପାଖକୁ ଲାଗି ବସିଥିବା ଯୁବକଟି ସଙ୍ଗେ ସଙ୍ଗେ ଉପରେ ପଡ଼ି କହିଲା, ଡୋଷ ସଜେଇ, ଗହମଦାନା ଲଗେଇ ଘଣ୍ଟା ଘଣ୍ଟା ଧରି ଅନେଇଲେ ବି ସୋଲ ଡୁବେ ନାହିଁ । ହାତ ନେଇ ମାଛ ଧରା । କାହା ହାତ କେମିତି । ମୁଁ ଏଠି କ'ଣ ମାଛ ଧରିବାକୁ ଆସେ ? ନଈ ଆର ପାଖ ଗାଁରୁ ଯେଉଁ ଝିଅମାନେ ସଞ୍ଜ ବେଳେ ପାଣି ନେବାକୁ ଆସନ୍ତି; ସେମାନଙ୍କୁ ମୋ ଆଖିର ଲମ୍ବା ଡୋଷରେ ମନକୁ ଥୋପକରି ଆରକରକୁ ଫିଙ୍ଗି ଦିଏ । ସୋଲ ଡୁବିଲା କି ଉଠିଲା ଜଣା ନଥାଏ ।

ଶଳା, କାଖରୁ କଳସୀ ମୁହଁ ଖସେଇଲା ଭଳି କଥା କହୁଚ ! କାହିଁ ତା କଥା ଶୁଣୁଛନ୍ତି ବାବୁ ! ଆରେ ସେଥିକି ନୁହଁ କାଲି ଗାଁ କୂଅରୁ ପାଣି କାଢ଼ୁଥିବା ଝିଅ ହାତରୁ ରସି ଖସେଇ ଦେଇଛୁ ।

ତୋତେ ଦେଖି କୂଅରେ ଗଳି ପଡ଼ୁଥାନ୍ତା ନା । ବାହାପିଆ କାହିଁକା ।

କାଲ୍‌ସିନା ମୋତେ ଦେଖି ତା ମାଠିଆ ଭର୍ତ୍ତି ଗଳ୍ପ ବୋଲି ଆଜ ମାଛ ପଡ଼ିଲେନ, ନହେଲେ ଦେଖେଇ ଦେଇ ଥାନ୍ତରେ ପୁଅ ! ଏଠି ବସି ବସି ଖାଲି ସମସ୍ତ ନଷ୍ଟ ହେଉଛୁ—ପଶିବା ବଜାରରେ ବସି ପୋଇ ବିକ୍ରି କଲେ ପୋଇରସରେ ଅଳତା ମାଖିବାକୁ ପାଦ ମିଳିପାରେ, ହେଲେ ବନଶୀରେ ଯୋପ ଦେଇ ମାଛ ଧରିବା ଭାରି କଷ୍ଟ । ଆଉ କାଲିଠୁ ଆସିବ ନାହିଁ । ବଳ ବୟସ ପାଖେ ସମୟର ନୋକସାନ୍ ।

ମୁଁ ତାକୁ ବୁଝେଇ ଦେଲି—କ୍ଷତ ସହିବାରେ ଧର୍ଯ୍ୟ ଥିଲେ ଠିକଣା ସମୟରେ ଭଲ ଲାଭବି ଉଠାଯାଇ ପାରେ । କ୍ଷତ ଭିତରେ ଶୁଖିବାର ଯନ୍ତ୍ରଣା ଲୁଚି ରହିଥାଏ । ଯେପରି ପ୍ରତିଟି ଦୁଃଖ ଭିତରେ ଆସନ୍ନ ସୁଖଟିଏ ଲୁଚି ରହିଥାଏ । ବାଦଲ ଭିତରେ କୋମଳ ବର୍ଷାର ଗନ୍ଧ ସମୁଦ୍ର ଭିତରେ ଉତ୍ତାଳ ଢେଉର କୁଆର । ପୋଖରୀରେ ମାଛ ଭଳି, କାହା ଗୃହାଣୀରେ ଆମ ମନ ବରାବର ଲୁଚି ରହିଥାଏ । ଧର୍ଯ୍ୟ ରଖି ଅନେଇଲେ ସମବେଦନାର ଅଶ୍ରୁ ଖସିପଡ଼େ ଅଜାଣତରେ ଘନଅରଣ୍ୟରେ ବନ-ଗଙ୍ଗା ଭଳି ବାଲିର ଗାଲରେ ସୁଅର ଚିହ୍ନ ।

ମାଟି ଥିଲେ ଧରଣୀରେ ଗାଚର ଅଭାବ ନଥାଏ । ପାହାଡ଼ରେ ପଥର ଥିଲେ ଖୋପର ଅଭାବ ନଥାଏ । ପେଷ୍ଟ ଭଳି କୋରଡ଼ରେ ବସାବାନ୍ଧି ରହି ପାରିଲେ ସିନା ପଥିକାକୁ ଡରେଇ ହୁଏ । ବନଶୀ କାଠି ଥିଲେ ଧର୍ଯ୍ୟର୍ ଯୋପ ଦେଇ ମାଛର ଗଳା ଝୁଲିପଡ଼େ ତୋଗାର ଫାଶୀରେ ଝଟପଟ କଇଦ ଭଳି ।

କେବଳ ଧରିବାଟା ହିଁ ଗୋଟାଏ କଳା । ଭଳି ଚଟ କାଗଜକୁ ଧରି ରଖିଲି ପରି ଧରଣୀର ଅସଂଖ୍ୟ ଗାତ ଭିତରେ ସାପ ହୋଇ ପଶିବାର ସାବଧାନି ବୁଦ୍ଧି ଯାହାକୁ ଜଣା ସେହି କେବଳ ଗରଳର ଅଧିକାରୀ ।

ପାଖ ଟୋକାଟା ବନଶୀବାଲାର କାନରେ ଫୁସ୍ ଫୁସ୍ କରି କହିଲା, ଶଳା କକଟା କରେ ! ଫିଲୋସଫି ଝାଡ଼ୁଛି, ବଢ଼େଇ ଦେ ବନଶୀଟା ।

ବନଶୀଟାର ତୋଗାକୁ ଲମ୍ବେଇ ଦେଲି ନଦୀର ଆହୁରି ଭିତରକୁ । ନଶ୍ୱାସକୁ ଥରେ ଥରେ ଝିଙ୍କିଲି ଭଳି ନାଭି ଭିତରକୁ ।

ହଠାତ୍ ତୋଗା ନାହି ବୁଡ଼ିଲି ଭଳି । ଲମ୍ବି ଆସିଲା ମେଘର ଛାଇ ସୂର୍ଯ୍ୟକୁ ଘୁରେଇ ଦେଲି ପରି ମୋର ଯୋଳ ଝୁଲିଗଲା ଭିତରକୁ ଏବଂ ଏତେଶୀଘ୍ର ଡୁବିଗଲା ଯେ ମୁଁ ଝିଙ୍କି ଆଣି ଦେଖିଲି ଏକ ଜଆନ୍ତା ମାଛ ସାପ ମୁହଁରେ ବେଙ୍ଗ ଝୁଲିଲା ଭଳି ପ୍ରାଣାନ୍ତକ ।

ପାଖ ପଡ଼ଶା ସମସ୍ତେ ଦୌଡ଼ି ଆସିଲେ । ସବୁଠୁ ଆଶ୍ଚର୍ଯ୍ୟ କଥା ଯେଉଁ ସୁନ୍ଦରୀ ଝିଅଟି ପାଇଁ ସବୁ ଟୋକାଏ ମାଛ ଧରିବା ନାଁରେ ଟହଲ ମାରୁଥିଲେ, ସେ ମେଘ ଭଳି ହଠାତ୍ ଓହ୍ଲାଇ ଆସିଲା ମାଟିକୁ ବର୍ଷାର ଗନ୍ଧ ନେଇ ।

ଝୁଲନ୍ତା ମାଛର ଗାଲରେ ବିଦ୍ଧ ହୋଇଥିବା ବନ୍ଶୀ କଣ୍ଟାରୁ ମାଛକୁ କାଢ଼ିନେବା ପାଇଁ ସମସ୍ତଙ୍କ ହାତ ଲମ୍ବି ଆସିଥିଲା । ମେଘର ବନ୍ଶୀରେ ଥୋପ-ଭଳି ଝୁଲି ରହିଥିବା ଅସ୍ତ ସୂର୍ଯ୍ୟକୁ ପାହାଡ଼ ଖୋଜିଲା ଭଳି । ଆକାଶର ପୋଖରୀରୁ ପାହାଡ଼ର ତୀରରେ ଛଟପଟ ଅସ୍ତ ସୂର୍ଯ୍ୟର ଗାଲରେ ବିଦ୍ଧ ରକ୍ତାକ୍ତ ଅରଣ୍ୟର କଣ୍ଟା ।

ଝିଅଟିଏ । ନାଁ ତାର ବନାନୀ । ମାଛ ଉପରେ ତାର ଲୋଲୁପ ଆଖି ମୋ ଦୃଷ୍ଟିର ଡୋରୀରେ ଝୁଲି ରହିଥିଲା ଠିକ୍ ଏକ ମାଛ ଭଳି ଜୀଇବା ନ ଜୀଇବାର ଯନ୍ତ୍ରଣା ଭିତରେ । ଟୋକାଦଳ ମୋତେ କହିଲେ, ସାବାସ୍ ବେଟା । ପୋଖତ ଶିକାରୀ । ଆମେ ଘଣ୍ଟେ ସମସ୍ତ ଧରି ଯାହା ପାରିଲୁ ନାହିଁ ମନ୍ଦିରରେ ଦଧିନଉଠ ବସେଇ ନହୁଣ ଫିଙ୍ଗି ପକେଇଲେ ହେବନି ବାପା ! ଆଉ ଏକ ମାଛ ଧରି ଦେଖେଇ ଦେ ତୋ କରାମତି । ଚଅର ଅପ୍ ଚଅର ଅପ୍ । ଅବସର ପ୍ରାପ୍ତ ସ୍ୱେଠା ବୁଢ଼ାଟା ତା' ଝିଅ ହାତକୁ ମାଛଟା ବଢ଼େଇ ଦେଇ ବନ୍ଶୀ କଣ୍ଟାରେ ପୁଣି ଥୋପ ଧରେଇ ଦେଲା ।

ମାଛ ଧରିବା ନାଁରେ ନଈ ଆରପାରି ଝିଅମାନଙ୍କୁ ଗୁହିଁ ସୋଲ ବୁଡ଼ିବା ଉଠିବା ନଦେଖି ପାରିବାର ବଦଭ୍ୟାସ ମୋର ନଥିଲା । ବୁଢ଼ା ଆଜି ତାହାରି ଘରେ ମୋର ରାତ୍ରିଭୋଜନ ପାଇଁ ଆୟୋଜନ କରି ସାରିଥିଲା ଏକଥା କାହାକୁ ଅଛପା ରହିଲା ନାହିଁ ।

ଏଣିକି ସୋଲ ବୁଡ଼ିବାରେ ଉଠିବାରେ ମୋର କାହିଁକି ନଈର ବି ଆଗ୍ରହ ନ ଥିଲା । ବନଗଙ୍ଗାର ବହିବାର କଳା ଦୁଇକୂଳକୁ ଜଣା ଥିଲା । ଫୁଲ ଝରିବାର କଳ ମୂଳକୁ ଅଛପା ନଥିଲା ଫୁଟିବାର କଳା ଯେପରି ପ୍ରଜାପତିକୁ । ମାଛର ପହଁରିବାର କଳା ନଦୀକୁ ଅଜଣା ନଥିଲା । ଯେପରି ବରଷିବାର କଳା ଆକାଶକୁ ।

ଏଣିକି ପ୍ରତ୍ୟହ ସନ୍ଧ୍ୟାରେ ମାଛ ଧରିବାଟା ହେଲା ମୋର ବାହାନା । ମୋ ହାତରେ ନାଚି ହେଲା ମାଛ । ତାର ସଲ୍ଲଜ ଚାହାଣୀରେ ମୋର ପଲକ ଧାରର ଆଁଖି ଧିରେ ଧିରେ କେଳେଇ କେଳେଇ କାଢ ଛଡ଼ଉ ଥିଲା ସହଜରେ । ଅନ୍ଧାର ଛଡ଼ଉ ଥିଲା ତାରାର କାଢ ବନଗଙ୍ଗା ତୀରେ ।

କେତେ ନାଗର ବ୍ଲାଉଜ ଓ ପାଲୁଅର କାଛରେ ଭାଗ ହଉଥିଲି ବନଗଙ୍ଗା ତୀରର ଗର୍ଜିରଚଢ଼େଇ । କାହାର ଆଇଁସ ହାତର ଆଇଁସାରେ ମୋର ସମ୍ମୋହନ ବନଗଙ୍ଗା ତୀର ନିର୍ଜନ ବଙ୍ଗଳାରେ ଚହଟିଲା ପ୍ରଣୟର ମୃଦୁବାସ୍ନା ।

ମୁନିସିପାଲ୍‌ଟି ନିର୍ବାଚନ ଆଜି ସରିଲା । ବନାନୀର ସ୍ୱାମୀ ଯେ ଭୋଟ୍ ଲଢ଼େଇରେ ବ୍ୟସ୍ତ ରହି ଘରକୁ ଫେରି ନ ଥିଲା, ଆଜି ଶୁଣିଲେ ଫଳାଫଳ ଶୁଣିବାକୁ ଅପେକ୍ଷା କଲାବେଳକୁ ଭୋଟବାକ୍ସ ହରଣଚାଲ ।

ପୋଲିସ୍ ଅନୁସନ୍ଧାନ ଚାଲିଛି । ବନଗଙ୍ଗାରେ ମାଛ ଧରା ବି ଚାଲିଛି । ସହରରେ ଗୁଜବ, ଭୋଟବାକ୍ସ ନଈରେ କିଏ ବୁଡ଼େଇ ଦେଇଛି । ଏତେବଡ଼ ନଦୀ ଭିତରୁ ସାମାନ୍ୟ ଗୋଟିଏ ବାକ୍ସ ନଈ ପଠାରେ ବାଲିଗରଡ଼ା ଭିଜା କେଉଁଆଡ଼େ ସେ ହଜି ଯାଇଥିବ, ତାକୁ ଖୋଜି ପାଇବା କେଡ଼େ କଷ୍ଟ ।

ଭୋଟରେ ଜିତିବା ହାରିବାଟା ବଡ଼ କଥା ନୁହେଁ । କଥା ହେଲା ଦିନ ଦି ପହରେ ଗଣତନ୍ତ୍ରକୁ ଏମିତି ନଦୀରେ ବୁଡ଼ାଇ ଦେବା କି ଜଘନ୍ୟ ଅପରାଧ । ଏହିକଥା ନଦୀ କୂଳରେ ଗପ ପଡ଼ୁ ପଡ଼ୁ ବନାନୀ ମୋତେ କହିଲା, ଭୋଟ ବାକ୍ସ ହରଣଚାଲ ହୋଇ ନଥିଲେ ମୋ ସ୍ୱାମୀ ନିଶ୍ଚୟ ଜିତିଥାନ୍ତା ।

ଆମେ ଏମିତି ଗପୁ ଗପୁ ପାଖ ବୁଢ଼ାଟିଏ ବଡ଼ ପାଟିରେ ଡାକ ହାଣିଲା, ଦୌଡ଼ି ଆସରେ ପିଲେ, ଗୋଟେ ମସ୍ତବଡ଼ ମାଛ । ତୋଟା ଛିଣ୍ଡିଯିବ କି କ'ଣ ! ବାପାଲୋ ଜନମରୁ ଏମିତି ମାଛ ମୁଁ ଦେଖିନାହିଁ ।

ଦୀର୍ଘଦିନ ଧରି ଯେଉଁମାନଙ୍କ ବନଶୀରେ ମାଛ ପଡ଼ୁ ନ ଥିଲା ଏଣିକି ସେମାନଙ୍କ ବନଶୀରେ ମାଛ ପଡ଼ିବା ଆରମ୍ଭ କଲାବେଳକୁ ମୋର ତୋଟା ଛିଣ୍ଡିବାକୁ ଆରମ୍ଭ କଲା ।

ମୁଁ ବି ବୁଢ଼ାପାଖକୁ ଦୌଡ଼ିଗଲି । ଆଶ୍ଚର୍ଯ୍ୟରେ ତିନି ଚାରିଜଣ ଯୁବକ ତୋଷ୍ଟ-ଟିରେ ଟାଣିଲା ବେଳକୁ ଦେଖିଲେ ମାଛ ବଦଳରେ ଗୋଟାଏ ବୁଜୁଲା । ଭିତରେ ଗୁଷ ହୋଇଥିବା ବୁଜୁଲା ଖୋଲି ଦେଖିବା ପୂର୍ବରୁ ସହରରେ ଭୋଟ୍‌ବାକ୍ସ ମିଳିଗଲା ବୋଲି ରାଷ୍ଟ୍ର ହୋଇଗଲା ।

ପୋଲିସ୍‌ରେ ଖବର ଦିଆଗଲା । ଜିଲା ଅଧିକାରୀ ଆସି ପହଞ୍ଚିଗଲେ । ଲୋକଙ୍କର ଭୋଟ ଅଧିକାରକୁ ନଈରେ ବୁଡ଼ାଇ ଦେବା କ'ଣ ଏତେ ସହଜ ! ଚାରିଆଡ଼େ ସେଇ ଗୋଟିଏ କଥା କିଏ ହାରିବ ଜିଣିବ ବଡ଼କଥା ନୁହେଁ, ବଡ଼କଥା ହେଲା ଏ ଦେଶରେ ଗଣତନ୍ତ୍ର ବଞ୍ଚିବ କେମିତି ?

ଯାହାହେଉ ଆତ୍ମହତ୍ୟର କଥା ଗଣତନ୍ତ୍ରଟା ମାଛ ହୋଇ ବନଶୀ କଣ୍ଟାରେ ଲାଗି ଯିବାରୁ ସିନା ଲୁକଗଣ୍ଟା ରହିଗଲା ।

ଜିଲ୍ଲା ଅଧିକାରୀଙ୍କ ଅଧସ୍ତନମାନେ ବୁଜୁଳା ଭିତରେ ଗ୍ଲେଟ ଫଟା କାଠ ବାକ୍ସଟିକୁ ଖୋଲିଦେଲା ବେଳକୁ ଦେଖାଗଲା ଏକ ମଲାପିଲାର ଶବ ।

କୁଆଁଳା ଝିଅକୁ ଜନ୍ମ ଦେଇ ମା' ତାର ଅବୈଧ ସନ୍ତାନଟିକୁ ନିଜ ହାତରେ ହତ୍ୟାକରି ନଦୀଗର୍ଭକୁ ଉଜେଇ ଦେଇଛି ଫଟା ବାକ୍ସ ଭିତରେ ନଖଲି ଭେଟ ଗଳେଇଲା ଭଳି ।

ସମସ୍ତଙ୍କ ମୁହଁରେ ଗୋଟିଏ କଥା ଜିଲ୍ଲା ଅଧିକାରୀ ବଡ଼ କଷ୍ଟରେ କହିଲେ, ବର୍ତ୍ତମାନ ପ୍ରଶ୍ନ ହେଉଛି ଖୁବ୍ ଶୀଘ୍ର ତଦନ୍ତ ଆରମ୍ଭ କରି ପ୍ରମାଣ କରିବାକୁ ହେବ ଛୁଆଟା କାହାର ?

ବର୍ତ୍ତମାନ ସହରରେ ଭେଟକଥା ସମସ୍ତେ ଭୁଲି ଗଲେଣି । ସବୁଆଡ଼େ ଆଲୋଚନା ଛୁଆଟା କାହାର ?

ପୁଣି ବନଶୀ ଆଣି କୂଳରେ ବସିବାର ସ୍ପୃହା ମୋର ନାହିଁ । ଟୋକାଙ୍କ ଭିତରେ ଗୁଲିଗପ—କିଏ କହୁଛି କଥା ରହିବ ଯେତେ ଅବିବାହିତ ଝିଅ ଅଛନ୍ତି, ସମସ୍ତଙ୍କର ସ୍ତନ ଛୁଇଁବାକୁ ଯଦି ଜିଲ୍ଲା ଅଧିକାରୀଙ୍କର ନିର୍ଦ୍ଦେଶ ମିଳନ୍ତା ନା ! ଆରେ ଟାଣ ଟାଣ ସୋଲ ଡୁବିଗଲା ।

ଖାଲି ବନଶୀଟି ଧରି ଯେତେବେଳେ ବଙ୍ଗଳାକୁ ଫେରି ଆସିଲେ, ଦୂରରୁ ସେଇ ସୌମ୍ୟା ରୂପସୀର ମୁହଁ ମଲାମାଛର ସ୍ଥିର ଆଖି ଭଳି ନିଷ୍ପ୍ରଭ । ଯେପରି ଗଣତନ୍ତ୍ର ତାହାରି ଗର୍ଭରୁ ବାହାରି ଆତ୍ମହତ୍ୟା କରିଛି ବନଗଙ୍ଗାରେ ।



# ବଳେଇ

## ରଘୁନାଥ ମହାପାତ୍ର

ନଣିଅପାଙ୍କ ନିଦ ଭାଙ୍ଗିଗଲା । ସେ ମୁଣ୍ଡପାଖ ବିଛଣାକୁ ହାତରେ ଅଣ୍ଡାଳି ପକେଇ ଦେଖିଲେ ମିଲି ନାହିଁ । ପ୍ରାଟିକର ଡାକ ପକେଇଲେ ମିଲି···ମିଲି··· ଡାକଟା କୋଠଘର କାନ୍ଥ ଡେଇଁ ଖଞ୍ଜା ଭିତରେ ଶୋଇଥିବା ପୁଅର ପୁଅବୋହୂଙ୍କ କାନକୁ ଶୁଭିଲା । ସମସ୍ତେ ଧଡପଡ଼ ହୋଇ ଉଠିଲେ ମାଆ ଉଠିଲେଣି । ମାଆ ଖୋଜୁଛନ୍ତି ମିଲିକୁ । ମିଲି ଗଲା କୁଆଡ଼େ ?

ମିଲି ଦୌଡ଼ି ଆସି ଡେଇଁ ପଡ଼ିଲା ନଣିଅପାଙ୍କ କୋଳକୁ । ମିଲିର ଆଉ ତିନୋଟି ପିଲା, ସେ ବି ଉଠିଗଲେ ବିଛଣା ଉପରକୁ । ନଣିଅପା ବଳେଇଟିକୁ ଦୁଇ ହାତରେ ଛାତି ଉପରେ ଜାକିଧରି ତା ପିଠିକୁ ଆଉଁସିବାକୁ ଲାଗିଲେ, ଯେତେ ଯାହା ପ୍ରଶ୍ନ ମନକୁ ଆସୁଥାଏ ନଣିଅପା ପଚାରୁଥା'ନ୍ତି ମିଲିକୁ । ମିଲିର ଗୋଟିଏ ସଂକ୍ଷିପ୍ତ ଉତ୍ତର, ମିଆଁଉ···ମିଆଉଁ ।

ମିଲିର କୁନି କୁନି ପିଲାଗୁଡ଼ିକ, ସେ ବି ଚଢ଼ି ଆସିଲେଣି ନଣିଅପାର କୋଳ ଉପରକୁ । ସତେ ଯେପରି ନଣିଅପାର କୋଳ ତାଙ୍କ ପାଇଁ ଏକ ନିରାପଦ ସ୍ଥାନ । ସେଇଠି ସେମାନେ ଗୋଡ଼ ଭାଙ୍ଗିଦେଇ ଆଖିବୁଜି ବସିଗଲେଣି । ନଣିଅପା ମିଲିକୁ ଛାଡ଼ିଦେଇ କୁନିପିଲାଗୁଡ଼ିକୁ ଗେଲ କଲେ ।

ନଣିଅପାଙ୍କର ନିଃସଙ୍ଗ ଜୀବନର ମିଲି ଆଉ ତା'ର ପିଲାମାନେ ସବୁକିଛି, ଏହିସବୁ ପଶୁଗୁଡ଼ିକଙ୍କ ପ୍ରତି ପିଲାଦିନରୁ କାହିଁକି କେଜାଣି ଗୋଟାଏ ଆସକ୍ତି ରହି ଯାଇଛି ନଣିଅପାଙ୍କର । କିଶୋରବୟସରେ ସେ ଏମିତି ଗୋଟିଏ ବଳେଇକୁ ଧରି ଖେଳୁଥିଲା । ବାପା ବୋଉ ସମସ୍ତେ ବିରକ୍ତ ହେଉଥିଲେ, ଥାରେ ନଣି ବଳେଇଟାକୁ ସବୁବେଳେ କାହିଁକି ପାଖରେ ଧରି ବସୁଛୁ ଶୋଉଛୁ, ନେଲେ

ଶୋଉଛୁ । ବିଲେଇ ଲୁମ ଭାରି ବିଷାକ୍ତ । ପେଟକୁ ଚାଲିଗଲେ ମଣିଷ ବଞ୍ଚିବ ନାହିଁ । ବାପା ବୋଉଙ୍କର ତାଡ଼ନାରେ ମଧ୍ୟ ନଣିଅପା ବିଲେଇ ଛୁଆ ଛୁଇଁପାରି ନଥିଲା ।

ସତର ବର୍ଷ ବୟସରେ ଆକସ୍ମିକ ଭାବେ ତାହାର ବାହାଘର ପ୍ରସ୍ତାବ ସ୍ଥିର ହୋଇଗଲା । ଶାଶୁଘର ଖୁବ୍ ଧନୀ । ନୂକର ଚାକର, ଚୋଟା ବାଡ଼ି, ପ୍ରଚୁର ସମ୍ପତ୍ତି, ସ୍ୱାମୀ ଉଚ୍ଚପଦସ୍ଥ ସରକାରୀ ହାକିମ ।

ନଣିଅପା ବାହାହୋଇ ଆସିଲା ବେଳେ ବହୁତ ଗହଣାଗାଣ୍ଠି, ଦାନ ଯୌତୁକ, ଖଟ ପଲଙ୍କ, ଲୁଗାପଟା ଆଣିଥିଲା, ସେ ସବୁ ଟ୍ରଙ୍କ ସୁଟ୍‌କେଶରେ ଭର୍ତ୍ତି ହୋଇ ଆସିଥାଏ ।

ବାହାହୋଇ ଆସିବାର ପ୍ରଥମ ଦିନର ସ୍ମୃତି ଏବେ ବି ମନେ ପଡ଼ିଲେ ନଣିଅପାକୁ ହସମାଡ଼େ । ସେଦିନ ଏ ଘରେ ଶାଶୁ ଶ୍ୱଶୁର, ନଣନ୍ଦ, ସବୁ ଥିଲେ । ଆଜି କେହି ନାହାନ୍ତି, ସମସ୍ତେ ତାଙ୍କୁ ଛାଡ଼ି ଚାଲିଯାଇଛନ୍ତି । ଶାଶୁ ଶ୍ୱଶୁର ମରିଛନ୍ତି କିନ୍ତୁ ନଣନ୍ଦ ସୁରମା ବଞ୍ଚିଛନ୍ତି । ବଞ୍ଚିଲେ କ'ଣ ହେବ ଯାଇ ରହିଛନ୍ତି ସାତ ଦରିଆପାରି ଆମେରିକାରେ । ବଞ୍ଚିବା ମରିବା ସମାନ । କୋଉ ପାଞ୍ଚ ବର୍ଷ ସାତ ବର୍ଷରେ ଥରେ ଘରକୁ ଫେରନ୍ତି ।

ମାସେ ପନ୍ଦର ଦିନ ରହନ୍ତି ପୁଣି ଫେରି ଯାଆନ୍ତି ଆମେରିକା । ସେମାନେ କେଉଁଠି ଆମେରିକାର ନାଗରିକ ହୋଇଗଲେଣି ।

ସେଇ ସୁରମା ସେତେବେଳେ କିଶୋରୀଟିଏ । ଗୋରି ତକ ତକ ପତଳା ଚେହେରା । ସବୁବେଳେ ହସିଲା ମୁହଁ । ଓଢ଼ଣା ଟେକି ଭାଉଜକୁ ଦେଖି ପକେଇ କହୁଥାଏ, ବୋଉଲୋ ବଢ଼ିଆ ଭାଉଜଟିଏ ସତେ ଯେପରି ସ୍ୱର୍ଗର ପରୀ । ବୋଉ ପାଟିକରି ଉଠିଲେ "ଚୁପ୍, ବେଶି ଫାଜିଲ ହୋଇ ଯାଉଛୁ ।"

ବୋଉଙ୍କ ବିରକ୍ତରେ ସୁରମା ସିନା ପାଟି ଚୁପ୍ କରି ଦେଇଥିଲା; କିନ୍ତୁ ନାନା ଉତ୍ସୁକତା ନେଇ ସେ ଖେଳେଇ ଦେଖୁଥିଲା ଭାଉଜଙ୍କର ଟ୍ରଙ୍କ, ସୁଟକେଶ ସବୁ । କାହିଁଥିରେ ଲୁଗା, କାହିଁଥିରେ ସ୍ନୋ, ପାଉଡ଼ର, ଅଳତା, ପାନିଆ ପ୍ରସାଧନୀ ସରଞ୍ଜାମ । କାହିଁଥିରେ ବାସନ କୁସନ । କିନ୍ତୁ ଗୋଟିଏ ବେତ ପେଟରା ଟେକିଦେଇ ସୁରମା ହାଉଳି ଖାଇ ଯାଇଥିଲା । ପେଟରା ଭିତରେ ଜିନିଷ ପତ୍ର କିଛି ନ ଥିଲା, ଥିଲା ବିଲେଇଟିଏ । ପେଟରା ଭିତରେ ସେ ଚୁପ ଚାପ ହୋଇ ଗୋଡ଼ ଜାକିଦେଇ ବସିଥାଏ । ସୁରମା ପାଟିକରି ଉଠିଲା, ବୋଉ···ଏ ବୋଉ ଦେଖିଲୁଣି ପେଟରା ଭିତରେ କ'ଣ । ବୋଉ ପାଟିକରି ଉଠିଲେ କ'ଣ କଲୋ ?

—ଇଏ ଗୋଟେ ବଲେଇ ।

ବଲେଇଟେ କୁଆଡ଼ୁ ଆସିଲା ପେଟରୁ ଭିତରକୁ ?

—ଦେଖିବୁ ଆସୁନ୍ ।

ବୋଉ ପେଟରା ପାଖକୁ ଯାଇ ଦେଖନ୍ତି ସତକୁ ସତ କାଳୀ ବଲେଇଟି ପେଟରା ଭିତରେ ବସିଛି ।

ହୋ ହୋ ହୋଇ ହସିଉଠିଲେ ସମସ୍ତେ ! ବଲେଇ ସବାଗଟା ମୁହୂର୍ତ୍ତକ ଭିତରେ ଖମ୍ବା ସାରା ଖେଳିଗଲା । ବନ୍ଧୁ ବାନ୍ଧବ ସାଇପଡ଼ିଶା ସମସ୍ତେ ଉତ୍ସୁକ ହୋଇ ଦୌଡ଼ି ଆସିଲେ ଏହି ବଲେଇଟିକୁ ଦେଖିବାକୁ । ସତେ ଯେପରି କେହି କେବେ ବଲେଇ ଦେଖି ନାହାନ୍ତି । ବଲେଇଟି ପେଟରା ଭିତରକୁ କପର ଆସିଲା, କୁଆଡ଼ୁ ଆସିଲା, ଏ ସମ୍ପର୍କରେ ଯେତେଜଣ ଲୋକ ଏକ ସମାଲୋଚ ଆଲୋଚନା ପରିବାର ଭିତରେ ଆଲୋଚନା ହୋଇଗଲା ସେତେବେଳେ ନଣି ଅପା ପାଖରେ ଆସିଥିବା ତାଙ୍କ ସାନ ଭଉଣୀ ବୁଝା କହିଲା, ମୋ ବଲେଇଟି ମୋ ନଣି ଅପା । ବୋଉ ତା'କୁ ପେଟରା ଭିତରେ ଭର୍ତ୍ତିକରି ପଠେଇଛି । ସେ ନଣି ଅପା ପାଖରେ ରହିବ ।

ହସର ଆଉ ଏକ ଜୁଆର ଖେଳିଗଲା ସମସ୍ତଙ୍କ ମୁହଁରେ । ସୁରମା ବୋଉ ମନ୍ତବ୍ୟ କଲେ ସମୁଦୁଣୀଙ୍କ ଆଉ କିଛି ମିଳିଲା ନାହିଁ, ଝିଅ ପାଇଁ ପଠେଇଛନ୍ତି ବଲେଇଟା ! ବଲେଇ କ'ଣ ଏ ଗାଆଁରେ ଅଭାବ ହେଇଛି ! ପଣ ପଣ ବଲେଇ ପଶୁ ଏ ଗାଆଁରେ !

ସୁରମା ପେଟରା ଭିତରୁ ବଲେଇଟିକୁ କାଢ଼ି ଫୋପାଡ଼ି ଦେଲା ତଳକୁ । ବଲେଇଟି ସବୁ ମୁହଁଆଡ଼େ ଥରେ ଥରେ ଚାହିଁଦେଇ ଚାଲିଗଲା ନଣି ଅପାଙ୍କ ପାଖକୁ । ଓଢ଼ଣୀ ଭିତରେ ଲୁଚି ରହିଥିବା ନବବଧୂ ପାଟିରୁ ବାହାରି ପଡ଼ିଲା ଚୁ...ଚୁ । ଆହା କ ମଧୁର ସେ ଶବ୍ଦ । କଅଁଫୁଲ ପରି କଅଁଳିଆ ଗୋଟେ ହାତଟି ବାହାରି ଆସି ବଲେଇଟିକୁ ଆଉଁସି [illegible] ।

ଘର ସାରା ସମସ୍ତେ ଅନେକ [illegible] । [illegible] ହୋଇ ବସି ରହିଥାଏ ତାର ଖାଉଦାରୀ [illegible] । [illegible] ନବବଧୂ [illegible] ଅବଶ୍ୟ ଏ ବଲେଇଟି ପାଇଁ ଅଶ୍ରଦ୍ଧା ଦେଖାଇଲେ; କିନ୍ତୁ ବଲେଇଟିକୁ ଛାଡ଼ି ରହିବା ତା ପକ୍ଷରେ କଷ୍ଟକର ଥିଲା । ସେଇଥିପାଇଁ ତ ବୋଉ ଶାଶୂ ଘରକୁ ପଠେଇ ଦେଇଥିଲା ବଲେଇଟିକୁ ।

ସମସ୍ତ ଗଡ଼ିଚାଲିଲା । ସଂସାରର ଧୂମ୍ ଧାମ୍ ଭିତରେ ଏହି ଛୋଟ ବଲେଇଟିର କଥା ସମସ୍ତେ ଭୁଲିଗଲେ । କିନ୍ତୁ ବଲେଇଟି ଠିକ୍ ପାଦ କରି କରି

ଗୁଲୁଥିଲା ଜଣି ଅପାଙ୍କର । ଦିନସାରା କୁଆଡ଼େ ବୁଲୁଥାଏ, ଖାଇଲାବେଳେ ଜଣି ଅପାଙ୍କ ହାତରେ ଖାଏ । ଶୋଇଲାବେଳେ ଜଣି ଅପାଙ୍କ ବିଛଣାରେ ଆସି ଶୁଏ । ଜଣି ଅପାଙ୍କର ସ୍ୱାମୀ ରମାକାନ୍ତ ଉଚ୍ଚପଦସ୍ଥ ସରକାରୀ ଅଫିସର । ଗମ୍ଭୀର ଚେହେରା, କଥାବାର୍ତ୍ତା କମ କରନ୍ତି । କିନ୍ତୁ ହୃଦୟ ଭିତରେ ସ୍ତ୍ରୀଙ୍କ ପାଇଁ ଥିଲା ଏକ ପ୍ରେମର ଝରଣା । ନିଃଶବ୍ଦ ରାତିରେ ଦୁହେଁ ଯେତେବେଳେ ଏକାଠି ହୁଅନ୍ତି ସେତେବେଳେ ଏହି ଝରଣା ଝର ଝର ହୋଇ ଝରିପଡ଼େ ଜଣି ଅପାଙ୍କ ଉପରେ । ଜଣି ଅପା ପ୍ରେମରେ ଜଡ଼ ସଡ଼ ହୋଇ ପଡ଼ନ୍ତି । ଆଃ କି ମଧୁର ସେ ଦିନଗୁଡ଼ିକ । ସେ ସବୁର ମୂକ ସାକ୍ଷୀ ବୋଧେ ଏଇ ବିଲେଇଟି ।

ସ୍ୱାମୀ ସ୍ତ୍ରୀ ଯେତେବେଳେ ଚୁପ୍ ଚୁପ୍ କଥାବାର୍ତ୍ତା ହୋଇ ହସନ୍ତି, ଗେଲ୍ହ ହୁଅନ୍ତି, ସେତେବେଳେ ଅନ୍ଧାର ଭିତରେ ବିଲେଇଟି ଖଟ ପାଖରେ ଶୋଇଥାଏ ।

ରମାକାନ୍ତ ହଠାତ୍ ଦିନେ ଅନ୍ଧାର ଭିତରେ ଆବିଷ୍କାର କଲେ କେହି ଜଣେ ତାଙ୍କର କଥା ଶୁଣୁଛି । ଦୁଇଟି ଆଖି ଜୁକ୍ ଜୁକ୍ ହୋଇ ଜଳୁଛି । ସେ ଟର୍ଚ୍ଚଟା ମାରି ଦେଖନ୍ତି ତ ବିଲେଇଟା ଗୁହିଁଛି ତାଙ୍କରି ଆଡ଼େ । ରମାକାନ୍ତ ପାଟି-କରି ଉଠିଲେ ଏ ବିଲେଇଟାକୁ ଘରୁ ବାହାର କର, ଏଟା କାହିଁକି ବିଛଣା ପାଖରେ ରହୁଛି । ଜଣି ଅପାଙ୍କର ମୃଦୁ କଣ୍ଠର ଉତ୍ତର, "ସେ ମୋତେ ଛାଡ଼ି କୁଆଡ଼େ ଯିବ ନାହିଁ ।"

ଯିବ ନାହିଁ, ଦୁଇ ପାହାର ଦେଲେ କୁଆଡ଼େ ପଳେଇବ । ରମାକାନ୍ତ ବିଲେଇଟାର ବେକ ପାଖରୁ ନେଇ ପଦାରେ ଛାଡ଼ିଦେଲେ ଏବଂ କବାଟଟା ଧଡ଼କରି କିଳିଦେଲେ ।

ନିଶ୍ଚିନ୍ତରେ ଶୋଇ ପଡ଼ିଲେ ସେ, କିନ୍ତୁ ପାହାନ୍ତା ପହରକୁ ଉଠି ଦେଖନ୍ତି ତ ବିଲେଇଟା ଆସି ଶୋଇଛି ସ୍ତ୍ରୀଙ୍କ କୋଳରେ । ସ୍ତ୍ରୀ ତାଙ୍କର ବିଲେଇ ଉପରେ ହାତ ପକେଇ ବେଶ୍ ଶାନ୍ତିରେ ନିଦ୍ରା ଯାଇଛନ୍ତି ।

ଏହି ଘଟଣା ଅନେକ ଥର ବାରମ୍ବାର ଘଟିଛି । ରମାକାନ୍ତ ଶୋଇବା ପୂର୍ବରୁ ବିଲେଇକୁ ବାହାର କରିଦିଅନ୍ତି; କିନ୍ତୁ ପାହାନ୍ତା ପହରକୁ ଦେଖନ୍ତି ବିଲେଇ ଆସି ବିଛଣାରେ ଶୋଇଛି ।

ରମାକାନ୍ତ ସବୁଦିନେ ଘରେ ରହୁଥିଲେ ଏ ବିଲେଇକୁ ବାହାର କରିବା ପାଇଁ କିଛି ସ୍ଥାୟୀ ବ୍ୟବସ୍ଥା କରିଥାନ୍ତେ; କିନ୍ତୁ ସେ ଥିଲେ ସରକାରୀ ଚାକିରିଆ । ମାସରେ ଦୁଇ ତିନି ଦିନରୁ ଅଧିକା ଘରେ ରହିବାର ସୁଯୋଗ ସେ ପାଉ ନ ଥିଲେ । ବିଲେଇଟିକୁ ସ୍ଥାୟୀଭାବେ ବିତାଡ଼ିତ କରି ପାରି ନ ଥିଲେ । ବିଲେଇଟି ତାର ଅଧିକାର ସାବ୍ୟସ୍ତ କରି ଜଣି ଅପାଙ୍କ ପାଖରେ ରହୁଥିଲା ।

ରମାକାନ୍ତଙ୍କର ଅନୁପସ୍ଥିତରେ ସେହି ନିଃସଙ୍ଗ ଅସହ୍ୟ ରାତିଗୁଡ଼ିକୁ ନଣି ଅପା ଭୁଲି ଯାଆନ୍ତି କେବଳ ଏହି ବିଲେଇଟିର ସାନିଧ ପାଇ । ଅନେକ ସମୟ ଧରି ତା ସଙ୍ଗରେ ଗପ ହୁଅନ୍ତି । ତାକୁ ଆଉଁଷନ୍ତି, ମାରନ୍ତି, କେତେବେଳେ କୃତ୍ରିମ ରାଗକରି ତଳକୁ ଫୋପାଡ଼ି ଦିଅନ୍ତି । ସେ ପୁଣି ଖଟ ଉପରକୁ ଉଠିଯାଇ ନଣି ଅପାର କୋଳରେ ଶୋଇପଡ଼େ । ନଣି ଅପାଙ୍କୁ ନିଦ ହୋଇଯାଏ ।

ଏ'ତ ଦିନେ ଅଧେ ନୁହେଁ, ପନ୍ଦର ବର୍ଷର ଘଟଣା । ପନ୍ଦର ବର୍ଷ ଭିତରେ ନଣି ଅପାଙ୍କ କୋଳକୁ ପିଲାଟିଏ ଆସି ପାରିଲା ନାହିଁ, ସେଥିପାଇଁ ଶାଶୁ ଶ୍ୱଶୁର ସମସ୍ତଙ୍କ ମନ ଭିତରେ ଏକ ନୀରବ ଯନ୍ତ୍ରଣା ।

ଏହି ଯନ୍ତ୍ରଣା ଭିତରେ ସେମାନଙ୍କୁ ବିଦାୟ ନେବାକୁ ପଡ଼ିଲା ସଂସାରରୁ ।

ବୈଶାଖ ମାସରେ ଦିନେ ଉଠିଲା ଧୂମାଳ ଝଡ଼ । ଝଡ଼ରେ ଘରର ଛପର ସବୁ ଉଡ଼ିଗଲା, ଅନେକ ଲୋକଙ୍କର କାନ୍ଥ ସବୁ ଭାଙ୍ଗି ପଡ଼ିଲା । ଝଡ଼ଟା ଦିନ ଘଣ୍ଟାଠାରୁ ରାତି ନଅଟା ପର୍ଯ୍ୟନ୍ତ ଲାଗି ରହିଲା । ସେଦିନ ରାତିରେ ନଣି ଅପା କୋଳକୁ ବିଲେଇଟି ଫେରି ଆସିଲା ନାହିଁ । ଜଲୁ ସେ ଚାଲିଯାଇଥିବା ଛୁଆଟି ଆସି ମିଆଁଉ ମିଆଁଉ ହେଉଥିଲା ନଣି ଅପାଙ୍କ ଖଟ ଉପରେ । ମାଆ ବିଲେଇଟିର ନାଆଁ ଥିଲା ତଲି । ଝିଅ ନାଆଁ ଦେଇଥିଲେ ମିଲି । ଏହି ମିଲି ସେଦିନ ମାଆକୁ ନ ପାଇ ବୋଧହୁଏ ଯନ୍ତ୍ରଣାରେ ବାହୁନି ବାହୁନି କାନ୍ଦୁଥିଲା ।

ନଣି ଅପାଙ୍କୁ ମଧ୍ୟ ସେଦିନ ରାତିରେ ଭଲ ନିଦ ହେଲା ନାହିଁ । ସେ ସ୍ୱାମୀର ସ୍ୱାମୀଙ୍କୁ ଲଗେଇ ତଲିକୁ ପାଇ ପଡ଼ିଶାରେ ଖୋଜେଇଲେ; କିନ୍ତୁ କେଉଁଠି ତାର ପତ୍ତା ମିଳିଲା ନାହିଁ । ନଣି ଅପାଙ୍କ ଆଖିରେ ଅଶ୍ରୁର ପ୍ଲାବନ । ଯେତେ ଯେପରି ସେ ତାଙ୍କର ଜନ୍ମିତ କନ୍ୟାକୁ ହରାଇଛନ୍ତି ।

ପରଦିନ ଯେତେବେଳେ ଭାଙ୍ଗିପଡ଼ିଥିବା ପୁରୁଣା କାନ୍ଥକୁ ସଫାକରାଗଲା ତଲି ସେଇଠି ଦେଖାଗଲା; କାନ୍ଥ ତଳେ ଚାପିହୋଇ ମୃତ୍ୟୁ ବରଣ କରିଛି ।

ନଣି ଅପା ତାକୁ ବାହାରେ ଫୋପାଡ଼ି ନ ଦେଇ ବଗିଚା ଭିତରେ ସମାଧି ଦେଇଥିଲେ । ତଲିର ମୃତ୍ୟୁ ଜନିତ ଦୁଃଖ ଭୁଲିବାକୁ ନଣି ଅପାଙ୍କୁ ଅନ୍ତତଃ ପାଞ୍ଚ ଛଅ ମାସ ଲାଗିଥିଲା ।

ତଲିର ସ୍ଥାନକୁ କ୍ରମେ ଦଖଲ କରି ବସିଥିଲା ମିଲି । ମିଲିର ଦେହଟି ତୁଳାପରି ଧବଳ ଶୁଭ୍ର, ଆଉ ନରମ । ଆଖି ଦୁଇଟି ନୀଳ ।

ସକାଳୁ ବିଛଣାରୁ ଉଠିବା ମାତ୍ରେ ନଣିଅପା ଡାକ ପକାନ୍ତି ମିଲି, ମିଲି । ମିଲି କାନରେ ଶବ୍ଦଟା ପଡ଼ିବା ମାତ୍ରେ ସେ ଯେଉଁଠି ଥାଏ ଦୌଡ଼ି ଆସି ନଣିଅପାଙ୍କ

କୋଳକୁ ଟେଉଁ ଘଡ଼େ । ନାନି ଅପା ତାଙ୍କୁ ଟିକଏ ଗେଲକରି ଶୁଆଇ ଦିଅନ୍ତି ଖଟ ଉପରେ । ତାପରେ ଉଠି ଚାଲି ଯାଆନ୍ତି ଘରକାମ କରିବାକୁ । ଗୃହକରକୁ ବରାଦ କରନ୍ତି ତାଙ୍କୁ ଦୁଧ ଜଳ ଭାତ ଦେବା ପାଇଁ ।

ସନ୍ତାନ-ହୀନ ସଂସାରରେ ନାନିଅପାଙ୍କର ଏଇ ମିଲି ହିଁ ଏକମାତ୍ର ସନ୍ତାନ । ରମାକାନ୍ତ ଏବେ ବଦଳିରେ । ପ୍ରତି ମାସରେ ଘରକୁ ଆସି ପାରନ୍ତି ନାହିଁ । ତାଙ୍କର ସରକାରୀ କ୍ୱାର୍ଟର ଥିଲେ ମଧ୍ୟ ନାନିଅପା ସେଠାକୁ ଯିବାକୁ ମନଇଚ୍ଛନ୍ତି ନାହିଁ । ଗାଆଁରେ ଜମିବାଡ଼ି, ଚାଷ, ଗୃହକରବାକର, ଗୋରୁ ଗାଈ ଏ ସବୁକୁ ଦେଖିବାକୁ ଆଉ ଅନ୍ୟ ମଣିଷ କେହି ନାହିଁ । ଘର ଛାଡ଼ି ଯିବା ମାନେ ଏସବୁକୁ ଉଜାଡ଼ି ଦେବାକୁ ପଡ଼ିବ । ରମାକାନ୍ତ ଯେତେବେଳେ ଯେମିତି ବର୍ଷାମାସରେ ଥରେ ଘରକୁ ଆସନ୍ତି, ସେ ଦେଖନ୍ତି ଧଳା ବିଲେଇଟି ମିଆଁଉ ମିଆଁଉ ହୋଇ ନାନିଅପାଙ୍କ ପଛେ ପଛେ ବୁଲୁଛି । ଉପରେ ଖଟ ଉପରେ ଶୋଉଛି । ସେ ମନେ ମନେ ବିରକ୍ତ ହୁଅନ୍ତି; କିନ୍ତୁ ସ୍ତ୍ରୀଙ୍କୁ କିଛି କହି ପାରନ୍ତି ନାହିଁ ।

ସୁଖବେଳେ ମଣିଷ ଅନେକ ପାଖରେ ରୁହେ. ଦୁଃଖ ବେଳେ ସେ ଛାଡ଼ି ଚାଲିଯାଏ । କିନ୍ତୁ ଏହି ମୂକ ପଶୁଟି ଦୁଃଖ ସୁଖ କିଛି ବୁଝି ପାରେନା । ସେ ସବୁବେଳେ ସ୍ନେହ ଚାହାଁଲେ । ମଣିଷର ସ୍ନେହ ଟିକେ ପାଇଲେ ସେ ବାନ୍ଧହୋଇ ରହିଥାଏ ।

ଗତାନୁଗତିକ ସଂସାର ସାଗରରେ ବେଳେ ବେଳେ ଢେଉ ଉଠି ପାଣିକୁ ଦୋହଲାଇ ଦିଏ । ସ୍ରୋତର ବେଗ ଅନ୍ୟ ଦିଗକୁ ନେଇଯାଏ । ନାନିଅପା ଆଉ ମିଲିର ସଂସାରରେ ସେପରି ଢେଉ ଉଠିବା କିଛି ବଡ଼ କଥା ନୁହେଁ । ଏହା ସୃଷ୍ଟିର ଧର୍ମ, ସଂସାରର ନିୟମ ।

ନାନିଅପାଙ୍କର ଶାଶୁ ଶ୍ୱଶୁର ବଂଶର ଉତ୍ତର ପୁରୁଷଟିର କଅଁଳିଆ ମୁହଁଟି ଦେଖିବା ପାଇଁ ବୋଧେ ମୁହଁ କୁ ଅନେଇ ଅନେକ ସଂସାରରୁ ବିଦାୟ ନେଲେ, ସେହି ଉତ୍ତର ପୁରୁଷଟି ଏବେ ନାନିଅପାଙ୍କ ଗର୍ଭରେ ମୁକ୍ତି ପାଇଁ ଦିନ ଗଣୁଛି । ଏ ଖବରଟା ରମାକାନ୍ତ ଦୂର ସହରରେ ରହି ନାନିଅପାଙ୍କ ଚିଠିରୁ ଜାଣି ପାରିଥିଲେ । ନାନିଅପାଙ୍କର ସେହି ସଂକ୍ଷିପ୍ତ 'କ'ଣ ଗୋଟାଏ ହେବ' ?

ରମାକାନ୍ତ ଚିଠିରେ ସ୍ତ୍ରୀଙ୍କୁ ଉପଦେଶ ଦେଇ ଲେଖିଥିଲେ ଘରକାମରେ ଜଣେ ଲୋକ ରଖିଦେବ, ଅବହେଳା କରିପାର, କିନ୍ତୁ ଦେହର ଯତ୍ନ ନେବ । ଅଧିକ ପରିଶ୍ରମ କରିବ ନାହିଁ, ଚିନ୍ତା ଅନିଦ୍ରା ହେବ ନାହିଁ । କେତେବେଳେ କିଛି ଅସୁବିଧା ହେଲେ ମୋତେ ଚିଠି ଲେଖି ଜଣାଇବ ।

ସ୍ୱାମୀଙ୍କର ଚିଠିକୁ ପଢ଼ି ଲଶିଅପା ମନେ ମନେ ହସୁଥିଲେ । ଆହାଃ ସନ୍ତାନଟିଏ ପାଇଁ ସ୍ୱାମୀଙ୍କର କି ଆକୁଳତା ' କି ଅଧିରତା !!

ଲଶିଅପାଙ୍କଠାରୁ କୌଣସି ଚିଠି ନପାଇ ରମାକାନ୍ତ ଅସ୍ଥିର ହୋଇପଡ଼ୁଥିଲେ । ମନ ବୁଝୁ ନଥିଲା । ସେ ଛୁଟି ନେଇ ଚାଲିଆସୁଥିଲେ ଗାଆକୁ ତାଙ୍କର ଏହି ସନ୍ତାନସମ୍ଭବା ସ୍ତ୍ରୀଙ୍କୁ ଦେଖିବା ପାଇଁ, ଶୁକ୍ଳପକ୍ଷର ଜହ୍ନ ପରି ଲଶିଅପାଙ୍କର ଦେହର କାନ୍ତି ଦିନକୁ ଦିନ ବଢ଼ୁଥିଲା । ସୁନ୍ଦର ଦିଶୁଥିଲେ ଲଶିଅପା ।

ଶେଷ ମୁହୂର୍ତ୍ତରେ ଟେଲିଗ୍ରାମ ପହଞ୍ଚିଲା ରମାକାନ୍ତଙ୍କ ପାଖରେ ଲଶିଅପାଙ୍କ ଦେହ ଅସୁସ୍ଥ ଶୀଘ୍ର ଆସ, ରମାକାନ୍ତ ଟେଲିଗ୍ରାମ୍ ପାଇ ମୁହୂର୍ତ୍ତେ ବି ଡେରି କରି ନାହାନ୍ତି । ଘରକୁ ଫେରି ଆସି ଦେଖନ୍ତି ଲଶିଅପା ପ୍ରସବ ବେଦନାରେ କାତର ହେଉଛନ୍ତି । ସାଙ୍ଗେ ସାଙ୍ଗେ ଡ଼ାକ୍ତରଖାନାକୁ ସ୍ଥାନାନ୍ତରିତ ହେଲେ ଲଶିଅପା ।

ଲଶିଅପା ଗଲାବେଳେ ମିଲି ମିଆଁଉ ମିଆଁଉ ହୋଇ ଖଣ୍ଡେ ଦୂର ଯାଇଥିଲା; କିନ୍ତୁ ଗୃହକରବାଙ୍କର ବାଡ଼ିମାଡ଼ ଖାଇବା ଡରରୁ ସେ ଫେରି ଆସିଥିଲା ଘରକୁ । ଲଶିଅପା ଯେତେଦିନ ଡାକ୍ତରଖାନାରେ ରହିଲେ ସେତେଦିନ ମିଲି ଲଶିଅପାଙ୍କର ଶୂନ୍ୟ ଖଟଟିକୁ ଜଗି ବସିଥାଏ । ରାତିରେ ଖଟ ଉପରେ ଶୋଉଥିଲା । ଗୃହକର ଗୃହିଣୀ ତାକୁ ଯେତେ ଦୁଧଭାତ ମାଛ ଭାତ ଦେଉଥିଲେ ସେ ମୋଟେ ଛୁଉଁ ନଥିଲା । ଖାଲି ମୁହଁ ମାରିଦେଇ ଚାଲି ଯାଉଥିଲା ।

ଲଶିଅପା ଡାକ୍ତରଖାନାରେ ରହି ସ୍ୱାମୀଙ୍କୁ କହୁଥିଲେ ଗୃହକରଙ୍କୁ କହିବ ମିଲିର ଖାଇବା ପିଇବାର ଯେପରି ଅସୁବିଧା ନ କରନ୍ତି । ମାଆଙ୍କ ଆଦେଶ ଅକ୍ଷରେ ଅକ୍ଷରେ ପାଳନ ହେଉଥାଏ । କିନ୍ତୁ ମିଲି ସବୁ ଘର ମଣିଷଙ୍କ ଭିତରେ ଖୋଜୁଥିଲା ଲଶିଅପାଙ୍କୁ । ନିଜ ଘରର ମାଲିକାଣୀଟିକୁ ନପାଇ ସେ ଏକ ଅବିଚ୍ଛେଦ୍ୟ ଯନ୍ତ୍ରଣାରେ କାନ୍ଦୁଥିଲା । ଏ ଘର ସେ ଘର ବୁଲୁଥିଲା ।

ପୁତ୍ର ସନ୍ତାନଟି ଜନ୍ମ ହେବା ପରେ ଲଶିଅପାଙ୍କର ସମ୍ପୂର୍ଣ୍ଣ ଆରୋଗ୍ୟ ପାଇଁ ଡାକ୍ତରମାନେ ପରାମର୍ଶ ଦେଲେ, ସେ ଏକମାସ ଡାକ୍ତରଖାନାରେ ରହିବେ । ତା'ପରେ ଘରକୁ ଯିବେ । ଏକମାସ ରହିବାକୁ ପଡ଼ିଥିଲା ଲଶିଅପାଙ୍କୁ ।

ଏହାଭିତରେ ମିଲି ବିରୁଦ୍ଧରେ ଷଡ଼ଯନ୍ତ୍ର ଆରମ୍ଭ କରି ଦେଇଥିଲେ ରମାକାନ୍ତ । ତାଙ୍କର କେମିତି ଧାରଣା ହୋଇଥିଲା ଯେଉଁ ସ୍ତ୍ରୀ ଲୋକମାନଙ୍କ କୋଳରେ ବିଲେଇ ଆଦର ସ୍ନେହ ଲଭ କରନ୍ତି ସେ କୋଳରେ ମଣିଷ ପିଲା

ବଞ୍ଚନ୍ତି ନାହିଁ । ଏହା ଏକ କୁସଂସ୍କାର ହେଉ ବା ମାନସିକ ଦୁର୍ବଳତା ହେଉ ଏଇ କଥାଟି ବାରମ୍ବାର ପ୍ରତିଧ୍ୱନିତ ହୋଇଥିଲା ରମାକାନ୍ତଙ୍କ ହୃଦୟ ଭିତରେ । ତାଙ୍କ ଭବି ବଂଶଧରଙ୍କ ନିରାପତ୍ତା ଓ ଦୀର୍ଘ ଜୀବନ ଦୃଷ୍ଟିରୁ ସେ ଚାହିଁଥିଲେ ଏଘରୁ ମିଲିର ଅପସାରଣ । ଅତ୍ୟନ୍ତ ଗୋପନୀୟ ଭାବେ ଗୋଟିଏ ଚାକରକୁ କିଛି ଉତ୍କୋଚ ଦେଇ ମିଲିକୁ ଭର୍ତ୍ତି କରାଯାଇଥିଲା ଗୋଟିଏ ଅଖା ଭିତରେ । ତା'ପରେ ତାକୁ ଛାଡ଼ି-ଦିଆଯାଇଥିଲା ନଈ ସେପାରି ଗାଆଁ ଢୁଠରେ ।

ମିଲି ଯେତେବେଳେ ଅଖାରୁ ବାହାରି ଆଖି ଖୋଲେ ସେ ଦେଖେ ତା ସାମନାରେ ଏକ ବିସ୍ତୃତ ଜଳଧାର, ଶ୍ରେଷ୍ଠ ଶ୍ରେଷ୍ଠ ବୁଦା, ଅନେକଗୁଡ଼ିଏ ଅଚିହ୍ନା ମଣିଷ ।

ସେ କେଉଁଠି ଥିଲା, କେଉଁଠିକି ଆସିଲା, କିଏ ତାକୁ ଏଠିକି ଆଣିଲା, ସେ କିଛି ଜାଣିପାରିଲା ନାହିଁ । କେବଳ ବିକଳ ହୋଇ ଖୋଜିଲା ନଣିଅପାଙ୍କୁ, କିନ୍ତୁ ନଣିଅପା କାହାନ୍ତି ! କାହିଁ ସେ କୋଠାଘର, କାହିଁ ସେ କଅଁଳ ବିଛଣା ? କେତେଟା ମୁହୂର୍ତ୍ତ ଭିତରେ ସବୁ କିପରି ବଦଳି ଗଲା, ସେ କିଛି ଜାଣିପାରିଲା ନାହିଁ । ନଈ ଢୁଠରୁ ଯାଇ ସେ ପଶିଲା ଗାଆଁ ଭିତରେ ।

ମିଲି ପାଇଁ ସେ ଗାଆଁ, ଘର, ମଣିଷ ସମସ୍ତେ ଥିଲେ ଅପରିଚିତ । ତେଣୁ ସେ ଯେତେବେଳେ ତା'ର ଖାଦ୍ୟ ସଂଗ୍ରହ ପାଇଁ କୌଣସି ପରିବାର ଭିତରେ ପ୍ରବେଶ କରେ ସେତେବେଳେ ସମ୍ମୁଖୀନ ହୁଏ ଏକ ରକ୍ତାକ୍ତ ଯୁଦ୍ଧର । ପରିବାର ଭିତରେ ଆଗରୁ ଯେଉଁ ବିଲେଇମାନେ ଆସ୍ଥାନ ଜମେଇ ରହିଥିଲେ ସେମାନେ ମିଲି ଉପରେ ଆକ୍ରମଣ କରିଦେଲେ । ମିଲି ଦେହରୁ ପୁଳା ପୁଳା ଲୁମ ଉଠିଯାଇ କେତେକ ସ୍ଥାନରେ କ୍ଷତ ଦେଖାଦେଲା ।

ଏଘରୁ ସେଘର, ଏସାହିରୁ ସେ ସାହି ବୁଲିବାକୁ ପଡ଼ିଲା ମିଲିକୁ ନିଜର ଖାଦ୍ୟଗଣ୍ଡାକ ଯୋଗାଡ଼ କରିବା ପାଇଁ । କେତେବେଳେ କେମିତି ତାହା ସହଜରେ ମିଳିଯାଉଥିଲା, ନ ହେଲେ ସବୁ ସମୟରେ ତାକୁ ଘରମାନଙ୍କରେ ପଛପାଖ ଝରକା ଜଳାକବାଟି ଦେଇ ଚୋରେଇ ଘର ଭିତରେ ପ୍ରବେଶ କରିବାକୁ ପଡ଼ୁଥିଲା । ଯଦି କେବେ କେମିତି ଧରାପଡ଼ି ଯାଉଥିଲା ଖୁବ୍ ମାଡ଼ ଖାଉଥିଲା । ଥରେ ଜଣଙ୍କ କଡ଼େଇରୁ ପାଞ୍ଚ ଖଣ୍ଡ ମାଛ ଖାଇଦେଇଥିବାରୁ ଗୃହକର୍ତ୍ତ୍ରୀ ରାଗରେ ତା ଉପରକୁ ଗରମ ପେଜ ଛାଡ଼ିଦେଲେ, ଫଳରେ ତା ଦେହର ମୁଲାୟମ ଧଳା ଲୁମଗୁଡ଼ିକ ଉଠିଯାଇ ଗୋଟାଏ କିମ୍ଭୂତକିମାକାର ଚେହେରା ହୋଇଗଲା ।

ମିଲି ଯେତେବେଳେ ମଣିଷ, ପଶୁ, ସ୍ୱଜାତି ବିଲେଇମାନଙ୍କ ଦ୍ୱାରା ଲାଞ୍ଛିତ ସେତେବେଳେ ନଣିଅପା ଡାକ୍ତରଖାନାରୁ ଫେରି ଆସି ଘରେ ଦେଖନ୍ତି

ତାଙ୍କର ପ୍ରିୟ ବଳେଇ ନାହିଁ । ଘରର ଘରଣୀଙ୍କୁ ଜଣ ଜଣ କରି ପ୍ରଶ୍ନ କରନ୍ତି ମିଲି ବିଷୟରେ । କିନ୍ତୁ ସମସ୍ତଙ୍କର ଗୋଟିଏ ଉତ୍ତର, ସାଆ ତମେ ଆସିବାର ଦୁଇଦିନ ଆଗରୁ ସେ କୁଆଡେ ଚାଲିଯାଇଛି । ସବୁବେଳେ ସେ ଖଟତଳେ ଶୋଇ ମିଆଁଉ ମିଆଁଉ ହେଉଥିଲା । ତମକୁ ଏଘର ସେଘର ଖୋଜୁଥିଲା, ତମକୁ ଝୁରି ଝୁରି ଅନେକ ଦୁର୍ବଳ ହୋଇ ପଡ଼ିଥିଲା । ତମକୁ ଖୋଜିବା ପାଇଁ ଅନ୍ୟ କୁଆଡ଼େ ଚାଲିଯାଇଥିବ । ନଣିଅପାଙ୍କ ଆଁଖିରେ ଲୁହ ଜକେଇ ଆସେ, ସେ ରାଗ ଆଉ ଅଭିମାନ ମିଶା ସ୍ୱରରେ କହନ୍ତି, ତମେ ସବୁ ଏତେ ମଣିଷ ଏଘରେ ଥାଉ ଥାଉ ବଳେଇଟା କୁଆଡ଼େ ଚାଲିଗଲା କେହି ଦେଖି ପାରିଲ ନାହିଁ ?

ଘରର ଘରଣୀମାନେ ପ୍ରତିବାଦ କରନ୍ତି ନାହିଁ । ନୀରବ ରହିଯା'ନ୍ତି । ନଣିଅପା ମାସେ ଦୁଇ ମାସ ଧରି ମିଲିକୁ ଖୋଜିଲେ; କିନ୍ତୁ ତା'ର କୌଣସି ସମ୍ବାଦ ନ ପାଇ ଧରିନେଲେ ମିଲି ମରିଯାଇଛି, ନ ହେଲେ ତାକୁ କିଏ ନେଇ-ଯାଇଛି ।

କ୍ରମେ କ୍ରମେ ସେ ମିଲିକୁ ପାଶୋରିବାକୁ ଚେଷ୍ଟା କଲେ । ତାଙ୍କର ନବଜାତ ଶିଶୁଟି ପ୍ରତି ତାଙ୍କର ସ୍ନେହ ଶ୍ରଦ୍ଧା କେନ୍ଦ୍ରୀଭୂତ ହେବାକୁ ଲାଗିଲା । ପିଲାଟିର ସେବାରେ ତାଙ୍କର ଅନେକ ସମୟ ଚାଲିଯାଉଥିଲା । ମଝିରେ ମଝିରେ ଯାଇ ପଡ଼ିଶାର ବଳେଇ ଗୋଟେ ତାଙ୍କ ଘର ଭିତର ଦେଇ ଚାଲି ଯାଉଥିଲେ ତାଙ୍କର ମନେ ପଡ଼ୁଥିଲା ମିଲି କଥା ।

ରମାକାନ୍ତ ମଝିରେ ମଝିରେ ଛୁଟିରେ ଆସି ଦେଖନ୍ତି ତାଙ୍କ ପୁଅଟି ଆନନ୍ଦରେ ସ୍ତ୍ରୀ'ଙ୍କ କୋଳରେ ନାଚକୁଦ କରୁଛି । ସେ ଭାବନ୍ତି ସ୍ତ୍ରୀ ତାଙ୍କର ବଳେଇ କଥା ଭୁଲି ଯାଇଛି । ସେ ଭୁଲରେ ବି ସେ ପ୍ରସଙ୍ଗ ଉଠାନ୍ତି ନାହିଁ । ଜମିବାଡ଼ି, ଚୋରା ବଗିଚା ଘରର ବାକର ଏଇମାନଙ୍କ ବିଷୟରେ ଗପସପ ହୁଅନ୍ତି ।

ନଇ ସେପାରି ଗାଆଁରେ ମିଲିର ବିକୃତ ରୂପକୁ ଦେଖି ସମସ୍ତେ ଡରିଲେ । ଦେହରେ ରୁମ ନାହିଁ । ଗରମ ପେଜ ପଡ଼ି ଦେହଟା ସାରା ଘାଆ ଫୁଟିଯାଇଛି । ଗୋଟିଏ ଆଖି ଅନ୍ୟ ବଳେଇମାନଙ୍କ ସହ ଯୁଦ୍ଧରେ ନଷ୍ଟ ହୋଇଯାଇଛି । ଲାଙ୍ଗୁଡ଼ରୁ ମଧ୍ୟ ଖଣ୍ଡେ କଟିଯାଇଛି । ଏହିପରି ଏକ ବିକୃତ ଚେହେରାକୁ ଦେଖି ସମସ୍ତେ ମିଲିକୁ ଦୂରଦୂର ମାରମାର କରୁଛନ୍ତି ।

ଅନେକ ବି କହିଲେଣି ଏଇ ବଳେଇଟା ଯଦି ମୁହଁ ପୂରେଇ କାହା କଡ଼େଇରୁ ତରକାରୀ ଖାଇଦେବ, ତେବେ ସେ ବଂଶସାରା ରୋଗରେ ପଡ଼ିବେ । ବଳେଇଟାକୁ ଜୀବନରୁ ମାରିଦେବା ଭଲ । ଯୁବକମାନେ ଯେତେବେଳେ ମିଲି କୁ

ଜୀବନରୁ ମାରିଦେବା ପାଇଁ କଥାବାର୍ତ୍ତା ହେଉଥିଲେ ବୁଢ଼ାମାନେ କହିଲେ ବିଲେଇ ମାରିବା ଭାରି ଅପରାଧ । ଜୀବଟିଏ ମାରିବ କାହିଁକି, ତାକୁ କୌଣସି ପ୍ରକାରେ ଧରି ନଈ ସେପାରିରେ ଛାଡ଼ିଦେଇ ଆସ, ସେଠିକି ସେ ମରୁ ବା ବଞ୍ଚୁ । ତାହା ହିଁ ହେଲା । କୌଣସି ପ୍ରକାର କୌଶଳରେ ମିଲି ଧରାହୋଇ ଝଙ୍କା ଭିତରେ ଭର୍ତ୍ତି ହେଲା ଏବଂ ପୁଣି ଫେରି ଆସିଲା ନିଜର ଜନ୍ମଭୂମିକୁ ।

ନଈ ଏପାରିର ଗାଆଁ ଘର ଦ୍ୱାର ସବୁ ତା'ର ପରିଚିତ । ସବୁ ମଣିଷ ତା'ର ଚିହ୍ନା । ତା'ର ବିକୃତ ରୂପଯୋଗୁ ତାକୁ କେହି ସେ ଚିହ୍ନିପାରୁ ନାହାନ୍ତି ସେକଥା ସେ ନିଜେ ଜାଣିପାରୁ ନାହିଁ ।

* * * *

ସକାଳର କଅଁଳ ଖରାରେ ପୁଅକୁ ଧରି ନଳିଅପା ଦୁଧ ପେଇ ଦେଉଥିଲେ । ପୁଅଟି କୋଳରେ ଶୋଇ ରାହାଧରି କାନ୍ଦୁଥିଲା ।

ଠିକ୍ ଏହି ସମୟରେ ଘର ଭିତରେ ଏକ କ୍ଷୀଣ ଶବ୍ଦ ଶୁଣାଗଲା ମିଆଁଉ— ମିଆଁଉ··· । ନଳିଅପା ଚକିତ ହୋଇ ଏପାଖ ସେପାଖ ଚାହିଁଲେ । ଶେଷରେ ଦେଖିଲେ ଚୁମଚମ ନଥିବା ଏକ ବିକୃତ ବିଲେଇ ଖଟତଳେ ବସି ତାଙ୍କରି ଆଡ଼େ ଚାହିଁ ମିଆଁଉ ମିଆଁଉ ହେଉଛି । ମୁଣ୍ଡ ଉପରେ ଥିବା କାଳିଆ ଚିହ୍ନରୁ ନଳିଅପା ଜାଣିପାରିଲେ ଏ ମିଲି ଛଡ଼ା ଆଉ କେହି ନୁହେଁ । ତାଙ୍କ ପାଟିରୁ ବାହାରି ପଡ଼ିଲା, ମିଲି ନା କଏରେ ?

ମିଲି ଖଟତଳୁ ବାହାରି ଧୀରେ ଧୀରେ ଆସିଲା ନଳିଅପାଙ୍କ ପାଖକୁ । ପୁଅଟିକୁ ତଳେ ଶୋଇଦେଇ ନଳିଅପା ମିଲିକୁ ଦୁଇ ହାତରେ ଟେକିନେଲେ ନିଜ ଛାତି ଉପରକୁ । ସେତେବେଳେ ମିଲି ଆଉ ନଳିଅପା ଦୁହିଁଙ୍କ ଆଖିରୁ ଝରୁଥିଲା ଧାର ଧାର ଲୁହ ।

ଗାଁର ଗୃହିଣୀମାନେ ଦୂରରେ ଛିଡ଼ାହୋଇ ପାଟି କରୁଥିଲେ, "ମା ! ସେଇଟା ବାଉଳା ବିଲେଇଟାଏ, ତାକୁ ଶୀଘ୍ର ଛାଡ଼ିଦିଅ, ନଚେତ୍ କାମୁଡ଼ିଦେବ !" କିନ୍ତୁ କାହାରି କଥା ଶୁଣାଯାଉ ନଥିଲା ସେତେବେଳେ ନଳିଅପାଙ୍କୁ ।



# ଚାବି

## ପ୍ରଫୁଲ୍ଲ କୁମାର ତ୍ରିପାଠୀ

ଅନୁପମ ବାରଣ୍ଡାରେ ଖମ୍ବକୁ ଆଉଜି ଠିଆ ହୋଇଥିଲେ । ଘରଭିତରେ ଆଲୁଅ ଜଳୁନି । ଦାଣ୍ଡକବାଟ ବନ୍ଦ । ତାଲା ଖୋଲା ହୋଇନାହିଁ ।

ଏଇଟା ତାଙ୍କ ପକ୍ଷରେ ଆଦୌ ସ୍ୱାଭାବିକ ନୁହେଁ । ସାଧାରଣତଃ ରାତିରେ ଏହି ସମୟରେ ଅନୁପମ ଘର ଭିତରେ ବସି ରେଡ଼ିଓ ଶୁଣନ୍ତି କିମ୍ବା ପତ୍ରିକା ପଢ଼ନ୍ତି ।

ତାଙ୍କର ପଡ଼ୋଶୀ ଦିଗମ୍ବରବାବୁ ଖିଆପିଆ ସାରି, ବାହାରେ ଠିଆହୋଇ ଦାନ୍ତ ଖୁଣ୍ଟୁଥିଲେ । ତାଙ୍କୁ ବୋଧେ ଟିକିଏ ଅଡ଼ୁଆ ଲାଗିଲା । ଅନୁପମ କାହିଁକି ବାହାରେ ଠିଆ ହୋଇଛନ୍ତି ।

ଦିଗମ୍ବରବାବୁ ଅନୁପମ ନିକଟକୁ ଆସିଲେ । କଥା ଆରମ୍ଭ କରିବା ପାଇଁ ପଚାରିଲେ "ଖିଆପିଆ ସାରିଲେଣି ସାର୍ ?"

ଅନୁପମ ନିଜ ଭିତରେ ନିଜେ ହଜି ଯାଉଥିବା ଭଳି ଉତ୍ତର ଦେଲେ "ହୁଁ"

ଦିଗମ୍ବରବାବୁ ଅନୁମାନ ବ୍ୟକ୍ତ କଲେ "କାହାକୁ ଟାକିଛନ୍ତି ବୋଧେ··· ।"

ମିଛ । ଅନୁପମ ପୂର୍ବଭଳି କହିଲେ, "ନା ନା ସେକଥା ନୁହେଁ । ମୋର ଚାବିଟା ମିଳୁନି ।"

ଦିଗମ୍ବରବାବୁ ବ୍ୟସ୍ତ ହୋଇ ପଡ଼ିଲେ, "ଆରେରେ କେଉଁଠି ହଜେଇଲେ ? ବାଁ ହାତରେ ଜିନିଷ ନେଇ କେଉଁଠି ରଖିଦେଲେ, ଶଳା, ସହଜରେ ମନେ ପଡ଼େ ନାହିଁ । ଆପଣ ଟିକେ ମନେ ପକାନ୍ତୁ । ଆଚ୍ଛା ଆପଣଙ୍କର କି ତାଲା କି ?"

*

ଏତେକଥା ଏକା ସାଙ୍ଗରେ କହିଦେଇ ଦିଗମ୍ବରବାବୁ କୌଣସି ଉତ୍ତରକୁ ଅପେକ୍ଷା ନ କରି ଫେରିଗଲେ । ଅନୁପମ ମନେ ପକାଇବାକୁ ଲାଗିଲେ—ଗୃବିଟା ସେ କେଉଁଠି ଛାଡ଼ିଲେ ? କାମରୁ ଫେରି କଫିହାଉସ ଯାଇଥିଲେ—ସେଠୁ କ୍ଲବ—ପୁଣି କ୍ଲବରୁ ହୋଟେଲ । ହୋଟେଲରେ ଖିଆପିଆ ସାରି ତ ସିଧା ଏଠିକି ଫେରିଛନ୍ତି କାହିଁ କେଉଁଠି ଗୃବିଟା ଛାଡ଼ି ଆସିଲାପରି ଲାଗୁନି : ତା ହେଲେ ?

ଦିଗମ୍ବରବାବୁ ଖଣ୍ଡେ ଲୁହା ଚୌକି ଧରି ଫେରିଗଲେ । ବାରଣ୍ଡାରେ ଚଉକିଟାକୁ ପକାଇଦେଇ କହିଲେ, "ଆପଣ ବସନ୍ତୁ ସାର୍ । ମୁଁ ଦେଖୁଛି, ଆମ ଗୃବିରେ ଯଦି ଏ ତାଲାଟା ଫିଟିଯାଏ !"

ସେ ନିଜର ଗୃବି ପେଣ୍ଡାରୁ ଗୋଟି ଗୋଟି କରି ଗୃବି ତାଲା ଦେହରେ ଲଗାଇବାକୁ ଚେଷ୍ଟା କଲେ । କେଉଁଟି ଛୋଟ ତ କେଉଁଟି ବଡ଼ । ସେ ବାଁ ଡାହାଣ, ତଳ ଉପର କରି ଗୃବିମାନ ତାଲା ଦେହରେ ଭର୍ତ୍ତିକରି ମୋଡ଼ାମୋଡ଼ି କଲେ । ନାଁ । ତାଲାଟା ଫିଟିଲା ନାହିଁ ।

ଗୃବି ପେଣ୍ଡାଟା କେବଳ ଝୁଣ୍ଟୁଝୁଣ୍ଟୁ ଶବ୍ଦ କରୁଥାଏ । ଅନୁପମ କେଜାଣି କାହିଁକି ଓ କପରି ଏଇ ଗୃବି ପେଣ୍ଡାର ଝୁଣ୍ଟୁଝୁଣ୍ଟୁ ଶବ୍ଦ ସହିତ ଚୁଡ଼ି ବାଜିବାର ଝୁଣ୍ଟୁଝୁଣ୍ଟୁ ଶବ୍ଦକୁ ସଂପର୍କିତ କରିଦେଲେ ଓ ଭାବିଲେ—ବାହା ହୋଇନି ବୋଲି ସିନା ଏ ଦୁର୍ଦ୍ଦଶା ! ଅନ୍ତତଃ ମାଇପିଟିଏ ଥିଲେ ଏଇ ଘରଟା ତ ଜଗୁଥାନ୍ତା !!

ତାଙ୍କ ଘରଠୁ ପ୍ରାୟ ପନ୍ଦରଫୁଟ ଦୂରରେ ଏକ ଲାଇଟ ପୋଷ୍ଟ ଓ ସେ ଲାଇଟ୍ ପୋଷ୍ଟକୁ ଲାଗି ଏକ ଅଳିଆ ଗଦା । ସେଇ ଅଳିଆଗଦା ପାଖରେ ଗୋଟିଏ ଗୁମଟ୍ଟିଆ କୁକୁର କ'ଣ କିଛି ଖୋଜୁଥାଏ । ହୁଏତ ଖଣ୍ଡେ ହାଡ଼—ହୁଏତ ଖଣ୍ଡେ ରୁଟି—ହୁଏତ ମୁଠାଏ ଭାତ । ଅନୁପମ ସେଇ ସନ୍ଧାନରତ କୁକୁରଟିର କାର୍ଯ୍ୟକଳାପ ଦେଖି ବ୍ୟସ୍ତ ଥିଲାବେଳେ, ବ୍ୟସ୍ତ ଥାଇ ମଧ୍ୟ ଏକପ୍ରକାର କୌତୁହଳୀ ଥିଲାବେଳେ ଦିଗମ୍ବର ବାବୁ ତାଲା ଫିଟାଇବାର ପ୍ରଚେଷ୍ଟାରେ ବିଫଳ ହୋଇ କହି ପକାଇଲେ, "କିଛି ଚିନ୍ତା ନାହିଁ ସାର୍ । ନ ଫିଟିଲା ନାହିଁ । ଆଜି ଆପଣ ଆମ ବସାରେ ଶୋଇଯିବେ ।"

ଗୋଟିଏ ଉଦ୍ୟମରେ ବିଫଳ ହୋଇଯିବା ପରେ ଅନ୍ୟ ଏକ ପ୍ରସ୍ତାବ କରିବା ଅନେକଙ୍କର ସ୍ୱଭାବ । ହୁଏତ ଦିଗମ୍ବରବାବୁ ମଧ୍ୟ ଏଭଳି ପ୍ରସ୍ତାବର କରିଥାରେ ନିଜର ବିଫଳତା ଜନିତ ଗ୍ଲାନି ଭୁଲି ଯିବାକୁ ଗ୍ରହୁଁ ଥିଲେ ।

ଅନୁପମ ଦେଖିଲେ, ଗ୍ରାମର ଆଲୁଅ ମନ୍ଦ ହେବାଟର ଘିକୁଳୀରେ ଝୁଲୁଥିବା ଚାଳଟି ମଧ୍ୟ ଚକ୍ ଚକ୍ କରୁଥାଏ ଏବଂ ଦୃପ୍ତ ଭାବରେ ନିଜର ଅସ୍ତିତ୍ୱ ମଧ୍ୟ ଜାହିର କରୁଥାଏ ।

ଗୌତମ ସ୍ଥାନୀୟ ଡାକ୍ତରଖାନାରେ ଫାର୍ମାସିଷ୍ଟ । ସେଇ ସାହିରେ ରହନ୍ତି । ରାତି ସିଫ୍ଟ ଡ୍ୟୁଟି ପାଇଁ ସେ ସେଇବାଟରେ ଯାଉଥିଲେ ।

ଅନୁପମ ଓ ଦିଗମ୍ବର ବାବୁଙ୍କୁ ବାହାରେ ଠିଆ ହୋଇଥିବାର ଦେଖି ସେ ପାଖକୁ ଆସିଲେ ଓ ନମସ୍କାର ଜଣାଇଲେ । ପଚାରିଲେ, "ଏଠି ବସିଛନ୍ତି ସାର୍ ?"

ଦିଗମ୍ବର ବାବୁ ତାଙ୍କୁ ଘର ହଜିବାର କାହାଣୀ ଶୁଣାଇଲେ ।

ଗୌତମ ଟେରଲିନ୍ ପ୍ୟାଣ୍ଟ ମୁଣାରୁ ଚମଡ଼ା ପର୍ସଟିଏ ବାହାର କଲେ ଓ ତହିଁର ଜିପ୍ (ଚେନ୍) ଟାଣି ଖୋଲିଲେ ।

ଖୋଲ ଭିତରେ ଚାରିଟା ଘର ଚକ୍ ଚକ୍ କଲା । ସେ କବାଟ ନିକଟକୁ ଗଲେ ଓ କହିଲେ, "ମୁଁ ଟିକିଏ ଚେଷ୍ଟା କରେ ।"

ସେ ଗୋଟି ଗୋଟି କରି ଘର ତାଲା ଦେହରେ ଲଗାଇବାକୁ ଚେଷ୍ଟା କଲେ । ସେ ଧୀରେ ଧୀରେ ଘର ପଶାଇ ଥରେ ଥରେ ମୋଡ଼ ଦେଉଥାନ୍ତି । କିନ୍ତୁ ନା, ହେଲା ନାହିଁ ।

ସେ ପରାସ୍ତ ହୋଇ ପଡ଼ିଲେ ।

ଅନୁପମ ନିକଟକୁ ଫେରି ସେ କହିଲେ, "ସାର୍, ବଜାର ପାଖରେ ଜଣେ ମିସ୍ତ୍ରୀ ଅଛି । ଯେ କୌଣସି ପ୍ରକାର ତାଲା ହେଉନା କାହିଁକି ସେ ଅତି ସହଜରେ ଖୋଲି ଦେଇପାରେ ଓ ଡୁପ୍ଲିକେଟ୍ ଘର ମଧ୍ୟ ଦେବ ।"

ଗୌତମ ଏଇ ସମ୍ବାଦ ବା ପରାମର୍ଶ ଦେଲାବେଳେ ଅନୁପମ ଓ ଦିଗମ୍ବର ଉଭୟେ ନୀରବ ଥିଲେ । ବୋଧହୁଏ ଗୌତମ ମଧ୍ୟ ନିଜ ପରାମର୍ଶର ନିରର୍ଥକତା ବୁଝିପାରିଲେ; ତେଣୁ ସେ କହିଲେ, "କିନ୍ତୁ ସାର୍, ସକାଳ ପୂର୍ବରୁ ସେଇ ମିସ୍ତ୍ରୀ ଆମ ହାବୁଡ଼ରେ ପଡ଼ିବ ନାହିଁ । କ'ଣ କରିବା ତା' ହେଲେ ?"

ଶ୍ରୀମତୀ ଶାନ୍ତି ଦେବୀ ସାହିଯାକର ପିଲା ବୁଢ଼ା ସମସ୍ତଙ୍କ ଅପା—ବିଧବା । ସେ ଆସି ପହଞ୍ଚିଲେ ଓ ଅଭିଯୋଗ କଲେ, "ଏଇ ତାଲା କଥାଟା ! ମତେ ଟିକିଏ

ଖବର ଦେଲ ନାହିଁ ? ଧେଁ ହେଲା, ମୁଁ କଣ ଖବର ପାଇଲି ନାହିଁକି ! ମଲା, ଏଇ ତାଲାଟାକୁ ଏଠି ଦଶ ଦଶଟା ମରଦ ଆଇ ଫିଟାଇ ପାରୁନ ? ଆଣ !"

ନିଜ ଶାଢ଼ୀ କାନିରୁ ଗୁବ ଶଙ୍ଖଟା ଫିଟେଇ ସେ ତାଲା ସହିତ କସରତ ଆରମ୍ଭ କରିଦେଲେ । କଳରେ କଲେ ପାନ ଜାକ ଉଃ ଧ୍ୱନି ସହ ସେ ଟାଣି ଭିଡ଼ ଜୋର ଦେଇ ତାଲା ଫିଟାଇବାର ଚେଷ୍ଟାରେ ଲଗି ପଡ଼ିବାରୁ ଦିଗମ୍ବର ବାବୁ ତାଙ୍କୁ ବ୍ୟଙ୍ଗ କଲାଭଳି କହିଲେ, "ବଳ ନୁହେଁ ଶାନ୍ତ ଅପା ! ତାଲା ଫିଟେଇବା ଲଗି ବୁଦ୍ଧି ଦରକାର, ବୁଦ୍ଧି ।"

ଶାନ୍ତ ଅପା ସେଠୁ ଓହରି ଅସିଲେ । ବାରଣ୍ଡା ତଳକୁ ମେଞ୍ଚେ ପାନପିକ ପିଚ୍ କରି ଛାଡ଼ିଦେଲେ ଓ କହିଲେ, "ମଲା, ସେ କଥା କ'ଣ ମୁଁ ଜାଣିନି ? ଏଇ ଗୁବରେ ମୁଁ କେତେ ତାଲା ଫିଟେଇଛୁଟି ! ହେଲେ ଏତ ବଡ଼ ଅବାଗିଆ ତାଲାଲୋ ମାଁ ! ଜମାରୁ ଫିଟୁନି ।"

ଦିଗମ୍ବର ବାବୁ କହିଲେ "ଅବାଗିଆ ନୁହେଁ ଶାନ୍ତ ଅପା; ନୂଆ । ତୁମର ସେ ପୁରୁଣା ଗୁବରେ ଏ ନୂଆ ତାଲା ଫିଟିବ କେମିତି ?"

ଶାନ୍ତଅପା କିଛି କହିଲେ ନାହିଁ—କମ୍ପା ଏମିତି କ'ଣ ଟିକିଏ ଗୁଣୁଗୁଣୁ ହେଲେ ଯାହା ଭଲଭାବରେ ଶୁଭିଲା ନାହିଁ । ସେ ଫେରିଗଲେ ।

ଗଦାଧର ସ୍କୁଲ ମାଷ୍ଟର । ପୃଥୁଳ ବପୁ, ଏଣୁ ଶ୍ରଦ୍ଧାରେ ଲୋକ ତାଙ୍କୁ ଚନ୍ଦବସ୍ତା ବୋଲି ଡାକନ୍ତି । ଧୋତିଟାକୁ ଦୁଇଚଉତ କରି ଲୁଙ୍ଗି ଭଳି ପିନ୍ଧିଥାନ୍ତି । ଦେହରେ ଖଣ୍ଡେ ବୁଶ୍ ସାର୍ଟ ।

ହାତରେ ଲୁହାକଣ୍ଟା, ଷ୍ଟୋକ୍ ଓ ଛତାଖାଡ଼ି ଧରି ପହଞ୍ଚିଲେ । କାହାକୁ ନିର୍ଦ୍ଦିଷ୍ଟ ଭାବରେ ଲକ୍ଷ୍ୟ ନ କରି କହିଲେ, "ଏଇ ତାଲା କଥା ଶୁଣି ଆସିଛୁ । ଦେଖିବା, କେମିତି ଖୋଲିବ ନାହିଁ ।"

ସେ କବାଟ ନିକଟକୁ ଗଲେ ଓ ଲୁହାକଣ୍ଟା, ଷ୍ଟୋକ, ଛତାଖାଡ଼ି ଆଦି ବଡ଼ ବାଗରେ ପୂରାଇ ତାଲା ଉପରେ ନିଜର ବୈଷୟିକ ବୁଦ୍ଧି ପ୍ରୟୋଗ ଆରମ୍ଭ କରିଦେଲେ । ମଝିରେ ମଝିରେ କହିବାରେ ଲଗିଥାନ୍ତି, "ଏଇ ହୋଇଗଲା ! ଫିଟିଗଲା ଯେ ! ଏଇତ ।"

ମାତ୍ର ମୋଟା ଲୋକମାନେ ଶୀଘ୍ର କ୍ଲାନ୍ତ ହୋଇପଡ଼ନ୍ତି । ନିଜର ସମସ୍ତ ସୂକ୍ଷ୍ମ କୌଶଳ ପ୍ରୟୋଗ କରି ମଧ୍ୟ, ଗଦାଧର ଏଇ ଯନ୍ତ୍ରର ବ୍ୟତିକ୍ରମ ହୋଇ ପାରିଲେ ନାହିଁ ।

ନା । ତାଲା ଫିଟିଲା ନାହିଁ ।

ଗଦାଧର ମଧ୍ୟ ପରାସ୍ତ ହୋଇଗଲେ ଓ ଝାଳ ପୋଛିବାରେ ଲାଗିଗଲେ ।

ଏତେ ଲୋକଙ୍କର ଚେଷ୍ଟା ପରେ ମଧ୍ୟ ତାଲା ନ ଫିଟିବାରୁ ଅନୁପମଙ୍କ ମନରେ ଦୁଃଖ । ମାତ୍ର ଏଥିରେ ସେ ବା କ'ଣ କରିପାରନ୍ତେ ? ଏହା ତ ସବୁ ତାଲାମାନଙ୍କର ଲକ୍ଷଣ ଯେ, ସେମାନେ ଅନ୍ୟ କୌଣସି ଭାବରେ ଫିଟନ୍ତି ନାହିଁ ।

ଦେବଦତ୍ତ ସ୍ଥାନୀୟ ବ୍ୟାଙ୍କ୍‌ରେ କ୍ଲର୍କ । ଟ୍ରାନ୍‌ଜିଷ୍ଟରଟିଏ ଧରି ପହଞ୍ଚିଲେ । ଗୀତ ଶୁଭୁଥାଏ—ବୈଷ୍ଣବ ଜନ ତୋ ତେନେ କହିଏ, ପୀର ପରାଇ ଜାନେରେ' ଭଲ୍ୟୁମ କମାଇ ଦେଇ ପଚାରିଲେ, "କ'ଣ ହେଲା ସାର୍ ?"

କେହି କିଛି ଉତ୍ତର ଦେଲେ ନାହିଁ ।

କଲ୍ୟାଣ ଗୌତମ ମାଗିଲେ, "ଆପଣଙ୍କର ଚାବିଟା ଟିକେ..."

ପ୍ୟାଣ୍ଟର ବେଲଟ୍ ହୁକ ଦେହରେ ଗୋଟିଏ ସେଫ୍‌ଟିପିନ୍ ଭରସାରେ ଝୁଲୁଥିବା ତାଙ୍କର ଏକମାତ୍ର ଚାବିଟିକୁ ସେ ଗୌତମ ହାତକୁ ବଢ଼ାଇ ଦେଲେ ।

ଗୌତମ ସେ ଚାବିଟାକୁ ନେଇ ଅନେକ ଚେଷ୍ଟା କଲେ । ମାତ୍ର ତହିଁରେ ମଧ୍ୟ ତାଲା ଖୋଲିଲା ନାହିଁ ।

ଅନୁପମ କହିଲେ, "ଆଚ୍ଛା ଦଗମ୍ବର ବାବୁ, ଗୋଟେ ହାତୁଡ଼ି ମଗାଇ ତାଲାଟାକୁ ଭାଙ୍ଗିଦେବା ।"

ତାଙ୍କୁ ଏକା ସାଙ୍ଗରେ ଶୁଭିଲା, "ନାଇଁ ସାର୍ ।"

"ଏତେ ବ୍ୟସ୍ତ କାହିଁକି ?"

"ଏଇ ଖୋଲିଯିବ ଯେ ।"

"ଆଜି ରାତିଟା ଆମ ଘରେ......"

"କାହିଁକି ଭାଙ୍ଗିବା ?"

"କାଲି ସକାଳୁ ମିସ୍ତ୍ରୀ..."

ଅନୁପମ ଘଡ଼ି ଦେଖିଲେ : ୧୧ଟା । ତା'ହେଲେ ଏଇ ତାଲା ଖୋଲିବାର ପ୍ରଚେଷ୍ଟାରେ ଏ ମଧ୍ୟରେ ପାଖ ଦେଢ଼ଘଣ୍ଟା ବିତି ଯାଇଛି ।

ସେ ପୁଣି ଥରେ ନିଜର ପ୍ୟାଣ୍ଟ ଓ ସାର୍ଟର ପକେଟମାନଙ୍କରେ ହାତ ପୂରାଇ ଖୋଜିଲେ । ନାହିଁ । ତା'ହେଲେ ଗୁବଟା ଗଲା କୁଆଡ଼େ ?

ହଁ, ତାଙ୍କର ଠିକ୍ ମନେ ପଡ଼ିଲା । କଫି ହାଉସରେ ଜଳଖିଆସାରି କ୍ଲବ ଯିବା ପୂର୍ବରୁ ସେ ମିଃ ସାମନ୍ତରାୟଙ୍କ ବସାକୁ ଯାଇଥିଲେ । ତାଙ୍କ ସାଙ୍ଗରେ ଟିକେ କଥା ଥିଲା । ମାତ୍ର ମିଃ ସାମନ୍ତରାୟ ନଥିଲେ ।

ଏଣୁ ଅନ୍ୟ ସବୁଥର ଭଳି ଆଜି ମଧ୍ୟ ମିସେସ୍ ସାମନ୍ତରାୟ ଅନୁପମଙ୍କୁ ସାମାନ୍ୟ ଥଟ୍ଟା କରିଥିଲେ, ଏଇ ବେଳରେ ଟିକେ ଓହ୍ଲାଇ ପଡ଼ିବା ଭଳି ।

ମିସେସ୍ ସାମନ୍ତରାୟ କହିଥିଲେ, "ସେ ତ ଆଜି ଫେରୁ ନାହାନ୍ତି, ଆପଣ ଆଜି ଏଠି ରହି ଯାଆନ୍ତୁ । ଅନେକଦିନ ହେଲା ଆପଣଙ୍କର କମ୍ପାନୀ ମିଳିନି । ତା'ଛଡ଼ା ଆପଣ ତ ଜାଣନ୍ତି ଏକା ରହିଲେ ମୋତେ ଖୁବ୍ ଡର ମାଡ଼େ ।"

ଅନୁପମ କିନ୍ତୁ ତାଙ୍କର ଓଠରେ ଏକ ଦୀର୍ଘ ଚୁମ୍ବନ ଦେଇ ବିଦାୟ ମାଗିଥିଲେ । କହିଲେ, "ବଡ଼ କ୍ଲାନ୍ତ । ତଥାପି ଯଦି ଇଚ୍ଛା ହୁଏ କ୍ଲବରୁ ଏଠିକି ଆସିଯିବି ।"

ସେଇ ମିସେସ୍ ସାମନ୍ତରାୟ ତ ଜାଣି ଜାଣି ଗୁବଟାକୁ ଲୁଚାଇ ନାହାନ୍ତି ?

ଅନୁପମ ଭାବିଲେ, ସେ ଯଦି ଗୁବଟା ଲୁଚେଇ ରଖିଥାନ୍ତି ତେବେ ଭଲ ।

ଅର୍ଜୁନ ପୋଷ୍ଟମେନ୍ । ଗେରୁଆ ଗାମୁଛାଟିଏ ପିନ୍ଧି, ଡାଲ ଓ ଟର୍ଚ୍ଚ ଟିଏ ଧରି ବାଟରେ ଯାଉଥିଲା ପବ୍ଲିକ୍ ପାଇଖାନା ଆଡ଼କୁ । ଟର୍ଚ୍ଚ ଆଲୁଅରେ ଯାଇ ତା ଆଖିକୁ ଦେଖାଗଲା ମଝି ରାସ୍ତାରେ ପଡ଼ିଥିବା ହଳଦିଆ ରଙ୍ଗର ଗୁଚ୍ଛ । ସେ ଡଲକୁ ନଇଁପଡ଼ି ଡାଲଟିକୁ ରାସ୍ତାରେ ଥୋଇଦେଲା ଓ ସେଇ ଗୁଚ୍ଛଟି ଗୋଟାଇ ଆଣିଲା । ଏ ଗୁବ । ସେଇଟି ଧରି ସେ ଅନୁପମ ନିକଟକୁ ଆସିଲା ଓ ତାଙ୍କ ଆଡ଼କୁ ଗୁବଟିକୁ ବଢ଼ାଇ ଦେଇ କହିଲା, "ଦେଖନ୍ତୁ ତ ସାର୍ ! ଏଇଟା ଆପଣଙ୍କର, ନା ? ହୁଏତ କଣା ପକେଟରୁ ଖସିପଡ଼ିଥିବ ।"

ଅନୁପମ ସେଇ ଗୁବଟାକୁ ଗ୍ରହଣ କରିବା ପୂର୍ବରୁ ଦେବଦତ୍ତ ଅର୍ଜୁନ ହାତରୁ ଝାମ୍ପି ନେଲେ, ଦରଜା ପାଖକୁ ଗଲେ ଓ ଅତି ସହଜରେ ତାଲାଟିକୁ

ଫିଟେଇ ସାରିବା ପରେ ନଜର ବିଜୟ ଘୋଷଣା କଲେ, "ଏଇ ନିଅନ୍ତୁ ସାର୍ ! ଫିଟିଗଲା ।"

ଉପସ୍ଥିତ ସମସ୍ତେ ସୁଖଶ୍ୱାସ ଗ୍ରହଣ କଲେ । ଜଣ ଜଣ ହୋଇ ସମସ୍ତେ ଏଇ ତାଲା ଖୋଲିବାର ଚେଷ୍ଟାରେ ବିଫଳ ହୋଇଥିଲେ, ପରାଜିତ ହେବାର ଗ୍ଲାନି ଓ ଯନ୍ତ୍ରଣା ଅନୁଭବ କରିଥିଲେ। ବ୍ୟସ୍ତ ହୋଇଥିଲେ ।

ମାତ୍ର ଅନୁପମ ନିଜେ, ଯଦିଓ ତାଲାଟି ଖୋଲିବା ଓ ନଖୋଲିବାରେ ଯଥାକ୍ରମେ ତାଙ୍କର ସୁବିଧା ଓ ଅସୁବିଧା ହୋଇଥାନ୍ତା, ସେତେବେଳେ ଲମ୍ବା ଚୌକିରେ ଆଉଜାଇ ହୋଇ ଆରାମରେ ବସି ମିସେସ ସାମନ୍ତରାୟଙ୍କ ସହ ସମ୍ଭାବିତ ରାତ୍ରି ଯାପନ ବିଷୟ ଚିନ୍ତା କରୁଥିଲେ । ମିସେସ୍ ସାମନ୍ତରାୟ ତାଙ୍କ ପାଇଁ ନୂଆ ନୁହନ୍ତି—ଅନେକଥର ସେ ତାଙ୍କ ସହ ରାତ୍ରି ଯାପନ କରି ସାରିଛନ୍ତି । ତଥାପି ପ୍ରତ୍ୟେକ ଥର ଫେରିବା ପରେ ହିଁ ସେ ପୁଣି ଥରେ ଯିବାର ପ୍ରସ୍ତୁତି ଆରମ୍ଭ କରି ଦିଅନ୍ତି ।

ସେ ଭାବୁଥିଲେ, ତାଲା ନ ଫିଟିଲେ ସେଠିକି ଚାଲିଯିବେ । ତେଣୁ ତାଙ୍କୁ ବ୍ୟସ୍ତ ଲାଗୁ ନଥିଲା । କାରଣ ସେ ମନେ ମନେ ଏକ ନିଷ୍ପତ୍ତି ଗ୍ରହଣ କରି ସାରିଥିଲେ ।

ଏଥର ଗୃହଟି ମିଳିଯିବାରୁ ତାଙ୍କର ମନେ ହେଲା, ସେ ପରାସ୍ତ ହୋଇ ଯାଇଛନ୍ତି । ତାଙ୍କର ସମସ୍ତ ଯୋଜନା ପଣ୍ଡ ହୋଇଯାଇଛି । ମିସେସ୍ ସାମନ୍ତରାୟଙ୍କ ସହ ରାତ୍ରି ଯାପନର ଉଥାଉଜ୍ଜ୍ୱଳ ସଂଭାବନା କ୍ରମେ ମ୍ରିୟମାଣ ହୋଇଯାଉଛି ।

ସମସ୍ତଙ୍କ ଉଦ୍ଦେଶ୍ୟରେ ସେ "ଧନ୍ୟବାଦ" ଉଚ୍ଚାରଣ କଲେ ଓ ତା'ପରେ 'ଗୁଡ୍ ନାଇଟ୍' କହି ସେ ଚୌକିରୁ ଉଠି ପଡ଼ିଲେ । ଜଣ ଜଣ ହୋଇ ସମସ୍ତେ ଫେରିଗଲା ପରେ ଅନୁପମ କବାଟ ଫିଟାଇ ଘର ଭିତରକୁ ପଶିଲେ ।

ଦ୍ୱାର ପାଖରେ, କାଁକଡ଼ କାନ୍ଥରେ ଥିବା ସ୍ୱିଚ୍ ଉପରେ ହାତ ମାରିଲେ । ହାତ ଠିକ୍ ସ୍ୱିଚ୍ ଦେହରେ ବାଜିଲା ମଧ୍ୟ । ଟୁଚ୍ । ମାତ୍ର କାହିଁ ?

ଲାଇଟ୍ ଜଳିଲା ନାହିଁ ଯେ !

ଆଲୋକ ଆସିଲା ନାହିଁ ଯେ !

କୋଠରିଟି ମାଲାଭ ହୋଇ ଉଠିଲା ନାହିଁ ଯେ !

ସେ ପୁଣି ଥରେ ସ୍ୱିଚ୍ ଟିପିଲେ । ଟୁଚ୍ ।

ମାତ୍ର କାହିଁ ?

ଅନ୍ଧାର ହଟିଲା ନାହିଁ ଯେ !

ସେ କେଉଁଠାରୁ କେଉଁଠାକୁ ଆସିଲେ ? ବାରଣ୍ଡାରୁ କୋଠରୀକୁ ନା ଆଲୋକରୁ ଅନ୍ଧାରକୁ ? ଏତେ ପରିଶ୍ରମ ପରେ ତାଲା ଖୋଲିବାର ଅର୍ଥ କ'ଣ ଏଇ ଯେ, ଶେଷରେ ଗୋଟିଏ ଅନ୍ଧାର ଗୁମ୍ଫାରେ ପହଞ୍ଚିବା ଅନିବାର୍ଯ୍ୟ ?

ଅନ୍ଧାର । ଗାଢ଼ । କଳା ।

ମିସେସ୍ ସାମନ୍ତରାୟଙ୍କ ଚକୁର ପରି ।

ଏବେବି ସାହାଯ୍ୟ ଲୋଡ଼ା । ମାତ୍ର କିଏ ଅଛି ?

ଦିଗମ୍ବରବାବୁ, ଗୌତମ, ଶାନ୍ତିଅପା, ଗଦାଧର, ଦେବଦତ୍ତ, ଅର୍ଜୁନ କେହି ନାହାନ୍ତି । ଅନ୍ଧକାରର ମୁକାବିଲା କରିବାପାଇଁ କେବଳ ସେ—ଜଣେ, ଏକ୍‌ଲା ।

ସାର୍ଟର ବୋତାମ ଫିଟାଉ ଫିଟାଉ ସଦା-ଗମ୍ଭୀର ଅନୁପମ କହି ପକାଇଲେ, "ଶଳା, ଫ୍ୟୁଜ୍ ଉଡ଼ି ଯାଇଥିବ !"



# ବନ୍ଦ ଘରର ଗଳ୍ପ

## ମନୋରମା ମହାପାତ୍ର

ଘରଟି ଘରଟା ଏକଦମ୍ ପୁରୁଣାକାଳିଆ, ପିଣ୍ଡାଟା ଅସମ୍ଭବ ସ୍ତରରେ ଉଚା, ମାତ୍ର ଯୋଡ଼ିଏ ବଖରା ଘର୍, ତଥାପି ସେଇ ଅଣଓସାରିଆ ଉଚା ଛନ୍ନମହଲା କୋଠାଟାକୁ ଦେଖି ବାରମ୍ବାର ଆତ୍ମପ୍ରସାଦରେ ଫୁଲି ଉଠନ୍ତି ହରିହର ମିଶ୍ରେ । ସେ କାଳର ଡିଜାଇନ୍ କୋଠା ।

ତା'ର ସବା ଉପରେ ଡେଣା ଟେକି ଉଡ଼ିଯାଉଛନ୍ତି ଦୁଇଟି ପକ୍ଷୀ । ଆଉ ତାରି ମଝିରେ ସୁଦକ୍ଷ କାରିଗର ବେଶ୍ କୁଶଳତାର ସହ "ହରିହର" ନାଆଁଟି ଲେଖି ଦେଇଛି ।

"ହରିହର ମିଶ୍ର"

ହରିହରଙ୍କ ଯୋଗ୍ୟପୁତ୍ର ଲୋକନାଥ ଆପଣାର ଓକିଲାତି ପଇସାରେ ତା' ଉପରେ ଆଉ ଦୁଇଟି ତାଲା ତିଆରି କଲେ ମଝି ସେହି ଗୋଟିକ ନାଆଁ ଦିଶୁଛି । ଦାଉ ଦାଉ ହୋଇ ଜଳୁଛି ମଧ୍ୟ·······

ସେ ନାଆଁ "ହରିହର ମିଶ୍ର"ଙ୍କର, ଯିଏ ଏ କୋଠାର ମାଲିକ । ଯିଏ ଗର୍ବରେ ପୁରୁଷାକାରର ବଡ଼େଇ କରିବେ ନାହିଁ ? ?

କେମିତି ବା ନ କରିବେ ?

ସତକୁ ସତ ଆଖି ଦେଖିବା କଥା ଇଏ !

ଏତେବଡ଼ ଅନ୍ୟାୟକୁ ସହିନେଲେ ଲୋକନାଥ ? ? ?

ଓହୋ···ଲୋକନାଥ ଆଜ୍ଞାଧୀନ ପୁଅ·······

କିନ୍ତୁ·······

ଛି—ଛି—ଛି—

ଏ କ'ଣ ପୁରୁଷାକାରର ସ୍ୱାକ୍ଷର ?

ନା ବାଘ ଚମଡ଼ା ଘୋଡ଼େଇ ହୋଇଥିବା ଗୋଟିଏ ନିରୀହ ମେଷ ଶିଶୁ ? ପିତୃଭକ୍ତର ନାମାବଳୀ ପିନ୍ଧା ଗୋଟିଏ ଅର୍ଥଲୋଭୀ ପିଶାଚ ଯିଏ ଅନୁକ୍ଷଣ ଭଲ ମଣିଷର ଅଭିନୟ କରିଯାଏ ? ? ?

ତେବେ ଲୋକନାଥ କ'ଣ ମାତୃଘାତକ, 'ଚରିତ୍ରହୀନ'???

କେଜାଣି ଲୋକେ ଦୋ ଦୋ ପାଞ୍ଚ ହୁଅନ୍ତି......

କିନ୍ତୁ ଲୋକନାଥ ସମ୍ବନ୍ଧରେ ଏତେବଡ଼ କଥା କହିବାକୁ କାହାର ଜିଭ ଲେଉଟେ ନାହିଁ........

ଏତେ ଜାକଜମକରେ ବାହାଘର ହୋଇଗଲା । ଅପୂର୍ବ ସୁନ୍ଦରୀ ବୋହୂ : ହେଲେ ଏଭଳି ଅଘଟଣ ଘଟିଲା କେମିତି ?

ବାହାଘରର ମାସ କେଇଟା ନ ଯାଉଣୁ କୁଆଡ଼େ ଅନ୍ତଃସତ୍ତ୍ୱା ବୋହୂଟା ଯେ ବାପଘର ଗଲା ଆଉ ଫେରିଲା ନାହିଁ ।

ଆଭିଜାତ୍ୟ ନ ଥିବା ନିଅଁସ ଘର ଝିଅଟା—ଆଉ ଏ ଘରକୁ ଫେରିଲା ନାହିଁ......

ହୁଁ ......ନ ଫେରୁ ।

ଅବଶ୍ୟ ଏହି କଥାଟା କୁଆଡ଼େ ପ୍ରଚାର ହୋଇଥିଲା ।

ହଁ.........

କିନ୍ତୁ ସତରେ କ'ଣ କୁମୁଦିନୀ ଫେରି ନ ଥିଲା ? ?

ତେବେ ?

ତେବେ ସେହି ଛୋଟ ସୁଟ୍‌କେଶଟାର ସ୍ଥିତିକୁ କ'ଣ ଅସ୍ୱୀକାର କରିଯାଇ ପାରେ ?

ମଇଳଚିଆ ଗଣ୍ଠିଲିରେ ବନ୍ଧା ମୁଆଁ ଆଉ ସେହି ଏକମାତ୍ର ଯୌତୁକ ଛୋଟ ସୁଟ୍‌କେଶ ଓ ସାକର ଧଳ ପାତଳା ଦୁର୍ବଳିଆ ଝିଅଟା ସାଙ୍ଗରେ ଯେତେବେଳେ ପଥର ବସା ପକ୍‌କା ଅଗଣାରେ ପାଦ ଦେଲା କୁମୁଦିନୀ; ସେତେବେଳେ ହରମିଶ୍ରଙ୍କ ଘରେ ବିଧବା ନ ହୋଇ ବିଧବା ହୋଇ ବାପ ଘରେ ରହିଥିବା ଭଉଣୀ "ମାଗି" ଭିତ୍ତରେ ଗୋଟାପଣେ ଥରୁଥିଲେ : ପୁରୁଣା କ୍ଷତରୁ ରକ୍ତ କ୍ଷରଣ ।

ଅଜାଣତ ମନେ ପଡ଼ିଗଲା ମାଗିନାନୀର ।

ଏ ଝଡ଼ର ଆଘାତ ସେ ପାଇଛନ୍ତି । ଆଜି ଏକ ପ୍ରଳୟଙ୍କରୀ ଝଡ଼ର ସୂଚନାରେ ଅକ୍ଷର ପରିଚୟ ଘଟି ନ ଥିବା ମାଗିନାନୀ ମଧ୍ୟ ତାଙ୍କର ଅତି ନିଷ୍ଠୁର ଶୋଇର ଅବସ୍ଥାକୁ କଳ୍ପନା କରି କମ୍ପି ଉଠୁଥିଲେ ।

ପାଦତଳେ ମୁଣ୍ଡିଆ ମାରୁଥିବା ବୋହୂଟାକୁ ଉଠେଇ ଦେଇ ନ ଦେଉଣୁ ଏ ଘରେ ଅଘଟଣା ଘଟିଗଲା ।

ସେତେବେଳେ ଲୋକନାଥ ଘରେ ନ ଥିଲେ······କଲିକତା ଯାଇଥିଲେ । କିନ୍ତୁ ସବୁ ଦେଖିଛନ୍ତି ମାଗିନାନୀ······

ଷୋଳବର୍ଷର ଯୁବକଶ୍ରେଷ୍ଠ ପ୍ରତିମା ଭୁଆସୁଣୀ ବୋହୂଟା ତା'ର ଲୁଡ଼ୁବୁଡ଼ିଆ ଖେଳ ସାଙ୍ଗରେ ସେହି ଜହ୍ନରାତିଟାରେ ଏକ ବସ୍ତ୍ରରେ ଶ୍ୱଶୁର ଘରର ଭିଟାମାଟିରୁ ବିଦା ହୋଇଗଲା ।

ବିଦା କରିଦେଇଥିଲେ ଏଇ କୋଠାର ମାଲିକ ହରିମିଶ୍ରେ, ଆଭିଜାତ୍ୟ ଯାହାଙ୍କର ଥିଲା ବୋଲି ଯେ ଅହରହ ଗର୍ବ କରନ୍ତି···

ଆଜି ମଧ୍ୟ ଅଟକାଇ ପାରି ନ ଥିଲେ ମାଗି, ଯିଏ ଏ ଘରର ବିଧବା ଝିଅ ପରି ଏଇଠି ମାଟି କାମୁଡ଼ି ପଡ଼ିଛନ୍ତି ।

କେମିତି ବା ପାରିଥାନ୍ତେ ସିଏ ?

ସ୍ୱାମୀ ପରିତ୍ୟକ୍ତା ମାଗି···ପାଦ ତଳେ ମାଟି ନାହିଁ ।

ଏମିତି କେବଳ ଯୌତୁକ ନ ଦେଇପାରିଥିବା ହେତୁ ତାଙ୍କୁ ଘରୁ ତଡ଼ି ଦେଇଥିଲେ ତାଙ୍କର ଶ୍ୱଶୁର ।

ବର ହେଲେ ଫେରାର ।

କିଏ କହେ ରେଙ୍ଗୁନ ଗଲେ, କିଏ କହେ ଗଲେ କାଳିମାଟି ! ଆଉ ସହାୟସମ୍ବଳହୀନା ମାଗି ପଡ଼ିରହିଲେ ଆଶ୍ରିତା ହୋଇ ବାପଘରେ ! ବାରବରଷ ପରେ ହିନ୍ଦୁ ଶାସ୍ତ୍ରର ନିୟମ ମାନି ବିଧବା ହେଲେ ମାଗି ! ପେଟରୁ ଜନମ ନ କରି ଯିଏ ମାଆ ମଲା ଲୋକନାଥର ମାଆ ହୋଇ ଯାଇଛନ୍ତି ତାଙ୍କ ଗ୍ରୀବା କ'ଣ ଫାଟି ପଡ଼ିବ ନାହିଁ ଏଇ ମିଛିମିଛିକା ଆଭିଜାତ୍ୟର ଅତ୍ୟାଚାରରେ ? ଏ ଅନ୍ୟାୟ, ଅବିଚାରରେ ! କିନ୍ତୁ···

ପ୍ରତିବାଦର ଭାଷା ତାଙ୍କୁ ଜଣା ନାହିଁ ! ପାଦତଳର ମାଟି ଖୋଜିବା କଥା ସେ କଳ୍ପନା କରିପାରି ନାହାନ୍ତି । ସମସ୍ତ ଶକ୍ତି ଦେଇ ଥରି ଥରି ଫିସ୍ ଫିସ୍ କରି ସେହି ବୋହୂଟାର କାନ ପାଖରେ ଆକୁଳ ହୋଇ କହୁଥିଲେ ମାଗିନାନୀ—

'ଗୋଡ଼ଯୋଡ଼ାକ ଧରପକା । କହ—ମାର୍—ଫପ—ମୋତେ ପୋଇଲ୍ କର ରଖ, ହେଲେ ମୁଁ ତ ତୁମର ଘରର ବୋହ୍ ! ଫିଙ୍ଗି ଦେଲେ, ମାଟିରେ ମିଶିଯିବ ମୁଁ ।

ମାଗିନାମାଙ୍କ ଦ୍' ଆଖିରୁ ତୋରଣୀ ପର ଲୁହଧାର ଝରୁଥିଲା···ହେଲେ ସେ ଶକ୍ତ ମଜଭୁତଆ ମାଇକିନିଆ ଛିଥିଟା କ'ଣ କାଲୁଣୀ ? ଜାଡ଼ ? କିଛୁ ତାକୁ ଶୁଣାଗଲା ନାହିଁ ???

କୁମୁଦିନୀ ନାମରେ ଇସ୍ପାତର ଫଳକ ପରି ଦାଉ ଦାଉ ଜଳୁଥିବା ସେ ପାତଳା ଗୋରାତକତକ ଝିଅଟା ଆପଣାର ଦୁର୍ବଳିଆ ସ୍ୱାଇଁଟାର ଲଡ଼ଲଡ଼ ହାତଟାକୁ ଖୁବ୍ ଯୋରରେ ଜାବୁଡ଼ି ଧରି ଖୁଣ୍ଟପରି ଠିଆ ହୋଇ ଶୁଣି ଯାଉଥିଲା ସବୁ ଅଭିଯୋଗ····।

ବେଳର ନେଳ ଶିରାଗୁଡ଼ାକ ଟଣକି ଉଠୁଥିଲା !

ତୁଣ୍ଡ ଖୋଲି ପଦୁଟିଏ କଥା ବି କହି ପାରିଲା ନାହିଁ··· ।

ଆପଣା ପାଦତଳର ସ୍ୱେଚ୍ଛାବାଲି ଖସି ଖସି ଯାଉଥିବା ଦେଖି ସେ ଖାଲି ବୁଡ଼ିଗଲା ଲୋକ କୁଟାଖିଅକୁ ଜାବୁଡ଼ି ଧରିଲା ପରି ସେହି ସ୍ୱାଇଁଟାର ହାତ ମୁଠାକୁ ଶକ୍ତକରି ଜାବୁଡ଼ି ଧରିଥିଲା ।

କିନ୍ତୁ····

ଶେଷରେ ତା'ର ଅତି ନିଷ୍ଠୁର ଶ୍ୱଶୁରଙ୍କ ପାଦତଳେ ପ୍ରଣାମ କରି କୁମୁଦିନୀ କହିଥିଲା ପଦଏ କଥା—

ଦୃଢ଼ତାର ସ୍ୱାକ୍ଷର ବହନ କରି ଝରି ପଡ଼ୁଥିଲା ସେହି ପଦୁଟିଏ କଥା !

ସ୍ୱାଭିମାନ ?

ଅହଙ୍କାର ?

କେଜାଣି ତା' ରୂପ ବାରିହୁଏ ନା···

"ଆଶୀର୍ବାଦ କରନ୍ତୁ ମୁଁ ଯେପରି ଏ ବଂଶମର୍ଯ୍ୟାଦା ରଖିପାରେ ।"

ଆଶ୍ଚର୍ଯ୍ୟ !!!

ଶ୍ୱଶା ଖଡ଼ ଖଡ଼ ବଡ଼ ବଡ଼ ଟଣା ଟଣା ଆଖି ଦୁଇଟାରୁ ଟୋପାଏ ହେଲେ ଲୁହ ଝରିଲା ନାହିଁ ?

ନିସ୍ତବ୍ଧରେ ମାଗିନାମାଙ୍କୁ ପ୍ରଣାମ କରି ଗ୍ଲଲିଗଲା ସିଏ ! ମିଳେଇ ଗଲା ।

ଆଉ ମାଗିନାମା ?

ସ୍ୱର୍ଗର ବନ୍ୟାଜଳ ଅବା ଅଗ୍ନିକ ମାଡ଼ିଆସି ବନ୍ଧ ଭାଙ୍ଗି ଦେଲା । ହେଲେ ଭାସିଗଲା ନାହିଁ ମିଶ୍ରଙ୍କ ପଦଯୁଗଳ !

ମାଗିନାମାଙ୍କର ନିଷ୍ପ୍ରଭ ଆଖିପତାରେ ଏତେ ଲୁହ ?

ପୁରୁଣା କ୍ଷତରୁ ରକ୍ତକ୍ଷରଣ କ'ଣ ସହଜରେ ବନ୍ଦହୁଏ ?

ପୁରୁଣାକାଳର ପ୍ରତୀକ ହରି ମିଶ୍ରେ !

ଦାନ୍ତଚିପି ହରି ମିଶ୍ରେ କହି ଉଠିଥିଲେ, "ଗୁନ୍ଦହ, ଗ୍ରେଷ୍ଟ୍‌ଲୋକ ଘରର ଝିଅ ସେ ! ପୁଣି ମୋ ପୁଅକୁ ବାହା କରିବ ? ପିତଳହାଣ୍ଡି ଧୋଇଦେଲେ ଶୁଦ୍ଧ !

ହେଲେ ପିତଳହାଣ୍ଡିକୁ ଧୋଇ ପାରିଥିଲେ କି ?

କିନ୍ତୁ....

ଲୋକନାଥ କ'ଣ କର୍ଣ୍ଣିକତାରୁ ଫେରି ଏସବୁ କିଛି ଶୁଣି ନ ଥିଲା । ତା ଆବାଲ୍ୟ ଦୁଃଖିନୀ ମାଆ ଭୂଲ୍ୟା ପିଉସୀ ମାଗିନାମା ଭୁଣ୍ଡରୁ ?

ତେବେ ?

ଲୋକନାଥ କ'ଣ ଆପଣା ଶୋଇବା ଘର କଣରେ ପଡ଼ି ରହିଥିବା ଅତି ନିରମାଖି ସେହି ହଳଦିଆ ଫୁଲପକା ଛିଟ ସୁଟ୍‌କେଶର ସ୍ଥିତି ଅନୁଭବ କରିପାରି ନ ଥିଲା ?

ତେବେ ??

ସେ ତ ରାଗରେ ଫିଙ୍ଗିଦେଇ ପାରିଥାନ୍ତା ସେ ଶେଷ ଚିହ୍ନକୁ । ସ୍ୱପ୍ନ ପରି ପାଶୋରି ଦେଇଥାନ୍ତା ଜୀବନ ଅଧ୍ୟାୟରୁ ସେ ଭୁଲ୍ଲ କାହାଣୀକୁ ।

କିନ୍ତୁ...

ଲୋକନାଥ ପ୍ରତିବାଦ କଲା ନାହିଁ । ରାଗରେ ଫାଟି ପଡ଼ିଲା ନାହିଁ । ଅଧିକ ଗମ୍ଭୀର ହେଲା ଲୋକନାଥ ! ଜୀବନ୍ତା ମଧ୍ୟରେ ବୁଡ଼ିଗଲା !

ହଁ, ଟଙ୍କା ଅସିଲା....

ହରି ମିଶ୍ର ନାମଲେଖା କୋଠା ଉପରେ ପୁଣି କୋଠା ତିଆରି ହେଲା । ମୂଳଦୁଆ ଟାଣ...ଗୁନ୍ଦସ୍ୱାଦ ଅଛି । ପୁଅ ବୋଲ ମାନୁଛି । ଏଥିରେ ଗର୍ବ କରିବେନି ହରି ମିଶ୍ରେ ?

କରିବେ ନାହିଁ ଆଭିଜାତ୍ୟର ବଡ଼େଇ ?

ହେଲେ......

ସେହି ତଳର କଣ ଘରଟାରେ ଠିକ୍ ସେହି ନିର୍ଦ୍ଦିଷ୍ଟ ଜାଗାରେ ସେମିତି ଅବିଚଳିତ ଭାବରେ ପଡ଼ି ରହିଥିଲା ଫୁଲପକା ସୁଟ୍‌କେଶଟା । ଶୋଟାଏ ରକ୍ତାକ୍ତ

ସ୍ମୃତିର ନିର୍ମମ ସାକ୍ଷର···ଆହୁରି ଆଶ୍ଚର୍ଯ୍ୟ ଯେ ସେହି ଘରଟାକୁ ସବୁବେଳେ ତାଲା ପକାଇ ରଖୁଥିଲେ ଲୋକନାଥ··· ।

ପୂର୍ବପୁରୁଷ ତା ନିଜର ସେହି ଘର । ଅନ୍ୟମାନଙ୍କର ପ୍ରବେଶ ନିଷେଧ । ସତେ ଯେପରି ସାତରଜାର ସାଇତା ମାଣିକ ରହିଛି····ତେବେ···ଜବରଦସ୍ତ କୁମୁଦିନୀର କୋଳରୁ ଟଣା ହୋଇ ଆସିଥିବା ଏ ବଂଶର ଗୌରବ ତ୍ରିବିକ୍ରମକୁ ଆପଣାର ଶୁଖିଲା ଗୁଣ୍ଡିରେ ଚାପି ଧରିଲାବେଳେ ବୋଧହୁଏ ଯାଉଥିବା ଲୁହଧାରରେ ଝାପ୍‌ସା ଜାଲ୍ ଜାଲିଆ ଦିଶେ ମାଗିନାଙ୍କୁ କୁମୁଦିନୀର ଅତି ସୁନ୍ଦର ମୁହଁଟା ।

ଯାହାର ଗୋଟାଏ ବୋଲି ଫଟ ଏ ଘରେ ନାହିଁ । ଆଉ ତାଂ'ର ସଙ୍ଗେ ସଙ୍ଗେ ପଥର ପରି ଭାବଲେଶହୀନ ଗୋଟାଏ ଗମ୍ଭୀର ମୁହଁ ଦେଖି ·ପାରନ୍ତି ମାଗି-ନାନୀ । ତାଙ୍କରି ହାତଗଢ଼ା ପିଲା, ତାଙ୍କରି ପୁତୁରାର ଯନ୍ତ୍ରଣାବିହ୍ୱଳ ମନକୁ ବି ଦେଖି ପାରନ୍ତି ନିରକ୍ଷର ମାଗିନାନୀ । ହେଉ ପଛେ ଭାବଲେଶ ହୀନ ସେ ମୁହଁ··· ସେ ମୁହଁ ଲୋକନାଥର । କିନ୍ତୁ କିଛି କ'ଣ ଦେଖିପାରନ୍ତି ନାହିଁ ହରି ମିଶ୍ରେ ? ତଥାପି···ବାରମ୍ବାର ଗର୍ବରେ ଘୋଷି ହେଉଥିଲେ ମଧ୍ୟ ଆପଣା ପୁଅ ଲୋକନାଥର ସେହି ଗମ୍ଭୀର ମୁହଁକୁ ଚାହିଁ ଭରସି କରି କହି ପାରିଲେ ନାହିଁ ହରି ମିଶ୍ରେ, ଦ୍ୱିତୀୟ ବିବାହ କଥା । ବିବାହ ପ୍ରସ୍ତାବ କହିବେ କହିବେ ହେଉ ହେଉ କେତେ ବେଗେ ଦିନ ଗଡ଼ିଗଲା ।

ଲୋକନାଥର ଜୀବନ ଅଙ୍ଗନରେ ଓହ୍ଲାଇ ଆସିଲା ଅପରାହ୍ନ । ଲଗ୍ନ ଘେନେଇ ଆସିଲା···

ବୋହୂ ଆସିବ ଏ ବଂଶକୁ । ହେଲେ ଲୋକନାଥ ପାଇଁ ନୁହେଁ । ଲୋକ-ନାଥର ଏକମାତ୍ର ପୁତ୍ର ତ୍ରିବିକ୍ରମ ପାଇଁ···

ସେହି ସୁଯୋଗ୍ୟ ନାତି ତ୍ରିବିକ୍ରମ ପାଇଁ ବୁଢ଼ା ବୟସରେ କମ୍ ପରିଶ୍ରମ କରି ନାହାନ୍ତି ହରି ମିଶ୍ରେ ?

ତ୍ରିବିକ୍ରମକୁ ବିବାହ ବଜାରରେ ନିଲାମ କରିବା ସ୍ୱପ୍ନରେ ଯେତେବେଳେ ମାତି ଉଠିଥିଲେ ଲୋକନାଥର ମାମଲତ୍‌କାରୀ ପିତା ହରି ମିଶ୍ରେ, ସେତେବେଳେ ଏଇ ଅଘଟଣ ସତକୁ ସତ ଘଟିଲା । ଟଳିପଡ଼ିଲା ଆଭିଜାତ୍ୟ । ଚମତ୍କାର ସ୍ୱପ୍ନ ଦେଖୁଥିଲେ ହରିମିଶ୍ରେ···

ଭେଣାମେଲି ଉଡ଼ିଯାଉଥିବା ପରୀ ମହିରେ ଶୋଭା ପାଉଥିବା ହରିମିଶ୍ର ନାମ ଲେଖା କୋଠା ଘର ଉପରେ ପୁଣି ଚାରି ମହଲା ଘର । ମୂଳଦୁଆ ଟାଣ ଅଛି । ବୁନିଆଦ ଭାଙ୍ଗିଯିବ ନାହିଁ । ଆସିବ ଅମାପ ଯୌତୁକ—ଏକଲକ୍ଷ ଟଙ୍କା····

ଲୋକନାଥ ବାରି ପୁତ୍ର ।

ହର ମିଶ୍ରେ ଷୋଡ଼ଶ ପ୍ରସ୍ତୁତ ସମ୍ପୂର୍ଣ୍ଣ ଭାବରେ କଣ ପାରିଥିଲେ… ଅଥଚ…

ଏ ସମସ୍ତ ଲୋଭନୀୟ ସମ୍ଭାବନାକୁ ବ୍ୟର୍ଥ କରି ଯେତେବେଳେ ଏକାନ୍ତ ନିରାଡ଼ମ୍ବର ଭାବରେ ଲୋକନାଥ ପୁତ୍ରର ମନୋନୀତ ବଧୂକୁ ଏ ଘରକୁ ଆଣିଲେ, ସେତେବେଳେ ହରମିଶ୍ରେ କ'ଣ ପ୍ରତିବାଦ କଲେ ନାହିଁ ? ?

ଆକ୍ରୋଶରେ ଭାଙ୍ଗି ପଡ଼ିଲେ ନାହିଁ ?

ଆଶ୍ଚର୍ଯ୍ୟ ! ସେତେବେଳେ ପ୍ରଥମ ଥର ପାଇଁ ବହୁକାଳ ପରେ ଗମ୍ଭୀର ଲୋକନାଥ ଘୋଷଣା କରିଥିଲେ—"ଆଭିଜାତ୍ୟର ସଜ୍ଞା ଯୁଗେ ଯୁଗେ ବଦଳେ । ମାତ୍ର ଚିରନ୍ତନ ମୂଲ୍ୟବୋଧ ଅପରିବର୍ତ୍ତିତ ରହେ । ତାଙ୍କ ପୁତ୍ରବଧୂ ପଦ୍ମା ବିଦୁଷୀ, ସଦ୍‌ଗୁଣ ସମ୍ପନ୍ନା, ଅନୁପମା । ସେ ସଂସ୍କୃତସମ୍ପନ୍ନା ବୋହୂ ଆଣିଛନ୍ତି । ତାଙ୍କର ଧନ ନାହିଁ କିନ୍ତୁ ମନ ଅଛି, ସେ ଧନଠାରୁ ଅନେକ ବଡ଼ ।"

ସେଦିନ ବହୁକାଳ ପରେ ପ୍ରାପ୍ତିସ୍ୱୀକୃତିର ଅପୂର୍ବ ଆନନ୍ଦରେ ବୋଧହୁଏ ସହସା ଏକାନ୍ତ ବନ୍ଦୀତ ଷେହ ବନ୍ଦଘରର କବାଟଟା ଖୋଲି ଦେଇଥିଲେ ଲୋକନାଥ ।

ସେମାନେ ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଏହି ଗମ୍ଭୀର ମଣିଷଟାକୁ ବହୁକାଳ ପରେ ନୂଆ କରି ଦେଖିଥିଲେ—

ଆଉ ଦେଖିଥିଲେ ସାଇପଡ଼ିଶାମାନେ ବହୁଦିନରୁ ହଜି ଯାଇଥିବା ସେ ହାସ୍ୟୋଜ୍ଜ୍ୱଳ ମୁହଁଟାକୁ…

ସେ ମୁହଁ ଲୋକନାଥର ।

ଆଉ ହରମିଶ୍ରେ ? ? ?

ସେ ଅନୁଭବ କଲେ ସମ୍ଭାବନାର ଆମନ୍ତ୍ରଣରେ ।

ଡେଣା ଟେକି ଉଡ଼ିବାକୁ ବସିଥିବା କୋଠାର ସେ ପକ୍ଷୀମାନେ ହଠାତ୍ ଉଡ଼ିଯାଉଛନ୍ତି ଆଉ ଧରି ପାରିନାହାନ୍ତି ହରି ମିଶ୍ରେ । ଆପଣା ଶୋଇବା ଘରେ ଭାଙ୍ଗି ଯାଇଥିବା ଆଭିଜାତ୍ୟର ଶୋକରେ, ଚୁପା ଆକ୍ରୋଶରେ ରହି ରହି ହରି ମିଶ୍ରେ ଖାଲି ଗର୍ଜୁଥିଲେ ।

କିନ୍ତୁ…

ମହାକବି ହରିମିଶ୍ରଙ୍କର ଶୋକାଚ୍ଛନ୍ନ ଦଶନ୍ତା ଯେ ଲୋକନାଥଙ୍କର ମୂଳକାର୍ଣ୍ଣ ଧନ ! ତାଙ୍କର ପୁତ୍ର ତ୍ରିବିକ୍ରମ ଯୌରୂଳକୁ ଗୋଡ଼ରେ ଆଡ଼େଇ ଦେଇ ବଂଶର ତଥା-କଥିତ ମିଥ୍ୟା କୁଳସ୍ୱାଦର ପ୍ରତିବାଦକରି ଲୋକନାଥର ଅନିଚ୍ଛାକୃତ ପାପର ପ୍ରାୟଶ୍ଚିତ୍ତ କରିଛି । ନିଜ ଜୀବନରେ ସାହାସ ଅଭାବରୁ ଯାହା କରିପାରି ନ ଥିଲେ ସେ ଯୁଗରେ ପିତୃଭକ୍ତ ଲୋକନାଥ, ଆଜି ପରିବର୍ତ୍ତିତ ପୃଷ୍ଠଭୂମିରେ ତାହା କରିପାରିଛି ତାଙ୍କ ପୁତ୍ର ତ୍ରିବିକ୍ରମ ! ଆପଣାର ଅପୂର୍ଣ୍ଣ ଇଚ୍ଛା ପୂର୍ଣ୍ଣତା ଲାଭ କରିଛି ପୁତ୍ର ତ୍ରିବିକ୍ରମ ମଧ୍ୟରେ ।

ଲୋକନାଥ ମୁକ୍ତିର ଆନନ୍ଦ ଅନୁଭବ କରୁଛନ୍ତି ।

ପୁତ୍ର ମଧ୍ୟରେ ନିଜକୁ ଗଭୀର ଭାବରେ ଅନୁଭବ କରୁଛନ୍ତି ଲୋକନାଥ । ଆଉ ଏକ ବିଷାଦ ଜଡ଼ିତ, ଚିର ଉଜ୍ଜ୍ୱଳ ଅଭୁଲା ସ୍ମୃତିର ଅନୁକ୍ଷଣ ଆଲୋଡ଼ନ ତାଙ୍କର ସ୍ଥିର କେନ୍ଦ୍ରକୁ ବିଚଳିତ କରୁଛି । ସେହି ବନ୍ଦ ଘରର ଘ୍ରୁବିଣ୍ଟାର ଅନୁକ୍ଷଣ ଜାଲୁନିକ ସ୍ପର୍ଶ ସୁଖକୁ ସେ ଅସ୍ୱୀକାର କରିବେ କିପରି ?

ସେଦିନ କିନ୍ତୁ ଅସ୍ୱାଭାବିକ ଭାବରେ ଆପଣାର ଅତି ହାତ ପାହାନ୍ତାରେ ସେହି ବନ୍ଦ ଘରର ଘ୍ରୁବିଣ୍ଟାକୁ ଦେଖି ସେହି ସଂଯମୀ ଧୈର୍ଯ୍ୟବାନ ପିତୃଭକ୍ତ ପୁରୁଷ ଲୋକନାଥ ଏତେ ବିଚଳିତ ହୋଇ ପଡ଼ିଲେ କାହିଁକି ?

ସେହି ସହସାଲବ୍ଧ ପରମ ସଂପଦପ୍ରାପ୍ତିର ଆନନ୍ଦରେ ଜୀବନର ଅପ-ରାହ୍ଣରେ ଗମ୍ଭୀର ସଂଯମୀ ଲୋକନାଥ ଯଦି ଏକ ଅଭାବନୀୟ ଭ୍ରମ କରି ବସନ୍ତି, ତେବେ ତାଙ୍କୁ କ'ଣ କ୍ଷମା ଦିଆଯାଇ ପାରିବ ନାହିଁ ? ? ?

ଠିକ୍ ତ...

କିନ୍ତୁ ସମସ୍ତ ଅନ୍ଧକାରରେ ରହିବା ପରେ ଯଦି ଆଲୋକ ହଠାତ୍ ଜଳି ଉଠେ ତେବେ ଆଖି ଝାପ୍‌ସା ହୋଇ ଯିବନି କି ?? ଆଉ ହଠାତ୍ ଜଳି ଉଠୁଥିବା ଆଲୋକ ମଧ୍ୟରେ ଯଦି ଜୀବନର ପରମ ଓ ଚରମ କ୍ଷଣର ସନ୍ଧାନ ପୁନଃ ଅବିର୍ଭାବ ଘଟେ ତେବେ ?

ଅନ୍ତରରେ ଅନୁକ୍ଷଣ ତରଙ୍ଗ ତୋଳୁଥିବା ଶବ୍ଦ ସମ୍ଭାର ଯଦି ନୂଆ ଚିତ୍ର-ପଟ୍ଟ ରୂପରେ ଧରାଦିଏ ତେବେ କ'ଣ ବିଚଳିତ ହେବେ ନାହିଁ ସ୍ଥିତପ୍ରଜ୍ଞ ଲୋକନାଥ ??

ଅନ୍ଧକାର ସିନେମା ହଲରେ "ଆନ୍ଧ ସିନେମା ।" ବହୁକାଳ ପରେ ଆଜି ଆସିଛନ୍ତି ଲୋକନାଥ ସିନେମା ଦେଖି, ଅବଶ୍ୟ ବିଳମ୍ବରେ । ସିନେମା ଆରମ୍ଭ

ହୋଇ ଯାଇଛୁ । ପଥପ୍ରଦର୍ଶକ ହାତର ଟର୍ଚ୍ଚ ଦେଖି ନାଂଶଦରେ ଆସି କର୍ଣ୍ଣ-ପକ୍ଷଙ୍କ ନର୍ଦ୍ଦେଶିତ ସିଟରେ ବସିଗଲେ ଲୋକନାଥ ! ଚଳଚ୍ଚିତ୍ରରେ ଅପୂର୍ବ ସ୍ମୃତିର ପ୍ରେମଛନ୍ଦ । ତା'ର ଭିତରେ ହଜି ଯାଇଥିବା ଜୀବନର କ୍ଷିଅ ଝର୍ଣ୍ଣିଏ ଧାଇ ନିଜର ଅଜାଣତରେ ବୋଧହୁଏ ଆବେଗରେ ଅତୀତକୁ ଦେଖୁଥିଲେ ଲୋକନାଥ !

ଆଉ ଏତକବେଳେ ଯଦି ହଠାତ୍ ହଲର ଲାଇଟ୍‌ଟା ଜଳି ଉଠେ ମଧ୍ୟାନ୍ତରର ସଙ୍କେତ ଦେଇ, ତେବେ ? ?

ସେ ଉଜ୍ଜ୍ୱଳ ଆଲୋକର ମୁହାଁମୁହିଁ ହେବା କ'ଣ ଏତେ ସହଜ ? କୁମୁଦନୀ ହଠାତ୍ ସେହି ପ୍ରଶ୍ନବାଚୀର ସମ୍ମୁଖୀନ ହେଲେ ? ନା—ସେ ତିର ଉଜ୍ଜ୍ୱଳ ଆଲୋକରେ କୁମୁଦନୀଙ୍କର ଚଷମା କାଚ ଦୋହଲି ଉଠିଲା ! ଶିହରିତ ହୋଇ ଦେଖିଲେ କୁମୁଦନୀ, ବହୁ ଯୁଗ ପରେ ଜୀବନର ଦ୍ୱିତୀୟବାର ସିନେମାହଲରେ ତାଙ୍କ ଧାଖ ଚୌକିରେ ବସିଛନ୍ତି ସିଏ ସିଏ ଲୋକନାଥ ।

ସିଏ କୁମୁଦନୀର ସ୍ୱାମୀ······

କୁମୁଦନୀର ସନ୍ତାନର ପିତା···

ସେ ପ୍ରଖର ହୃଷ୍ଟପରେ କୁମୁଦନୀର ଚଷମାକାଚ ସବୁ ଫାଟି ଆଖିରୁ ରକ୍ତ ଝରିଲା ପରି ବୋଧ ହେଲା ।

ଅପୂର୍ବ ଆନନ୍ଦ ଯନ୍ତ୍ରଣା ମିଶ୍ରିତ ଅନାସ୍ୱାଦିତ ଏକ ବିଚିତ୍ର ଅନୁଭୂତିର କଂପନରେ ସେ ଗୋଟାପଣେ ଥରିଥିଲେ । ଅସୀମ-ସାହସିନୀ ନିର୍ଭୀକା, ଅଧ୍ୟାପିକା କୁମୁଦନୀ ହଠାତ୍ ଏ ଅଭାବନୀୟ ପରିବେଶରେ ନିଜକୁ ଏକାନ୍ତ ଅସହାୟା ବୋଲି ମନେକଲେ !

ଚଳଚ୍ଚିତ୍ରର କାହାଣୀ ଭିତରୁ ଉଡ଼ି ଯାଉଥିବା ଆପଣା ଜୀବନ କ୍ୟାଲେଣ୍ଡରର ପୃଷ୍ଠା ଗୁଡ଼ିକୁ ପ୍ରାଣପଣେ ଚେଷ୍ଟା କରି ମଧ୍ୟ ସେ ଓଲଟାଇ ଦେଇ ପାରୁ ନଥିଲେ ।

ଦୁଇଟି ଯୁଗ ଅତିବାହିତ ହୋଇ ଯାଇଛୁ ।

ସେହି ଦାଉ ଦାଉ ହୋଇ ଜଳୁଥିବା ହୋମାଗ୍ନି ପ୍ରଥମ ପ୍ରତିଶ୍ରୁତିର ସାକ୍ଷୀର···ସଂସ୍କୃତି ଓ ପରଂପରାର ଚିରନ୍ତନ ବନ୍ଧନର ପ୍ରତୀକ ସେହି ଅସାଡ଼ୁଆ ସୂତା । ଆଉ ସେହି ଦାଉ ଦାଉ ଜଳୁଥିବା ହୋମାଗ୍ନି ପାଖରେ ନକଲି ସୁନା ଗହଣାରେ ସଜ୍ଜିତା, କୁମୁଦନୀର ଦୁର୍ବଳ ହାତଟା ଜଣେ ଅଜଣା ତରୁଣର ହାତ ସହିତ ସ୍ୱେଦନ ଛନ୍ଦି ହୋଇ ଯାଇଥିଲା । ସେ ବଳିଷ୍ଠ ତରୁଣ ଲୋକନାଥ

କୁମୁଦିନୀଙ୍କୁ ଆଶ୍ରା ଦେଇପାରି ନଥିଲେ ଏକଥା ସତ୍ୟ । କିନ୍ତୁ ସେହି ମର୍ମନ୍ତୁଦ ଲଗ୍ନ ଯେ କୁମୁଦିନୀ ଜୀବନର ଅଭୁଲା ପରମ ଲଗ୍ନ ଏକଥା କୁମୁଦିନୀଠାରୁ ଅଧିକ କିଏ ଜାଣେ ??

ଆପଣାର ଗୃହ ଉପରେ ହାତରଖି ଅଧ୍ୟାପିକା ଡକ୍‌ଟର କୁମୁଦିନୀ ମିଶ୍ର କ'ଣ କେବେ ଅସ୍ୱୀକାର କରିପାରିବେ ଏହି ଚିରନ୍ତନ ସତ୍ୟକୁ ଓ ତାଙ୍କର ଏ ଦୀର୍ଘ ବିଡ଼ମ୍ବିତ ଜୀବନର ପରମ ଓ ଚରମ କ୍ଷଣର ଆବିର୍ଭାବ ସେହି କ୍ଷୁଦ୍ର ଜୀବନର କେତୋଟି ମୁହୂର୍ତ୍ତର ପରିସର ମଧ୍ୟରେ ଯେ ସୀମାବଦ୍ଧ ! ହୃଦୟର ନିଭୃତ କୋଠ-ରୀରେ ସେଇ ବଳିଷ୍ଠ ତରୁଣର ଅବିରତ ପଦସ୍ପୃରଣ ଧ୍ୱନିକୁ ସେ ଅସ୍ୱୀକାର କରିବେ କିପରି ?

ହୁଁ...

ଡ଼କ୍ଟର କୁମୁଦିନୀ ମିଶ୍ର ଅଦ୍ୟାବଧି ସେହି ଦୁର୍ବଳତାରୁ ମୁକ୍ତ ପାଇପାରି ନାହାନ୍ତି । କିନ୍ତୁ ସେଦିନ କୁଚକ୍ରୀ ପିତାଙ୍କର ପ୍ରତାରଣାସ୍ଥାନ କାଳିମାକୁ ଲିଭାଇବାକୁ ଯାଇ ଅସୀମ ସାହସିନୀ କୁମୁଦିନୀ ପଛକୁ ଫେରି ଚାହିଁ ନଥିଲେ—ଏ କଥା ଯେ ଏକାନ୍ତ ସତ୍ୟ । ସେ ଫେରି ଆସିଥିଲେ ନିସ୍ତବ୍‌ଧରେ ପାଦ ତଳର ସ୍ନେହ ବାଲିରେ ଆସ୍ଥା ହଜାଇ, ସାହସ ସଞ୍ଚୟ କରି ଖୋଜିବାକୁ ଚାହିଁଥିଲେ ପାଦଥୋଇ ଠିଆ ହେବାପାଇଁ ମୁଠାଏ ମାଟି....

ସମ୍ଭାବନାର ସତସତିକା ମାଟି...

ଆଖି ମେଲି ଦେଖି ନ ଥିଲେ ଆପଣାର ଆତ୍ମଜକୁ, ଯାହାକୁ ଶତ ଅଭାବ ମଧ୍ୟରେ ଦଶମାସ ପେଟରେ ଧରିଥିଲେ କୁମୁଦିନୀ...ନିର୍ବିକମକୁ ତାଙ୍କଠାରୁ ଯୋର କରି କାଢ଼ିନେବା ପରେ ମନକୁ ଦୃଢ଼ କରିଥିଲେ କୁମୁଦିନୀ । ନିଜ ଗୋଡ଼ରେ ସେ ଠିଆ ହେବେ । ଧୂପର ସୁରଭିରେ ସୁରଭିତ ସେହି ସ୍ନିଗ୍ଧମଧୁର ହଜିଲା ଦିନର ଅନୁଭୂତିକୁ ମନ-କୋଠରୀରେ ପୂରାଇ ଦେଇ ସେ ନିଷ୍ଠୁର ହାତରେ କୋଳପ ଦେଇଦେଲେ । ଆଉ ଜାଣି ଜାଣି କୋଳପର ଚାବିଟାକୁ ମଧ୍ୟ ସେ ହଜେଇ ଦେଲେ !

ବନ୍ଦ ହେଇଗଲା ସେ ଅଧ୍ୟାୟ...

ଜୀବନ ବିରାଟ...ବ୍ୟାପକ...ସୀମିତ ନୁହେଁ । ଜୀବନ ପାଠଶାଳା ! ଆଦର୍ଶକୁ ଆଗରେ ରଖି ଆଗେଇବାକୁ ଚେଷ୍ଟା କରିଛନ୍ତି କୁମୁଦିନୀ । ସେ ଚାବିଟାକୁ ହଜେଇ ଦେଇ ନ ଥିଲେ ପିତୃହରା ଗରିବ ଘରର ଝିଅ କୁମୁଦିନୀ ଏତେ ସଂଗ୍ରାମ ଭିତରେ ଏତେବାଟ ଆଗେଇଆସି ପାରିଥାନ୍ତେ ?!?

ରସୁଲକୁଣ୍ଡାର ନୂଆଁଣିଆଁ ମାଟିଘରୁ ଏବେ ସିଏ ଭଞ୍ଜନଗର ହୋଇଛୁ···
ସେଠୁ ସେ ଅସିପାରିଛନ୍ତି ଭଞ୍ଜ ବିହାରର ଓଡ଼ିଆ ବିଭାଗ ପର୍ଯ୍ୟନ୍ତ ?

କିଛି କମ୍ କଣ୍ଟକିତ ଏ ପଥ ତ ନୁହେଁ ?

କେତେ ରକ୍ତାକ୍ତ କ୍ଷତ ଚିହ୍ନ ଏବେ ବି ଦାଉ ଦାଉ ଦିଶୁଛି । ସେଦିନ କିନ୍ତୁ ବହୁକାଳ ପରେ ଅକସ୍ମାତ୍ ଅନୁଭବ କଲେ କୁମୁଦିନୀ ସେ ବନ୍ଦ ଘରର ଚାବିଟା ସେ ଜମା ହଜେଇ ଦେଇପାରି ନାହାନ୍ତି !

ଅତୀତକୁ ମୋଡ଼ିମାଡ଼ି ଝାଡ଼ିଝୁଡ଼ି ଓଳେଇ ପୋଛେଇ ଫିଙ୍ଗିଦେଇ ପାରି ନାହାନ୍ତି ।

ତାଙ୍କର ବେପଥୁ ହାତରେ ହଜିଯାଇ ପାରି ନ ଥିବା ଚାବିଟା ଅନୁକ୍ଷଣ ସ୍ପନ୍ଦନ ସୃଷ୍ଟି କରୁଛି ।

ଆଶା ଦୀପ ଜଳୁଛି । ସ୍ନେହ ସଞ୍ଚାର କରୁଛି ଚିତ୍ତରେ ।

ହାତ ବଢ଼େଇବାକୁ ମନ ହାଇଁ ପାଇଁ ହେଉଛି ।

କ'ଣ କରିବେ କୁମୁଦିନୀ ?

ସମସ୍ତ ଶକ୍ତି ଦେଇ ଏ ହଠାତ୍ ଘୋଟି ଆସୁଥିବା ସିନେମା ହଲର ଅନ୍ଧାର ଭିତରେ ସେ ଚାବିଟାକୁ ସେ ଖୁବ୍ ଦୂରକୁ ଫିଙ୍ଗିଦେଇ ପାରିବେନି ???

ପାରିବେ କି ?

ସିନେମା ହଲରେ ନିପଟ ଅନ୍ଧକାର । ମଧ୍ୟାନ୍ତରର ପରିସମାପ୍ତି ଘଟିଛି । ନିସ୍ତବ୍ଧରେ ବହ୍ନିଳତ ଲୋକନାଥ କୁମୁଦିନୀର ଥଣ୍ଡା ହାତର କରୁଣ ଆବେଗ- ବୋଳା ଅପୂର୍ବ ସ୍ପର୍ଶ ଅନୁଭବ କଲେ ବହୁ ଯୁଗ ପରେ । ସମସ୍ତ ପର ଲିକ୍ ଲିକ୍ ଥଣ୍ଡା ଉଷ୍ମ ତାଙ୍କର ବହୁଦିନରୁ ଅଙ୍ଗଜାତ ଯୌବନର ବେପଥୁ ସ୍ପର୍ଶ ଅଜାଣତରେ କେଉଁ ମାୟାବଳରେ ବନ୍ଧି ଆଣିଲା···

କୁମୁଦିନୀ ରୋମାଞ୍ଚିତା ହେଲେ । ଅତୀତର ସେହି ଏକାନ୍ତ କ୍ଷୁଦ୍ର ଜୀବନର କେତୋଟି ଭଙ୍ଗା ଭଙ୍ଗା ଅସଜଡ଼ା କଥାର ତରଙ୍ଗ ଭିତରେ ସେମାନେ ଅକସ୍ମାତ ଚକା ଭଉଁରୀ ଖେଳିବାକୁ ଲାଗିଲେ ।

ଅନ୍ଧକାର ଭିତରେ ମଣିଷ ନିଜକୁ ମେଲାଇ ଦେଇପାରେ, ବୁଡ଼ିବା ପହଁରି ଦେଇପାରେ, ସ୍ମୃତିର ଅତଳ ସାଗରରୁ ମୁକ୍ତା ଆହରଣ କରିପାରେ ···

ଲୋକନାଥର ଚିର ଉପବାସୀ ଅନ୍ତର ଖୋଜୁଥିଲା ସେହି ଅନ୍ଧକାରରୁ ଅମୃତ କଣିକାଏ···ମୁକ୍ତା ।

ଆଉ ନିଶବ୍ଦ କୁମୁଦିନୀ କ'ଣ ପ୍ରାଣ ଖୋଲି ଖୋଲି ନ ଥିଲେ ଏମିତି ଟିକିଏ ସୁଶୀତଳ ଜଳ ବିନ୍ଦୁ ।

କିନ୍ତୁ ଉଜ୍ଜ୍ୱଳ ଆଲୋକରେ ?

ସିନେମା ସରିଗଲା । ସିନେମା ହଲରେ ଆଲୋକ ଜଳି ଉଠିଲା । ହଠାତ୍ ସପ୍ରତିଭ ହୋଇ ଉଠିଲେ ପ୍ରୌଢ଼ ଲୋକନାଥ ବାବୁ ଓ ଅଧ୍ୟାପିକା ଡକ୍ଟର କୁମୁଦିନୀ । ଚଳଚ୍ଚିତ୍ରର ପରିସମାପ୍ତି ପରେ ସିନେମା କର୍ତ୍ତୃପକ୍ଷଙ୍କ ନିର୍ଦ୍ଦେଶିତ ପାଖାପାଖି ଦୁଇଟି ଚୌକି ଛାଡ଼ି ସେମାନେ ସଚେତନ ହୋଇ ଠିଆ ହେଲେ । ଚଷମା କାଢ଼ି ଦୁହେଁ ଆଖି ପୋଛିଲେ । ହଠାତ୍ ସେ ଜନଗହଳି ମଧ୍ୟରେ ସମସ୍ତ ଶକ୍ତି ସଞ୍ଚୟ କରି ନୂଆ ହୋଇ ଶ୍ୱଶୁର ହୋଇଥିବା ଗମ୍ଭୀର ଲୋକନାଥ ଗୋଟାଏ ଏକାନ୍ତ ଦୁଃସାହସିକ କର୍ମ କରି ବସିଲେ । ସେହି ଗହଳି ଭିତରେ କୁମୁଦିନୀଙ୍କ ହାତରେ ଗଭୀର ଚାପଦେଇ ସେ ହୁଏତ ନିସ୍ତବ୍ଧରେ କହୁଥିଲେ ଗୋଟିଏ କଥା "ଆମେ କ'ଣ ଆଉ ଫେରିବାନି ସେ ହଜିଲା ଦିନକୁ ??'

ଆଉ କୁମୁଦିନୀଙ୍କର ଅନ୍ତରରେ ସେହି ସ୍ୱର କ'ଣ ତରଙ୍ଗ ତୋଳୁ ନ ଥିଲା ?!?



# କବଚ

## ନରେନ୍ଦ୍ର କୃଷ୍ଣ ଧଳ

ଖେଳ ଚାଲିଛି । ରାଜ୍ୟର ଦୁଇଟି ଝାଣୁଆଦଳ ବକ୍ସି ଜଗବନ୍ଧୁ ଆଉ ଷ୍ଟାର କ୍ଲବ ମଧ୍ୟରେ ଚୂଡ଼ାନ୍ତ ଫୁଟବଲ ଖେଳ ଚାଲିଛି । ବକ୍ସି ଜଗବନ୍ଧୁ କ୍ଲବର ଫରୱାର୍ଡ଼ ଖେଳାଳୀ ଦୁର୍ବଳ କିନ୍ତୁ ତାଙ୍କର ଗୋଲକିପର ଜନ୍ମେଜୟ ଲୌହ କବାଟଭଳି ଗୋଲ ପୋଷ୍ଟରେ ବିରାଜମାନ । ଅପର ପକ୍ଷରେ ଷ୍ଟାରକ୍ଲବର ଉଭୟ ଫରୱାର୍ଡ ଓ ରକ୍ଷଣଭାଗ ଖେଳାଳୀମାନେ ଅତ୍ୟନ୍ତ ଦୃଢ଼ ଆଉ ଶକ୍ତିଶାଳୀ ।

ସମଗ୍ର ଷ୍ଟାଡ଼ିୟମ୍ ଜନାରଣ୍ୟ । ଷ୍ଟାଡ଼ିୟମର ବିଭିନ୍ନ ଗ୍ୟାଲେରୀରେ ଉଭୟ କ୍ଲବର ସମର୍ଥକ ଭର୍ତ୍ତି ହୋଇ ଯାଇଛନ୍ତି । ଉଭୟ ଦଳର ସମର୍ଥକମାନେ ନିଜ ଦଳକୁ ଉତ୍ସାହିତ କରୁଛନ୍ତି । ସେମାନଙ୍କ ଉତ୍ସାହପୂର୍ଣ୍ଣ ବାଣୀ ସମଗ୍ର ଷ୍ଟାଡ଼ିୟମର ଆକାଶକୁ ପ୍ରକମ୍ପିତ କରୁଛି । ଖେଳ ଚାଲିଛି । ଅତି ତୀବ୍ରଗତିରେ । ଅପ୍ - ଡାଉନ୍ ଖେଳ । ମାତ୍ର ଉଭୟ ପକ୍ଷ କେହି କାହାକୁ ଗୋଲ ଦେବାରେ ସମର୍ଥ ହୋଇପାରୁ ନାହାନ୍ତି । ପରସ୍ପରକୁ ଉଭୟ ଦଳ ଆକ୍ରମଣ କରୁଥା'ନ୍ତି । ଅବଶ୍ୟ ଷ୍ଟାରକ୍ଲବର ଆକ୍ରମଣ ବକ୍ସି ଜଗବନ୍ଧୁ ଦଳ ଅପେକ୍ଷା ଅଧିକ ତୀବ୍ର । ମାତ୍ର ବକ୍ସି ଜଗବନ୍ଧୁ ଦଳର ଆଇରନ ଗୋଲକିପର ଜନ୍ମେଜୟ ଷ୍ଟାର କ୍ଲବର ସମସ୍ତ ଆକ୍ରମଣକୁ ପଣ୍ଡ କରିଦେଉଛନ୍ତି । ପ୍ରତି ମୁହୂର୍ତ୍ତରେ ଖେଳର ଗତି ବଦଳି ଯାଉଛି । ମାତ୍ର ଗୋଲ ହୋଇପାରୁନି । ବକ୍ସି ଜଗବନ୍ଧୁ କ୍ଲବର ଫରୱାର୍ଡ ଖେଳାଳୀମାନେ ଷ୍ଟାର କ୍ଲବର ଫରୱାର୍ଡ଼ ଖେଳାଳୀଙ୍କ ଭଳି ଆକ୍ରମଣ ରଚନା କରିବାରେ ସକ୍ଷମ ହୋଇ ପାରୁନାହାନ୍ତି । ତେବେ ମଝିରେ ମଝିରେ ସେମାନଙ୍କ ଅତର୍କିତ ଆକ୍ରମଣ ଷ୍ଟାରକ୍ଲବ ରକ୍ଷଣ ଭାଗକୁ ଅସ୍ତବ୍ୟସ୍ତ କରି ଦେଉଛି । ଏହି ଖେଳ ଉଭୟ ଦଳ ମଧ୍ୟରେ ଏକ ସମ୍ମାନଜନକ ଆହ୍ୱାନର ପରିସ୍ଥିତି ସୃଷ୍ଟି କରିଛି । ଏହି ଖେଳର ଫଳାଫଳ

ଉପରେ ଯେ କୌଣସି ଦଳ ରାଜ୍ୟର ଶ୍ରେଷ୍ଠ ଦଳର ଆଖ୍ୟା ଅର୍ଜନ କରିବ ।
ବନ୍ଦି ଜଗବନ୍ଧୁ ଦଳର ଅଧିନାୟକ ଜନ୍ମେଜୟ । ଗତ ସାତବର୍ଷ ଧରି ଏହି କ୍ଲବ
ସହ ସେ ଘନିଷ୍ଠ । ଜୀବନରେ ତାର ସବୁଠାରୁ ବଡ଼ ଆକର୍ଷଣ ହେଉଛି ବନ୍ଦି
ଜଗବନ୍ଧୁ କ୍ଲବ୍ ଆଉ ଫୁଟ୍‌ବଲ । ପ୍ରାଣ ଦେଇ ଭଲପାଏ ସେ କ୍ଲବକୁ ।

ଜନ୍ମେଜୟ ମୁନ୍‌ସିପାଲିଟି ଅଫିସର କିରାଣୀ । ଘରେ ତାର ବହୁ
ସମସ୍ୟା । ବିଧବା ମା', ଭଉଣୀ ଆଉ କଲେଜରେ ପଢୁଥିବା ଭାଇ । ସମସ୍ତଙ୍କ
ଭରଣ ପୋଷଣ ଭାର ତା ଉପରେ । ଅନେକ ସମୟରେ ତାର ମନେ ହୁଏ ଏଭଳି
ଘରେ ବଡ଼ ପୁଅ ହୋଇ ଜନ୍ମହେବା ପୂର୍ବଜନ୍ମ ପାପର ଫଳ । ତେବେ ତାର ସେ
ଅନୁଶୋଚନା କ୍ଷଣକ ପାଇଁ । ଜନ୍ମେଜୟ ତା ଭାଇ-ଭଉଣୀଙ୍କୁ ଭଲପାଏ । ଜ୍ୟେଷ୍ଠ
ଭଉଣୀ ସୁମିତ୍ରାକୁ ସେ ଗଭୀର ଭାବେ ସ୍ନେହ କରେ । ସୁମିତ୍ରା ବି ଏ. ଶ୍ରେଣୀର
ଛାତ୍ରୀ । ଦେଖିବାକୁ ଖୁବ୍ ସୁନ୍ଦର । କଥାରେ ଯାହା ଅଛି ଗୋଟିଏ ଗୁହାଳରେ
ଗଢ଼ା, ସେହିଭଳି । ଭାଇକୁ ସୁମିତ୍ରା ସଦାବେଳେ ମୁଣ୍ଡରେ ବସାଇଥାଏ । ଭାଇର
ଗୌରବରେ ସେ ଗରବିଣୀ । ଜନ୍ମେଜୟ ମୁନ୍‌ସିପାଲଟିର ଅଧସ୍ତନ କିରାଣୀ ହେଲେ
ମଧ୍ୟ ଫୁଟବଲ ଖେଳାଳି ଭାବେ ସେ ପରିଚିତ । ତା ଭଳି ଗୋଲକିପର ଖୁବ୍
କମ ଅଛନ୍ତି । ସର୍ବଭାରତୀୟ ଦଳରେ ଖେଳିବାର ଯୋଗ୍ୟତା ଆଉ ଦକ୍ଷତା ତାର
ଅଛି । କିନ୍ତୁ ଆଜି ଦେଶରେ ଖେଳ ହେଉ, ନାଚ ହେଉ ବା ଯାହା କିଛି ହେଉ
ଯୋଗ୍ୟତା କେବଳ ମାପକାଠି ନୁହେଁ । ଯୋଗ୍ୟତା ଉପରେ ଏକ ବିଷୟ ଅଛି ।
ତା ହେଲା ଜଣେ ପ୍ରଭାବଶାଳୀ ବ୍ୟକ୍ତିଙ୍କର ସୁପାରିଶ । ସୁପାରିଶ ଯୋଗ୍ୟତା ମୂଳ
ଯୋଗ୍ୟତା ଅପେକ୍ଷା ଅଧିକ ନମ୍ବର ପାଏ । ତେଣୁ ଜନ୍ମେଜୟର ମୂଳ ଯୋଗ୍ୟତା ଥିଲେ
ମଧ୍ୟ ସୁପାରିଶ ଯୋଗ୍ୟତା ହାସଲ କରିପାରିନି । ଫଳରେ ସେ ରହିଯାଇଛି ରାଜ୍ୟ
ଭିତରେ । ରାଜ୍ୟ ଦଳରେ ସେ ନିଯୁକ୍ତ ଗୋଲକିପର । ଦୁଇ ଥରର
କଲିକତାର ଦୁଇଟି ବିଖ୍ୟାତ ଫୁଟବଲ ଦଳ ତାକୁ ଅଫର ଦେଇଥିଲେ ସେମାନଙ୍କ
ଦଳରେ ଖେଳିବାପାଇଁ । କିନ୍ତୁ ଘରର ଅସୁବିଧା ଦେଖି ସେ ବିନୟର ସହ ତାହା
ଗ୍ରହଣ କରିପାରିନି । ଯଦି ସେ କଲିକତା ଯାଇ ଖେଳିଥାନ୍ତା ତେବେ ଆଜି
ଭାରତୀୟ ଦଳରେ ନିଶ୍ଚିତ ଭାବେ ଗୋଲକିପର ପୋଷ୍ଟ ଏକଚାଟିଆ କରି
ରଖିଥା'ନ୍ତା । ଏହା ବହୁଲୋକଙ୍କ ମତ । ଅନେକ ତାକୁ ଏକଥା କହିଛନ୍ତି । କିନ୍ତୁ
ମୁନସିପାଲିଟିର ମାସିକିଆ ଦରମା ମୋହକୁ ଛାଡ଼ି ସେ ଯାଇ ପାରିନି । ଯାଇ
ପାରିନି, ବୋଉ, ସୁମିତ୍ରା ଆଉ ସାନଭାଇ ଅଞ୍ଜନକୁ ଛାଡ଼ି ।

ଜନ୍ମେଜୟ ତାର ସାତ ବର୍ଷର ଖେଳାଳି ଜୀବନରେ ଅଜସ୍ର ପ୍ରଶଂସା
ପାଇଛି, ଅଜସ୍ର ସ୍ତାବକ ତା'ର । ଅଜସ୍ର କପ, ସିଲ୍‌ଡର ଅଧିକାରୀ । ଏହା ବି

ତାର ସବୁଠାରୁ ସଫଳତାର ମାପକାଠି । ଜନପ୍ରିୟତାର ଥର୍ମୋମିଟର । କିନ୍ତୁ ଏହି ସଫଳତା କେତେଦିନ ପାଇଁ ? ଏଇ ଜନପ୍ରିୟତା କେତେଦିନ ପାଇଁ ? ଯେଉଁଦିନ ତାର ଦେହରୁ ବଳ ଖସିବ ସେଦିନ ସମସ୍ତେ ତାକୁ ଭୁଲିଯିବେ— ତାର ଯେଉଁ ସ୍ତାବକ ସେମାନେ ସେମାନଙ୍କର ମତ ବଦଳାଇବେ । ସେତେବେଳେ ତାର କେବଳ ପରିଚୟ ହେବ ମୁନିସିପାଲିଟି କିରାଣୀ । ଦୁଃଖ, ଦୈନ୍ୟ ଆଉ ଅଭାବଗ୍ରସ୍ତ ଜୀବନ । ସେ ସେଦିନ ନିଜକୁ ସେଥିରେ ଖାପ୍ ଖୁଆଇ ପାରିବ ତ ?

ସୁମିତାର ବାହାଘର ପ୍ରସ୍ତାବ ଆସିଛି । ବୋଉର ଇଚ୍ଛା ଶୀଘ୍ର ବାହା-କରାଇ ଦେବାକୁ । ପାତ୍ର ସରକାରୀ କଲେଜରେ ଅଧ୍ୟାପକ । କେବଳ ସୁମିତାର ରୂପ ଦେଖି ସେମାନେ ରାଜି ହୋଇଛନ୍ତି, ଜାତକ ଖୁବ୍ ଭଲ ମିଳିଛି । ଏ ମାସରେ ବାହାଘର କରିଦେବାକୁ ପାତ୍ର ପକ୍ଷର ଇଚ୍ଛା । କାରଣ ଏ ମାସ ପରେ ଆଉ ତେର ମାସ ଭିତରେ ବାହାଘର ତିଥି ନାହିଁ । ବୋଉ ମଧ୍ୟ ଅତି ଆଗ୍ରହୀ । କାରଣ ସୁମିତାକୁ କୋଡ଼ିଏ ପୂରିବ । ଝିଅ ଝିଅ ବେଶୀଦିନ ଧରି ରଖିବା ସମ୍ଭବ ନୁହେଁ । ତା ପରେ ତାଙ୍କ ପକ୍ଷରେ ଏଭଳି ପାତ୍ର ପାଇବା ମଧ୍ୟ ସହଜ ନୁହେଁ । ବୋଉର ଯାହା ଗହଣା ଅଛି ସେଥିରେ ଗହଣା ବ୍ୟବସ୍ଥା ଚଳିଯିବ ଦେଇ ହେବ । ମାତ୍ର ଅନ୍ୟ ଖର୍ଚ୍ଚ ପାଇଁ ଟଙ୍କା ଅନ୍ତତଃ ପନ୍ଦର ହଜାର ଦରକାର । ପାତ୍ରର ବାପା ଗୋଟିଏ ସ୍କୁଟର ଦାଣ୍ଡ ସୁନ୍ଦର ପାଇଁ ଦେବା ଉଚିତ ବୋଲି ପରୋକ୍ଷରେ ସୂଚାଇ ଦେଇଛନ୍ତି । ଯଦିଓ ମୂଳରୁ 'ଆମର କିଛି ଦାବୀ ନାହିଁ' ବୋଲି କହି-ଆସିଛନ୍ତି । ଜନ୍ମେଜୟ ନିଜ ସ୍ଥିତିକୁ ଏଇଠି ବିଶ୍ଳେଷଣ କରେ । ହଜାର ହଜାର ଲୋକଙ୍କର ପ୍ରଶଂସା କଳରବରେ ବୁଡ଼ିହୋଇ ରହିଥିବା ଜନ୍ମେଜୟ କିନ୍ତୁ ଆଜି କେତେ ନିଃସ୍ୱ । ତାର ଅତି ଆଦରର ଶ୍ରେଷ୍ଠ ଭଉଣୀକୁ ସେ ଦାଣ୍ଡ ସୁନ୍ଦର କରି ବାହା ଦେବାରେ କିପରି ଅସହାୟ । ବହୁ କଷ୍ଟରେ ସେ ମାତ୍ର ପାଞ୍ଚହଜାର ଟଙ୍କା ଯୋଗାଡ଼ କରିଛି । ମାତ୍ର ଆଉ ଦଶହଜାର ଟଙ୍କା କେଉଁଠୁ ଆଣିବ ତାର ବୁଦ୍ଧି ଦେଖାଯାଉ ନାହିଁ ।

ଖେଳ ଚାଲିଛି । ଅବସ୍ମିମ ଗତିରେ । ପ୍ରତି ମିନିଟ୍‌ରେ ବଲ୍‌ଟି ଏ ପଟୁ ସେପଟକୁ ଆଉ ସେପଟୁ ଏପଟକୁ ଗଡ଼ୁଛି । ଷ୍ଟାର କ୍ଲବର କର୍ମକର୍ତ୍ତାମାନେ ସହରର ଜଣାଶୁଣା ବିତ୍ତବାନ ପୁରୁଷ । ଲକ୍ଷ ଲକ୍ଷ କଳା ଟଙ୍କାର ମାଲିକ । କ୍ଲବର ପ୍ରେସିଡେଣ୍ଟ ପି. କେ. ଚୌଧୁରୀ । ରାଜ୍ୟର ଜଣେ ଜଣାଶୁଣା ଧନ କୁବେର । ସେ ପି. କେ. ନାମରେ ପରିଚିତ । ଚୌଧୁରୀ ଶବ୍ଦ ଆଉ ତାଙ୍କ ନାମ ପଛରେ କେହି

ବ୍ୟବହାର କରନ୍ତି ନା । ପି. କେ. ଫୁଟ୍‌ବଲ ଖେଳପାଇଁ ଖୁବ୍ ଆଗ୍ରହୀ । ତାଙ୍କର ଉଦ୍ୟମରେ ଗଢ଼ା ଷ୍ଟାର କ୍ଲବ । ବହୁ ଫୁଟ୍‌ବଲ ଷ୍ଟାରଙ୍କୁ ପି. କେ. କିଣି ନେଇଛନ୍ତି ତାଙ୍କ ଦଳକୁ । ତାଙ୍କର କେବଳ ଦରକାର ଜନ୍ମେଜୟ । ଜନ୍ମେଜୟ ଆସିଲେ ତାଙ୍କ ଦଳ ସମଗ୍ର ରାଜ୍ୟରେ ଅପ୍ରତିଦ୍ୱନ୍ଦୀ ହୋଇଉଠିବ । ଯେ କୌଣସି ମୂଲ୍ୟରେ ସେ ଜନ୍ମେଜୟଙ୍କୁ ପାଇବାକୁ ଇଚ୍ଛୁକ । ଥରେ-ଦୁଥର ତାଙ୍କ ପ୍ରସ୍ତାବ ଜନ୍ମେଜୟ କାନଂକୁ ଯାଇଛି । କିନ୍ତୁ ବକ୍‌ସି ଜଗବନ୍ଧୁ ଦଳର ଅଧିନାୟକ ଆଉ ମୁଖ୍ୟ ସ୍ତମ୍ଭ ଜନ୍ମେଜୟ ତାକୁ ହସରେ ଉଡ଼ାଇ ଦେଇଛି । କେବଳ ଉତ୍ତର ଦେଇଛି "ପି. କେ. ଙ୍କ କହିଦେବ ଜନ୍ମେଜୟ ଦୋକାନରେ ସଜାହୋଇ ରହିଥିବା ଜିନିଷ ନୁହେଁ । ଜନ୍ମେଜୟ ଖେଳାଳୀ, କିନ୍ତୁ ଖେଳନା ନୁହେଁ ।" ପି. କେ. ଶୁଣିଛନ୍ତି । ଉପରେ ସାମାନ୍ୟ ହସିଲେ ମଧ୍ୟ ଅନ୍ତର ଭିତରେ ତାଙ୍କର ଜିଦ୍ ବଢ଼ିଛି । ପି. କେ. ପୋଖତ୍ ବ୍ୟବସାୟୀ । ଲୋକଙ୍କ ସାଇକୋଲୋଜି ଷ୍ଟଡ଼ି କରିବାରେ ଧୁରନ୍ଧର ।

ଖେଳ ଚାଲିଛି । ଷ୍ଟାର କ୍ଲବର ଆକ୍ରମଣ ବୃଦ୍ଧି ପାଇଛି । ପ୍ରତି ମୁହୂର୍ତ୍ତରେ ବକ୍‌ସି ଜଗବନ୍ଧୁ ଗୋଲ ପୋଷ୍ଟ ଉପରେ ବଲ୍ ପଡ଼ୁଛି । ମାତ୍ର ଆଇରନ୍ ଗୋଲ-କିପର ଜନ୍ମେଜୟ ସମଗ୍ର ଗୋଲ ପୋଷ୍ଟକୁ ଆବୋରି ଠିଆ ହୋଇଛି । ପି. କେ. ଗମ୍ଭୀରଭାବେ ନିରୀକ୍ଷଣ କରୁଥିଲେ ଜନ୍ମେଜୟଙ୍କୁ । ଏହି ଖେଳ ଶେଷ ହେବାକୁ ଆଉ ମାତ୍ର ୨।୩ ମିନିଟ୍ ଅଛି । ହଠାତ୍ ଷ୍ଟାର କ୍ଲବର ଲେଫ୍‌ଟଇନ୍ ବ୍ୟାକ୍ ଏରିଆ ବାହାରେ ବଲ୍ ପାଇ ସେଣ୍ଟର କରିଛନ୍ତି ରାଇଟ୍ ଇନ୍‌କୁ, ରାଇଟ୍ ଇନ୍ ପୋଜିସନରେ ଖେଳୁଥିଲେ ସଞ୍ଜୟ । ରାଜ୍ୟ ଦଳର ଖେଳାଳୀ ଆଉ କୌଶଳୀ ଷ୍ଟୋରର । ସମସ୍ତେ ମନେ କଲେ ଏଥର ଗୋଲ ନିଶ୍ଚିତ । ସଞ୍ଜୟ ଚମତ୍କାରଭାବେ ଗୋଲ ପୋଷ୍ଟର ବାମ କୋଣକୁ ଲକ୍ଷ୍ୟକରି ଏକ ତୀବ୍ର ସଟ୍ ମାରିଲେ । ସଦା ସତର୍କ ଜନ୍ମେଜୟ ଏକ ଫ୍ଲାଇଂ ଡାଇଭ୍ ମାରି ବଲଟିକୁ ଶୂନ୍ୟରେ ଧରି ତଳେ ପଡ଼ିଲେ । ସମଗ୍ର ଷ୍ଟାଡ଼ିୟମ୍ କରତାଳି ଧ୍ୱନିରେ ମୁଖରିତ ହେଲା । ଖେଳ ଶେଷ ହେଲା—'ଡ୍ର'ରେ । ଦୁଇଦିନ ପରେ ମ୍ୟାଚ୍ ପୁଣି ହେବ ବୋଲି ଘୋଷଣା କରାଗଲା ।

ପି କେ. ଖେଳ ଦେଖୁଥିଲେ । ତାଙ୍କର ମନେ ହେଲା ଜନ୍ମେଜୟ ସହ ତାଙ୍କ ଦଳର ଏଗାର ଜଣ ଯାକ ଖେଳାଳୀ କେବଳ ଖେଳୁଥିଲେ । ବକ୍‌ସି ଜଗବନ୍ଧୁକୁ କେବଳ ଜନ୍ମେଜୟ ହିଁ ଆଜି ରକ୍ଷାକଲା । ଜନ୍ମେଜୟ ହେଉଛି ବକ୍‌ସି ଜଗବନ୍ଧୁ ଦଳର ରକ୍ଷା କବଚ ଆଉ ଟ୍ରମ୍ପକାର୍ଡ଼ । ପି. କେ. ମନେ ମନେ କିଛି ଚିନ୍ତାକଲେ । ଧୀରେ ଧୀରେ ଉଠି ଘରକୁ ଗଲେ । ମନରେ ତାଙ୍କର ଜନ୍ମେଜୟ

ପ୍ରତି ଶ୍ରଦ୍ଧା ଆସିଲା । ତାର ନିଷ୍ଠା, ତାର ଅଧ୍ୟବସାୟ ତାକୁ ଆଜିର ସମ୍ମାନର ଅଧିକାରୀ କରିଛି ବୋଲି ତାଙ୍କର ମନେ ହେଲା । ସେ ଜନ୍ମେଜୟ ନିକଟରେ ହାରି ଯାଇଛନ୍ତି । ମାତ୍ର ପୋଖତ ବଣିକ ପି. କେ. ସଦ୍ଗୁଣରେ ହାରିଯିବା ଲୋକ ନୁହନ୍ତି । ବହୁ କୌଶଳର ନାୟକ ବହୁ ପରୋକ୍ଷ ସମରର ବିଜେତା ପି. କେ. ତାଙ୍କର ଶେଷ ଅସ୍ତ୍ର ଛାଡ଼ିବାକୁ ସ୍ଥିର କଲେ ।

ଖେଳ ପରେ ଜନ୍ମେଜୟଙ୍କୁ ତାର ପ୍ରଶଂସକମାନେ ଘେରିଗଲେ । ତାଙ୍କ ଭିତରେ ବହୁ ଆଭିଜାତ ପରିବାରର ସନ୍ତାନ ଆଉ ବଡ଼ ବଡ଼ ଅଫିସରଙ୍କ ପୁଅ ମଧ୍ୟ ଅଛନ୍ତି । ଜନ୍ମେଜୟଙ୍କୁ କାନ୍ଧରେ ବସାଇ ପଡ଼ିଆସାରା ଘୂରି ବୁଲିଲେ । ଜନ୍ମେଜୟ କ୍ଷଣକ ପାଇଁ ଭୁଲିଗଲା ସେ ମ୍ୟୁନିସିପାଲିଟି ଅଫିସର ଜଣେ ଅଧସ୍ତନ କିରାଣୀ । ତାର ମନେହେଲା ଏ ସମ୍ମାନ ଲକ୍ଷେଟଙ୍କା ଅପେକ୍ଷା ଅଧିକ ।

ଘରକୁ ଫେରି ଜନ୍ମେଜୟ ସୁମିତ୍ରାକୁ ଦେଖି ତାର ବାସ୍ତବ ଜୀବନ ଭିତରକୁ ଫେରି ଆସିଲା । ଘରେ ତାର କୃତିତ୍ୱ ସାନଭାଇ ଅନ୍ତ୍ରିକ ଆସି ବିସ୍ତୃତଭାବେ ବର୍ଣ୍ଣନା କରିଛି । ସୁମିତ୍ରା ଭାଇକୁ ଦେଖି ତା ହାତଧରି କହିଲା "ଭାଇ, ଆଜି ମୁଁ ତୁମକୁ ପାଏସ୍ ରାନ୍ଧି ଖୁଆଇବି ।" ଜନ୍ମେଜୟ ହସି ହସି କହିଲା "କିରେ ପାଗଲି, କ'ଣ ହୋଇଛି ?" "ବାଃ, କ'ଣ ହୋଇଛି ତମେ ଜାଣିନ । ଅନ୍ତ୍ରୁ ଆଉ ତା ସାଙ୍ଗ ଆସି ସବୁ କଥା ଆମକୁ କହିଛନ୍ତି । ବୋଉ ତ ଏ କଥା ଶୁଣି ବାପାଙ୍କ ଫଟୋ ନିକଟରେ ଠିଆ ହୋଇ କାନ୍ଦୁଥିଲା । କହିଲା ବାପା ଥିଲେ ଆଜି କେଡ଼େ ଖୁସି ହେଉଥା'ନ୍ତେ ।"

ଜନ୍ମେଜୟ କ୍ଷଣକପାଇଁ ଚୁପ୍ ହୋଇ ରହିଗଲା । ପରେ ଧୀରେ ଧୀରେ ଯାଇ ଗୋଡ ଧୋଇ ଭିତର ବାରଣ୍ଡାରେ ବସିଲା । ସୁମିତ୍ରା ଚାହାକରି ଆଣି ଭାଇକୁ ଦେଲା । ଚାହା ପିଇବାବେଳେ ବୋଉ ଆସି କହିଲେ "ସୁମିତ୍ରାର ବର ଘର ଲୋକେ ଆସି କଥାବାର୍ତ୍ତା କରି ଯାଇଛନ୍ତି । ଏ ମାସ ଶେଷତଥି ଅର୍ଥାତ୍ ୨୭ ତାରିଖରେ ବାହାଘର କରିବାକୁ ତାଙ୍କର ଇଚ୍ଛା । ଆଜି ୧୫ ତାରିଖ ହେଲା । କଣ କରିବା କଥା କହ ? ଏଭଳି ଘର ଛାଡ଼ିଲେ ଆମେ ଆଉ ସୁମିପାଇଁ ଭଲ ଘର ପାଇବା କଷ୍ଟହେବ । ତା ଛଡ଼ା ତେରମାସ ପାଇଁ ବାହାଘର ତିଥି ନାହିଁ ।" ଜନ୍ମେଜୟ କଣ କହିବ ଠିକ୍ କରି ପାରିଲା ନି । ସୁମି' ମୁହଁକୁ ଚାହିଁଲେ ମନରେ ତାର ଅମାପ ଦୁଃଖ ଆସୁଛି । ପାତ୍ରଟି ଦେଖିବାକୁ ସୁନ୍ଦର । ଗୋଟିଏ ପୁଅ । ଚଳନପକ୍ଷ ଘର । ପୁଅ ନିଜେ ସରକାରୀ କଲେଜରେ ଲେକ୍‌ଚରର । ବୋଉ ଠିକ୍ କଥା କହୁଛି । ଏଭଳି ପାତ୍ର ଛାଡ଼ିଲେ ଆଉ ମିଳିବା କଷ୍ଟ । ମୁଣ୍ଡରେ ତାର ଅସଂଖ୍ୟ ଚିନ୍ତାଳିଆ ବିଛା କାମୁଡ଼ିଲା । କେଉଁଠୁ ଟଙ୍କା ଆଣିବ ବୁଝିପାରୁନି । ବହୁ

କଷ୍ଟରେ ପାଞ୍ଚ ହଜାର ସଂଗ୍ରହ କରିଛୁ । ଆଉ ଅତି କମ୍‌ରେ ଦଶ ହଜାର ଟଙ୍କା ଆବଶ୍ୟକ । ବୋଉକୁ କହିଲି 'ଦେଖିବା—କେମିତି ହେଲେ କାମ ଉଠାଇ ଦେବା ।' ଜନ୍ମେଜୟ ମନମାରି ବସିଲି । ଚିନ୍ତାରେ ଗରମ ହୋଇ ଉଠିଲା ତାର ମୁଣ୍ଡ । କିଛି ଠିକ୍ କରି ପାରିଲାନି ।

ରାତି ପ୍ରାୟ ନ'ଟା ହେବ । ଝୁପ୍ ଝୁପ୍ ବର୍ଷା ଆରମ୍ଭ ହୋଇଛି । ସାହିରେ ସମସ୍ତଙ୍କ ଘର କବାଟକିଲା । ହଠାତ୍ ଜନ୍ମେଜୟଙ୍କ କବାଟରେ ଠକ୍ ଠକ୍ ଶବ୍ଦ । ଜନ୍ମେଜୟ କବାଟ ଖୋଲି ଦେଲି । ବାହାରେ ଧୋତି-ପଞ୍ଜାବି ପିନ୍ଧା ଜଣେ ପ୍ରୌଢ଼ । ଜନ୍ମେଜୟଙ୍କୁ ଦେଖି କହିଲେ 'ଆପଣଙ୍କ ସହ ଟିକେ କାମ ଥିଲା ।' ଜନ୍ମେଜୟ ତାଙ୍କୁ ଚାହିଁଲି । ପଚାରିଲି 'ଆପଣ କିଏ ? ମୁଁ ତ ଆପଣଙ୍କୁ କେବେ··· ।

ଭଦ୍ରଲୋକ କହିଲେ "ନା-ନା—ମୋତେ ଆପଣ ଦେଖି ନାହାନ୍ତି । ତେବେ ମୁଁ ଆପଣଙ୍କୁ ଜାଣେ । ଆପଣଙ୍କ ସହ ଟିକେ କଥା ଥିଲା । ଏଇଠି କଥା-ବାର୍ତ୍ତା ହେବା ।"

ଜନ୍ମେଜୟ ଭଦ୍ରଲୋକଙ୍କୁ ବାହାର ଘର ଭିତରେ ବସାଇଲି । ଦୁହେଁ ବସିବା ପରେ ଭଦ୍ରଲୋକ ଏକ ଅଜବ କାଣ୍ଡ କରି ବସିଲେ । ଶହେଟଙ୍କିଆ ଏକ ବଣ୍ଡିଲ ଟେବୁଲ ଉପରେ ଥୋଇ ଜନ୍ମେଜୟଙ୍କୁ ଚାହିଁଲେ ।

ଥରେ ଟଙ୍କାକୁ ଆଉ ଥରେ ଭଦ୍ରଲୋକଙ୍କୁ ଚାହିଁ ଜନ୍ମେଜୟ କହିଲି "ଆପଣ କିଏ ? ଏ ଟଙ୍କା କଣ ?"

ଭଦ୍ରଲୋକ ଧୀରେ କହିଲେ ପି. କେ. ଏ ଟଙ୍କା ପଠାଇଛନ୍ତି । ଆପଣଙ୍କ ଭଉଣୀର ବାହାଘର । କାମରେ ଲାଗିବ ।

—କିନ୍ତୁ କାହିଁକି ? ପି. କେ. ଙ୍କ ସାଙ୍ଗରେ ମୋର ପରିଚୟ ନାହିଁ । ଏ ଟଙ୍କା କାହିଁକି ପଠାଇଛନ୍ତି ?

—ଅବଶ୍ୟ ଗୋଟିଏ ଅନୁରୋଧ ଆପଣଙ୍କୁ କରିଛନ୍ତି ।

—କି ଅନୁରୋଧ ? ଅଧୈର୍ଯ୍ୟ ହୋଇ ଉଠିଲି ଜନ୍ମେଜୟ ।

—ଏମିତି ବଡ଼ କଥା ନୁହେଁ । ସେ କହିଛନ୍ତି ଆସନ୍ତା ଦୁଇଦିନ ପରେ ଯେଉଁ ମ୍ୟାଚ ହେବ ସେଥିରେ ଷ୍ଟାରକ୍ଲବ ଯେପରି ବିଜୟଲାଭ କରେ ।

—ସେମାନେ ଭଲ ଖେଳିଲେ ଜିତିବେ । ମୁଁ କ'ଣ କରିବି ? ତା ଛଡ଼ା ମୁଁ ବକ୍‌ସି ଜଗବନ୍ଧୁ କ୍ଲବର କ୍ୟାପ୍‌ଟେନ୍ । ମୋତେ ଏହା କହିବାର ଅର୍ଥ କ'ଣ ?

—ଆପଣ ଷ୍ଟାରକ୍ଲବ ବିଜୟରେ ଏକମାତ୍ର ବାଧା । ଆପଣ ସେଦିନ ଖେଳିବେନି କିମ୍ବା ଖେଳିଲେ ଗୋଟିଏ ଦୁଇଟି ଗୋଲ ହେବା ପାଇଁ ସୁଯୋଗ ଦେବେ ।

ଜନ୍ମେଜୟ ଏକଥା ଶୁଣି ଠିଆହୋଇ ପଡ଼ିଲା । ରାଗରେ ତାର ସର୍ବାଙ୍ଗ କମ୍ପି ଉଠିଲା । ତାର ମନେହେଲା ସମଗ୍ର ପୃଥିବୀଟା ଘୂରୁଛି । ରାଗରେ ଭଦ୍ରଲୋକଙ୍କୁ କହିଲା, ଆପଣ କେଉଁ ସାହସରେ ଏହା କହୁଛନ୍ତି । ପି. କେ. ଙ୍କୁ କହିବେ ମୁଁ ତାଙ୍କୁ ସମ୍ମାନ କରେ । କିନ୍ତୁ ତାଙ୍କର ଏଇ କଳାକାରବାରକୁ ମୁଁ ଘୃଣାକରେ । ଆପଣ ଟଙ୍କାନେଇ ଶୀଘ୍ର ଚାଲିଯା'ନ୍ତୁ । ନଚେତ ଅସୁବିଧା ପରିସ୍ଥିତି ସୃଷ୍ଟି ହୋଇପାରେ ।

ଭଦ୍ରଲୋକ ଜନ୍ମେଜୟର କଥାରେ ବିଚଳିତ ହେଲେନି । ସାମାନ୍ୟ ହସି କହିଲେ "ଆପଣ ଅଯଥାରେ ରାଗୁଛନ୍ତି । ମୋର ଗୋଟିଏ ଅନୁରୋଧ ଆପଣ ରକ୍ଷାକରିବେ ?"

—କଣ ଆପଣ କହୁଛନ୍ତି ?

—ଆଉ କେତେଦିନ ପରେ ଆପଣଙ୍କ ଭଉଣୀର ବାହାଘର । ଆଜି ଆପଣ ଖେଳରେ ଉଚ୍ଚସ୍ଥାନ ଅଧିକାର କରିଛନ୍ତି । କିନ୍ତୁ ଆପଣଙ୍କୁ ଏଇ ଖେଳ ମେଣ୍ଟାଲ ସାଟିସଫେକ୍‌ସନ ଛଡ଼ା ଆଉ କଣ ଦେଉଛି ? ଆଜି ଆପଣଙ୍କ ଭଉଣୀର ଯେଉଁ ବାହାଘର ସ୍ଥିର ହୋଇଛି ଆପଣଙ୍କ ଖେଳ ସେଥିରେ କଣ ସାହାଯ୍ୟ କରିଛି ? ଆପଣଙ୍କ ଭଉଣୀ ବାହାଘର ପାଇଁ ଅର୍ଥ ଦରକାର । ଅର୍ଥ ନହେଲେ ଭଉଣୀ ବାହାଘର ଭାଙ୍ଗିଯିବ । ଆପଣଙ୍କ ବୋଉ କ'ଣ ଚାହାନ୍ତି ଯେ ଏ ବାହାଘର ନ ହେଉ ? ଆପଣଙ୍କ ଗ୍ରେଟ ଭଉଣୀ ପାଇଁ କ'ଣ ଆପଣଙ୍କ କର୍ତ୍ତବ୍ୟ ନାହିଁ ?

ମୁହୂର୍ତ୍ତକ ପାଇଁ ଜନ୍ମେଜୟ ଚୁପ୍ ହୋଇ ରହିଲା । ମନ ଭିତରଟା ତାର ଆନ୍ଦୋଳିତ ହୋଇ ଉଠିଲା । ଗୋଟିଏ ପଟେ ତାର ଆଦରର ସୁମିତା ଆଉ ଅନ୍ୟ ପଟେ ତାର ପ୍ରିୟ ବନ୍ଧୁ ଜଗବନ୍ଧୁ ଦଳ । ମୁଣ୍ଡଟା ଚାପି ଧରିଲା ।

ଭଦ୍ରଲୋକ ଉଠିଲେ । ଟଙ୍କା ବଣ୍ଡିଲଟା ଜନ୍ମେଜୟ ହାତରେ ଦେଇ କହିଲେ ଆପଣ ଚିନ୍ତାକରନ୍ତୁ । କୌଣସି ଆଳ ଦେଖାଇ ଖେଳିବନି । ସେଥିରେ ଆପଣଙ୍କ ସମ୍ମାନ ହାନି ହେବନି । ଆଉ ଏ ଘଟଣା କେହି ଜାଣିବେନି । ଭଦ୍ରଲୋକ ଚାଲିଗଲେ ।

ଦଶହଜାର ଟଙ୍କାର ସେଇ ବଣ୍ଡିଲଟାକୁ ଧରି ଜନ୍ମେଜୟ ଭାବି ଉଠିଲା । ଆଜି ସାମାନ୍ୟ କେଇଟା ଟଙ୍କା ପାଇଁ ସେ ନିଜକୁ, ନିଜର ବିବେକକୁ ବିକି ଦେଇଛି । ବୋଉ ମୁହଁ, ସୁମିତା ମୁହଁ ତା ଆଖି ଆଗରେ ନାଚି ଉଠିଲା । କିନ୍ତୁ ···କିନ୍ତୁ ତାର ବନ୍ ସି ଜଗବନ୍ଧୁ । ଆଜି ସାମାନ୍ୟ ଟଙ୍କା ବଣ୍ଡିଲ ତାକୁ ବନ୍ସି ଜଗବନ୍ଧୁକୁ ପ୍ରତାରିତ କରିବାର ବାର୍ତ୍ତା ଦେଇଛି । ଇତିହାସରେ ତା ନା ପୁଣି ଥରେ ନୂଆକରି ଲେଖା ହେବ । ବନ୍ସି ଜଗବନ୍ଧୁ ନାମ ନିକଟରେ ଆଧୁନିକ ସମୟର ନୂତନ ଚରଣ ପଟ୍ଟନାୟକ ରୂପରେ ସେ ପରିଚିତ ହେବ । ବନ୍ସି ଜଗବନ୍ଧୁର ସେଇ ଗୌରବମୟ ଐତିହ୍ୟ ଭିତରେ ସେ ଆଉ ନିଜକୁ ସାମିଲ କରି-ପାରିବନି । ସେ ହୋଇଯିବ ଘୃଣ୍ୟ । ସମସ୍ତେ ତାକୁ ଛିଛିକାର କରିବେ । ଜନ୍ମେଜୟ ଆଉ ହିରୋ ନ ହୋଇ ପ୍ରତାରିତ ବନିଯିବ ଭିଲ୍ଲେନ୍ ।

କିନ୍ତୁ ଏଇ ଦଶହଜାର ଟଙ୍କା ତାର ଦରକାର । ତା ନ ହେଲେ ସୁମିତାର ବିବାହ ଅସମ୍ଭବ । ଜନ୍ମେଜୟ ମୁଣ୍ଡ ଗୋଳମାଳ ହୋଇଗଲା । କିଛି ସମୟ ପ୍ରାଣହୀନ ବସି ସେ ଉଠିଲା । ଟଙ୍କା ନେଇ ତା ଆଲମୀରାରେ ରଖିଲା । ଦୁଇଦିନ ଧରି ସେ ଭାବିଛି । ଦେହ ଖରାପ ବାହାନାରେ ଖେଳିବ ନାହିଁ ବୋଲି ସ୍ଥିର କଲା । ଖେଳ ହେବା ଦିନର ପୂର୍ବ ରାତିରେ ପି. କେ.ଙ୍କ ସେଇ ଦୂତ ପୁଣି ଆସିଲେ । ଜନ୍ମେଜୟକୁ ତାର ସିଦ୍ଧାନ୍ତ ସମ୍ପର୍କରେ ପଚାରିଲେ । ଜନ୍ମେଜୟ କିଛି ସମୟ ତାଙ୍କ ମୁହଁକୁ ଚାହିଁ କହିଲା 'ପି. କେ.ଙ୍କୁ କହିବେ ଜନ୍ମେଜୟର ମୃତ୍ୟୁ ଘଟିଛି ।'

ଖେଳ ଆରମ୍ଭ ହେବାକୁ ଅଳ୍ପ ସମୟ ବାକି । ବନ୍ସି ଜଗବନ୍ଧୁ ଦଳର ସମସ୍ତ ଖେଳାଳି ଉତ୍କଣ୍ଠିତ ହୋଇ ଚାହିଁ ରହିଛନ୍ତି ଜନ୍ମେଜୟର ପଥକୁ । ଜନ୍ମେଜୟର ବିଳମ୍ବ ଅସ୍ୱାଭାବିକ । ଏତେ ବିଳମ୍ବ କେବେ ସେ କରିନି । ସମସ୍ତଙ୍କ ମନରେ ଆଶଙ୍କା । ଜନ୍ମେଜୟର ଅନୁପସ୍ଥିତି ସମସ୍ତଙ୍କ ମନୋବଳ ଭାଙ୍ଗି ଦେଉଛି ।

ଏଣେ ଜନ୍ମେଜୟ ପାର୍କ ଭିତରେ ଗଭୀର ମାନସିକ ଦ୍ୱନ୍ଦ୍ୱ ଭିତରେ ଛଟପଟ ହେଉଛି । ମନ ଭିତରେ ତାର କୋହ । ଆଖିରେ ଲୁହ ଆସୁଛି । ତା ପ୍ରିୟଦଳ ବନ୍ସି ଜଗବନ୍ଧୁକୁ ସେ ଆଜି ପଛରୁ ଛୁରୀମାରିବାକୁ ବସିଛି । ଇତିହାସରେ ତାର ନାମ ଆଜିଠୁ ବଦଳିଯିବ । ଭାରତର ସେଇ ଘୃଣ୍ୟ ମିରଜାଫର ଆଉ ଚରଣ ପଟ୍ଟନାୟକଙ୍କ ନାମ ସହ ଆଜିଠୁ ତା ନାମ ଯୋଡ଼ାହେବ । ପ୍ରବଳ ଅସ୍ୱସ୍ତି ଆଉ ଅନୁଶୋଚନା ତାକୁ ତିଳ ତିଳ ଗ୍ରାସ କରିବାକୁ ଲାଗିଲା । ମାତ୍ର ଗୋଟିଏ ମୁହୂର୍ତ୍ତରେ ତାର ମନେ ହେଲା 'ନା—ସେ

ଖେଳିବ—ନା—ସେ ଇତିହାସର କଳା ପରିଚ୍ଛେଦ ମଧ୍ୟରେ ନିଜକୁ ସାମିଲ କରିବନି ।

ଜନ୍ମେଜୟ ଉଠିଲା । ସିଧା ଏକମୁହାଁ ହୋଇ ସାଇକେଲ ଛୁଟାଇଲା ଷ୍ଟାଡିୟମକୁ । ଖେଳ ଆରମ୍ଭ ହେବାକୁ ମାତ୍ର ପାଞ୍ଚ ମିନଟ୍ । ପଡ଼ିଆ ଭିତରେ ପ୍ରବେଶ କଲା ଜନ୍ମେଜୟ । ସମସ୍ତେ ତାକୁ ଘେରିଗଲେ । ସମସ୍ତେ ତାକୁ କୁଣ୍ଢାଇ ପକାଇଲେ । ସମସ୍ତଙ୍କ ଦେହରେ ମନରେ ନୂତନ ସ୍ପନ୍ଦନ । ନୂତନ ଉତ୍ସାହ । ଜନ୍ମେଜୟ ସମସ୍ତଙ୍କୁ ଯଥାଯଥ ପରାମର୍ଶ ଦେଲା । ଖେଳ ଆରମ୍ଭ କରିବା ପାଇଁ ରେଫରି ହୁଇସିଲ୍ ଦେଲେ । ପଡ଼ିଆ ଭିତରେ ପଶିଲା ଜନ୍ମେଜୟ । ଗୋଲ ପୋଷ୍ଟରେ ପହଞ୍ଚି ସମସ୍ତ ଦର୍ଶକମଣ୍ଡଳୀଙ୍କୁ ନମସ୍କାର କଲା । ସବୁଦିଗରୁ ତାଳି । ଗୋଲପୋଷ୍ଟରେ ମୁଣ୍ଡ ଛୁଆଁଇ ଅଦୃଶ୍ୟ ଦେବତାଙ୍କୁ ପ୍ରଣାମ କଲା ।

ପି. କେ. ଜନ୍ମେଜୟଙ୍କୁ ପଡ଼ିଆରେ ଦେଖି ଗମ୍ଭୀର ହୋଇଗଲେ । ଚୁପ୍-ଚାପ ବସି ଖେଳ ଦେଖିଲେ ।

ଖେଳ ଚାଲିଛି । ତୀବ୍ର ପ୍ରତିଦ୍ୱନ୍ଦିତାମୂଳକ ଖେଳ । ଜନ୍ମେଜୟ ଉତ୍ସାହ ଦେଉଛି ତା ଦଳର ଖେଳାଳିଙ୍କୁ । "ଆଟାକ୍ କର । ଡୋଣ୍ଟ ବି ଡିଫେନ୍ସିଭ ।" କେହି କାହାକୁ ଗୋଲ ଦେବାପାଇଁ ସକ୍ଷମ ହେଉ ନାହାନ୍ତି । ପ୍ରଥମାର୍ଦ୍ଧ ଖେଳ ଶେଷ ହେଲା ଗୋଲଶୂନ୍ୟ ଅବସ୍ଥାରେ । ଦ୍ୱିତୀୟାର୍ଦ୍ଧ ଖେଳ ଆରମ୍ଭ ହେଲା । ଷ୍ଟାରକ୍ଲବ ପକ୍ଷରୁ ଆରମ୍ଭ ହେଲା ଘନ ଘନ ଆକ୍ରମଣ । ମାତ୍ର କେଜାଣି କାହିଁକି ସେଦିନ ଜନ୍ମେଜୟ ମନରେ ଅଦ୍ଭୁତ ପରିବର୍ତ୍ତନ । ପ୍ରତି ପଦକ୍ଷେପରେ ତାର ଅସମ୍ଭବ କ୍ଷିପ୍ରତା । ଗୋଲପୋଷ୍ଟକୁ ଯେପରି ଆବୋରି ବସିଛି । ଶୂନ୍ୟକୁ ଡାଇଭ ମାରି ବଲ୍‌କୁ ଧରି ଗଡ଼ାଇ ଦେଉଛି ନିଜ ଦଳ ଖେଳାଳିଙ୍କୁ ।

ତୀବ୍ର ଉତ୍ତେଜନା ପ୍ରକାଶ ପାଇଛି ଖେଳରେ । ଉଭୟ ଦଳ ପ୍ରାଣ ଦେଇ ଖେଳୁଛନ୍ତି । ହଠାତ୍ ବକ୍ସି ଜଗବନ୍ଧୁ ଦଳର ସେଣ୍ଟର ଫରୱାର୍ଡ଼ ଗୋଟିଏ ବଲ ନେଇ ଷ୍ଟାର କ୍ଲବ ବ୍ୟାକ୍ ଏରିଆରେ ପଶିଗଲେ । ଡ୍ରିବଲ୍ କରି ଦୁଇଜଣ ଖେଳାଳୀଙ୍କୁ କଟାଇ ଗୋଲ ପୋଷ୍ଟକୁ ମାରିବା ବେଳେ ଷ୍ଟାର କ୍ଲବର ବ୍ୟାକ୍ ପିରସ୍ତସ ଫାଉଲ କଲେ । ବକ୍ସି ଜଗବନ୍ଧୁ ଦଳର ସେଣ୍ଟର ଫରୱାର୍ଡ଼ ତଳେ ପଡ଼ିଗଲେ । ଯନ୍ତ୍ରଣାରେ ଗୋଡ଼କୁ ଧରି ଚିତ୍କାର କଲେ । ରେଫରି ଷ୍ଟାର କ୍ଲବ ବିରୁଦ୍ଧରେ ପେନାଲ୍ଟି କିକ୍ ଦେଲେ ।

ଜନ୍ମେଜୟ ଦେଖୁଥିଲା । ମନରେ ତୀବ୍ର ଉତ୍ତେଜନା । ହଠାତ୍ ସେ ଆସି ଷ୍ଟାରକ୍ଲବ୍‌ ବ୍ୟାକ୍ ଏରିଆରେ ପହଞ୍ଚିଲା । ସମସ୍ତ ଦର୍ଶକ ଉତ୍ତେଜନାରେ ଠିଆ ହୋଇ ପଡ଼ିଲେ । ଜନ୍ମେଜୟ ପେନାଲ୍ଟି କିକ୍ କରିବ । ସମସ୍ତେ ପୋଜିସନ୍

ନେଲେ । ରେଫର ପେନାଲ୍‌ଟି ହୁଇସିଲ ଦେଲେ । ଜନ୍ମେଜୟର ତୀବ୍ର ସଟ୍‌ ଷ୍ଟାର କ୍ଳବର ଗୋଲପୋଷ୍ଟ ଭିତର ଗେଟ୍‌କୁ ସିଧା ଗ୍ଲଗଲା । ସମଗ୍ର ଷ୍ଟାଡ଼ିୟମରେ ପ୍ରବଳ କରତାଳି । ବଳ୍‌ସି ଜଗବନ୍ଧୁ ଦଳର ଖେଳାଳୀମାନେ ତାଙ୍କର ପ୍ରିୟ ନେତା ପ୍ରିୟ କ୍ୟାପ୍‌ଟେନ ଜନ୍ମେଜୟଙ୍କୁ କାନ୍ଧରେ ବସାଇ ଗୋଲପୋଷ୍ଟ ପର୍ଯ୍ୟନ୍ତ ନେଇ ଆସିଲେ ।

ପରାଜିତ ପି. କେ. ଧୀରେ ଧୀରେ ନିଜ ଆସନ ତ୍ୟାଗ କଲେ । ସେ ଜାଣିଥିଲେ ଷ୍ଟାର କ୍ଳବରେ ଭର୍ତ୍ତି ଷ୍ଟାର ଥିଲେ ମଧ୍ୟ ବଳ୍‌ସି ଜଗବନ୍ଧୁର ଏକମାତ୍ର ଷ୍ଟାର ଜନ୍ମେଜୟ ନିକଟରେ ସମସ୍ତେ ମ୍ଳାନ । ଖେଳର ଫଳାଫଳ ଆଉ ବଦଳିବନି ।

ଖେଳ ସରିଲା । ସେଦିନ ଜନ୍ମେଜୟଙ୍କୁ ଦର୍ଶକମାନେ କାନ୍ଧରେ ବସାଇ ସମଗ୍ର ଷ୍ଟାଡ଼ିୟମ ବୁଲିଲେ । ଅସଂଖ୍ୟ ଆତସବାଜିରେ ଷ୍ଟାଡ଼ିୟମ ଆକାଶ ରଙ୍ଗାୟିତ ହେଲା ।

କ୍ଲାନ୍ତ ଦେହ ନେଇ ଜନ୍ମେଜୟ ଫେରିଲା । ଘରେ ପହଞ୍ଚି ମୁହଁ ଧୋଇ ଗ୍ହା ଖାଇଲା । ରାତି ପ୍ରାୟ ୯ଟା ବେଳକୁ ଦଶହଜାର ଟଙ୍କାର ବଣ୍ଡିଲକୁ ପକେଟରେ ରଖି ଜନ୍ମେଜୟ ପି. କେ. ଙ୍କ ବଙ୍ଗଳାକୁ ଗଲା । ବଙ୍ଗଳା ଫାଟକରେ ଦରଓ୍ୱାନ ହାତରେ ଖବର ପଠାଇଲା । ପି. କେ. ଡାକି ପଠାଇଲେ ।

ଦୀର୍ଘ ଦେହୀ ସୁପୁରୁଷ ପି. କେ. ତାଙ୍କ ଡ୍ରଇଂ ରୁମରେ ବସିଥିଲେ । ଜନ୍ମେଜୟ ଧୀରେ ଧୀରେ ଘର ଭିତରକୁ ଗଲା । ପ୍ରଶାନ୍ତ ବଦନରେ ପି. କେ. କହିଲେ "ଜନ୍ମେଜୟ ଆସ ! ବସ ।" ଜନ୍ମେଜୟ ନମସ୍କାର କଲା । ପି. କେ.ଙ୍କ ନିକଟକୁ ଯାଇ ତାଙ୍କ ଟେବୁଲ ଉପରେ ଦଶ ହଜାର ଟଙ୍କାର ବଣ୍ଡିଲଟା ରଖିଲା । ନତମୁଖ ହୋଇ କହିଲା 'ସାର୍‌—ମୁଁ ଆପଣଙ୍କ କଥା ରଖି ପାରିଲିନି । ଇଚ୍ଛାସତ୍ତ୍ୱେ ଆଉ ଜଣେ ଚରଣ ପଟ୍ଟନାୟକ ବା ମିର୍‌ଜାଫର ସୃଷ୍ଟି କରିବାରେ ମୁଁ ଅକ୍ଷମ ହେଲି । ମତେ କ୍ଷମା କରିବେ ।'

ପି. କେ. ଠିଆହୋଇପଡ଼ି ଜନ୍ମେଜୟଙ୍କୁ ନିରୀକ୍ଷଣ କଲେ । ହଠାତ୍‌ ତାକୁ ଆଲିଙ୍ଗନ କରି କହିଲେ 'ମାଇଁ-ବୟ୍‌-ଆଇ ଆମ୍‌ ରିଏଲି ପ୍ରାଉଡ଼ ଅଫ୍‌ ୟୁ ।' ଯଦି ତୁମେ ଆଜି ଖେଳ ନଥାନ୍ତ ମୁଁ ଜାଣିଥା'ନ୍ତି ଏ ଦେଶରେ ସମସ୍ତ ଖେଳାଳୀ ଏକ ବିକ୍ରୟବସ୍ତୁ । ସାମାନ୍ୟ କେତୋଟା ଟଙ୍କାରେ ସେମାନେ ନିଜକୁ ବିକ୍ରି କରି ଦେବାରେ କୁଣ୍ଠାବୋଧ କରିବେନି । ଆଜି ମୁଁ ପ୍ରକୃତରେ ଗର୍ବିତ ଯେ ମୋ

ପାଖରେ ଜଣେ ଉଚ୍ଚ ଆତ୍ମସମ୍ମାନ ଅଧିକାରୀ ଯୁବକ ଅଛୁ । ଯେ ସମସ୍ତ ଅଭାବ ଅନାଟନ ସତ୍ତ୍ୱେ ସମ୍ମାନର ସହ ମୁଣ୍ଡଟେକ ଠିଆ ହୋଇଛୁ । ମୁଁ ଫୁଟ୍‌ବଲ ଖେଳକୁ ଭଲପାଏ ଆଉ ଫୁଟ୍‌ବଲ ଖେଳାଳୀଙ୍କୁ ସମ୍ମାନ ଦିଏ ।

ପି. କେ. ଘରଭିତରକୁ ଗଲେ । ଅଳ୍ପ ସମୟ ପରେ ଫେରି ଆସିଲେ । ହାତରେ ତାଙ୍କର ଆଉ ଏକ ଦଶହଜାର ଟଙ୍କାର ବଣ୍ଡିଲ । ଉଭୟ ବଣ୍ଡିଲକୁ ଜନ୍ମେଜୟଙ୍କୁ ଦେଇ କହିଲେ ଟଙ୍କାଦେଇ ତୁମକୁ କିଣାଯାଇ ପାରିବନି । ଏ ଟଙ୍କା ମୁଁ ତୁମକୁ ଦେଉଛି । ଏ ଅର୍ଥ ତୁମ ଭଉଣୀ ବିବାହରେ ମୋର ଉପହାର । ୟୁ ଆର୍ ଯଷ୍ଟ ଲାଇକ୍ ମାଇଁ ସନ୍ । ମୁଁ ତୁମ ବାପା ଭଳି । ଏ ଟଙ୍କା ନେବାକୁ ମନା କରନି ।

ଜନ୍ମେଜୟ ପି. କେ.ଙ୍କ ପ୍ରଶାନ୍ତ ମୁହଁକୁ ଚାହିଁଲା । ନଇଁପଡ଼ି ତାଙ୍କ ପାଦ ଧୂଳି ନେଲା ।



# ଅବାଞ୍ଛିତ

## ବସନ୍ତ କୁମାର ଶତପଥୀ

ଭାରି ଇଚ୍ଛା ହେଲା ବୁଢ଼ାକୁ ଟିକିଏ ଦେଖି ଆସିବି । ସତର ବର୍ଷ ତଳେ ଯାହା ଦେଖା ସାକ୍ଷାତ ହୋଇଥିଲା । ବୁଢ଼ା ଏବେ ଆଉ ମୋ କଥା ବୁଝାମଣା କରେ ନାହିଁ । କିମିତି କରନ୍ତା ? ତା ନିଜ ଘର କଥା ତ ଭାବି ଭାବି ଦାରୁଭୂତ (ସ୍ଥାଣୁଂ ସ୍ଥାଣୁଂ ସ୍ତବ୍ଧ ଚରତଂ) ହୋଇଛି । ମୋ ଘର କଥା ବୁଝିଲେ ସେ ପାଷାଣ ପାଲଟି ଯିବ ଯେ । ହେଲା, ସେ ମୋ କଥା ନ ବୁଝିଲା, ମୋ ଘର ତ ଜଳି ପୋଡ଼ି ଯାଇନି । ତାକୁ ଅଭିମାନ କରି ମୋ କର୍ତ୍ତବ୍ୟରେ ତ୍ରୁଟି କରିବି କାହିଁକି ? ଯିବି, ଦେଖା କରିବି; ଦେଖା ଦେବ ତ ସେକ୍ ହ୍ୟାଣ୍ଡ୍ କରି (ଓହୋ ! ତାର ହାତ ପାପୁଲି ନାହିଁ !) ପଚାରିବି 'ହ୍ୟାଲୋ ଓଲ୍ଡ୍ ମେନ । ହାଓ ଡୁ ଇଉ ଡୁ ?' ସେ ହୁଏତ ପାଟିଟାକୁ ହାତେ (ତାକୁ ବି ମାପି ହବ ?) ମେଲା କରି ହସିବ ।

ମାଳତୀପାଟପୁର ଷ୍ଟେସନ ପାଖରୁ ତା ସ୍କାଇସ୍କ୍ରେପରଟାକୁ ଦେଖି ଛାତି କୁଣ୍ଢେ ମୋଟ ହୋଇଗଲା । ନୟନପଥଗାମୀ ଭବତୁ ମେ ଗାଇଗଲି । ଘନ ନୀଳ ବନାନୀ ଭିତରୁ ଗୋଞ୍ଜିଆ ଘରଟା ମେଘକୁ, ଆକାଶକୁ ଭେଦ ଯାଇଛି । ଏଇଠୁ ମୋ ଭାବନାଗୁଡ଼ାକ ତା ଡାନା ପରି ଫୁରୁଫୁରୁ ଉଡ଼ିବାକୁ ଲାଗିଲା । ଜନ କୋଳାହଳ ଦୂରରେ, ଭକ୍ତର ଆର୍ତ୍ତନାଦ ଶୁଭୁ ନଥିବା ଗମ୍ଭିରରେ ଭାଇ ଭଉଣୀଙ୍କ ଧରି ଷାଠିଏ ପଉଟି ଅନ୍ନ ଭୋଜନ କରି ଚେକାମାଡ଼ି ବସି ଯାଇଥିବ ଜଗତ ଉପରେ । ବେପରୁଆ ମେଜାଜରେ । ଆସୁ ବାତ୍ୟା, ଆସୁ ବଜ୍ର, ଆସୁ ଭୂମିକମ୍ପ । ପୋଲଫାଙ୍କି ଆଉ କିଛି ଯାଏ ଆସେ ନାହିଁ; କିଛି ଉଣା ବି ହବ ନାହିଁ ତାର ।

ବନ୍ଧୁବାସଙ୍କୁ କାହିଁକି ହଇରାଣ କରିବ । ମଶା, ମାଛି, ଛାରପୋକ ଯାହା ଯେତେ ହଇରାଣ କରନ୍ତୁ ପଛେ କେଇଟା ଘଣ୍ଟା କେଉଁଠି ହେଲେ କଟାଇ

ଦେବ ଶ୍ରୀବ ଧୂଧୂବାଲା ଧର୍ମଶାଳା ଆଗରେ ରିକ୍ସା ଠିଆ କରି ଭିତରକୁ ପଶିଗଲି ।

'ଜାଗା ମିଳିବ ?' ପଚ୍ଚରିଲି ବରଣ୍ଡାରେ ଚଟାଚୈଚନ ହୋଇ ବସିଥିବା ପେଟୁଆ ଲୋକଟାକୁ । ପ୍ରାଇମେରୀ ସ୍କୁଲ ପିଲାଏ ଭୂଇଁରେ ବସି ଲେଖା ଲେଖି କରୁଥିବା ଡେସ୍କଟାଏ ତା ଆଗରେ । ଠିପିବାଲା ଶୀଷା ଦୁଆତରୁ ପରକଲମରେ ବୁଡ଼ାଇ କ'ଣ ଗୁଡ଼ାଏ ଅଦ୍ଭବ୍ୟ ଅକ୍ଷରରେ ଲେଖୁଥାଏ । ବୋଧହୁଏ ସୀଆରାମ ସୀଆରାମ ।

ମୋ ଆଡ଼କୁ କଣେଇ (ନା, ନା, ଲୋକଟା ଯାତ୍ରୀମାନଙ୍କୁ ସନ୍ଦେହ ଚକ୍ଷୁରେ ଚାହିଁ ଚାହିଁ ଏମିତି ଟେରା ହୋଇ ଯାଇଛି) ମୁଣ୍ଡ ଉଠେଇ ପଚ୍ଚରିଲା ତା ଘରେଇ ଭାଷାରେ, 'କଣ ଚାହୁଁଛ ?'

'ଜାଗା ! ଏଠି ରହିବାକୁ ଜାଗା ମିଳିବ ? ରାତିରେ ?'

'କେତେ ଜଣ ? ଆଉ କେତେ ଜଣ ସାଙ୍ଗରେ ?'

'କେହି ନାହିଁ, ମୁଁ ଏକା ।'

'ଜଗନ୍ନାଥ ଦର୍ଶନକୁ ଆସିଛ ?'

'ହଁ ।'

'ରୁମ୍ ଖାଲି ନାହିଁ' - କହି ଗ୍ରେଟ ଅପାଠୁଆ ପିଲାଙ୍କ ପରି କାଗଜରେ ପୁଣି ଗାରେଇବାକୁ ଲଗିଲା ।

'ବହୁତ ରୁମ୍ ଖାଲିଥିଲା ପରି ଲାଗୁଛି । ମୋତେ ଗୋଟାଏ ସିଙ୍ଗଲ ରୁମ୍ ଦିଅନ୍ତୁ ।'

'ରୁମ୍ ଅଛି । କିନ୍ତୁ ସେସବୁ ଫେମିଲି ଜନାନା ପାଇଁ ।'

'ମୋର ତ ଫେମିଲି ଜନାନା ନାହିଁ । ଆଣିବି କେଉଁଠୁ ? ଧର୍ମ ପାଇଁ କ'ଣ ନହାତି ଜନାନା ଦରକାର ?'

'ମୁଁ ଏତେ ପ୍ରଶ୍ନର ଜବାବ ଦେଇ ପାରିବି ନାହିଁ । ମାଲିକର ହୁକୁମ ନାହିଁ । ବିନା ଜନାନାରେ ମୁଁ ଆପଣଙ୍କୁ ରୁମ୍ ଦେଇ ପାରିବି ନାହିଁ ।'

'ମୁଁ ତେବେ କ'ଣ କରିବ ?'

'ହୋଟେଲକୁ ଯାଉ ନାହାନ୍ତି ? ଯାହାର ଜନାନା ନାହିଁ ତାର ଘର ହୋଟେଲ ସବୁ ସମାନ ।'

ଭାଗ୍ୟଙ୍କୁ ଚମଡ଼ା ସୁଟ୍‌କେଶ ଛଡ଼ା ଅନ୍ୟ କିଛି ଆସବାବ ପତ୍ର ସଙ୍ଗରେ ଆଣି ନଥିଲି । ରିକ୍ସାବାଲାକୁ ବିଦାୟ ଦେଲି । ଚପଲ ଯୋଡ଼ାକ ଗରୁଡ଼ ସ୍ତମ୍ଭ

ପାଖରେ ଆଉ ସୁଟ୍‌କେଶ୍‌ଟା ପୁରୁଣା ଚହ୍ଲା ଫଳବାଲାର ଦୋକାନରେ ରଖିଦେଇ ମନ୍ଦିର ଭିତରକୁ ପଶିଗଲି ।

ବାଇଶି ପାହାଚ ଉଠୁଥାଏଁ, ମନେ ପକାଉଥାଏଁ ସତର ବର୍ଷ ତଳେ କମିତି ରସ ପୁନେଇ ଦିନ ସ୍ତ୍ରୀଙ୍କ ସାଙ୍ଗରେ ରଥ ବାରଟା ବେଳେ ଆସିଥିଲୁଁ ସେଇ ବାଟରେ ଗୋଟାଏ ପ୍ରାର୍ଥନା ନେଇ । ବୁଢ଼ା ଆମର ସେଇ ପ୍ରାର୍ଥନା ପୂରଣ କରିଥିଲା । ଗିଭ୍ ଦି ଡେଭିଲ୍ ହିଜ୍ ଡିଉ ।

ସନ୍ଧ୍ୟା ଆରତିର ଘଣ୍ଟା କାହାଳର ମନ୍ଦ୍ର ନିନାଦ ମନ୍ଦିର ଭିତରେ ଖେଳି ବୁଲୁଥାଏ । ଚନ୍ଦନ ଅର୍ଗଳି ପାଖରେ ତରବର ହୋଇ ପହୁଂଚଗଲି ।

ମାଇ ଏ କଣ ? ଧୀରେ ଧୀରେ ସେ ବିରାଟ କବାଟର ଶେଷ ଫାଙ୍କ ଟିକକ ବି ବନ୍ଦ ହୋଇଗଲା, ମୃଦଙ୍ଗ, ଶଙ୍ଖ, ଭେରୀତୂରୀର ଗୁଞ୍ଜନ ମଉଳୁ ନ ମଉଳୁଣୁ ।

ଓଲ୍‌ଡ୍‌ମେନ୍ । ଚଉ ଯାଇଛୁ । ଦେଖା ଦବନି ବୋଧହୁଏ । ହେଉ ଦେଖେଁ କେତେ ସମସ୍ତ କବାଟ କଳି ରହିଥିବ । ନିଃଶ୍ୱାସ ବନ୍ଦ ହୋଇ ଯିବନି ?

କବାଟ ଦଦରର କଣାଟା ଦେଇ ଗୋଟାଏ ଆଖିରେ ତାକୁ ଦେଖିବାର ଚେଷ୍ଟା କଲି । ସେମିତି ସେତିକ ଦର୍ଶନ ମିଳିଥିଲେ ବି ମନ ମାନି ଯାଇଥାନ୍ତା । ଦୂରରୁ ପତିତପାବନକୁ ଦେଖି ତ ଅନେକ ପାପୀ କୃତକୃତ୍ୟ ହୋଇଛନ୍ତି । କିନ୍ତୁ ବୁଢ଼ାର ମତଲବ ଜାଣିବା ଦରକାର । ମୋତେ ମୁହଁ ଲୁଚଉଛୁ ? ନା ମୋ ମୁହଁ ଚାହିଁବ ନାହିଁ ?

କି ଆଶ୍ଚର୍ଯ୍ୟ ! ପାଖ ସାଥୀ ଯାତ୍ରୀମାନେ ଯାହା ଦେଖିଲେ ମୁଁ ତା ବି ଦେଖି ପାରିଲି ନାହିଁ । ସେମାନେ ଅଷ୍ଟକ ଗାଇଲେ, ଲମ୍ବତମ୍ବ ହୋଇ ଆନନ୍ଦ ଗଦ୍ ଗଦ୍ ହୋଇ ଭୂଇଁରେ ପଡ଼ିଗଲେ । ଗୋଟାଏ ଆଖି ବନ୍ଦ କଲିରୁ ଅନ୍ୟ ଆଖି ବନ୍ଦ ହୋଇଗଲା । ଭିତର ଦୃଶ୍ୟ କିଛି ଦିଶିଲି ନାହିଁ । ମୁଁ ବି ଲମ୍ବତମ୍ବ ହୋଇ ଦଣ୍ଡେଯାଏ ପଡ଼ିଲି । କିନ୍ତୁ ଯେଉଁ ଛବି ଦେଖିଲି ତାହା ଗୋଳମାଳିଆ; ଅନ୍ଧାର, ଅନ୍ଧାର କଟିମିଟିଆ ଅନ୍ଧକାର । ତା ଦଦରର କଳାରଙ୍ଗ ସିମିତି ସବୁ ଆରତି ଦୀପର ଆଲୁଅ ଶୋଷିନେଇ ଧୂପ ଧୂଆଁରେ ମିଶି ଏକ ସର୍ବମସ୍ତ ଘନ ନିରନ୍ଧ୍ର କାଳିମା ବିସ୍ତାର ଦେଇଛୁ ।

କିଛି ବୁଝି ପାରିଲି ନାହିଁ । କାଲେ କିଛି ଖିଅ ପାଇବି ଭାବି ବୁଲି ଗଲି ଲକ୍ଷ୍ମୀ ମନ୍ଦିରକୁ । ସେଇ ମନ୍ଦିରକୁ ଯେଉଁଠାକୁ ଯାଇଥିଲି ସେଇ ସତରବର୍ଷ

ତଳେ ଅନ୍ନପୂର୍ଣ୍ଣାର ଉପ୍ରୋଧ ଏଡ଼ି ନପାରି । ଲକ୍ଷ୍ମୀ ମନ୍ଦିରକୁ ମୁଁ ଯାଏନାହିଁ କାରଣ ମୋର ଧନସମ୍ପଦ ଲୋଡ଼ା ନାହିଁ । ଲକ୍ଷ୍ମୀ ଚଞ୍ଚଳା, ଆଜି ଅଛି କାଲି ଚାଲିଯିବ । ମୋ ସ୍ତ୍ରୀ ପ୍ରତିଦିନ ଯାଉଥିଲେ ପୁରୀରେ ଯେତେ ଦିନ ଥିଲେ, ମାତ୍ର ଲକ୍ଷ୍ମୀ ତାଙ୍କ ପ୍ରତି ପ୍ରସନ୍ନା ହୋଇଥିବାର କିଛି ପରିଚୟ ସେ ମୋତେ ଦେଇଯାଇ ନାହାନ୍ତି ।

ମାତୃ ଜାତିର ଦୟା ଅଛି ପୁରୁଷ ଜାତି ପ୍ରତି, ସ୍ୱଭାବ । ମାତ୍ର ଏ କଣ ? ମୁଣ୍ଡିଆ ମାରିଛି କି ନାହିଁ ଇଲେକ୍‌ଟ୍ରି ଆଲୁଅ ଦପ୍‌କରି ଲିଭିଗଲା । ଘିଅ ଦୀପରେ ଲକ୍ଷ୍ମୀ ଠାକୁରାଣୀଙ୍କ ମୁହଁଟା ଦେଖିଲାବେଳକୁ ମୋତେ ଅପରାଧୀ ପରି ଲାଗିଲା । ଯେମିତି ମୋର ଶାସ୍ତି ଦରକାର । ଜଗାବଳିଆ ଲକ୍ଷ୍ମୀଙ୍କ ପ୍ରତି ଦ୍ରୋହ କରି ଯେଉଁ ଔଦ୍ଧତ୍ୟ ଦେଖାଇଥିଲେ ତାର ଶାସ୍ତି କଥା ମନେ ପଡ଼ିଲା । ଲକ୍ଷ୍ମୀ-ଛଡ଼ା ହୋଇ ବଡ଼େଁଯାକ ପ୍ରାୟ ପାଗଳ ହୋଇ ଯାଇ ନ ଥାନ୍ତେ ? ଠାକୁରାଣୀ ଯିମିତି ମୋତେ କଟାକ୍ଷ ଦେଇ କହୁଛନ୍ତି 'ତୋ ସ୍ତ୍ରୀ କୁଆଡ଼େ ଗଲା ? ବିନା ସ୍ତ୍ରୀରେ ଧର୍ମ ଅର୍ଜିବୁ ? ପଳା, ଯା, ପଳା !'

କୁଆଡ଼େ ଯିବ ? ଲୋକେ ପୁରୀ ଆସନ୍ତି ଜଗନ୍ନାଥ ଦର୍ଶନକୁ ନ ହେଲେ ସମୁଦ୍ର କୂଳକୁ ! ପୁରୀର ସମୁଦ୍ର କୂଳ ପରି କୂଳ ଅଛି କେଉଁଠି ? ଦୀଘା, ଚାନ୍ଦପୁର, ଗୋପାଳପୁର, ସ୍ୱଇକାଗ—କେଉଁଠି ଏମିତି ବୈଚିତ୍ର୍ୟମୟ କୂଳ ? କ୍ଷଣକ୍ଷଣକେ ନୂଆ ରୂପ ମହୋଦଧିର ।

କାଉଁଳିଆ ଆକାଶରେ ମ୍ଳାନ ଫିକା ଆଲୁଅ ବିଛୁରୁଛି ଧୀରେ ଧୀରେ ଯାଉଥାଏ ସ୍ୱର୍ଗଦ୍ୱାର ଅଭିମୁଖରେ ଷଷ୍ଠୀ ସପ୍ତମୀର ଜହ୍ନ ।

ଦଗବାରଣ ଖୁଣ୍ଟି ପହୁଞ୍ଚି ଆଗକୁ ଚାହିଁଲି । ଅଭାଗା ଯେଉଁଠିକି ଯାଏ ସେଠି ସମୁଦ୍ର ବି ଶୁଖିଯାଏ । ଶୁଖି ନ ଗଲେ ବି ବହୁଦୂର ଘୁଞ୍ଚି ଯାଇଛି । କେଉଁ ଏକ ଉଆଁସ ରାତିର ଅନ୍ଧାରରେ ଉଚ୍ଛଳ ହୋଇ ନାଚ କୁଦ କରି ରାସ୍ତାରେ ଏତେଗୁଡ଼ାଏ ବାଲି ଜମା କରି ଦେଇଛି ଯେ ଆଉ ପୁଣି ଉପକୂଳ ଛୁଇଁ ପାରୁନି । ବହୁତ ଦୂରରେ ବାଲିଗଦା ତଳେ ଧୀରେ ଧୀରେ ଅଳ୍ପ ବାଟ ଆସୁଛି ମୁଣ୍ଡ କୋଡ଼ୁଛି, ଫେରି ଯାଉଛି ମ୍ରିୟମାଣ ହୋଇ ।

ଦେଖିଲି, ନୁହେଁ ଅନ୍ଧାର ନୁହେଁ ଆଲୁଅ ଏମିତି ଗୋଟାଏ ଜାଗାରେ ଧାଡ଼ି ଧରି ଯୋଡ଼ିକୁ ଯୋଡ଼ି କିଛି ବ୍ୟବଧାନ ରଖି ଲଗାଲଗି, ଲଦାଲଦି ହୋଇ ବସିଯାଇଛନ୍ତି ଯୁଗଳ ମୂର୍ତ୍ତି ସବୁ । ସମୁଦ୍ରର ଶୀକରଶୀତ ବାୟୁ ଗରମ ଗାଲ-ଗୁଡ଼ାକ ଟିକିଏ ପୋଛିପାଛି ଥଣ୍ଡା କରି ଦେଉ ଏଇ ମତଲବରେ । ସମୁଦ୍ର କୂଳରେ ବି ଏମାନଙ୍କୁ ଏତେ ଗରମ ଲାଗୁଛି ?

ସୁଟ୍‌କେଶ୍ ଧରି ସେମାନଙ୍କ ଧାଡ଼ିରୁ ଟିକିଏ ଦୂରେଇ ଚାଲିବାକୁ ଆରମ୍ଭ କଲି ନଗ୍ରଟିଆ ଜାଗା ହୋଟେଲ ସନ୍ଧାନରେ । ଚାଲୁଥାଏଁ, ନିଜକୁ କେଉଁ ଏକ ଅପରାନ୍ତ ନରକ କୂଳର ପ୍ରେତାତ୍ମା ବୋଲି ଭାବୁଥାଏଁ । ବସିଥିବା ଲୋକଗୁଡ଼ାକ ବି ମୋତେ ଅବାଞ୍ଛିତ ପ୍ରେତପୁରୁଷ ଭାବି ଚମକି ଆଡ଼ ବା ଅଲଗା ହୋଇ ଯାଉଥାନ୍ତି । ଘୃଣା ଓ ମନସ୍ତାପରେ ମୋର ମନ ଭରପୁର ।

ଯାଉଁ ଯାଉଁ ଦେଖିଲି ଗୋଟାଏ ସ୍ଥାନରେ ବୋଧହୁଏ ହନିମୁନ୍‌ ପାଇଁ ଆସିଥିବା ସ୍ୱାମୀ ସ୍ତ୍ରୀଙ୍କି । ସ୍ତ୍ରୀଟି ସ୍ୱାମୀ କାନ୍ଧରେ ମୁଣ୍ଡ ଆଉଜାଇ ବସିଥିଲା; ତାର ଶୁଭ୍ର ପାଦର ଅଳତା ବି ମୁଁ ଦେଖି ପାରୁଥିଲି । ଆଣ୍ଠୁ ପର୍ଯ୍ୟନ୍ତ ଲୁଗା ଟେକି ଦେଇ ଗୋଡ଼ ଦୁଇଟାକୁ ସମୁଦ୍ରର କୁନି କୁନି ଢେଉ ଆଡ଼କୁ ଲମ୍ବାଇ ଦେଇଥାଏ । ସମୁଦ୍ର ପାଣି ଆସି ତା ପାଦକୁ ସଲସଲ କରି ଦେଇ ଫେରିଯାଉଥାଏ । ସେ ଗୋଡ଼ ଟେକି ଆଣେ ପୁଣି ଲମ୍ବାଇଦିଏ । ସେ ହସେ, ତା ସ୍ୱାମୀ ହସେ; ଦୁହେଁ ହସନ୍ତି । ମୋତେ ଦେଖିଲାରୁ ତାଙ୍କ ନିର୍ମଳ ହସ ବନ୍ଦ ହୋଇଗଲା ।

ଏଠି ବି ମୋତେ କେହି ଚାହୁଁ ନାହାନ୍ତି । ନା ଧର୍ମଶାଳାର ଗୋମାସ୍ତା; ନା ଜଗାବଳିଆ, ନା ମା ଲକ୍ଷ୍ମୀ, ନା ଏ ସମୁଦ୍ର କୂଳର ଯୁଗଳ ମୂର୍ତ୍ତିମାନେ, ସଭିଙ୍କ ଆଖିରେ ମୁଁ ଗୋଟାଏ ଅବାଞ୍ଛିତ ଜୀବ ସିମିତ ।

ମୁଣ୍ଡ ପୋତି କୂଳର ହୋଟେଲ ଆଡ଼କୁ ଯାଉଛି ହଠାତ୍ ମନକୁ ଗୋଟାଏ ବୁଦ୍ଧି ଆସିଲା ।

ସିଧାସଳଖ ହୋଟେଲ ଭିତରକୁ ଯାଇ ମାଲିକକୁ ପଚାରିଲି "ରୁମ୍ ମିଳିବ ? ସିଙ୍ଗଲ୍ ରୁମ୍ ?"

"ହଁ ଖାଲି ଅଛି ।"

"କେତେ ପଡ଼ିବ ?"

"ତିରିଶି ।"

"ସ୍ତ୍ରୀ ମିଳିବେ ?" ଦୋଷୀ ପରି ଅନୁଚ୍ଚ ଗଳାରେ ସାହସ ବାନ୍ଧି ପଚାରିଲି ।

"ମିଳିବେ । କେତେ ଟଙ୍କାର ?"

"ପଚାଶ ଶହେ ଯାହା କହିବେ, ମାଲ ନେଇ ଦାମ ।"

"ବେଶ୍ ଭଲ । ରୁମ୍ ଖୋଲିଦିଅ, କିଏ ସେ ସ୍ତ୍ରୀଲୋକ ଡାକ, ଶୀଘ୍ର ।"

ଦଶ ମିନଟ୍ ଭିତରେ ରୁମ ନେଇ ପୁଣି ଯିବାକୁ ପ୍ରସ୍ତୁତ ହୋଇଗଲି । ସ୍ତ୍ରୀ ଲୋକଟା ବି ଆସିଗଲା । ଟିକିଏ ନାଟକୀୟ ଗଳାରେ ତାକୁ କହିଲି, "ସିନ୍ଦୁର ଲଗାଇ ଆସ ।"

ଗେହ୍ଲେଇ ହୋଇ ନାକ ଫୁଲାଇ ସେ କହିଲା "କପାଳରେ ନାଇବ, ସୁଝାରେ ନୁହେଁ ।"

"ହେଲା; ସେତିକ ଦେଉ ।"

ଏଥର ନିଶ୍ଚୟ ବୁଢ଼ା ଦେଖା ଦବ । ମୁଁ ଆଉ ଅବାଞ୍ଛିତ ନୁହେଁ । ଗଳ୍‌ପାଟାଏ ଭଡ଼ା କରି ଗ୍ଭଲିଲୁଁ ଦୁହେଁ ମନ୍ଦିରକୁ ।

ସତକୁ ସତ ମନ୍ଦିର ଦ୍ୱାର ଖୋଲାଥିଲା । କେବଳ ଖୋଲା ନୁହେଁ ଫାଙ୍କା; ଯାତ୍ରୀଶୂନ୍ୟ । ଏମିତି ଦେବ ଦର୍ଶନ କେବଳ ଭାଗ୍ୟବାନଙ୍କୁ ମିଳେ । ମୋର ହୃଦବୋଧ ହେଲା ସ୍ତ୍ରୀ ସାଙ୍ଗରେ ନେବା ବୁଦ୍ଧିକୁ ବୁଢ଼ା ତାରିଫ୍ କରୁଛି ।

କାଲି ଘରେ ପଶୁଁ ନ ପଶୁଁ ମୁଣ୍ଡରେ ଚନ୍ଦନ ଅର୍ଗଳିଟା ଏତେ ଜୋର ବାଡ଼େଇ ହେଲା କାହିଁକି ? ପିଠିର ହାଡ଼ଟା କାଠଟାରେ ପ୍ରାୟ ଲାଗି ଯାଇଥିଲା ।

ଦୁହେଁ ଏକାବେଳେ ଧଇଁସଇଁ ହୋଇ ସିଂହାସନ ଆଗକୁ ଗ୍ଭଲିଗଲୁ । ସ୍ତ୍ରୀଲୋକଟା କଣ ଭାବୁଥାଏ କେଜାଣି । ମୁଁ ଯାହା କହୁଥାଏ ସେ ତାହା ବଶ୍ୟା ସ୍ତ୍ରୀ ପରି ପାଳନ କରୁଥାଏ । ଟଙ୍କା ନେଇଛି ଯିବ କୁଆଡ଼େ ? ସେ ମୋର ପାଖରେ ଛିଡ଼ା ରହିଥାଏ ।

ଆଖି ବନ୍ଦ କରି ବୁଢ଼ାକୁ ଧ୍ୟାନ କରି ହାତ ଯୋଡ଼ି ଆରମ୍ଭ କରିଦେଲି ଜଗନ୍ନାଥାଷ୍ଟକ । "ଜଗନ୍ନାଥ ସ୍ୱାମୀ ! ନୟନ ପଥଗାମୀ ଭବତୁ ମେ ।" ଗାଇଲା-ବେଳକୁ ଗଳାସ୍ୱର ମନ୍ଦିର ଭିତରେ ପ୍ରତିଧ୍ୱନିତ ହେଉଥାଏ । ମୋର ହୃଦୟ ଓ ମନ ପ୍ରକମ୍ପିତ ହେଉଥାଏ । ଅପୂର୍ବ ଅନୁଭୂତି ।

ଅଷ୍ଟକ ସରିଲାରୁ ଆଖି ମେଲି ଗ୍ଭହିଁଲି । ଏ କି ରୂପ ? ବୁଢ଼ା ଏମିତି ଗ୍ଭହିଁଛି କାହିଁକି ? ଆଖି ଦୁଇଟା ଏକାବେଳେ ଉତ୍ତପ୍ତ ଚନ୍ଦ୍ର ସୂର୍ଯ୍ୟ ପରି ରକ୍ତବର୍ଣ୍ଣ ଓ ଭସ୍ମ କରିବାକୁ ଉଦ୍ୟତ ।

ତତ୍‌କ୍ଷଣାତ୍ ଲମ୍ବତମ୍ବ ହୋଇ ପଡ଼ିଗଲି ଓଦା ଚଟାଣରେ ଏବଂ ହାତ ଯୋଡ଼ି ଆରମ୍ଭ କରିଦେଲି "ପଶ୍ୟାମି ଦେବାଂସ୍ତବ ଦେବ ଦେହେ ।" ଶ୍ଳୋକ ପରେ ଶ୍ଳୋକ ଗାଇ ଗ୍ଭଲିଥାଏଁ, ଦେହରେ ଡେଉ ପରି ପୁଲକ ପରେ ପୁଲକ ଉଠୁଥାଏ ଶ୍ଳୋକର ପାଦକୁ ପାଦ । ସିମିତି ପଢୁଥିଛି "ଦଂଷ୍ଟ୍ରା କରାଳାନି ଚ ତେ ମୁଖାନି···କାଳାନଳ ସନ୍ନିଭାନି" ସିମିତି ଜଣାଗଲା ସିମିତି ମୋତେ କିଏ ଅକ୍ଳେଶରେ ଟେକାଳ'ନେଇ ତା କାନ୍ଧ ଉପରେ ଚିତ କରି ଶୁଆଇ ଦେଲା । ବାବା

କି ଭୀଷଣ ମୂର୍ତ୍ତି ! ଯାହା ମୁଁ ଦେଖିଥିଲି ପିଲାଦିନେ ଭୀତ ତ୍ରସ୍ତ ସ୍ତମ୍ଭିତ ହୋଇ କେଉଁ ଏକ ମନ୍ଦିରରେ । ଜଗନ୍ନାଥଙ୍କ ନରସିଂହ ମୂର୍ତ୍ତି । ହିରଣ୍ୟକଶିପୁ ବିଦାରଣ କରିବାର ରୂପ । ମୋ ପେଟ କିଏ ଚିରି ଦେଲା ପରି ଲାଗିଲା । ସଟା ଫୁଲାଇ ଆକାଶପାତାଳ ଲମ୍ବି ମୂର୍ତ୍ତି ନଖ ଦାନ୍ତରେ ମୋର ଅନ୍ତବୁଜୁଳା ବାହାର କରି ଚିରିଭିଣି ଦେଉଛି । ଆହୁରି ଦେଖିଲି ମୋ ସବା ସାନ ପୁଅଟି (ଯେ ତା ମା ସାଙ୍ଗରେ ଚାଲି ଯାଇଛି) ବିଚରା ହାତଯୋଡ଼ି ପ୍ରହ୍ଲାଦ ପରି ଛିଡ଼ା ହୋଇଛି ନଇଁ ପଡ଼ିଥିବା ମୋର ମୁଣ୍ଡଟା ପାଖରେ । ପ୍ରସାଦ ଦେବେଣି ଜଗନ୍ନିବାସ ।

ଦୁଃସ୍ୱପ୍ନ ଦେଖି ହାଉଳି ଖାଇଲା ଭଳି ହୋଇ ତଡ଼ବଡ଼ ଛିଡ଼ା ହୋଇଗଲି । ଗଦ ଗଦ ହୋଇ ଦେହରୁ ଝାଳ ବହି ଯାଉଥାଏ । ଛାତି ସେମିତି କମ୍ପାକ କମ୍ପନ । ହୃତଟା ଅଟକି ଯିବ ବୋଲି ଭୟ ହେଉଥାଏ । ନିଃଶ୍ୱାସ ଫେରି ପାଇ ସ୍ୱାଡେ ସିଆଡ଼େ ଚାହିଁଲି । ଦେଖିଲି ସ୍ତ୍ରୀଲୋକଟା ମୋ ପାଖରେ ନ ଥିଲା । ବୋଧହୁଏ ମୋର ଅସ୍ୱାଭାବିକ ବ୍ୟବହାରରେ ଭୟ ପାଇ ଜୀବନମୂର୍ଚ୍ଛା ଧାଁ ଦଉଡ଼ କରି ହୋଟେଲକୁ ଫେରିଯାଇଛି ।

ନିଃଶ୍ୱାସ ସୁରା ମାରିପାରୁ ନ ଥାଏଁ; ଗ୍ଭତିର ଢପ୍ ଢପ୍ ଆବାଜ କାନରେ ବାଜୁଥାଏ । ଉଭୟ ଦେହ ଓ ମନର ଦୁର୍ବଳତମ ଅବସ୍ଥାରେ ସହାୟ ଖୋଜି ଖୋଜି (ଯାହାଙ୍କୁ ପରମ ଆଶ୍ରା ଓ ସହାୟ ଭାବିଥିଲି ସେ ତ ଠକିଦେଲା) ପାଇଲି ଜଣେ ପଣ୍ଡାଙ୍କୁ—ରାମଚନ୍ଦ୍ର ପଣ୍ଡା, ଆମରି ପଣ୍ଡା, ଆମ ମୟୂରଭଞ୍ଜର ପଣ୍ଡା । ତାଙ୍କ ତିନି ପୁରୁଷ ଆମ ତିନି ପୁରୁଷଙ୍କୁ ଜଗନ୍ନାଥ ମହିମା ବିଦିତ କରାଇଛନ୍ତି; ଯେଉଁ ପଣ୍ଡା ଠାକୁର ରାଜାଙ୍କ ପରି ଅପୂର୍ବିକ ହେବାର ବର ପାଇଛନ୍ତି । ତାଙ୍କ ଚେହେରା ବିବେକାନନ୍ଦ, ରାମକୃଷ୍ଣ, ବୁଦ୍ଧଦେବଙ୍କ ମୂର୍ତ୍ତି ପରି ଭକ୍ତିପୂତ, ଶାନ୍ତ ଶୁଭ୍ର ।

ତାଙ୍କୁ ନମସ୍କାର କରି ନିଜର ପରିଚୟ ଦେଲି ଏବଂ ଏକାନିଃଶ୍ୱାସକେ କହିଗଲି କିମିତି କନା ସ୍ତ୍ରୀରେ ଜଗନ୍ନାଥ ଦର୍ଶନକୁ ଆସିଥିବାରୁ ଲାଞ୍ଛିତ, ଭର୍ତ୍ସିତ, ଅପମାନିତ ହେଲି, ଉଭୟ ନରଦେବତା ଦ୍ୱାରା ଏବଂ ପରିଶେଷରେ ଜନୈକା ନାରୀକୁ ଧର୍ମପତ୍ନୀର ସ୍ଥାନ ଦେଇ କେମିତି ଖୋଦ ନରସିଂହଙ୍କ ଦ୍ୱାରା ଦଣ୍ଡିତ ହୋଇଛି । ସେଇଠି ମୁହୂର୍ତ୍ତିକ ଆଗରୁ ଯାହା ଅଙ୍ଗେ ନିଭାଇଥିଲି ତାହା କହିଗଲି ।

ସେ ମୋତେ ଅଭୟ ଦେଲେ ଏବଂ ତାଙ୍କ ସହିତ ପାଖର ଗୋଟାଏ କୋଠରୀକୁ ନେଇଗଲେ ।

ହିସାବନିକାଶ ପାଇଁ ଯେମିତି ଶାଲୁ କନା ଆବରଣର ବଡ଼ ବଡ଼ ଖାତା ବ୍ୟବସାୟୀମାନେ ବ୍ୟବହାର କରନ୍ତି ସେମିତି ବଡ଼ ବେଁ ଲମ୍ବ ଖାତା ବାହାର କରି

ପୃଷ୍ଠାକୁ ପୃଷ୍ଠା ପରେ ଆଲୁଅରେ ଓଲଟାଇଲେ ଏବଂ ଅବଶେଷରେ ଗୋଟାଏ ପୃଷ୍ଠାରେ ଆଙ୍ଗୁଳି ଦେଇ ମୋ ଆଡ଼କୁ ବଢ଼ାଇ କହିଲେ 'ପଢ଼ନ୍ତୁ' ।

ପଢ଼ିଲି କରଣୀ ଅକ୍ଷରରେ କେଉଁ କାଳର ଲେଖା. ପଢ଼ିଲି "ସନ ୧୩୧୫ ଶ୍ରୀଗୁଣ୍ଡିଚ୍ଚ, ଶ୍ରୀ ମହାଦେବ ଆଚାର୍ଯ୍ୟ, ସା ' ଉମାଦେଇପୁର, ଜଲ୍ଲେ ମୟୂରଭଞ୍ଜ, ସଙ୍ଗେ ସ୍ତ୍ରୀ ଶ୍ରୀମତୀ ପାର୍ବତୀ ଦେଈ ।"

କିଛି ସ୍ଥାନ ଗୁଡ଼ି ତଳକୁ "ସନ ୧୩୪୫ ବାହୁଡ଼ା ବଳେ ଶ୍ରୀ ଧ୍ରୁବଧର ଆଚାର୍ଯ୍ୟ ସା: ଉମାଦେଇପୁର, ଜଲ୍ଲେ ମୟୂରଭଞ୍ଜ, ସଙ୍ଗେ ସ୍ତ୍ରୀ ଶ୍ରୀମତୀ ସତ୍ୟଭାମା ଦେଈ ।"

ପୁଣି ସାମାନ୍ୟ ତଳକୁ ଲେଖାଯାଇଛି "ସନ ୧୩୬୫ ପୁଷ ପୂର୍ଣ୍ଣିମା ଶ୍ରୀ ଭୋଳାନାଥ ଆଚାର୍ଯ୍ୟ, ସା: ଉମାଦେଇପୁର ଜଲ୍ଲେ ମୟୂରଭଞ୍ଜ ସଙ୍ଗେ ସ୍ତ୍ରୀ ଶ୍ରୀମତୀ ରୁକ୍ମଣୀ ଦେଈ ।"

ପଢ଼ୁଥାଏଁ ଏବଂ ମନେ ମନେ ଶୁଣୁଥାଏଁ ମୋର ପୂର୍ବପୁରୁଷଙ୍କ ଇତିହାସ । ବାପା ମାଆ, ଜେଜେବାପା ଜେଜେମାଆ, ପର ଗୋସେଇଁବାପା ପରଗୋସେଇଁମା କିଏ ପଦବ୍ରଜରେ କିଏ ଶଗଡ଼ରେ କିଏ ବା ରେଳରେ ସସ୍ତ୍ରୀକ ଆସି ବଡ଼ଠାକୁ ଦେଖି ଯାଇଛନ୍ତି, ଯେଉଁଠି ଲକ୍ଷେ ଶାଳଗ୍ରାମ ପୋତା ସେଇଠି ଛିଡ଼ା ହୋଇ ବଡ଼ଠାକୁ ଚୁଇଁଛନ୍ତି ସିଂହାସନ ପାଖରେ ରହି, ଫେରିଛନ୍ତି ସୁଦୂର ମଫସଲକୁ ଧନ୍ୟମାନ ଓ ବଡ଼ଠାର ଆଶୀର୍ବାଦ ଓ ମହାପ୍ରସାଦ ନେଇ ଗର୍ବିତ ହୃଦୟରେ । ଅଥଚ ମୁଁ ଆସି ମଧ୍ୟ ନାମ ଲେଖାଇ ନାହିଁ ଏ ଖାତାରେ ।

ପଣ୍ଡା କହିଲେ ଏଥର ଲେଖନ୍ତୁ ଆପଣଙ୍କ ନାଆଁ, ବାପମାଆଙ୍କ ନାମ ତଳେ ।

ହାତ ଥରୁଥାଏ ଲେଖିଲି "ସନ ୧୩୮୫ (ପଣ୍ଡା ଡାକଦେଲେ) ଶ୍ରୀ ଶରତ୍ ଆଚାର୍ଯ୍ୟ ସା: ଉମାଦେଇପୁର ଜଲ୍ଲେ ମୟୂରଭଞ୍ଜ......।" ରହିଗଲି ।

ଗ୍ରେଡ଼ ପିଲାଙ୍କୁ ପାଠ ପଢ଼ାଇଲା ଗଳାରେ ପଣ୍ଡା କହିଲେ "ଲେଖନ୍ତୁ ସଙ୍ଗେ......।"

ଆରମ୍ଭ କଲି "ସଙ୍ଗେ ସ୍ତ୍ରୀ....

"ଲେଖନ୍ତୁ ସ୍ତ୍ରୀଙ୍କ ନାଆଁ ।"

"ତାଙ୍କ ନାଆଁ ତ ମୁଁ ଜାଣିନ । ସେ ହୋଟେଲକୁ ବୋଧହୁଏ ଗୁଲିଗଲେ ।"

"ଜାଣିଥିଲେ କଣ ତାଙ୍କ ନାଆଁ ଆପଣଙ୍କ ନାଆଁ ସାଙ୍ଗରେ ଯୋଡ଼ନ୍ତେ ?"

"ଅସୁବିଧା କଣ ?" ଅବିଶ୍ୱାସୀ ଗଳାରେ ପଚାରିଲି ।

"ଘୋର ଅସୁବିଧା । ସ୍ତ୍ରୀ ଓ ସ୍ତ୍ରୀ ଭିତରେ ପାର୍ଥକ୍ୟ ଏ ଯାକେ ଜାଣି ନାହାନ୍ତି ? ଆପଣଙ୍କ ଆଖିରେ ଯିଏ ସ୍ତ୍ରୀ ବୁଢ଼ା ଆଖିରେ ସିଏ ସ୍ତ୍ରୀ ନୁହେଁ ସେଇଥି-ପାଇଁ ତ ଏତେ ହଟହଟା ।"

"ସ୍ତ୍ରୀ ଓ ସ୍ତ୍ରୀ ଭିତରେ ପାର୍ଥକ୍ୟ କଣ ?"

"ସ୍ୱର୍ଗ ନରକର ପାର୍ଥକ୍ୟ । ସବୁ ସ୍ତ୍ରୀ ସ୍ତ୍ରୀ ନୁହନ୍ତି । ଯାହାକୁ ଆପଣ ସ୍ତ୍ରୀ ବୋଲି କହୁଛନ୍ତି ତାକୁ ବୁଢ଼ାକାଳରେ ଚୁଲି ପାଖରେ ବସାଇ କଥାବାର୍ତ୍ତା କରି ଯୌବନର ଉଷ୍ମ ପାଇପାରନ୍ତେ ? ତା ପାଦତଳେ ପଡ଼ିପାରନ୍ତେ ? ତାକୁ ମାଆ ବୋଲି ଡାକି ପାରନ୍ତେ ? ଯାହା ପାଖରେ ଏ ସବୁ କହି କରି ପାରନ୍ତେ ତା'ର ନାଆଁ ଲେଖନ୍ତୁ । ସେହି ଆପଣଙ୍କ ଧର୍ମପତ୍ନୀ ।"

ମୋ ନିଜ ମନୋବୃତ୍ତି ଉପରେ ଆସ୍ଥା ନ ଥିଲା । ମନ୍ତ୍ରମୁଗ୍ଧ ପରି ଧୀରେ ଧୀରେ ପଢ଼ିଲି "ସନ ୧୩୮୫ ମାଘ ସପ୍ତମୀ ଶ୍ରୀ ଶରତ୍ ଆଚାର୍ଯ୍ୟ ସା: ଉମାଦେଇ ପୁର ଜିଲ୍ଲା ମୟୂରଭଞ୍ଜ ସଙ୍ଗେ....।" କଲମଟାକୁ ମୁଣ୍ଡରେ ଲଗାଇ ମନେ ମନେ ତାଙ୍କ ଚେହେରାକୁ ସ୍ମରଣ କଲି ଏବଂ ଅପେକ୍ଷାକୃତ ବଡ଼ବଡ଼ ଅକ୍ଷରରେ ଲେଖିଲି "ସଙ୍ଗେ ସ୍ୱର୍ଗତା ସ୍ତ୍ରୀ ଅନ୍ନପୂର୍ଣ୍ଣା ଦେବୀ ।"

ମୁ ଣ୍ଡରୁ କଳା ପରଦାଟାଏ ଅପସରି ଗଲା । ସ୍ତିମିତ ଆଲୋକରେ ପଣ୍ଡାଙ୍କୁ ଦେଖିଲି । ସାକ୍ଷାତ୍ ଜଗନ୍ନାଥ ପରି ଦିଶୁଛନ୍ତି ।



# ଧୂମକେତୁ

ଡାଃ ଶୁକେଶ୍ୱରୀ ଦଲବେହେରା

ଗାଡ଼ିର ଗତି ଅସିଯାଇଛି । ଝୋଲା ଝରକା ବାଟେ ଅନେଇ ଦେଖିଲା ଅପର୍ଣ୍ଣା ବାହାରେ ଧାଡ଼ି ଧାଡ଼ି ଆଲୁଅ —କି ଷ୍ଟେସନ ଏଇଟା ? ମୁହଁ ଫେରେଇଲା ସେ—ଇସ୍, କି ଗରମ । ସାରା ଦିନ ଚଳନ୍ତା ଗାଡ଼ିର ଅଜଲ୍ଲଶଆ ଡବା ଭିତରେ ବସି ବସି ସେ ଖାଲି ବିରକ୍ତ ହେଉଛି—ଆହୁରି କେତେଘଣ୍ଟା ଏମିତି କଟେଇବାକୁ ପଡ଼ିବ କିଏ ଜାଣେ ? ଭଗବାନ—କ୍ଳାନ୍ତ ଆଖିପତା ବୁଜିଲା ଅପର୍ଣ୍ଣା—

କିଏ ?

ଅପର୍ଣ୍ଣା ଚମକି ଉଠିଲା । ଭଦ୍ରଲୋକ ଜଣକ ଆଗେଇ ଆସିଲେ—କିଏ ? କିଏ ସ୍ୱେ ? ଅପର୍ଣ୍ଣା ଶିହରି ଉଠିଲା—

ଗୋଟାଏ ମୁହୂର୍ତ୍ତି ଭଦ୍ରଲୋକ ଜଣକର ଆଖି ଉପରେ ଆଖି ରଖିଲା ଅପର୍ଣ୍ଣା — କ୍ଷମା କରିବେ । ଉପର ବର୍ଥଟା ବୋଧହୁଏ ଖାଲିଅଛି ?

ଝାପ୍‌ସା ଆଲୁଅରେ ଅନେଇ ଦେଖୁଥିଲା ଅପର୍ଣ୍ଣା—କୋଡ଼ିଏ ବର୍ଷ ତଳର ସ୍ମୃତିର ପେଡ଼ି ଯେମିତି କିଏ ଫିଟେଇ ଧରିଛି ତା ଆଗରେ— ଅମାଜିଆ ଅତୀତର ଅବୁଝା ସ୍ୱପ୍ନ ଯେମିତି ଜୀବନ୍ତ ହୋଇ ଉଠିଛି ତା' ଆଖି ଆଗରେ—

ଉଠି ବସିଲା ଅପର୍ଣ୍ଣା —ପାଖ ବର୍ଥରୁ ଉଠି ଆସିଲା ସବ୍ୟସାଚୀ – ତା'ର ପୁଅ—ହଁ ତଳ ବର୍ଥ ଦ'ଟାଯାକ ଆମର—

ଧନ୍ୟବାଦ । ବାକ୍‌ସଟା ତଳେ ରଖିଦେଇ ଉପରକୁ ଉଠିଗଲେ ଭଦ୍ରଲୋକ ।

୧୧

(୬)

ନିର୍ବାକ୍ ଅପର୍ଣ୍ଣା ଅନେଇ ଦେଖୁଥିଲା—ସେ ସ୍ୱପ୍ନ ଦେଖୁନି ତ ? ଭଲ କରି ଅନେଇ ଦେଖିଲା ସେ—ନା, ସେ ଭୁଲ୍ କରିନି—ଦୀପଙ୍କରଙ୍କୁ ଚିହ୍ନିବାରେ ତା'ର କେବେ ଭୁଲ୍ ହୋଇପାରେ ନା । କିନ୍ତୁ ଆଶ୍ଚର୍ଯ୍ୟ । ନିଜକୁ ତିଳ ତିଳ କରି ଯାହାକୁ ସମର୍ପି ଦେଇଥିଲା ନିଜର ସତ୍ତାକୁ ଯାହା ଭିତରେ ହଜେଇ ଦେଇଥିଲା । ସେଇ ଦୀପଙ୍କର ଦାସ ଆଜି ତା'ର ଏତେ ପାଖରେ ଥାଇ ବି କେତେ ଦୂରରେ ।

ଆଖି ବୁଜିବାକୁ ଚେଷ୍ଟା କଲା ଅପର୍ଣ୍ଣା—ଖାଲି ପରି ଲାଗୁଛି ସେଦିନ ଧୁମନ୍ତ ଅପର୍ଣ୍ଣାର ଲାଜୁଆ ମୁହଁକୁ ଦି ହାତରେ ଟେକି ଧରି କହିଥିଲା ଦୀପଙ୍କର—ତମେ ଏତେ ସୁନ୍ଦର ଅପର୍ଣ୍ଣା ? ଭଗବାନଙ୍କ ସୃଷ୍ଟିରେ ଏତେ ସୌନ୍ଦର୍ଯ୍ୟ ଜଣକ ପାଖେ ବି ସମ୍ଭବ ହୋଇପାରେ ? ମୁଣ୍ଡ ଉପରର ଓଢ଼ଣାକୁ ଆହୁରି ତଳକୁ ଖସେଇ ନେଇଥିଲା ଅପର୍ଣ୍ଣା—ଲାଜରେ ଥର ଥର କରି ଥରୁଥିଲା—

'ତମେ ସାରା ଜୀବନ ମୋର ହୋଇ ରହିପାରିବ ଅପର୍ଣ୍ଣା ? ଖାଲି ମୋର'··· ଦୀପଙ୍କର ବିହ୍ୱଳ ହୋଇଯାଇଥିଲା ।

ଆଉ ଠିକ୍ ପାଞ୍ଚ ବର୍ଷ ପରେ; ଦୁଇବର୍ଷର ଧୁମନ୍ତ ସବ୍ୟସାଚୀକୁ ନେଇ ସେ ଯେତେବେଳେ ଘରୁ ଗୋଡ଼ କାଢ଼ିଥିଲା, ତା କାନ ପାଖରେ ଠିକ୍ ଏଇଆ ଶୁଭିଥିଲା—ତମେ ସାରା ଜୀବନ ମୋର ହୋଇ ରହି ପାରିବ ଅପର୍ଣ୍ଣା ?

କିନ୍ତୁ ନା—ଅପର୍ଣ୍ଣା ଦୀପଙ୍କରର ହୋଇ ରହି ପାରିଲାନି । ନିଜକୁ ଦୀପଙ୍କରଠୁଁ ଦୂରେଇ ନେଇ ପଳେଇଗଲା ସେ ।

ବାଟରେ ସବ୍ୟସାଚୀ କାନ୍ଦିଥିଲା—ବାପା କାହାନ୍ତି ମା ? ବାପା ତ ଆସିଲେ ନାହିଁ ଆମ ସାଙ୍ଗେ ? ଛାତି ଭିତରେ ତାକୁ ଚାପି ଧରିଥିଲା ଅପର୍ଣ୍ଣା—କି ଜବାବ ସ୍ୱାର ଦବ ?

ନାଁ—ମୁଁ ବାପା ପାଖକୁ ଯିବି । ସବ୍ୟସାଚୀ ଅଳି ଧରିଥିଲା ।

ଚିତ୍କାର କରି ଉଠିଥିଲା ଅପର୍ଣ୍ଣା ତୋର ବାପା ବୋଲି କେହି ନାହାନ୍ତି, ତୋର ବାପା ମରିଯାଇଛନ୍ତି ।

ଆଉ ଆଜି ୨୦ ବର୍ଷ ପରେ—ସବ୍ୟସାଚୀକୁ ଉଠେଇ କହିଦେବ କି ଅପର୍ଣ୍ଣା, ଏଇ ତୋର ବାପା ଯାହା ଲାଗି ଦିନ ରାତି ଧରି କାନ୍ଦୁତୁ, ଏଇ ସେଇ···

କିନ୍ତୁ ପାରିଲାନି । ୨୦ ବର୍ଷର ଅବ୍ୟକ୍ତ ବେଦନା ଯେମିତି ଗୁମୁରି ଗୁମୁରି ବାଧା ଦେଲା ତାକୁ ।

ଆଖି ଖୋଲି ଦେଖିଲା ଅପର୍ଣ୍ଣା ଭଦ୍ରଲୋକ ଆରାମରେ ଶୋଇଯାଇଛନ୍ତି । ହାତରେ ବହି, ପାଟିରେ ସିଗାରେଟ । ୨୦ ବର୍ଷର ବ୍ୟବଧାନ କିଛି ତ ବଦଳେଇ ନାହିଁ ତାଙ୍କୁ । ବହୁତ ରାତି ଯାଏଁ ବହି ଧରି ପଢ଼ିବାର ଅଭ୍ୟାସ ଦୀପଙ୍କରର—ଆଉ ଆଲୁଅ ଜାଳିଲେ ନିଦ ହୁଏନି ଅପର୍ଣ୍ଣାର । ତେଣୁ ଅପର୍ଣ୍ଣା କେତେ ରାତିରେ ବିରକ୍ତ ହେଉଥିଲା । ଦୀପଙ୍କରର ବହି ଛଡେଇ ନେଉଥିଲା, କିନ୍ତୁ ଦୀପଙ୍କରର ସେଇ ଗୋଟାଏ ଜିଦ୍, ବହି ନ ପଢ଼ିଲେ ତାକୁ ନିଦ ହେବ ନାହିଁ ।

ନିଜ ସିଟ୍‌ରେ ଛଟପଟ ହେଲା ଅପର୍ଣ୍ଣା ।

ଉଠି ଆସିଲା ସବ୍ୟସାଚୀ । ନିଦ ହଉନି ମା ? କହିବ ଭଦ୍ରଲୋକଙ୍କୁ ଲାଇଟ୍ ଲିଭେଇ ଦବା ପାଇଁ ।

ନା—କଡ଼ଲେଉଟାଇଲା ଅପର୍ଣ୍ଣା । ମତେ ଏବେ ନିଦ ହୋଇଯିବ । ତୁ ବରଂ ଯା ଶୋଇପଡ଼ । ଆଖି ବୁଜିଲା ସେ । ଚିହ୍ନି ପାରିଲା କି କଅଣ ତାକୁ ଦୀପଙ୍କର ? କାହିଁ ? ଥରେ ବି ତ ମୁହଁ ବୁଲେଇ ଦେଖିଲା ନାହିଁ ତାକୁ ? କାହିଁକି ? ଭୁଲ୍ ତ ଅପର୍ଣ୍ଣା କରିନାହିଁ, ଭୁଲ୍ ବରଂ ଦୀପଙ୍କର କରିଥିଲା ।

ଯୋଉଦିନ ଅପର୍ଣ୍ଣା ଶୁଣିଥିଲା ଦୀପଙ୍କର ପୁଣି ବିବାହ କରିବାକୁ ଯାଉଛି ସେଦିନ ସେ ନିଜକୁ ବିଶ୍ୱାସ କରି ପାରି ନ ଥିଲା । କେମିତି ସେ ସନ୍ଦେହ କରିବ ଦୀପଙ୍କରକୁ ? ପାଞ୍ଚ ବର୍ଷର ବିବାହିତ ଜୀବନ ଭିତରେ ଦୀପଙ୍କର ତାକୁ ବହୁତ କିଛି ଦେଇଛି । ଦବାରେ କାର୍ପଣ୍ୟତା ସେ କରିନି କେବେ । ସେଇ ଦୀପଙ୍କର ତାକୁ ଛାଡ଼ି ପୁଣି ବିବାହ କରିବ ବୋଲି ସେ କେମିତି ବିଶ୍ୱାସ କରିବ ?

ସେଦିନ ରାତିରେ ସେ ଦୀପଙ୍କରକୁ ପଚାରିଥିଲା । ଆଚ୍ଛା କୁହତ, ଲୋକେ କାହିଁକି ଏମିତି ବଦନାମ କରୁଛନ୍ତି ତମକୁ ?

—ମତେ ? ହସିଲା ଦୀପଙ୍କର । ସୁନାମ ତ ମୋର କେବେ ନଥିଲା । ତେବେ ବିଷୟବସ୍ତୁଟା କଅଣ ଶୁଣେ ?

—ତମେ ଆଉଥରେ ବିବାହ କରିବ । ଛି, କେମିତି କହି ପାରନ୍ତି ଏ କଥା ଲୋକମାନେ ?

ଲୋକଙ୍କ ମୁହଁରେ ତମେ ହାତ ଦେଇ ପାରିବନି ଅପର୍ଣ୍ଣା । ତେବେ ସେମାନେ ଯାହା କହୁଛନ୍ତି, ମିଛ ତ କିଛି କହୁ ନାହାନ୍ତି ?

ଚମକି ଉଠିଥିଲା ଅପର୍ଣ୍ଣା । ତମେ କଅଣ ଖେଳୁଛ ମୋ ସଙ୍ଗେ ?

ନା—ତମେ ଯାହା ଶୁଣିଚ ସବୁ ସତ । ତେବେ ଆଉଥରେ ବିବାହ କଲେ କ୍ଷତି କଅଣ ?

କ୍ଷତି କଅଣ ? ଏ ପ୍ରଶ୍ନ ପଗ୍ଚରି ପାରିଲା ଗୀପଙ୍କର ? ଅପର୍ଣ୍ଣାର ସ୍ୱରପଟେ ସୃଥିବୀ ଘୂରୁଥିଲା । କହି କହି କରି କାନ୍ଦି ଉଠିଥିଲା ସେ—

—ମୋ ଦେହ ଛୁଇଁ ତମେ କହ ଯେ ତମେ ମିଛ କହୁଛ । ତମେ ଆଉ ଥରେ ବିବାହ କରିବନି ।

ହସିଥିଲା ଗୀପଙ୍କର—ପୁରୁଷର ଯୌବନ ଅକ୍ଷୟ ଅନନ୍ତ । ତା'ର ଶେଷ ନାହିଁ ଅପର୍ଣ୍ଣା । ଆଉ ଆମର ଏ ବଂଶର ପରମ୍ପରା ତ ହଉଚି ଏଇଆ ? ଜଣକୁ ବାହା ହେଇ ଗୀପଙ୍କର ଦାସ ଏ ବଂଶର ଆଭିଜାତ୍ୟ ଉପରେ ଆଞ୍ଚ ଆଣିବ କେମିତି ?

ତେବେ କାହିଁକି ବାହା ହେଇଥିଲ ମତେ ? ଏମିତି ଲୋକହସା କରିବା ପାଇଁ ? ପିଲାଙ୍କ ପରି କାନ୍ଦିଥିଲା ଅପର୍ଣ୍ଣା । ନା, ତମେ ମତେ କଥା ଦିଅ । ତମେ ମୋ ଛଡ଼ା ଆଉ କାହାରିକୁ ଏ ଘରେ ଗୃହିଣୀର ସ୍ଥାନ ଦେବ ନାହିଁ ? ମୁଁ ତମକୁ ମିନତି କରୁଚି—

ପିଲାଙ୍କ ପରି ହୁଅନା ଅପର୍ଣ୍ଣା । ଯାହା ହେଲେ ବି ତ ତମେ ମୋର ପାଟରାଣୀ ହେଇ ରହିବ । ଦୁନିଆ ଆଗରେ ତ ତମେ ମୋର ସ୍ତ୍ରୀ ।

ପାଟରାଣୀ ? କେମିତି ବୁଝେଇବ ଅପର୍ଣ୍ଣା ଯେ ନାରୀ ତା'ର ସ୍ୱାମୀକୁ ଖାଲି ତା'ର କରି ରଖିବାକୁ ଚାହେଁ । ସା'ରା ଜୀବନ ସ୍ୱାମୀକୁ ନିଜର କରି ବାନ୍ଧି ରଖିବାକୁ ଚାହେଁ । ବୁଝିବ କଅଣ ଗୀପଙ୍କର ? ସେ ଯେ ପୁରୁଷ, ସ୍ୱାର୍ଥପର । ଆଉ ବୃଥା ଯୁକ୍ତି କରିନଥିଲା ଅପର୍ଣ୍ଣା । ସାରା ରାତି ଆଖିରୁ ଲୁହ ଢାଳିଥିଲା । ତା'ପରେ ଶୋଇଲା ସବ୍ୟସାଚୀକୁ କୋଳରେ ନେଇ ଘରୁ ବାହାରି ଆସିଥିଲା ସେ ।

ଆସିଲାବେଳେ ଗୀପଙ୍କରକୁ ଖଣ୍ଡେ ଚିଠି ଲେଖିଦେଇ ଆସିଥିଲା—

"ତମ ହାରେମ୍‌ର ପାଟରାଣୀ ହେଇ ରହିବାର ଅଭିଳାଷ ମୋ'ର ନାହିଁ । ନାରୀ ପୁରୁଷ ପରି ନିର୍ମମ ହେଇ ପାରେନା । ନାରୀର ଯୌବନ ଅକ୍ଷୟ ନୁହେଁ । ନିଜକୁ ତିଳ ତିଳ କରି ନାରୀ ଉତ୍ସର୍ଗ କରିଦେଇ ପାରେ ପୁରୁଷ ପାଖରେ । କିନ୍ତୁ ନିଜର ପୁରୁଷକୁ ଆଉ କାହା ପାଖେ ଉତ୍ସର୍ଗ କରିବାକୁ ସେ ସହ୍ୟ କରିବନି ।

ସେଇଥି ପାଇଁ ମୁଁ ଚାଲି ଯାଉଚି । ତମ ବଂଶର ଆଭିଜାତ୍ୟ ପାଇଁ ଅପର୍ଣ୍ଣାର ଅଭାବ ହେବନାହିଁ ତମକୁ ।

ତମର ଶେଷ ସନ୍ତକକୁ ସାଙ୍ଗରେ ନେଇ ଯାଉଚ ।"

୨୦ ବର୍ଷ ତଳେ ସେଦିନ ରାତିରେ ସେ ସବ୍ୟସାଚୀକୁ ନେଇ ପଳେଇ ଯାଇଥିଲା ଦୂରକୁ, ବହୁ ଦୂରକୁ, ଘରକଷ୍ଟ କରି ମଣିଷ କରିଥିଲା ସବ୍ୟସାଚୀକୁ ଆଉ ସେଇ ସବ୍ୟସାଚୀ ଆଜି ଘରକଷ୍ଟ ପାଇଁ ଯାଉଚ ପ୍ରଥମ କରି । କିନ୍ତୁ ସେ କଅଣ ହେଲା ? ୨୦ ବର୍ଷ ପରେ ପୁଣି ଆଜି ଏ ନାଟକର ପୁନରାବୃତ୍ତି କାହିଁକି କଲ ଭଗବାନ ? ବେଶ୍ ତ ଥିଲା ଅପର୍ଣ୍ଣା । ଦୀପଙ୍କରର ସୂତ୍ର ଟିକକ ପାଥେୟ କରି ସବ୍ୟସାଚୀକୁ ସେ ମଣିଷ କରିଥିଲା ଦୁନିଆ ଆଗରେ, ଜଣେଇ ଦେଇଥିଲା ସେ ବିଧବା । ସବ୍ୟସାଚୀର ବାପା ନାହିଁ । ଅପର୍ଣ୍ଣା ତା'ର ମା' ବାପା ସବୁ । ପୁରୁଷର ଅଶ୍ଳୀଳ ଇଙ୍ଗିତକୁ ସହି ନେଇଚି ସେ । ଦୁନିଆର ଯେତେ ଝଡ଼ଝଞ୍ଜା ସବୁ ସହି ଆଗେଇ ଯାଇଚି, ଖାଲି ସବ୍ୟସାଚୀକୁ ମଣିଷ କରିବା ପାଇଁ । ଆଜି ସବ୍ୟସାଚୀ ମଣିଷ ହେଇଚି । ଅପର୍ଣ୍ଣାର ସ୍ୱପ୍ନ ସାର୍ଥକ ହେଇଚି । କିନ୍ତୁ ଆଜିର ଏଇ ମୁହୂର୍ତ୍ତରେ ଯେମିତି ସବୁ କିଛି ଓଲଟ ପାଲଟ ହେଇଗଲା । କାହିଁକି ଏମିତି ହେଲା ?

ମୁହଁ ଫେରେଇ ଦେଖିଲା—ଦୀପଙ୍କର ବାହୁ ଭିତରେ ନିଜକୁ ହଜେଇ ଦେଇଚି । ରାଗ ଲାଗିଲା—ମଣିଷ ନା ପଥର ଇଏ ? ଇଚ୍ଛା ହେଲା—ବାହୁ ଛଡ଼େଇ ନିଏ ଯାଇ । ଆଉ ପଚାରିବ, ଅପର୍ଣ୍ଣା ସିନା ଭୁଲ୍ କରିଥିଲା, କିନ୍ତୁ ସବ୍ୟସାଚୀ ? ସେ ତ ନିର୍ଦ୍ଦୋଷ । ତାକୁ ଥରେ ବି ଦେଖିଲ ନାହିଁ ତମେ ? ବାପ ହୋଇ ନିଜର ପୁଅକୁ ଥରେ ଗ୍ଲାତି ଭିତରେ ଜାକି ଧରିବା ପାଇଁ ଇଚ୍ଛା ହେଲା ନାହିଁ ? ଏତେ ନିଷ୍ଠୁର ତମେ ?

ଝରଝର କରି ଆଖିରୁ ଲୁହଧାର ବୋହି ଆସିଲା । ଆଜିର ଏ ଦେଖା ନ ହେଇଥିଲେ ତ ହେଇଥାନ୍ତା ।

ମା'—

କଅଣ ହେଲା ବାପା -

ତମେ ଶୋଇନ ?

କେମିତି କହିବ ଅପର୍ଣ୍ଣା ସେ କାହିଁକି ଆଜି ଶୋଇପାରୁନି ? କେମିତି କହିବ ସବ୍ୟସାଚୀକୁ ଯେ ଉପରେ ଯୋଉ ନିର୍ବିକାର, ପଥର ମଣିଷ ଶୋଇ ରହିଚ ସେ ତା'ର ସବୁ କିଛି ନେଇ ବି ଶାନ୍ତି ପାଇନି—ଆଜି ତାକୁ ଜାଳିପୋଡ଼ି ମାରିବା ପାଇଁ ପୁଣି ଧୂମକେତୁ ଭଳି ଦେଖା ଦେଇଚି ।

ହସିବାକୁ ଚେଷ୍ଟା କଲା ସେ ଆଜିର ଏ ରାତିଟା ନ ଶୋଇଲେ ବା କ୍ଷତି କଅଣ ବାପା ? ଜୀବନରେ ଏମିତି ରାତି ଆଉ କେତେଟା ଆସିବ ?

ବନ୍ଧ ଭିତରୁ ଉଠିଆସି ଅନେଇଥିଲେ ଦୀପଙ୍କର—ଅପର୍ଣ୍ଣାର ଆଖି ଉପରେ ଆଖି ରଖିଥିଲେ । ଦୀପଙ୍କରର ସେ ସ୍ୱପ୍ନରାଣୀ ଭିତରେ କୋଉଏ ବର୍ଷର ମୂକ ଅତୀତ ଯେମିତି କଥା କହୁଥିଲା···ସେଇ ସ୍ୱପ୍ନରାଣୀ—ଚହ୍ନିବାକୁ ଭୁଲ୍ ହୋଇନି ତାର—ଦୀପଙ୍କରର ବି ନୁହେଁ । ଦୀପଙ୍କର ଦାସ ତାହେଲେ ଚହ୍ନିଚ ତାକୁ । ଜାଣୁ ଦୀପଙ୍କର—ଏଇ ହଉଚ ତାର ଅପର୍ଣ୍ଣା—ତା'ର ହାରେମ୍‌ର ପାଟରାଣୀ—ଆଉ ଏଇ ହଉଚ ତାର ପୁଅ—ସବ୍ୟସାଚୀ ।

ବାସ୍, ଗୋଟିଏ ମୁହୂର୍ତ୍ତ···ଆଖି ଫେରେଇ ନେଇଥିଲେ ଦୀପଙ୍କର । ଗାଲ ଉପରେ ସେ କଣ୍ଟା ଦାଗଟା ଝାପ୍‌ସା ଆଲୁଅରେ ବି ଝକ୍ ଝକ୍ କରୁଚ ।

—ଆଗ ଷ୍ଟେସନରେ ଆମକୁ ଓହ୍ଲେଇବାକୁ ପଡ଼ିବ ମା' । ତମେ ଉଠି ବସ ତ—ମୁଁ ଜିନଷଗୁଡ଼ା ସଜାଡ଼ି ନଉଚ ।

ଉଠି ବସିଲେ ଅପର୍ଣ୍ଣା । ଆର ଷ୍ଟେସନରେ ଓହ୍ଲେଇବାକୁ ପଡ଼ିବ ? ତା' ହେଲେ ଦୀପଙ୍କର ଦାସ ସାଙ୍ଗେ ତା'ର ଏଇ ଶେଷ ଦେଖା ? ଇଚ୍ଛା ହେଲା ପଚାରିବ ଦୀପଙ୍କରକୁ, ପାଟରାଣୀକୁ ବାଦ ଦେଇ ଆଉ କେତେ ଜଣ ଅଛନ୍ତି ଏବେ ତା'ର ଅନ୍ତଃପୁରରେ । ଜମିଦାର ବଂଶର ଆଭିଜାତ୍ୟ ଉପରେ ଆଞ୍ଚ ତ ଆଣିନି ଦୀପଙ୍କର—ତେବେ ବଂଶର ସୁନାମ ରକ୍ଷା ପାଇଁ କେତେ ଜଣ ଅପର୍ଣ୍ଣାଙ୍କୁ ଅନ୍ତଃପୁର ଭିତରେ ରଖିପାରିବ ସେ ? ଇଚ୍ଛା ହେଲା ଦୀପଙ୍କର ଦେହରେ ହାତ ରଖି ସେ ପଚାରିବ—ତମେ କଅଣ ମଣିଷ ନୁହଁ ? ତମର କଅଣ କୌଣସି ଅନୁଭୂତ ନାହିଁ ? ଅପର୍ଣ୍ଣାର ସ୍ପର୍ଶରେ ତମର କୌଣସି ସ୍ପନ୍ଦନ ହୁଏନି ? ଯେମିତି ରାତି ରାତି ଧରି ଅପର୍ଣ୍ଣା ତମେ ଲାଗି କାନ୍ଦିଛି—ଗ୍ରୀଷ୍ମ ଭିତରେ ବ୍ୟଥାର ତୋଫାନକୁ ବୁକେ ରଖି ନିଦ୍ରାହୀନ ରାତି କଟେଇଚି । କେତେଟା ମୁହୂର୍ତ୍ତ ତମେ ଭାବିଚ ଅପର୍ଣ୍ଣା କଥା ?

ଗାଡ଼ି ରହିଲା । ଉଠିଲା ଅପର୍ଣ୍ଣା—ଏ ନାଟକର ପୂର୍ଣ୍ଣଚ୍ଛେଦ ଏଇଠି ହେଉ । ଏ ଜୀବନରେ ଯେମିତି ଏ ରାତି ଆଉ ନ ଆସୁ । ଅପର୍ଣ୍ଣା ସବୁ ସହିବ କିନ୍ତୁ ଦୀପଙ୍କର ଦାସର ଖେଆଲି ଅଭିନୟ ସହିପାରିବନି । ଶେଷଥର ପାଇଁ ସେ ଅନେଇ ଦେଖି-ନେଲା ଦୀପଙ୍କରକୁ—କିଛି ତ ବଦଳି ନାହିଁ ଦୀପଙ୍କର । ବାର୍ଦ୍ଧକ୍ୟ ବି ଯେମିତି ଛୁଇଁବାକୁ ସାହସ କରିନାହିଁ ଦୀପଙ୍କରକୁ । ଦୀପଙ୍କର ଠିକ କହିଚ --ତା'ର ଯୌବନ ଅକ୍ଷୟ-ଅନନ୍ତ—ଖାଲି ହାରି ଯାଇଚ ଅପର୍ଣ୍ଣା କୋଉଏ ବର୍ଷର ବ୍ୟବଧାନ ତାକୁ ଯେମିତି ଆହୁରି କୋଉଏ ବର୍ଷ ଆଗେଇ ନେଇଛି । ସେ ବୁଢ଼ୀ ହେଇ ଯାଇଛି । ନିଜକୁ ସଜାଡ଼ି ନେଲା ଅପର୍ଣ୍ଣା—ବେଶ୍, ମୁଁ ତେବେ ଯାଉଚ । ହେ ଅପର୍ଣ୍ଣା ଜୀବନର ଧୂମକେତୁ---ବିଦାୟ ।

ଆସ ମା'

ଚାଲ୍ ବାପା - ଅପର୍ଣ୍ଣା ଆଗକୁ ପାଦ ବଢ଼େଇଲା ।

# ଭଗବାନ

## ସାତକଡ଼ି ହୋତା

ସେହି ଅଭିନନ୍ଦନର ଦିନ ଗୁଡ଼ାକ ମନେ ପଡ଼ିଲା । ସୁଧାଂଶୁ କେଡ଼େ ଖୁସୀ ହୋଇଥିଲା ସେଦିନ । କୃତଜ୍ଞତାରେ ଅନ୍ତର ପୁରି ଉଠିଥିଲା । ତାର ଖୁସୀ ଯେ କେବଳ ତା'ର ଏକାର ନଥିଲା ଏବଂ ସେଥିରେ ଅନ୍ୟମାନଙ୍କର ବି ଭାଗ ଥିଲା ଏହା ଜାଣି ସେ ପୂର୍ଣ୍ଣତା ଅନୁଭବ କରିଥିଲା । ସେହି ଦିନଗୁଡ଼ା କେବଳ ହସ, ଖୁସୀ ଏବଂ ପୂର୍ଣ୍ଣତାର ଦିନ ପରି ମନେ ହୋଇଥିଲା ସେଦିନ । ଆଜି କିନ୍ତୁ ସେ ବୁଝିଲା ଯେ ଜୀବନର ହସ ଓ ଆନନ୍ଦ ପରି ଅଶ୍ରୁ ଏବଂ ବେଦନା ମଧ୍ୟ ମଣିଷର ନିଜସ୍ୱ, ଅତି ଆପଣାର । ବ୍ୟର୍ଥତା ଓ ବେଦନା ନଥିଲେ ଆନନ୍ଦର ଏତେ ମଧୁରତା ଏବଂ ଜୀବନର ଏତେ ଐଶ୍ୱର୍ଯ୍ୟ ନଥାନ୍ତା ନିଶ୍ଚୟ ।

ସୁଧାଂଶୁ ସେଦିନ ଏମ . ଏସ୍‌ସିରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହବାର ଶୁଭ ସମ୍ବାଦ ପାଇଥିଲା । ସେହି ଶୁଭ ସମ୍ବାଦଟି ମୁହଁରୁ ମୁହଁକୁ ପ୍ରସାରିତ ହୋଇ ତା ପାଖରେ ଅସି ପହଞ୍ଚିଥିଲା । ଖରା ଛୁଟିରେ ବସି ବସି ଅଳସୁଆ ଦିନଗୁଡ଼ାକ ଆହୁରି ଲମ୍ବା ଜଣା ପଡ଼ୁଥିଲେ ବୋଲି ସେ ସାଙ୍ଗସାଥିମାନଙ୍କୁ ନେଇ ଗୋଟେ ନାଟକ ମଞ୍ଚସ୍ଥ କରିବ ର ଅ‌ାୟୋଜନ କରୁଥିଲା । ତା ସାଙ୍ଗରେ ତାଙ୍କ ଦାଣ୍ଡ ଦୁଆର ଆଗରେ ଥିବା ବଉଳ ଗଛ ମୂଳେ ଖଟ ଉପରେ ଆହୁରି ଚ୍ୱରି ପାଞ୍ଚଜଣ ସାଙ୍ଗ ବି ବସିଥିଲେ । ସାମାଜିକ, ଐତିହାସିକ ବା ପୌରାଣିକ କେଉଁ ନାଟକ ମଞ୍ଚସ୍ଥ କଲେ ମନୋରଞ୍ଜନ ଅଧିକ ହେବ ଏବଂ ସମସ୍ତଙ୍କର ପ୍ରତିଭା ପ୍ରକାଶ ପାଇ ପାରିବ ସେହି କଥା ଆଲୋଚନା କରୁଥିଲେ ସେମାନେ । ଆଲୋଚନାର ବିରତି ଟାଣି ସେମାନଙ୍କ ମଧ୍ୟରେ ଗାଆଁର ଅନ୍ୟତମ ଉଚ୍ଚ ଶିକ୍ଷିତ ଏବଂ ସଚିବାଳୟରେ ସହକାରୀ ପଦରେ କାମ କରୁଥିବା ମଲୟ ବାବୁ ଆସି ସେତେବେଳେ ଘୋଷଣା କଲେ ଯେ କେବଳ ଗ୍ରାମ ନୁହେଁ, ଜିଲ୍ଲାର ମୁଖ ଉଜ୍ଜ୍ୱଳ କରି ସୁଧାଂଶୁ ପ୍ରଥମ ଶ୍ରେଣୀରେ ପାସ୍ କରିଅଛି

ସେତେବେଳେ ସାଙ୍ଗମାନେ ତାକୁ କାନ୍ଧ ଉପରେ ବସାଇ ବଉଳ ଗଛ ଘର ପାଖରେ 'ହିପ୍ ହିପ୍ ହୁରେ' ଧ୍ୱନିଦେଇ ଘରଥର ବୁଲାଇ ଆଣିଲେ । ସେହି ଶୁଭ ସମ୍ବାଦଟା ଯେପରି ତାର ଏକାର ନୁହେଁ, ସମସ୍ତଙ୍କର । ସାହିର ଆଉ ପାଞ୍ଚ ସାତଜଣ ଆସି ସଙ୍ଗେ ସଙ୍ଗେ ଭୁକ୍ତ ହୋଇଗଲେ ତାକୁ ଶ୍ରଦ୍ଧା ଏବଂ ଶୁଭେଚ୍ଛା ଜଣାଇବା ପାଇଁ । ସେଥିରୁ କେତେକ ଘୋଷଣା କଲେ ଯେ ସୁଧାଂଶୁ ପ୍ରଥମ ଶ୍ରେଣୀରେ ପାସ୍ କରିବା କିଛି ବଡ଼ କଥା ନୁହେଁ, ଏହା ଜଣାଥିଲା, ବରଂ ପ୍ରଥମ ଶ୍ରେଣୀ ପାଇ ନଥିଲେ ବିଶ୍ୱବିଦ୍ୟାଳୟ ବିଶ୍ୱାସ ଯୋଗ୍ୟତା ହରାଇ ଥାଆନ୍ତା ।

ସେ ଦିନର ସବୁଜ ଦିନଗୁଡ଼ା ଆଉ ନଥିଲା । ଗଛର ପାଚିଲା ପତ୍ର ପରି ଅନେକ ଆଶା ଲୋଟି ପଡ଼ିଥିଲେ ଭୂଇଁ ଉପରେ । ତେଣୁ ବର୍ଷେ ବେକାର ରହିବା ପରେ ବିଶ୍ୱବିଦ୍ୟାଳୟ ବିଶ୍ୱାସଯୋଗ୍ୟତା ହରାଇ ଥାଉ ବା ନଥାଉ ସେ ନିଶ୍ଚୟ ନିଜର ବିଶ୍ୱାସଯୋଗ୍ୟତା ହରାଇଥିଲା ବୋଲି ସୁଧାଂଶୁ ଉପଲବ୍ଧି କଲା । ଏମ୍. ଏସ୍‌ସି.ରେ ପ୍ରଥମ ଶ୍ରେଣୀ ପାଇବା ପରେ ସେ ଫୁଲି ଉଠିଥିଲା, ଗଡ଼ ଜିଣିବାର ଗର୍ବ ଅନୁଭବ କରିଥିଲା ! କିନ୍ତୁ ଜୀବନ ଯୁଦ୍ଧ ଯେ ସେତେବେଳେ ଆରମ୍ଭ ବି ହୋଇ ନଥିଲା ଆଜି ତାହା ବୁଝିଲା ସେ । ଜୀବନର ଜିଜ୍ଞାସା ପରି ଦାବୀ ମଧ୍ୟ ଅନେକ । କିନ୍ତୁ ଜିଜ୍ଞାସାର ଉତ୍ତର ପରି ଜୀବନର ସୁଯୋଗ ମଧ୍ୟ ଅନେକ କମ୍, ଅନେକ ବିରଳ । ସୁଖର ଦିନ ଗୁଡ଼ା ଶୀଘ୍ର ସରିଯିବା ପରେ ସଂଗ୍ରାମର ଦିନ ଗୁଡ଼ା ଗ୍ରୁଇପରି ଖାଲି ଲମ୍ବି ଯିବାକୁ ଲାଗିଲା । ସୁଧାଂଶୁ ନିଜ ଉପରେ ଆଉ ନିର୍ଭର କରି ପାରିଲା ନାହିଁ, ତାର ଆତ୍ମବିଶ୍ୱାସ ଏଇ ବର୍ଷକ ଭିତରେ ଅନେକ କମି ଯାଇଥିଲା ।

ବର୍ଷେ ସମୟ କିଛି କମ ନୁହେଁ । 'ଲଙ୍କା ବିଜୟ' ନାଟକ ଅଭିନୀତ ହବାର ବର୍ଷେ ହୋଇଗଲା । ମୂଳ ଭୂଖଣ୍ଡରୁ ଲଙ୍କାକୁ ଯିବାପାଇଁ ପଥ ବା ପୋଲ ନଥିଲା ବୋଲି ହନୁମାନ ଶୂନ୍ୟେ ଶୂନ୍ୟେ ସମୁଦ୍ର ଡେଇଁ ଲଙ୍କା ଦ୍ୱୀପରେ ପହଞ୍ଚି ଯାଇଥିଲା । ଅଥଚ ସର୍ବୋଚ୍ଚ ଶିକ୍ଷା ଏବଂ ଯଥା ଯୋଗ୍ୟ ଦକ୍ଷତା ଥାଇ ମଧ୍ୟ ସେ ପାସ୍ କରିବାର ବର୍ଷକ ପରେ ବି ସଂସାର-ସମୁଦ୍ର କୂଳରେ ଛିଡ଼ାହୋଇ ନିଯୁକ୍ତିର ଅପେକ୍ଷା କରୁଥିଲା । ନିଯୁକ୍ତି ପତ୍ର ଧରି ଆସୁଥିବା ସୁନୀଳ ସାଗରର ଢେଉମାନେ ଗୋଟିଏ ପରେ ଗୋଟିଏ କେବଳ ଭାଙ୍ଗିଗଲେ ସିନା କୂଳରେ ପହଞ୍ଚି ପାରିଲେ ନାହିଁ । ହସ, ଖୁସୀ ଏବଂ ଫୁର୍ତ୍ତିର ସେହି ଅନୁପମ ଦିନ ଗୁଡ଼ାକ ସ୍ୱପ୍ନ ହୋଇଗଲେ ସୁଧାଂଶୁ ପାଖରେ । ସେଦିନ ତାକୁ ସାର୍ଥକତାର ଆନନ୍ଦରେ ଭାଗ ବସାଇଥିଲେ ଅନ୍ୟମାନେ, ଅଥଚ ଭାଗ୍ୟର ବିଡ଼ମ୍ବନା ଏପରି ଯେ ତାର ବ୍ୟର୍ଥତା ତାର ଏକାନ୍ତ ନିଜସ୍ୱ, ସେଥିରେ କାହାରି ଭାଗ ନାହିଁ । ତାର ଅଶ୍ରୁରୁ ଭାଗ ନବା ପାଇଁ କେହି ହାତ ବଢ଼ାଉ ନାହିଁ କିମ୍ବା ସଫଳତା ପାଇଁ ସଂଗ୍ରାମରେ କେହି ତା ସହିତ କାନ୍ଧ

ଲେଗାଉ ନାହିଁ, ପାଦ ମିଳାଇ ଚାଲୁନାହିଁ । ଆଜ ହଠାତ ସୁଧାଂଶୁର ମନେ ପଡ଼ିଲା ଯେ ସେ ବଡ଼ ଏକୁଟିଆ ଏବଂ ତାର ଚାଲିବା ପଥଟା କେଡ଼େ ନଗ୍ରୁଟିଆ ।

ସୁଧାଂଶୁ କିନ୍ତୁ ଏତେ ସହଜରେ ହାର ମାନିଲା ନାହିଁ । ସବୁ ବିଫଳତା ସତ୍ତ୍ୱେ ସଫଳତା ପାଇଁ ଏବେବି ଟିକେ ଆଶା ବଞ୍ଚିଥିଲା । ଆଶା ଥିବାଯାଏ ଉଦ୍ୟମ ଥାଏ । ଉଦ୍ୟମହିଁ ଜୀବନର ମଣିଷର ଅସ୍ତ୍ର । ସେ ଆହୁରି ଚେଷ୍ଟା କରିବା ପାଇଁ ଦମ୍ଭ ବାନ୍ଧିଲା ।

ଗାଆଁରୁ ଆସିବାର ବର୍ଷେ ହୋଇଗଲା । ଚାକିରି ହୋଇନାହିଁ ବୋଲି ଫେରି ଯାଇ ପାରି ନାହିଁ । ଚାକିରି ନ ହୋଇ ଚାଷ ବା ବ୍ୟବସାୟ କରିବା ପାଇଁ ବି ସେ ଅଗ୍ରାଜ ନଥିଲା । କିନ୍ତୁ ଜମି ଦଶମାଣକୁ ଜାବୁଡ଼ି ଧରି ବାପା ରହିଥିଲେ ଗାଆଁରେ । ବର୍ଷା ପାଣି ଉପରେ ନିର୍ଭର । କେନାଲ ବା ନଦୀ ନାହିଁ । ପୋଖରୀରୁ ପାଣି ଆଣି ପିଆଜ, ରସୁଣ ଓ ପରିବା କେତେ କଆରୀ କରନ୍ତି । ସେଠାରେ ପ୍ରୟୋଜନ ନାହିଁ ସୁଧାଂଶୁର । ବ୍ୟବସାୟ କରିବା ପାଇଁ ସମ୍ବଳ ନାହିଁ । ଅଧମ ତାରଣର ଅକ୍ଷୟ କବଚ ହେଲା ଚାକିରି । ସେହି ଚାକିରି ଖଣ୍ଡିକ ଏଯାଏ ମରୁଭୂମିର ମରିଚିକା ପରି ରହିଗଲା, ହାତ ମୁଠାକୁ ଆସିଲା ନାହିଁ ।

ମେସ୍‌ର ବାକୀ ପାଉଣା ପରିଶୋଧ କରି ପାରି ନାହିଁ । ସାଙ୍ଗମାନେ ଆଉ କେତେଦିନ ଚଳେଇବେ ? ଟିଉସନ କରି ସରୁସୁ ଟଙ୍କା ପାଏ । ସେଥିରେ ଚଳେନାହିଁ । ବାପା କୋଡ଼ିଏ ପଚାଶ ପଠାନ୍ତି । ମାସକୁ ଏତିକ ଟଙ୍କା ଯଥେଷ୍ଟ ନୁହେଁ । ତାକୁ ପଢ଼ାଇବା ପାଇଁ ଜମି ବନ୍ଧକ ଦେଇ ତିନିହଜାର ଟଙ୍କା ଭୂବନ୍ଧକ ବ୍ୟାଙ୍କରୁ ଋଣ ଆଣିଥିଲେ ଯେ ଏଯାଏ ପରିଶୋଧ କରି ପାରିଲେ ନାହିଁ । ଚାକିରି ଖଣ୍ଡିଏ ମିଳିଗଲେ ପରିଶୋଧ କରିଦେବ ବୋଲି ପ୍ରତିଶ୍ରୁତି ଦେଇଥିଲେ । ତାହା ପାଣି ଫୋଟକା ପରି ଫାଟିଗଲା । ସମୟ ଗଡ଼ିଗଲା, ଚାକିରି ଖଣ୍ଡେ ମିଳିଲା ନାହିଁ ।

ପକେଟରେ ଖୁଚୁରା ପଇସା କିଛି ପଡ଼ିଥିଲା । ପହିଲା ହବା ପାଇଁ ଆହୁରି ପାଞ୍ଚଦିନ । ପାଞ୍ଚଦିନ ପରେ ଟିଉସନ ଟଙ୍କା ମିଳିବ, ବାପା ବି କିଛି ପଠେଇବେ ।

କଚେରୀ ରାସ୍ତାଦେଇ ସୁଧା ଘରକୁ ଟିଉସନ କରିବା ପାଇଁ ଯିବା ସମୟରେ ପେଟ୍ରୋଲ ପମ୍ପର ପାଚେରୀକୁ ଲାଗି ଯେଉଁ ଜ୍ୟୋତିଷ ଜଣକ ବସୁଥିଲା ଆଜି ବି ତାକୁ ସେହିଠାରେ ବସି ଥିବାର ଦେଖି ତା ପାଖରେ ଯାଇ ଛିଡ଼ା ହେଲା ସୁଧାଂଶୁ ।

ଜ୍ୟୋତିଷ ଖଣ୍ଡେ କାଗଜପଟା ଉପରେ ନିଜର ନାମ, ବିଦ୍ୟା ଓ ବୃଦ୍ଧିର ବିବରଣୀ ଲେଖି ଲଟକାଇ ଦେଇଥିଲେ ପାଚେରୀ କାନ୍ଥରେ । ଜ୍ୟୋତିଷରତ୍ନ ଶ୍ରୀ ଧୂର୍ଜଟୀ ଚଇନ, ଭୃଗୁ ସଂହିତା ବିଶାରଦ, ଜ୍ୟୋତିଷାର୍ଣ୍ଣବ, ଇତ୍ୟାଦି ଇତ୍ୟାଦି ।

ଧୂର୍ଜଟୀ ଚଷମା ଲଗାଇ ତା ଆଡ଼କୁ ମୁହୂର୍ତ୍ତେ ଗ୍ରହି ଟିକେ ଆହତ କଣ୍ଠରେ କହିଲେ, ସମୟ ଭଲ ପଡ଼ୁ ନାହିଁ । ଗ୍ରହ ଗ୍ରହ ଚପଳ ଘୁରି ଗଲାଣି, ପାଦ ଅଟକି ଗଲାଣି । ସବୁ କପାଳ ' ତେବେ ଭରସା ରଖ, ଖରାପ ସମୟ ପରେ ଜୀବନରେ ଭଲ ସମୟ ବି ଆସେ, ଶୀତ ଦିନ ସବୁଦିନ ନଥାଏ ।

ଉତ୍ସାହିତ ହୋଇ ବସିପଡ଼ି କହିଲା ସୁଧାଂଶୁ, ବଡ଼ ନିରୂପାୟ ପଣ୍ଡିତେ । ବୁଲି ବୁଲି ଥକି ଗଲିଣି ।

ସିଲଟ ଉପରେ ଗାରଟାଣି କହିଲେ ଧୂର୍ଜଟୀ, ନାମ. ଗୋତ୍ର, ରାଶି, ନକ୍ଷତ୍ର, ଜନ୍ମ ତାରିଖ ସବୁ କହିଯାଅ ବାବା । ଜନ୍ମ କୁଣ୍ଡଳୀ ଭିତରେ ମୁହଁମାଡ଼ି ପଡ଼ି ରହିଚି ଭବିଷ୍ୟତ, ତାକୁ ଟିକେ କରେଖି ଦେଖିନିଏ, ଚିନିସି ନିଏ ।

ଗୋଟି ଗୋଟି କରି ସବୁ କହିଗଲା ସୁଧାଂଶୁ । ଗାର ଟାଣି, ଅଙ୍କ କଷି ଅନେକ ହିସାବ ପରେ ଗୋଟେ ବିଚିତ୍ର ଶବ୍ଦ କରି କହିଲେ ଧୂର୍ଜଟୀ, କଳା ମେଘ ଖଣ୍ଡକ ଖସିଯିବ ବାବା । ସୂର୍ଯ୍ୟୋଦୟର ଡେରି ନାହିଁ ।

ସୁଧାଂଶୁ କହିଲା, ଅନେକ କଷ୍ଟ ପାଇଲିଣି ପଣ୍ଡିତେ । ସବୁ ଇଣ୍ଟରଭିଉ ବିଫଳ ହୋଇଛି । ସଫଳତାର ଆଉ ଆଶା ନାହିଁ । ଜୀବନଟା କେବଳ ବ୍ୟର୍ଥତା ଏବଂ ଯନ୍ତ୍ରଣାର କେନ୍ଦ୍ର ବୋଲି ମୁଁ ଯଦି ଆଗରୁ ଜାଣି ଥାଆନ୍ତି ।

ଜ୍ୟୋତିଷ ଗୋଟିଏ ଅଙ୍କ ଉପରେ ହାତରଖି ସୁଧାଂଶୁକୁ ଯେ କୌଣସି ଏକ ଫୁଲର ନାମ କହିବା ପାଇଁ କହିଲେ । 'ଯୂଇ' ସଙ୍ଗେ ସଙ୍ଗେ ଉତ୍ତର ଦେଲା ସୁଧାଂଶୁ । ତାପରେ ଅଙ୍କ କଷି ଗମ୍ଭୀର ସ୍ୱରରେ ଘୋଷଣା କଲେ ସେ, ଆଉ ତିନିମାସ ପରେଶୁଭ ସମୟ । ରାହୁ, କେତୁ ଉଭୟ ଜନ୍ମ ରାଶି ଉପରୁ ଖସିଯିବେ । ତା ପରେ ବୃହସ୍ପତି ପଞ୍ଚମ । ଚାକିରି, ବ୍ୟବସାୟ, ବାଣିଜ୍ୟ ଯହିଁରେ ହାତ ଦେଲେ ବି ସଫଳତା ନିଶ୍ଚିତ । ଠିକ୍ ପାଞ୍ଚ ମାସ ପରେ ନିଜର ଆଶାତୀତ ସଫଳତା ଯୋଗୁଁ...... ।

ସମ୍ପୂର୍ଣ୍ଣ ନିରବ ରହିଗଲେ ଜ୍ୟୋତିଷ । ତାପରେ ତାଳିମାରି କହିଲେ, ମୋର ଗଣନା ଏଯାଏ କେବେ ଭୁଲ ହୋଇ ନାହିଁ, ଆଉ ଏ ଗଣନା ବି ନିର୍ଭୁଲ । ଯଦି ଫଳ ଠିକ୍ ଠିକ୍ ନ ଫଳେ ଜ୍ୟୋତିଷ ବିଦ୍ୟା ଛାଡ଼ିଦେବି, ମୋ ନାମରେ ଗୋଟେ କୁକୁର କମ୍ପା ନେଇକି ପୋଷିବ ।

ସୁଧାଂଶୁ ବିଶ୍ୱାସ କରିବାକୁ ଆରମ୍ଭ କଲା ଏବଂ ଜ୍ୟୋତିଷର ଗଣନା ଏବଂ ଭବିଷ୍ୟତ ବାଣୀରେ ଏକ ଉଜ୍ଜ୍ୱଳ ଭବିଷ୍ୟତର ସୂଚନା ପାଇଲା । କିନ୍ତୁ ସନ୍ଦେହମୁକ୍ତ ହୋଇ ନପାରି ପଚାରିଲା, କଣ କହିବାକୁ ଯାଇ ରହିଗଲେ ଯେ...। କୋଉଥିରେ ଅପ୍ରାପ୍ତବିକ ସଫଳତା ଆସିବ କହିଲେ ନାହିଁ ଯେ... ।

ସିଲେଟ ଉପରେ ମଣ୍ଡଳ କାଟି କହିଲେ ଧୂର୍ଜଟୀ, ଘୃଷ ନୁହେଁ, ଘୃକସି । ଇମିତ ସିମିତ ସାମାନ୍ୟ ଘୃକଷି ନୁହେଁ, ଗୋଟେ ବଡ଼ ଘୃକସି ।

ହଁ, ହଁ, ମୁଁ ଦରଖାସ୍ତ କରିଛୁ, ପରୀକ୍ଷା ବ ଦେଇଛୁ । ଆଇ. ଏ. ଏସ୍. କଅଣ ସତରେ ମିଳିବ ?

ନଜର ଜାନୁ ଉପରେ ଗୋଟେ ବଡ଼ ଆପୁଡା ମାର କହିଲେ ସେ, ଅଲବତ୍ତ ମିଳିବ । ତୁମେ ଆଇ. ଏ. ଏସ୍. ନହିବ ତ କଅଣ ଦାଣ୍ଡରେ ଗଡ଼୍ ଗଡ଼୍ ହେଉଥିବା ଶାମା, ଭାମା, ଘମା ହେବେ ? ଖାଲି ତୁମ ଯୋଗତ ଖାଟୁନାହିଁ ବାବୁ । ଆଉ ଗୋଟେ ବଡ଼ ଶକ୍ତ ବ କାମ କରୁଛି ।

କୌତୂହଳ ଦମନ କର ନପାର ପଗ୍ଭରିଲା ସୁଧାଂଶୁ, କେଉଁ ଶକ୍ତ ?

ଏଇ ସହରର କେହି ଜଣେ ବଡ଼ ହାକିମ ତୁମକୁ ସାହାଯ୍ୟ କରିବେ । ଭଲ ଘୃକସିରେ ତୁମର ସ୍ୱାର୍ଥ ଯେତକ ତାଙ୍କ ସ୍ୱାର୍ଥବ ସେତକ । ଧରାଧର ଯୁଗ ଏ । ଯାହାର ଧରାଧର ବା ଲୋକବଳ ନାହିଁ ସେ ଯେତେ ପାଠୁଆ ହେଲେ କଅଣ ହେବ ଚପ୍ପୁ କୁଟିବ କେବଳ ।

କନ୍ତୁ କାହିଁକ ସେ ମୋତେ ସାହାଯ୍ୟ କରିବେ, ଏଥିରେ ତାଙ୍କର ଲଭ ? ପଗ୍ଭରିଲା ସୁଧାଂଶୁ ।

ସୁଧାଂଶୁର କାନ୍ଧ ଉପରେ ହାତ ରଖି ଫିସ୍ ଫିସ୍ କର କହିଲେ ସେ, ତାଙ୍କର ବେଶୀ ଲଭ । କନ୍ୟାସୁନା ପାଇଁ ଗୋଟିଏ ପାଇଯିବେ ସହଜରେ ।

ଲଜେଇ ଗଲ ସୁଧାଂଶୁ । ତା ମାନସ ପଟରେ ଝଲକି ଗଲା ସୁଧାର ମୁହଁଟି ଭାସି ଉଠିଲା । ସେ କହିଲା, ସେମାନେ ବଡ଼ ଲୋକ । ମୁଁ ଗରିବ ଘରର ପିଲା । ଏ ସମ୍ପର୍କ ସମ୍ଭବ ନୁହେଁ ।

ଅସମ୍ଭବକୁ ସମ୍ଭବ ମଣିଷ କରିଏ ନାହିଁ, ଗ୍ରହମାନେ କରନ୍ତି । ତୁମ ସପକ୍ଷରେ ସବୁ ଶକ୍ତଶାଳୀ ଗ୍ରହ । ତାପରେ ଝଡ଼ ଯାହା କହୁଛି -- ଚନ୍ଦ୍ର, ପ୍ରେମ, ପ୍ରୀତ, ପ୍ରଣୟର ଗ୍ରହ । ତାଙ୍କର କୃପା ଦୃଷ୍ଟି ପଡ଼ିଛି ଯେତେବେଳେ ସେହି ବଡ଼ ହାକିମ ଘୃହିଁବା ଆଗରୁ ତାଙ୍କର କନ୍ୟାରତ୍ନ ଆଡ଼ନୟନରେ ଆଗ ଘୃହିଁବେ । ଖସି ଯିବାର ଉପାୟ ନାହିଁ ।

ସୁଧା ଏବଂ ସମ୍ଭବି ଆସି ସୁଧାଂଶୁର ଶୂନ୍ୟହାତକୁ ପୂର୍ଣ୍ଣ କର ଦେଇଗଲେ ମୁହୂର୍ତ୍ତିକରେ । ସୁଧାଂଶୁ ପ୍ରଗଳ୍‌ଭ ହୋଇ ଉଠିଲା । ସୁଧାର ସାନ ଭାଇ ନବମ ଶ୍ରେଣୀରେ ପଢ଼େ । ତାକୁ ଅଙ୍କ ଏବଂ ବିଜ୍ଞାନ ପଢ଼ାଉଥିଲା ସୁଧାଂଶୁ । ପଢ଼ାଇବା ବେଳେ କେବେ କମିତ ହଠାତ୍ ସୁଧା ଆସି ତାକୁ ଜିଜ୍ଞାସର ଗୋଟେ ଦୁଇଟା

ପ୍ରବ୍ଲେମ କହ୍ଵ ସମାଧାନ କରାଇ ନେଉଥିଲା । ବ. ଏସସି. ଅନର୍ସରେ ଫିଜିକାସ୍ ନେଇଥିଲା ସୁଧା । ସୁଧାଂଶୁର ଆଜ କାହିଁକ ମନେ ହେଲା ଯେ ସୁଧା ପଦାର୍ଥ ବିଦ୍ୟାର ସମସ୍ୟାର ସମାଧାନ ପାଇଁ ନୁହେଁ ଯେପରି ନିଜ ମାନସିକ ସମସ୍ୟାର ସମାଧାନ ଖୋଜୁଥିଲା ତା ପାଖରେ । ଅନେକ ଦିନ ଏଇ କଥାଟା ମନ ଭିତରେ ଭିକ ମାଗିବାକୁ ଯାଇ କୌଣସି ଉତ୍ସାହ ନପାଇ ଲିଭି ଯାଇଥିଲା ମନରେ । ଆଜି ତାହା ଆଉ ଥରେ ଭିକ ମାଗି ଲିଭିଗଲା ନାହିଁ, ମନର ରାଜଦାଣ୍ଡ ଉପରେ ପାଲିକ ଛୁଡ଼ା କରି ଓହ୍ଲାଇ ପଡ଼ିଲା ସୁଧା ସାଙ୍ଗରେ ଚାଲିବା ପାଇଁ, ସର୍ବାଙ୍ଗ ପୁଲକିତ ହୋଇ ଉଠିଲା ସୁଧାଂଶୁର ।

ସେ ଜ୍ୟୋତିଷଙ୍କ ହାତରେ ପଚିଶ ପଇସା ଗୁଞ୍ଜିଦେଇ କହିଲା, ଆଜି ପାଖରେ ଆଉ କିଛି ନାହିଁ । ଯଦି ଗଣନା ସତ୍ୟ ହୁଏ ମୁଁ ଆପଣଙ୍କୁ ଭୁଲି ଯିବିନି ପଣ୍ଡିତେ ।

ଟିକେ ହତୋତ୍ସାହ ହୋଇ କହିଲେ ଜ୍ୟୋତିଷ, ବଡ଼ ହେଲେ ଉପରକୁ ଆଖି ହୋଇଯାଏ ବାବୁ । ଏଇ ପେଟ୍ରୋଲ ପମ୍ପକୁ କେତେ ବଡ଼ ବଡ଼ିଆ ଆସନ୍ତି ଗାଡ଼ିରେ ତେଲ ପକେଇବା ପାଇଁ । ଦିନେ ସେମାନେ ମୋର ଦ୍ଵାରସ୍ଥ ହୋଇ-ଥିଲେ, ଏବେ ମୁଁ କେବଳ ସେମାନଙ୍କର ଗାଡ଼ିର ପୋଡ଼ା ପେଟ୍ରୋଲର ଗନ୍ଧ ପାଏ । ସେମାନେ ଚିହ୍ନି ବି ପାରନ୍ତି ନି ।

ମୁଁ ସେମାନଙ୍କ ପରି ନୁହେଁ । ଆପଣଙ୍କ ଗଣନା ପରି ଏହା ବି ସତ । କହିଲା ସୁଧାଂଶୁ ।

ଜ୍ୟୋତିଷ ମୁହଁ ଉପରେ ଟିକେ ସାନ୍ତ୍ଵନାର ହସ ଖେଳାଇ କହିଲେ, ହଉ ହଉ, ତୁମ ମୁଣ୍ଡରେ ଫୁଲ ଚନ୍ଦନ ପଡ଼ୁ, ତୁମ ରାସ୍ତା ପ୍ରଶସ୍ତ ହେଉ ।

ସୁଧାଂଶୁ ବିଦାୟ ନେଇ ଚାଲିବାକୁ ଲାଗିଲା । କଚେରୀ ଘଣ୍ଟାରେ ଠଣ ଠଣ ହୋଇ ଏଗାରଟା ବାଜିଲା । ବାରଟା ବେଳେ ଇଣ୍ଟରଭିଉ । ଆଜି ଦିନଟା ଭଲ ପରି ମନେ ହେଲା । ସୂର୍ଯ୍ୟ ଖୁବ ଉଜ୍ଜ୍ଵଳ ଦିଶୁଥିଲେ । ରାସ୍ତା ଧାରର ଗଛପତ୍ର ଉପରେ ଅଜସ୍ର ଆଲୋକ ଲୀଳା କରୁଥିଲେ ।

ଲମ୍ବା ପାଦ ପକାଇ କଲେକ୍ଟରଙ୍କ ଅଫିସ ଆଡ଼କୁ ଆଗେଇଲା ସେ ।

ସରକାରୀ ପ୍ରସ୍ତର ବଣ୍ଟାଗରେ ଜନସଂଯୋଗ ଅଫିସର ପଦ ପାଇଁ ପ୍ରାର୍ଥୀମାନେ କଲେକ୍ଟରଙ୍କ ଅଫିସ ଆଗରେ ଇଣ୍ଟରଭିଉ ପାଇଁ ଅପେକ୍ଷା କରୁଥିଲେ । ସୁଧାଂଶୁ ବି ଯାଇ ଛିଡ଼ାହେଲା ସେମାନଙ୍କ ସାଙ୍ଗରେ ।

ନଜକୁ ପଲକରେ ବ ଦେଖିନେଲ ସେ । ତାର ମନେ ହେଲ ଯେ ପ୍ରତିଦ୍ୱନ୍ଦ୍ୱୀମାନଙ୍କ ମଧ୍ୟରେ ତା ବ୍ୟକ୍ତିତ୍ୱ ସବୁଠାରୁ ଭଲ । ସେ ନୂତନ ପ୍ରେରଣା ପାଇଲ ମନ ଭିତରେ । ନଜକୁ ଉଦ୍‌ବୋଧନ କର କହଲ, ସଂଗ୍ରାମହିଁ ସମୃଦ୍ଧିର ଲକ୍ଷଣ ।

ଇଣ୍ଟରଭିଉ ହେଲ । ଜଣ ଜଣ କର ଇଣ୍ଟରଭିଉ ଦେଲେ । ସେହିଠାରେ ଗୁରିଟା ବାଜିଗଲ, ତାକୁ ଡାକରା ହେଲ । ସେ ମଥା ଉପରେ ପାନିଆ ବୁଲାଇ ନେଇ ସାର୍ଟ ଓ ପ୍ୟାଣ୍ଟକୁ ଠିକ୍ କରନେଇ ଭିତରକୁ ଗଲ । ଇଣ୍ଟରଭିଉ ମଝିରେ ତିନଥର ଫୋନ ଧରଲେ ଚେଆରମ୍ୟାନ । ଫୋନରେ କଥା କହିବା ସମୟରେ ତାଙ୍କ ସନ୍ତୁଷ୍ଟ ଅବସ୍ଥା ଦେଖି ଉପରିସ୍ଥଙ୍କ ସହିତ କଥାବାର୍ତ୍ତା ହେଉଥିବାର ଅନୁମାନ କଲ ସେ । କାହାର ନାମ ଟିପି ରଖିଲେ କାଗଜରେ । ହୁଏତ ଆଉ କେହି ପ୍ରାର୍ଥୀ ହୋଇଥିବ । ତଥାପି ଦବ ଗଲନ ସୁଧାଂଶୁ । ସେ ଦମ୍ଭର ସହିତ ଉତ୍ତର ଦେଲ ସମସ୍ତ ପ୍ରଶ୍ନର ।

ବାହାରକୁ ଆସିବା ପରେ ସେ ଆହୁରି ଉତ୍ସାହିତ ବୋଧ କଲ ଏବଂ ଲମ୍ବା ପାଦ ପକାଇ ଚାଲିବାକୁ ଲଗିଲ ।

ଏଇ ଇଣ୍ଟରଭିଉ ଗୁଡ଼ା ଜୀବନର ଲମ୍ବା ରାସ୍ତାର ଗୋଟିଏ ମାଇଲ ଖୁଣ୍ଟ-ପର । ପ୍ରତ୍ୟେକ ମାଇଲ ଖୁଣ୍ଟ ଅତିକ୍ରମ କଲପରେ ଲକ୍ଷସ୍ଥଳ ନକଟତର ହେଉଥିବାର ଅନୁଭବକୁ ସେ ଚାପି ରଖି ପାରଲ ନାହିଁ ।

ବନସ୍ପତି ମାନଙ୍କର ନୂତନ କିଶଳୟମାନଙ୍କୁ ଦେଖି ଅବାକ୍ ହୋଇଗଲ ସୁଧାଂଶୁ । ଶାଖାର ପ୍ରଶାଖାରେ ନୂତନ ମଞ୍ଜରୀ । ଅରୁଣାଭ ରଙ୍ଗ । ଲାବଣ୍ୟ ଲୀଳା କରୁଥିଲ ପତ୍ରରେ ପତ୍ରରେ । କୃଷ୍ଣଚୂଡ଼ାର ସବୁଜ ପତ୍ରମାନଙ୍କ ମଧ୍ୟରୁ ଚହିଁ ଉଠୁଥିଲେ ନୂଆ ହୋଇ ଫୁଟିଥିବା କେତୋଟି ଫୁଲ । ଲାଲ, ଖାଲି ଲାଲ··· ଦେହର ଶୋଣିତରେ ବ ଲାଲ ରଙ୍ଗ ଏବଂ ଉଦୟ ଓ ଅଭ୍ୟୁଦୟ ସବୁ ଲାଲ ।

ଲାଲ ସଡ଼କଟା ନୂଆ ଗୋଡ଼ି ପଡ଼ିଥିବାରୁ ଆହୁରି ଲାଲ ଦିଶୁଥିଲ । ଲାଲ ରଙ୍ଗ ସହିତ ଏକାତ୍ମ ଅନୁଭବ କଲ ସେ ଏବଂ ତାର ମନେ ହେଲ ଯେ ଲାଲ ରଙ୍ଗ ହିଁ ସଂଗ୍ରାମୀ ମଣିଷର ସଙ୍କେତ ।

ସୁଧା ଘର ସାମ୍ନାରେ ଧଇଁସଇଁ ସୁଧାଂଶୁ ଜାଣି ପାରଲ ଯେ ସମୟ ହୋଇ ନାହିଁ, ସେ ଆଗରୁ ଚାଲି ଆସିଚ । ଆହୁରି ଘଣ୍ଟାଏ ବାକି । ଏତେ ଆଗରୁ ସେ କାହିଁକ ଚାଲି ଆସିଲ ବୋଲ ଯଦ ଜଜ ସାହେବ ତାକୁ ପ୍ରଶ୍ନ କରନ୍ତି ତାହାର କଅଣ ଉତ୍ତର ଦବ କିଛି ଠିକ୍ କର ପାରଲ ନାହିଁ । ଭିତରକୁ ଯିବ କ ନାହିଁ ସେ

ଭାବୁଥିଲା ବେଳେ ଦେଖିଲା ଯେ ଜଜ ସାହେବ ପ୍ରଧାନ ଫାଟକ ଦେଇ ନିଜ ଗାଡ଼ିରେ ଚାଲିଗଲେ । ଆହୁରି କିଏ ସବୁ ବସିଥିଲେ ଗାଡ଼ି ଭିତରେ । ହଠାତ୍ ଗ୍ରୁଡ ଭିତରଟା ଗୁମୁରି ଉଠିଲା । ସୁଧା କି ଚାଲିଗଲା ବୋଲି ସନ୍ଦେହ ଏବଂ ଶଙ୍କା ହେଲା ମନରେ ।

ଟିକେ ରହିଗଲା ସେ । ଭରସି କରି କାହାକୁ ପଚାରିପାରିଲା ନାହିଁ । ମାଳି ବଗିଚାରେ ପାଣି ଦେଉଥିଲା । ତା ଆଡ଼କୁ ଅନେଇଲା ନାହିଁ ବୋଲି କ୍ଷୋଭ ହେଲା ସୁଧାଂଶୁର ମନରେ । ସେ ତାକୁ ଡାକିଲା; କିନ୍ତୁ ସେ ଡାକ ଯେପରି ଶୁଭିଲା ନାହିଁ ମାଳିକୁ ।

ପ୍ରବୀଣ ବାବୁ ଜିଲ୍ଲାଜଜ୍ । ଦକ୍ଷ ନ୍ୟାୟାଧୀଶ ଭାବରେ ସୁନାମ ଅର୍ଜନ କରିଥିଲେ । ଅଳ୍ପଭାଷୀ ଏବଂ ଟିକେ ରୁକ୍ଷ ପ୍ରକୃତିର । ତାଙ୍କ ଗମ୍ଭୀର ମୂହଁଟି ନାଚି ଉଠିଲା ଆଖି ଆଗରେ । ଶୀତଳତା ଅନୁଭବ କଲା ସୁଧାଂଶୁ । ଟିକେ ଶୀତେଇ ଉଠିଲା ଯେପରି । ଧୂର୍ଜଟୀ ତିଉଡ଼ିର ଭବିଷ୍ୟତବାଣୀ ସତ ହେବ କି ନହେବ କିଏ ଜାଣେ ? ଫାଟକ ପାଖରେ ଛିଡ଼ା ନହୋଇ ଟିକେ ଏପାଖ ସେପାଖ ହେଲା ସୁଧାଂଶୁ । ଖୋଲା ଝରକା ଦେଇ ଭିତରକୁ ଚାହିଁଲା । ସୁଧା ପରି କାହାକୁ ଦେଖିଲା, କିନ୍ତୁ ଦୂରରୁ ସଠିକ ଜାଣି ପାରିଲା ନାହିଁ । ସେ ଜାଣି ଜାଣି ଛିଡ଼ା ହୋଇଗଲା । ଦୃଷ୍ଟିରେ ପଡ଼ିଗଲେ ସୁଧା ହୁଏତ ତାକୁ ଡାକ ପଠାଇବାର ସମ୍ଭାବନା ଥିଲା । ସୁଧାର ସାନଭାଇ ସିଦ୍ଧାର୍ଥ ଖୁବ୍ ଚଗଲା । ପାଠରେ ନୁହେଁ ଖେଳରେ ବେଶୀ ମନ । ତାକୁ ପଢେଇବା ପାଇଁ ଚେଷ୍ଟା କରିବ ବିଶେଷ କୃତକାର୍ଯ୍ୟ ହୋଇ ପାରି ନଥିଲା ସୁଧାଂଶୁ । ଅନେକ ଗୃହ ଶିକ୍ଷକ ନିଯୁକ୍ତ ହବାର ମାସେ ଦୁଇମାସ ମଧ୍ୟରେ ବିଦାୟ ନେଇଥିଲେ । କାହାର ଦେହର ଗନ୍ଧ, ଆଉ କାହାର ପାଟିରୁ କଥା କହିଲା ବେଳେ ପାନ ପିକ ଛିଟିକି ପଡ଼ୁଥିବାରୁ ବା ଆଉ କିଏ ଦୈନିକ ଖିଅର ନହୋଇ ଦାଢ଼ି ବଲ ବଲ ମୁହଁରେ ଆସିବାରୁ ବେଶୀଦିନ ଟିକ୍ଷି ପାରିଲେ ନାହିଁ । ଏଭଳି ଶିକ୍ଷକଙ୍କ ପାଖରେ ପଢ଼ିବା କଷ୍ଟକର ଥିଲା ସିଦ୍ଧାର୍ଥ ପକ୍ଷରେ । ସେଥିପାଇଁ ଅନେକ ଖୋଜିବା ପରେ କଲେଜର ପ୍ରିନ୍‌ସିପାଲଙ୍କ ଜରିଆରେ ସେ ନିଯୁକ୍ତ ହୋଇଥିଲା । ଅବଶ୍ୟ କହିବା ବାହୁଲ୍ୟ ଯେ ତାର ଏସବୁ ଦୁର୍ଗୁଣ ନଥିଲା । ସେଥିପାଇଁ ତାକୁ ପ୍ରଥମ ଦିନ ଦେଖି ଖୁସୀ ହୋଇ କହିଥିଲା ସିଦ୍ଧାର୍ଥ, ସାର୍ ପଚୋଉଡ଼ ପରି ଦିଶୁଚନ୍ତି ବାବା । ଇଏ ଖୁବ୍ ଭଲ ।

ସେଇଦିନୁ ରହି ଯାଇଥିଲା ସୁଧାଂଶୁ । ବଡ ହବା ପାଇଁ ହେଲେ ଗ୍ରେଟରୁ ଆରମ୍ଭ କରିବାକୁ ହୁଏ । ଏଥିପାଇଁ ମନରେ କୌଣସି ଦ୍ୱିଧା ନକରି ଟିଉସନଟିକୁ ହାତକୁ ନେଇଥିଲା ସେ । ମାସକୁ ସତୁରି ଟଙ୍କା । ବାପାଙ୍କ ଉପରେ ସବୁ ଭାର ଲଦି

ଦେଇ ନିଶ୍ଚିନ୍ତ ହୋଇ ଆଉ କେତେଦିନ ଚଳିବ ? ସୁବିଧା ହେଲା ତାକୁ । ଅଭିନନ୍ଦନର ଫୁଲ ଗୁଡ଼ା ତାକୁ ଫୁଲେଇ ଦେଇଥିଲେ । ସମସ୍ତେ କେତେ ସ୍ନେହ, ଶ୍ରଦ୍ଧା, ଉତ୍ସାହ ଜଣାଇ ନଥିଲେ ତାକୁ ! ହେତୁ ନଥାଇ ଗୋଟିଏ କଥା ତା ମନରେ ସେଦିନ ଦୃଢ଼ ହୋଇ ଯାଇଥିଲା ଯେ ସେ ଆଉ ଦଶଜଣଙ୍କ ଭିତରେ ନାମ ଗୋତ୍ରହୀନ ଜଣେ ଅଜଣା ଅଶୁଣା ବ୍ୟକ୍ତି ନୁହେଁ । ତାର ବ୍ୟକ୍ତିତ୍ୱ ଏବଂ ପରିଚୟ କିଛି କମ୍ ନୁହେଁ । ତା ହାତରେ ବିଶ୍ୱବିଦ୍ୟାଳୟର ପ୍ରମାଣ ପତ୍ର ଏବଂ ଅଧ୍ୟାପକ ମାନଙ୍କର ପ୍ରଶଂସା ପତ୍ର ଥିଲା । ସେ ଗୁଡ଼ା ଏତେ ଶୀଘ୍ର ଅକାମୀ ହୋଇଯିବ ବୋଲି ସେ ସ୍ୱପ୍ନରେ ସୁଦ୍ଧା କଳ୍ପନା କରି ନଥିଲା । ସେଥିପାଇଁ ଅଧ୍ୟାପକ ବା ଆଇ. ଏ. ଏସ୍ ଅଫିସରଟିଏ ହବା ପାଇଁ ଯେଉଁ ମନରେ ଏତେ ଆଶା ଥିଲା ସେହି ମନରେ ନିସଙ୍କୋଚରେ ଟିଉସନଟିଏ ହାତକୁ ନେଇ ସ୍ୱସ୍ତିର ନିଶ୍ୱାସ ଛାଡ଼ିଥିଲା ସୁଧାଂଶୁ । ଏଇ ବର୍ଷକ ଭିତରେ ମରୁଭୂମିର ମରିଚିକା ପରି ସବୁ ଆଶା ଗୁଡ଼ା ଝାପ୍ସା ହୋଇଗଲେ । କିନ୍ତୁ ନିରାଶ ନ ହୋଇ ମନକୁମନ ସାନ୍ତ୍ୱନା ଦେଲା ସୁଧାଂଶୁ···ଜ୍ୟୋତିଷର କଥା ଯଦି ସତ ହୁଏ ।

ସିଦ୍ଧାର୍ଥକୁ ପଢ଼ାଇବାବେଳେ ସୁଧା ଆସି ପହଞ୍ଚି ଯାଏ । ଦଣ୍ଡେ ଚାହିଁ ରହି ଧୀରେ ଧୀରେ କହେ, ଫିଜିକ୍ସର ଗୋଟେ ପ୍ରବ୍ଲେମ ସମାଧାନ କରି ପାରୁନାହିଁ । ଟିକେ ସାହାଯ୍ୟ କରିବେ ସାର ? ପ୍ରଥମେ ସେ ଚେଷ୍ଟାକରୁଥିଲା ବୁଝାଇବା ପାଇଁ । ସମସ୍ୟାର ସମାଧାନ କରିବା ପାଇଁ ଚେଷ୍ଟା କରୁଥିଲା । କିନ୍ତୁ କ୍ରମଶଃ ତାର ମନେ ହେବାକୁ ଲାଗିଲା ଯେ ପଦାର୍ଥବିଦ୍ୟାର ସମସ୍ୟା ନୁହେଁ, ନିଜ ମନର ସମସ୍ୟାର ସମାଧାନ କରିବା ପାଇଁ ଆସୁଥିଲା ସୁଧା । ପ୍ରଥମେ ଭୟ ହେଉଥିଲା ସୁଧାଂଶୁର । ସତର୍କ ହୋଇଗଲା ସେ । କାଲେ ଆଉ କେହି ଜାଣିବ । ଗୃହ ଶିକ୍ଷକର ସୀମା ଅତିକ୍ରମ କଲେ ଯଦି ବିପଦ ହୁଏ ।

ବର୍ତ୍ତମାନକୁ ଫେରି ଆସି ଫାଟକ ଆଡ଼କୁ ଚାହିଁଲା ସୁଧାଂଶୁ । ପାଖରେ ଚୌକିଦାର ଛିଡ଼ା ହୋଇଥିଲା । ଫାଟକ ଖୋଲିବା ମାତ୍ରେ ପାଖକୁ ଆସି କହିଲା, ଆଉଟିକେ ଆଗରୁ ଆସିଲେନି ବାବୁ, ଦେଇ ଚାଲିଯିବା ପରେ ଆସିଲେ । ଆପଣଙ୍କ କଥା ପଚାରୁଥିଲେ ଯିବା ଆଗରୁ ।

ସୁଧାଂଶୁ ବିସ୍ମୟ ବିମୂଢ଼ ହୋଇ ଛିଡ଼ା ହୋଇଗଲା । କଥାଟାକୁ ଆହୁରି ପରିଷ୍କାର କରି କହିଲା ଚୌକିଦାର, ଆପଣ ଭିତରକୁ ନଆସି ସେପାଖରେ ଛିଡ଼ା ହୋଇଥିଲେ କାହିଁକି ଯେ;··· ଦେଇ ପଚାରିଲେ ବି ମୁଁ କିଛି କହି ପାରିଲି ନାହିଁ । ସେ ଦେଖିଥିଲେ, ମୁଁ କିନ୍ତୁ ଦେଖି ନଥିଲି ଆପଣଙ୍କୁ ।

ସୁଧାଂଶୁ ଶୁଖିଲା କଣ୍ଠରେ ପଚ୍ଚାରିଲା, କୁଆଡ଼େ ଗଲେ; ଫେରିବେ କେତେବେଳେ ?

ସେ କହିଲା, ଆପଣ କିଛି ଜାଣି ନାହାନ୍ତି । ଜଜ୍ ସାହେବ ପ୍ରମୋସନ ପାଇଛନ୍ତି । ହାଇକୋର୍ଟକୁ ଯିବେ । କେହି ଜାଣି ନଥିଲେ ଆଗରୁ । କାଲି ସନ୍ଧ୍ୟାବେଳେ ଫୋନ୍ ଆସିଲା କଟକରୁ । ଆଜି ସନ୍ଧ୍ୟାରେ ବାହାରି ଗଲେ ।

ସିଦ୍ଧାର୍ଥ, ସୁଧା ସମସ୍ତେ ଚାଲିଗଲେ ? ପଚାରିଲା ସୁଧାଂଶୁ ।

ହଁ, ସମସ୍ତେ । ଘରେ ଜଗି ଆମେ ପଡ଼ି ରହିଲୁ ଫେରିବାଯାଏ । କହିଲା ଚୌକିଦାର ।

କେବେ ଫେରିବେ ?

ତିନି ଚାରିଦିନ ପରେ । ଆସି ଜିନିଷପତ୍ର ନେଇଯିବେ । ସାହେବ ଖୁବ୍ ଭଲ ଲୋକ । ଉପରେ ସିନା କଡ଼ା, ଭିତରେ ଲହୁଣୀ ପିଣ୍ଡୁଳା । ପିଲାମାନେ ବି ସେହିପରି । ହିଅ ତ ନୁହେଁ, ଦେବୀ ପ୍ରତିମା ।

ସେହି ଦେବୀ ପ୍ରତିମା ଏକ ଲୟରେ ଘୂରି ରହିଲେ ସୁଧାଂଶୁକୁ । ଅନ୍ୟମନସ୍କ ହୋଇ ଯାଇଥିଲା ସେ । ଫେରିବା ଆଗରୁ ସଦର ଦରଜା ଆଡ଼କୁ ଅନାଇଲା ଆଉ ଥରେ । ବଡ଼ ତାଲାଟିଏ ଝୁଲୁଥିଲା ସେଥିରେ ।

ଅଧ ଘଣ୍ଟାଏ ବି ହବ ନାହିଁ । ସେମାନେ ସମସ୍ତେ ହଠାତ୍ ଚାଲି ଯିବେ ବୋଲି ସେ ଯଦି ଆଗରୁ ଜାଣି ଥାଆନ୍ତା ! ଇମିତି ଆଗରୁ ଅନେକ କଥା ଜାଣିହୁଏ ନାହିଁ, ଯିମିତି ଜାଣି ହୁଏ ନାହିଁ ଭଲ କରି ବି ଇଣ୍ଟରଭିଉରେ ପାସ୍ କରିବକି ନାହିଁ ବୋଲି । ନିଜକୁ ଧିକ୍କାର କଲା ସୁଧାଂଶୁ । ବୋକା ପରି ବାହାରେ ଛିଡ଼ା ହୋଇ ରହି ଶେଷରେ ଶିଶୁପାଳର ବେଦନା ନେଇ ଫେରିବା ସାର ହେଲା କେବଳ । ନିଷ୍ଫଳ କ୍ରୋଧରେ ନିଜକୁ ନିଜେ ଶାସ୍ତି ଦେଲା ସୁଧାଂଶୁ ।

ସୁଧାଂଶୁ ଧୀରେ ଧୀରେ ଫେରିବାକୁ ଲାଗିଲା । କୁଆଡ଼କୁ ଯିବ କିଛି ସ୍ଥିର କରି ନପାରି ଅନିଶ୍ଚିତ ଭାବରେ ଚାଲିବାକୁ ଲାଗିଲା । ଅନେକ ସମୟ ଚାଲିବା ପରେ କ୍ଳାନ୍ତି ଅନୁଭବ କଲା । ତା ପରେ ମେସ ଆଡ଼କୁ ପାଦ ବଢ଼ାଇଲା ସେ ।

ଖାଇବା ବେଳ ହୋଇ ଯାଇଥିଲା । ପିଲାମାନେ ମେସ୍ ବାରନ୍ଦାରେ ବସି ଗପସପ କରୁଥିଲେ । ସମସ୍ତଙ୍କ ଏକସାଙ୍ଗରେ ସମ୍ମୁଖୀନ ହବା ପାଇଁ ଡରୁଥିଲା ସେ । ମେସ ଦେୟ ବାକି ପଡ଼ିଥିଲା ବୋଲି ଭରସା କରି ଆଗକୁ ଯିବା ପାଇଁ ସାହାସ ହଉ ନଥିଲା । ସେ ବାଟ ଭାଙ୍ଗି କେନାଲ କୂଳକୁ ଚାଲି ଟିକେ ବୁଲି ଆସିବା ପାଇଁ ।

ତାପରେ ପୁଣି ସମସ୍ତଙ୍କ ଅଲକ୍ଷ୍ୟରେ ପଛପଟର ରାସ୍ତା ଦେଇ ଫେରି ଆସିଲା ସେ ।

ପବନ ବନ୍ଦ ନଥିଲା । ପଙ୍ଖା ନଥିଲା ମେସ୍‌ରେ । ମଶାମାନଙ୍କର ପ୍ରାଦୁର୍ଭାବ ଅନେକ ବେଶୀ । ସେଥିଯୋଗୁଁ କ୍ଲାନ୍ତ ଲାଗୁଥିଲେ ବି ଶୋଇ ପାରିଲା ନାହିଁ ସୁଧାଂଶୁ । ବୋକାପରି ଜଜ୍ ସାହେବଙ୍କ ବାଡ଼ ପାଖରେ ଛିଡ଼ା ନହୋଇ ଫାଟକ ଖୋଲି ଭିତରକୁ ପଶିଥିଲେ ସେମାନଙ୍କ ସହିତ ଦେଖା ହୋଇଥାଆନ୍ତା । ମନଟା ଫାଙ୍କା ହୋଇଗଲା ।

ଗ୍ରୀକର୍ସି ଖଣ୍ଡେ ଏଯାଏ ହେଲା ନାହିଁ । ବେକାର ଜୀବନ ଭଲ ଲାଗେ ନାହିଁ । ଜୀବନ ଆରମ୍ଭ ହୋଇଚି ମାତ୍ର । ସମସ୍ତ ସରି ଯାଏ । କିଏ ଯେପରି ଉସୁକାଇ ଦେଇ କୁହେ, ଉଠି ପଡ଼ ଲାଗି ।

ଉଠିପଡ଼ି ଲାଗିଥିଲା ସୁଧାଂଶୁ ।

ଜ୍ୟୋତିଷର ଭବିଷ୍ୟତବାଣୀ ମନେ ପଡ଼ିଲା । ଠିକ ଠିକ ମନଟା ଅବିଶ୍ୱାସୀ ହୋଇ ଯାଇଥିଲେବି କିଛିକେ ବିଶ୍ୱାସ କରିବା ପାଇଁ ଇଚ୍ଛା ହେଲା । କାରାଗାରରେ ଦେବକୀ ଗର୍ଭରେ କୃଷ୍ଣ ବଢ଼ିଲା ପରି ବିଫଳତାର ଗର୍ଭରେ ସଫଳତା ଜନ୍ମ ନନିଏ ବୋଲି କିଏ କହିବ ?

ଆଜି ଇଣ୍ଟରଭିଉରେ ଭଲ କରିଥିଲା ସୁଧାଂଶୁ । ମାତ୍ର ତିନୋଟି ପଦ ଖାଲି ଥିଲା । ଗୁଣାତ୍ମକ ବିଚାର ଅନୁସାରେ ସେ ଉତ୍ତୀର୍ଣ୍ଣ ହବାର ଦୃଢ଼ ପ୍ରତ୍ୟୟ ରଖିଥିଲା । ପୌରୁଷତ୍ୱ ଅନୁସାରେ ସଫଳତା ଏ ଦେଶରେ ନ ଆସି ଆସେ ବଂଶ ବା ଉଚ୍ଚପଦାଧିକାରୀ ସୂତ୍ରରେ । କର୍ଣ୍ଣପରି ସେ ପରିତ୍ୟକ୍ତ ।

ମଶାମାନଙ୍କର କାମୁଡ଼ା ସତ୍ତ୍ୱେ ଶୋଇ ପଡ଼ିଲା ସୁଧାଂଶୁ ।

ସକାଳୁ ଉଠିବାକ୍ଷଣି ସେ ବେକାର ହୋଇଗଲା ବୋଲି ହଠାତ୍ ତାର ମନେ ହେଲା । କିଉସନ ଖଣ୍ଡକ ଯେ ଆଉ ହାତରେ ନ ଥିଲା ଏଇ ସତ୍ୟଟିକୁ ଏଯାଏ ଜାଣି ପାରି ନ ଥିଲା ବୋଲି ଆଶ୍ଚର୍ଯ୍ୟ ହେଲା । କୁଟା ଖିଅ ଧରି ନଦୀ ପହଁରୁଥିଲା; ସେତକ ବି ଖସିଗଲା ହାତରୁ ।

ଆକାଶର ରଙ୍ଗପରି ମନର ରଙ୍ଗ ବି ବଦଳିଗଲା । ଧୂସର ଆକାଶର ଆକର୍ଷଣ ନଥିଲା । ତା ନିଜ ପାଖରେ ନିଜର ଆକର୍ଷଣ କମି ଆସିଲା ।

ସ୍ତବ୍ଧ ହୋଇ ଅନେକ ସମୟ ବସି ରହିଲା ସୁଧାଂଶୁ । ଦୃଷ୍ଟି ଝାପ୍‌ସା, ମନ ଅନିଶ୍ଚିତ । ହଠାତ୍ ସାଇକେଲରୁ ଓହ୍ଲାଇ ପଡ଼ି ତା ଆଡ଼କୁ ଆସୁଥିବା ବ୍ୟକ୍ତି ଜଣକୁ ଜଜ୍ ସାହେବଙ୍କ ଅର୍ଦ୍ଦଳୀ ବୋଲି ଚିହ୍ନିବାରେ ଭୁଲ ହେଲା ନାହିଁ ।

ସେ ପାଖକୁ ଆସି ନମସ୍କାର କରି କହିଲା, ସିଧବାବୁ କହିଲେ ଆପଣଙ୍କୁ ଦବା ପାଇଁ । ଭଲ ଭଲ ହୋଇ ବାପାଙ୍କ ସାଙ୍ଗରେ ଚାଲିଗଲେ ଯେ କଥାବାର୍ତ୍ତାବି ଟିକେ ହୋଇ ପାରିଲେ ନାହିଁ ବୋଲି ମନରେ କମ ଦୁଃଖ ! ଏମିତ ପିଲା ଭାଗ୍ୟରେ ଥିଲେ ମିଳେ ।

ଭାଗ୍ୟରେ ଥିଲେ ସବୁ ମିଳେ ଗୁଣନିଧି । ଅନ୍ୟମନସ୍କ ଭାବରେ କହିଲା ସୁଧାଂଶୁ ।

ଚିଠି ଖଣ୍ଡିକ ଦେଇ ସାଇକେଲ ଚଢ଼ି ଚାଲିଗଲା ସେ । ସୁଧାଂଶୁ ପଢ଼ିବାକୁ ଲାଗିଲା—

ସାର୍,

ମୋତେ ଚିଠି ଲେଖି ନ ଆସିଲେ ବି ଅପା ବାଧ୍ୟ କଲା ଲେଖିବା ପାଇଁ । କିଏ ଜାଣିଥିଲା ଯେ ଆମେ ଏତେ ଶୀଘ୍ର ବାପାଙ୍କ ସାଙ୍ଗରେ କଟକ ଚାଲିଯିବୁ । ଫେରିବା ମଧ୍ୟ ନିଶ୍ଚୟ, ତେବେ ଆଉ ତ ଏଠାରେ ରହିବା ନାହିଁ । ବାପାଙ୍କ ବଦଳି ବିଷୟ ଶୁଣିଥିବେ ନିଶ୍ଚୟ ।

କାଲିଠାରୁ ଟେଷ୍ଟ କ୍ରିକେଟର ଧାରା ବିବରଣୀ ପ୍ରସାରିତ ହେବ । ମୁଁ ଏହି ଦିନଟିକୁ ବହୁଦିନରୁ ଅପେକ୍ଷା କରୁଥିଲି । ଧାରା ବିବରଣୀ ପଟୌଡ଼ିଙ୍କ ଦ୍ୱାରା ପ୍ରସାରିତ ହେବ । ପଟୌଡ଼ିଙ୍କ ପରି ଆପଣଙ୍କ ମୂର୍ତ୍ତି ବୋଲି ଆପଣଙ୍କୁ ମୋତେ ଖୁବ୍ ଭଲ ଲାଗେ । ଅପା କହୁଥିଲା ଆପଣ କିନ୍ତୁ ବ୍ୟାଟିଂ ବା ବୋଲିଂ କିଛି ଜାଣନ୍ତି ନାହିଁ । ମୁଁ ବଡ଼ ହେଲେ ପଟୌଡ଼ି ପରି ହେବି ଏଥିରେ ସନ୍ଦେହ ନାହିଁ । ଆପଣ ପରା କଲେଜରେ ଖେଳୁଥିଲେ ! ଆପଣ ଥିଲେ ସାଙ୍ଗ ହୋଇ କମେଣ୍ଟ୍ରି ଶୁଣି ଥାଆନ୍ତେ । ଏହା ଆଉ ହେଲା ନାହିଁ । ଅପାର ଗୁଡ଼ାଏ ପ୍ରବ୍ଲେମ ବି ସେହିପରି ରହିଗଲା ବୋଲି ସେ କହୁଥିଲା ।

ଆଉ ଗୋଟେ କଥା ଆଜଯାଏ ଆପଣଙ୍କୁ କହିବା ପାଇଁ ଭୁଲି ଯାଇଥିଲି । ଫିଜିକ୍ସର ଥିଓରମ ନକରି ଅପା କବିତା ଲେଖାରେ ବେଶୀ ସମୟ ଦିଏ । ତିନି ଚାରିଟା କବିତା ଲେଖିଛି । ମୁଁ ଲୁଚି ଲୁଚି ଦେଖିଲି ନା । ସେ ମୋତେ ପଢ଼ିବା ପାଇଁ ଦେଲାନି । ଆପଣ ସଂଶୋଧନ କଲାପରେ ମ୍ୟାଗାଜିନକୁ ପଠେଇବେ ।

ସାର, ଅପାକୁ ବୋଉ ଡାକିବାରୁ ସେ ଭିତରକୁ ଗଲା । ଚିଠିଟା ଶେଷ କରିବା ଆଗରୁ ଗୋଟେ ମଜାକଥା ଲେଖୁଚି । ଅପାକୁ ଶୀଘ୍ର ବିଭା କରିଦେବା ପାଇଁ ବୋଉ ବାପାଙ୍କୁ ଲଗେଇଚି । ଅପାର ବାହାଘର ଦିନ ଖୁବ୍ ମଜା ହିବନା ! ଆପଣ ଏବଂ ମୁଁ ଆତସବାଜି ଭିଜରେ ରହିବା, ମୁଁ ଭୁଇଁ ଚମ୍ପା, ଆଉ ଆପଣ

ରକେଟ ଗ୍ରୁଡ଼ବା । ସେଇ ରକେଟଟା ଆକାଶରେ ଫାଟିଗଲେ ଅପା ଏବଂ ତା ବରର ନାମ ଲେଖା ହୋଇଯିବ ଆକାଶରେ । ଖୁବ୍ ସୁନ୍ଦର ଦିଶିବ ନା ! ଆପଣ ଆସିବେ ନିଶ୍ଚୟ ।

ପ୍ରଣାମ
ସିଦ୍ଧାର୍ଥ ।

ଚିଠିଟିକୁ ଦୁଇଥରଥର ପଢ଼ିଲା ସୁଧାଂଶୁ ।

ତା ଆଖି ଆଗରେ ଗୋଟେ ବଡ଼ ରକେଟରେ ଚଢ଼ି ସୁଧା ସୁନୀଳ ଆକାଶ ଆଡ଼କୁ ଉଡ଼ି ଯାଉଥିବାର ଦେଖିଲା ସେ । ଯେତେ ଡାକଲେ ବି ଶୁଣିଲା ନାହିଁ । ସେ ଆଉ ଜଣେ କାହା ପାଖରେ ଥିଲେ ବୋଧହୁଏ । ଚହ୍ନି ପାରିଲା ନାହିଁ ସେ । ସିଦ୍ଧାର୍ଥ···? ନା, ନା, ଆଉ ଜଣେ, ଆଉ ଜଣେ । ମଥାଟା ଝିମ୍ ଝିମ୍ କରି ଉଠିଲା, ଆଖି ଆଗରେ ସବୁ ଝାପ୍ସା ହୋଇଗଲା । ସୁଧାଂଶୁ ଖଟ ଉପରେ ବସି ପଡ଼ିଲା ଥକ୍କା ହୋଇ ।

ମେସ୍ର ନୋଟିସ ବୋର୍ଡ଼ରେ ଦେୟ ଦେଇ ନଥିବା ପିଲାମାନଙ୍କର ନାମ ତାଲିକା କିଏ ଜଣେ ଗ୍ରୁପିଦେଇ ଗଲା ।

ସୁଧାଂଶୁର ଆଖି ଆଗରେ ଆକାଶରେ ଫାଟି ପଡ଼ିଲା ରକେଟ । ସୁଧା ଏବଂ ଆଉ ଗୋଟେ ନାମ ଲେଖି ହୋଇଗଲା ।

ସେ କେବଳ ଅବ୍ୟକ୍ତ ଯନ୍ତ୍ରଣାର ଅସ୍ପଷ୍ଟ ସ୍ୱରରେ କହି ଉଠିଲା, ହେ ଭଗବାନ ।



# ଦୁଃସ୍ୱପ୍ନ : ଅଥବା ଅବିନାଶ ଅଫିସକୁ ଫେରିଗଲା କାହିଁକି

**ଜଗନ୍ନାଥ ପ୍ରସାଦ ଦାସ**

ଏଇ ସକାଳଟି ଅବିନାଶ ପାଇଁ ଅନ୍ୟ ଦିନ ମାନଙ୍କ ଭଳି ଏକ ସାଧାରଣ ସକାଳ ଥିଲା. ସେଉଁ ପର୍ଯ୍ୟନ୍ତ ତାକୁ ପୂର୍ବ ରାତିର ସ୍ୱପ୍ନ କଥା ମନେ ପଡ଼ି ନ ଥିଲା। କିନ୍ତୁ ଉଠି ମୁହଁ ଧୋଇବାବେଳେ ତାକୁ ସ୍ୱପ୍ନଟି ମନେ ପଡ଼ିଲା। ସ୍ୱପ୍ନରେ ଭଗବାନ ଲମ୍ବା କଳା ପୋଷାକ ପିନ୍ଧିଥିଲେ; ତାଙ୍କର ଉଚ୍ଚତା ପ୍ରାୟ ଦଶଫୁଟ ଥିଲା ଏବଂ ତାଙ୍କର ମୁହଁ ଅସ୍ପଷ୍ଟ ଥିଲା। ଗୋଟିଏ ମୁହୂର୍ତ୍ତି ପାଇଁ ଭଗବାନ ତା ସାମନାରେ ଠିଆ ହେଲେ ଏବଂ କହିଲେ : ଭୋର ବେଳ ହୋଇଗଲା; ଏଥର କି ମୋ ପାଖକୁ ଚାଲି ଆ।

ତା ପରେ ସ୍ୱପ୍ନ ଭିନ୍ନ ମୋଡ଼ ନେଇଥିଲା ଏବଂ ଆଉ କଣ ସବୁ ଘଟିଥିଲା ଅବିନାଶର ମନେ ନ ଥିଲା। କିନ୍ତୁ ଭଗବାନଙ୍କ ସହିତ ତାର ସଂକ୍ଷିପ୍ତ ସାକ୍ଷାତକାର ବର୍ତ୍ତମାନ ବି ଅବିନାଶକୁ ଅତି ସଦ୍ୟ ମନେ ହେଉଥିଲା। ଏକଥା ମନେ ପଡ଼ିବାରୁ ଅବିନାଶର ଦେହ ହାତ ଏବେ ବି ଝାଳରେ ଭିଜିଗଲା। ବିନା ଚେଷ୍ଟାରେ ତାକୁ ସେଇ ମନ୍ତ୍ରଟି ମନେ ପଡ଼ିଲା, ଯାହା ତାକୁ କୌଣସି ଗୁରୁ ଅନେକ ବର୍ଷ ତଳେ ଶିଖାଇ ଥିଲେ କିନ୍ତୁ ଯାହାକୁ ସେ ଅଳ୍ପ କେତେ ଦିନ ବ୍ୟବହାର ପରେ ଛାଡ଼ି ଦେଇଥିଲା। ବର୍ତ୍ତମାନ ସେ ଅତି ଚଞ୍ଚଳ ମନ୍ତ୍ରଟିକୁ ମନେ ମନେ ଆବୃତ୍ତି କରିନେଲା।

ସ୍ୱପ୍ନଟି ଅବିନାଶର କଳ୍ପନା ବହିର୍ଭୂତ ଥିଲା। ମୃତ୍ୟୁ ବିଷୟରେ ଏକ ଦୃଶ୍ୟମାନ ଅବସ୍ଥା କଥା ଚିନ୍ତା କଲେ ଅବିନାଶ କଳା ମଇଁଷି ଉପରେ ବସି ହାତରେ ଏକ ନାଗଫାଶ ଧରିଥିବା ଭୟଙ୍କର ଚେହେରାର ଯମରାଜଙ୍କୁ ହିଁ ଦେଖିଆନ୍ତା। ମୃତ୍ୟୁ ବିଷୟରେ ତାର କଳ୍ପନା ସତ୍ୟବାନ ଏବଂ ନଚିକେତାରେ

ସୀମିତ ଥିଲି ଏବଂ ସେ ଅନେକ ଥର ନିଜକୁ ନଚିକେତାର ଭୂମିକାରେ ରଖି ଯମରାଜଙ୍କୁ ପ୍ରଶ୍ନରେ ବ୍ୟତିବ୍ୟସ୍ତ କରି ଦେବାର କଳ୍ପନା କରୁଥିଲି; କିନ୍ତୁ ତାର ସ୍ୱପ୍ନରେ ତାର ମୃତ୍ୟୁ ସମ୍ବାଦ ନେଇ ଖୋଦ ଭଗବାନ ଆସିଥିଲେ । ତାର ଯଦି ସ୍ୱପ୍ନ ଉପରେ କୌଣସି ନିୟନ୍ତ୍ରଣ ଥାନ୍ତା, ଅବିନାଶ ଭଗବାନଙ୍କୁ କଳା ପରିବର୍ତ୍ତେ ଧଳା ପୋଷାକ ପିନ୍ଧାଇଥାନ୍ତା ଏବଂ ତାଙ୍କୁ ଏକ ସୌମ୍ୟ ଦର୍ଶନ ମୂର୍ତ୍ତି ଦେଇଥାନ୍ତା ଯାହାର କୃଷ୍ଣ ଭୂମିକାରେ ବାରମ୍ବାର ଅବତୀର୍ଣ୍ଣ ହେଉଥିବା ଚନ୍ଦ ତାରକାଙ୍କ ଚେହେରା ସହିତ ଅନେକ ସାଦୃଶ୍ୟ ଥାନ୍ତା । ତାଙ୍କର ଭାଷାକୁ ମଧ୍ୟ ସେ ଯଥା ସମ୍ଭବ ଗୁରୁତର କରି ସଂସ୍କୃତର ଅନେକ ତତ୍ସମ ଓ ତଦ୍‌ଭବ ଶବ୍ଦରେ ସମୃଦ୍ଧ କରିଥାନ୍ତା ।

ବର୍ତ୍ତମାନ ଏ ସବୁ ଚିନ୍ତା ନିରର୍ଥକ ଥିଲି ଏବଂ ଏ କଥା ଭାବିବା ଅବିନାଶକୁ ସାମାନ୍ୟ ପାପ ମିଶ୍ରିତ ବୋଲି ମଧ୍ୟ ମନେ ହେଉଥିଲି । ସତ କହିବାକୁ ଗଲେ ଅବିନାଶ ଭୟଭୀତ ଥିଲି ଏବଂ ଏପରି କିଛି କହିବାକୁ ଚାହୁଁ ନ ଥିଲା ଯାହା ଭଗବାନଙ୍କୁ କ୍ରୋଧାନ୍ୱିତ କରିବ ଏବଂ ଯାହା ଫଳରେ ସେ ତାକୁ ଆହୁରି ଶୀଘ୍ର ତାଙ୍କ ପାଖକୁ ଚାଲିଯିବାକୁ କହିବେ । ଏଇ ସମୟରେ ଅବିନାଶର ମନେ ପଡ଼ିଲା ଯେ ରବିବାରର ଖବରକାଗଜରେ ସ୍ୱପ୍ନର କାର୍ଯ୍ୟକାରିତା ବିଷୟରେ ଏକ ଲେଖା ବାହାରିଥିଲା । ସେ ବ୍ୟସ୍ତ ଭାବରେ ଯାଇ ଖବରକାଗଜରୁ ସେଇଟି ବାହାର କଲା, ଯେଉଁଥିରେ ସେ ଖୋଜୁଥିବା ଅଂଶଟି ଏହିପରି ଥିଲା : ସ୍ୱପ୍ନ ପାଇଁ ସମଗ୍ର ରାତ୍ରିଟା ଚାରିଭାଗରେ ବିଭକ୍ତ । ପ୍ରଥମ ଭାଗରେ ଦେଖିବା ସ୍ୱପ୍ନର ଫଳ ମିଳିଥାଏ ଗୋଟିଏ ବର୍ଷ ଭିତରେ; ଦ୍ୱିତୀୟ ଭାଗରେ ଫଳ ଅଧା ବର୍ଷ ଭିତରେ; ତୃତୀୟ ଭାଗର ଫଳ ମିଳେ ତିନିମାସ ଭିତରେ ଏବଂ ଶେଷ ଅଥବା ଭୋର ବେଳର ଫଳ ଗୋଟିଏ ମାସ ଭିତରେ ।

ଅବିନାଶ ବର୍ତ୍ତମାନ ବ୍ୟସ୍ତ ହେଲା ଯେ ସେ ଠିକ୍ କେତେବେଳେ ସ୍ୱପ୍ନଟି ଦେଖିଥିଲା ତାର ମନେ ନ ଥିଲି । ସେ ସ୍ୱପ୍ନ ଦେଖିବା ସଙ୍ଗେ ସଙ୍ଗେ ନିଦରୁ ଉଠି ପଡ଼ି ଘଡ଼ି ନ ଦେଖିଥିବାରୁ ନିଜ ଉପରେ ବିରକ୍ତ ହେଲା । ସ୍ୱପ୍ନଟି ଯେ ରାତିର ପ୍ରଥମ ଭାଗରେ ନ ଥିଲା ଏ କଥା ନିଃସନ୍ଦେହ ଥିଲି କାରଣ ଅବିନାଶ ପୂର୍ବ ଦିନ ରାତିରେ ଅନେକ ଡେରିରେ ଶୋଇବାକୁ ଯାଇଥିଲା । ସ୍ୱପ୍ନଟି ଭୋରବେଳା ହେବା ମଧ୍ୟ ଅସମ୍ଭବ ନ ଥିଲା, କାରଣ ସ୍ୱପ କଥା ଅବିନାଶର ସ୍ପଷ୍ଟ ମନେଥିଲା । ତାର ଅର୍ଥ ମାତ୍ର ଗୋଟିଏ ମାସର ମହଲତ । ଅବିନାଶ ଏ କଥାକୁ ଆଉ ଟିକିଏ ବୈଜ୍ଞାନିକ ଭାବରେ ବିଶ୍ଳେଷଣ କଲା । ସ୍ୱପ୍ନଟି ଯଦି ସେ ଭୋରର ଅତି ଶେଷ ଭାଗରେ ଦେଖିଥାଏ ତା ହେଲେ ହୁଏତ ତାର ଫଳ ମାତ୍ର

କେତୋଟି ଦିନ ଭିତରେ ଘଟିପାରେ । ସେ ଯାହା ହେଉ, ବର୍ଷେ ମାସେ ବା ମାତ୍ର କେତେଦିନ ହେଉ, ସମସ୍ତ ବର୍ତ୍ତମାନ ବହୁତ ପାଖରେ ଥିଲା ।

ସ୍ତ୍ରୀକୁ ଏଇ ସ୍ୱପ୍ନ କଥା କହିବ କି ନାହିଁ ଭାବି ଅବିନାଶ ଠିକ୍ କଲା ଯେ ଏ କଥା ନ କହିବା ହିଁ ଭଲ । ଅନେକ ଦିନ ତଳେ ଅବିନାଶ ସ୍ୱପ୍ନରେ ମୁକୁଟ ପିନ୍ଧି ସିଂହାସନରେ ବସିଥିବା କଥା ତାର ସ୍ତ୍ରୀକୁ କହିଥିଲା ଏବଂ ବିଶ୍ୱାସ ପ୍ରକାଶ କରିଥିଲା ଯେ ଏଥରକ ତାର ଖାଲି ଗଭର୍ଣ୍ଣମେଣ୍ଟ କାହିଁକି ତାର ପ୍ରମୋଶନକୁ ମଧ୍ୟ କେହି ବନ୍ଦ କରି ପାରିବେ ନାହିଁ । କିନ୍ତୁ ଶେଷକୁ ତାର ପ୍ରମୋଶନ ହୋଇ ନ ଥିଲା ଏବଂ ସମସ୍ତ ସମୟରେ ସୁବିଧା ପାଇଲେ ତାର ସ୍ତ୍ରୀ ତାକୁ ରାଜକୀୟ ସ୍ୱପ୍ନ କଥା ମନେ ପକାଇ ଉପହାସ କରୁଥିଲା । ଯଦିଓ ଏ ସ୍ୱପ୍ନଟି ଅତି ଦୁଃଖଦ ଥିଲା; ଅବିନାଶ ଜାଣିଥିଲା ଯେ ତାର ସ୍ତ୍ରୀ ବିଧବା ବରଂ ହେବ କିନ୍ତୁ ସ୍ୱାମୀର ନିର୍ବୋଧତାକୁ କ୍ଷମା କରିବ ନାହିଁ ଭଳି ଚରିତ୍ରର ଊର୍ଦ୍ଧ୍ୱରେ ନ ଥିଲା । ତେଣୁ ସେ ଏ ସ୍ୱପ୍ନ ବିଷୟରେ କେବଳ ସ୍ତ୍ରୀକୁ ହିଁ ନୁହେଁ, ଅଫିସରେ ପାଖ ଚୌକିରେ ବସି କାମ କରୁଥିବା ଅରବିନ୍ଦ ବାବୁଙ୍କୁ, ଯେ କି ତାକୁ ତାଙ୍କ ପାରିବାରିକ ଜୀବନର ଅନେକ ଗୋପନୀୟ କଥା କହୁଥିଲେ, ତାଙ୍କୁ ମଧ୍ୟ ଏ କଥା କହିବ ନାହିଁ ବୋଲି ନିଷ୍ପତ୍ତି କଲା ।

ଏଭଳି ସ୍ୱପ୍ନ ଦେଖିବା ପରେ ଆଉ ଅଫିସକୁ ଯିବାର ପ୍ରଶ୍ନ ନ ଥିଲା । କିନ୍ତୁ ଅଫିସକୁ ନ ଯିବାକୁ ହେଲେ ତାକୁ ଅସୁସ୍ଥତା ବାହାନାରେ ଛୁଟି ନେବାକୁ ପଡ଼ିବ ଏବଂ ସେ ମିଛ ଯୋଜନାରେ ସ୍ତ୍ରୀକୁ ମଧ୍ୟ ଅନ୍ତର୍ଭୁକ୍ତ କରିବାକୁ ହେବ; ସେଥିପାଇଁ ଅବିନାଶ ସାମାନ୍ୟ ବିରକ୍ତ ହେଲା । ତେଣୁ ସେ ପ୍ରକୃତ ଅସୁସ୍ଥତାର ଛଳନା କରି ଅନେକ କଷ୍ଟ ପାଉଥିବାର ଶବ୍ଦମାନ କଲା । କିନ୍ତୁ ତାର ସ୍ତ୍ରୀ ବର୍ତ୍ତମାନ ସେପେଇ ଘରକୁ ଚାଲି ଯାଇଥିଲା ଏବଂ ସେଥି ଯୋଗୁଁ ଅବିନାଶର ନାଟକୀୟ ଉଦ୍ୟମ ସବୁ ବ୍ୟର୍ଥ ହୋଇଗଲା ।

ଅବିନାଶକୁ ଖବରକାଗଜରେ ପ୍ରକାଶିତ ରାଶିଫଳ କଥା ମନେ ପଡ଼ିଲା ଓ ସେଥିରେ ଥିବା ଭବିଷ୍ୟତବାଣୀରେ ତାର ସ୍ୱପ୍ନର କୌଣସି ସମର୍ଥନ ଅଛି କି ନାଁ ତା ଜାଣିବାକୁ ଚାହିଁଲା । ସେ ଖବରକାଗଜରୁ ରାଶିଫଳର ସ୍ତମ୍ଭ ବାହାର କଲା କିନ୍ତୁ ତାକୁ ପଢ଼ିବାବେଳେ ତା ଆଗରେ ଏକ ନୂଆ ସମସ୍ୟା ଦେଖାଦେଲା । ସେ ଆଗରୁ ଏ ସ୍ତମ୍ଭଟିକୁ କେବେହେଲେ ଦେଖୁ ନ ଥିଲା ଏବଂ ତାର ସ୍ଥାନ କେଉଁ ରାଶିରେ ନିହିତ ସେ ସମ୍ବନ୍ଧରେ ବର୍ତ୍ତମାନ ତା ମନର ଦ୍ୱନ୍ଦ୍ୱ ଉପୁଜିଲା । ଯଦିଓ ସେ ନିଜକୁ ମିଥୁନ ବୋଲି ଜାଣିଥିଲା, ରାଶିମାନଙ୍କ

ପାଖରେ ଦିଆଯାଇଥିବା ଜନ୍ମ ତାରିଖରୁ ସେ ବୃଷ ବୋଲି ଜଣା ପଡ଼ୁଥିଲା । ଭବିଷ୍ୟଦ୍‌ବାଣୀ ଅନୁସାରେ ମିଥୁନମାନଙ୍କ ପାଇଁ ମହୋନ୍ନତ ଏବଂ ବୃଷମାନଙ୍କର ସାମାଜିକ ଓ ଆର୍ଥିକ ଉନ୍ନତି ନ ଥିଲେ ମଧ୍ୟ ସ୍ତ୍ରୀ ସଙ୍ଗ ଲାଭ ଓ ରୋମାଞ୍ଚ ଭଳି ଅନେକ ସୁଖକର ସମ୍ଭାବନା ଥିଲା । ଯଦିଓ ଅନ୍ୟ ସମୟରେ ଏ ସବୁ ଅବିନାଶକୁ ଅନେକ ଆନନ୍ଦ ଦେବାରେ ସହାୟକ ହୋଇଆସେ, ବର୍ତ୍ତମାନର ମାନସିକ ସ୍ଥିତିରେ ଭବିଷ୍ୟଦ୍‌ବାଣୀମାନ ତାକୁ ଉପହାସ କରିବା ଭଳି ମନେ ହେଲେ ଏବଂ ସେ ବିରକ୍ତିର ସହ ଖବରକାଗଜକୁ ନେଇ ପୁରୁଣା ଗଦା ଭିତରେ ରଖିଦେଲା ।

ନିଜର ଅବଶ୍ୟମ୍ଭାବୀ ମୃତ୍ୟୁ ବିଷୟରେ ଅବିନାଶର ଧାରଣା କ୍ରମଶଃ ଉତ୍ତରୋତ୍ତର ବଳବତ୍ତର ହେଲା । ସେ ମନେ ମନେ ହିସାବ କରି ଦେଖିଲା ଯେ ତାର ବୟସ ମାତ୍ର ଅଣଚାଶ ବର୍ଷ । ତାର ବର୍ଷକ ତଳେ ରିଟାୟାର କରିଥିବା ଭଦ୍ରବ୍ୟକ୍ତିଙ୍କ କଥା ମନେ ପଡ଼ିଲା ଯେ ପଞ୍ଚଷଠି ବର୍ଷ ବୟସରେ ମଧ୍ୟ ବେଶ କର୍ମଠ ଓ ତତ୍ପର ଥିଲେ । ଭୁଲ ସାର୍ଟିଫିକେଟ ଦେଖାଇ ସେ କେବଳ ତାଙ୍କର ଅଫିସକୁ ନୁହେଁ ଯେପରି ସ୍ୱୟଂ ଭଗବାନଙ୍କୁ ମଧ୍ୟ ଠକି ଦେଇ ପାରିଥିଲେ । ସେ ଏବେ ମଧ୍ୟ ମଝିରେ ମଝିରେ ଅଫିସକୁ ଆସୁଥିଲେ ଏବଂ ମନୋରଞ୍ଜକ ଅଶ୍ଳୀଳ କଥାମାନ କହି ଅଫିସର ଯୁବକମାନଙ୍କର ପ୍ରିୟପାତ୍ର ହୋଇ ରହି ପାରୁଥିଲେ । ସେ ଭଦ୍ରବ୍ୟକ୍ତି ବଞ୍ଚି ଥାଉ ଥାଉ ଭଗବାନଙ୍କର ତାକୁ ନୋଟିସ ଦେବା ଅବିନାଶକୁ ଅତ୍ୟନ୍ତ ଅନ୍ୟାୟ ବୋଲି ମନେ ହେଲା । ଏ ଅନ୍ୟାୟ ବିରୁଦ୍ଧରେ ପୁନର୍ବିଚାରର ଆବେଦନ କରିବା ଚିନ୍ତାରୁ ସେ ନିଜକୁ କ୍ଷାନ୍ତ କଲା, କାରଣ ସେ ଭଗବାନଙ୍କୁ ଅସନ୍ତୁଷ୍ଟ କରିବାକୁ ଚାହୁଁ ନ ଥିଲା ।

ଆସନ୍ନ ମୃତ୍ୟୁ ପାଇଁ ପ୍ରସ୍ତୁତ ହେବାକୁ ଅବିନାଶ ଏକ ହିସାବ ଫର୍ଦ୍ଦ ତିଆରି କରିବାକୁ କାଗଜ କଲମ ଖୋଜିଲା । ଘରେ ତାର କେବେ କାଗଜ କଲମ ଦରକାର ହେଉ ନ ଥିବାରୁ ସେ ପିଲାଙ୍କ ଆଲମାରୀ ଖୋଲି ଘଣ୍ଟା ଘାଣ୍ଟି କଲା । ସେଠାରେ ମଧ୍ୟ ଲେଖିବାର କୌଣସି ସାମଗ୍ରୀ ନ ପାଇ ସେ ବଡ଼ ପାଟିରେ କାଗଜ କଲମ କେଉଁଠି ଅଛି ବୋଲି ପାଟିକଲା, କିନ୍ତୁ ତାର ସ୍ତ୍ରୀ ତାକୁ ଉତ୍ତର ଦେବା ଆଗରୁ ତାକୁ କଲମ ମିଳିଗଲା ଏବଂ ସେ ହଁ ମିଳିଗଲା ବୋଲି କହି ଟେବୁଲ ପାଖରେ ଆସି ବସିଲା । କାଗଜ ଉପରେ ସେ ପ୍ରଥମେ ନିଜର ଜନ୍ମ ତାରିଖ ଏବଂ ସେ ଦିନର ତାରିଖ ଲେଖି ନିଜର ସଠିକ ବୟସ ଅଣଚାଶ ବର୍ଷ ତିନି ମାସ ବାରଦିନ ନିର୍ଦ୍ଧାରିତ କଲା । ତା ତଳେ ସେ ନିଜର ଦୁଇ ପୁଅଙ୍କର ବୟସ, ନାଁ ଏବଂ ବୟସ ଲେଖିଲା ଏବଂ ସେମାନଙ୍କୁ ମଣିଷ କରିବା ପାଇଁ

ଆନୁମାନିକ ଆଉ କେତେ ଖର୍ଚ୍ଚ ଲାଗିବ ତାର ମାନସିକ ଅଙ୍କ କଷିଲା । ଏ ବିଷୟରେ ସେ ବିଶେଷ ସଫଳ ହେଲା ନାହିଁ । କାରଣ ତାର ବଡ଼ ପୁଅ ଯେ କି କଲେଜରେ ଥିଲା ଭଲ ପାଠ ପଢ଼ୁ ନ ଥିଲା । ତଥାପି ସେ ହିସାବ କରି ବୁଦ୍ଧିଙ୍କ ପାଇଁ ଦୁଇଟି ଅଙ୍କ ଲେଖିଲା ଏବଂ ବଡ଼ପୁଅର ଖର୍ଚ୍ଚରେ ଆଉ ପଚିଶ ପ୍ରତିଶତ ମିଶାଇ ଦେଲା ।

ଯଦି ତାର ସ୍ତ୍ରୀ ଆସି ତାକୁ ସେ କଣ କରୁଛି ବୋଲି ପଚାରିଥାନ୍ତା ଅବିନାଶ ହୁଏତ ତାକୁ ସ୍ୱପ୍ନ ବିଷୟରେ ନ କହିଥିଲେ ମଧ୍ୟ ପିଲାମାନଙ୍କର ଭବିଷ୍ୟତ ପାଇଁ କରୁଥିବା ଯୋଜନା ବିଷୟରେ ଶୁଣାଇଥାନ୍ତା । କିନ୍ତୁ ତାର ସ୍ତ୍ରୀ ତା ପାଇଁ ଆଣିଥିବା ଜଳଖିଆ ତା ସାମନାରେ ରଖିଦେଲା ଏବଂ ଅବିନାଶ ଯେତେବେଳେ ଖାଇବ ନାହିଁ ବୋଲି କହିଲା ବିନା ବାକ୍ୟ ବ୍ୟୟରେ ଥାଳିଆକୁ ତା ଆଗରୁ ଉଠାଇ ନେଲା ଏବଂ ଅବିନାଶ ଅଗତ୍ୟା ଉଠିଆସି ତାକୁ ଖାଇବାରେ ଲାଗିଲା । ଏକଥା ଦେଖି ଅବିନାଶକୁ ହଠାତ୍ ଶୋକ ଲାଗିଲା କିନ୍ତୁ ସେ କାତବ କାନ୍ତା ଇତ୍ୟାଦି କଥା ମନେ ପକାଇ ନିଜ ମନକୁ ସାନ୍ତ୍ୱନା ଦେଲା ଯେ ଏ ସଂସାର ବାସ୍ତବରେ ଅତୀବ ବିଚିତ୍ର ।

ଏଥରକ ହିସାବ ଫର୍ଦ୍ଦ ଆଡ଼କୁ ଅନାଇବା ବେଳକୁ ତାର ଇନ୍ସ୍ୟୁରାନସ୍ ପଲିସି କଥା ମନେ ପଡ଼ିଲା । ପ୍ରାୟ ବର୍ଷେ ହେଲା ସେ ତାର ଟଙ୍କା ଦେଇ ନ ଥିଲା । ଆଜିହିଁ ସେ ଟଙ୍କାଟା ଦେଇଦେବ ବୋଲି ସେ ନିଷ୍ପତ୍ତି କଲା । ଭଗବାନ ଯଦି କେତେ ବର୍ଷ ଆଗରୁ ସ୍ୱପ୍ନରେ ଦେଖା ଦେଇଥାନ୍ତେ ସେ ନିଶ୍ଚୟ ଅଧିକ ଟଙ୍କାର ବୀମା ନେଇଥାନ୍ତା । କିନ୍ତୁ ଅଧିକା ପ୍ରିମିୟମ ସେ ଯେ ଦେଇପାରି ନଥାନ୍ତା ଏବଂ ଅନେକ ବର୍ଷ ତଳୁ ତାର ସେ ପଲିସିଟି ଅକାମୀ ହୋଇ ଯାଇଥାନ୍ତା, ସେ ବିଷୟରେ ମଧ୍ୟ ଅବିନାଶର ସନ୍ଦେହ ନ ଥିଲା । ଯାହାହେଉ ସେ ବର୍ତ୍ତମାନ ବୀମା କାଗଜ ଖୋଜିବାରେ ଲାଗିଲା । ପୁରୁଣା ପ୍ରେସ୍କ୍ରିପ୍ସନ, ରାଶନ ଦୋକାନର କ୍ୟାସ୍ମେମୋ, ପ୍ରମୋଶନ ଦରଖାସ୍ତର କାର୍ବନ କପି ଇତ୍ୟାଦି ଭିତରେ ସେ କାଗଜଟି ନଥିଲା । ସେ ବଡ଼ ପାଟିରେ ମୋର ଇନ୍ସ୍ୟୁରାନ୍ସ କାଗଜ କୋଉଠି ଅଛି ବୋଲି ପଚାରିଲା । ତାର ସ୍ତ୍ରୀ ଶୋଇବା ଘରେ ପଶିବା କାହିଁଥିଲା । ହାତରେ ବଡ଼ କଖାରୁ ଫାଳେ ଧରି ବାହାରକୁ ଆସି କହିଲା. ମୁଁ କେମିତି ଜାଣିବ ? ମୁଁ କଣ ତମର କାଗଜର ଧାର ଧାରେ ?

ଅବିନାଶ ମନରେ ଭୀଷଣ କଷ୍ଟ ହେଲା ଓ ସେ ମନେ ମନେ କହିଲା — ଯାଅ, ମର ଏବଂ ନିଷ୍ପତ୍ତି କଲା ଯେ ସେ ଆଉ ଇନ୍ସ୍ୟୁରାନ୍ସର ବାକି ଟଙ୍କା ଦେବ

ନାହିଁ । ଏଥରକ ସେ ହିସାବ ଲେଖିଥିବା କାଗଜଟି ମଧ୍ୟ ଚିରି ଫିଙ୍ଗି ଦେଲା ଏବଂ କିଛିକ୍ଷଣ ଗୁମ ହୋଇ ବସିଲା । ନାଁ। ସେ ଏଥରକ ଟିକିଏ ନିଜ କଥା ଭାବିବ । କଲେଜରେ ସେ ଭଲ ଛାତ୍ର ଥିଲା ଓ ସାହିତ୍ୟରେ ରୁଚି ରଖୁଥିଲା । ଏପରିକି କବିତା ମଧ୍ୟ ଲେଖୁଥିଲା । କଲେଜ ବେଳେ ଲେଖୁଥିବା ଡେସ୍ତାଏ କବିତା ଅନେକ ଦିନ ଧରି ତା ପାଖରେ ରହିଥିଲା । ତାର ଇଚ୍ଛା ଥିଲା ସେ ଆଉ ସାତଟି କବିତା ଲେଖିବ, କିନ୍ତୁ ତା ଆଉ ସମ୍ଭବ ହୋଇ ନ ଥିଲା । ଶେଷରେ କବିତାଗୁଡ଼ିକୁ ସେ ତାର ହାକିମଙ୍କୁ ଦେଇଥିଲା, ତାର ଚରିତ୍ର ଲିପିରେ ତାର ଉପରିସ୍ଥ କର୍ମଚାରୀ ଲେଖିଥିବା 'ରଚନା ଭଙ୍ଗୀ ଅତି ସାଧାରଣ' ମନ୍ତବ୍ୟର ଅସାରତା ପ୍ରମାଣ କରିବା ପାଇଁ । ଯଦିଓ ସେ ଏ ପ୍ରଚେଷ୍ଟାରେ ସଫଳ ହୋଇ-ଥିଲା ଏବଂ ତାକୁ ପ୍ରମୋଶନ ମିଳି ନଥିଲା, ହାକିମଙ୍କ ପାଖକୁ ଯାଇ ତାଙ୍କଠାରୁ ନିଜର ଡେସ୍ତାଏ କବିତା ମାଗି ଆଣିବାର ସାହସ ତାର ହୋଇ ନ ଥିଲା । ହୁଏତ ହାକିମ ବି ସେ କବିତା ଗୁଡ଼ିକ ହଜାଇ ଦେଇଥିଲେ ।

କଲେଜରେ ପଢ଼ିବା ବେଳେ ସେ ଆଉ ଗୋଟିଏ ମହତ ଯୋଜନା ମଧ୍ୟ ହାତକୁ ନେଇଥିଲା । ସେ ନିଜର ଜୀବନକାଳ ମଧ୍ୟରେ ଆତ୍ମଜୀବନୀମୂଳକ ପାଞ୍ଚଟି ଅନ୍ତିହୀବାଦୀ ଉପନ୍ୟାସ ଲେଖିବ ବୋଲି ଠିକ୍ କରିଥିଲା । ଯଦିଓ ସେତେବେଳେ ସେ ଯୁବକ ଥିଲା, ନିଜର ଭବିଷ୍ୟତ କିଭଳି ଗଢ଼ିବ ସେ ତାର ଏକ ମୋଟା-ମୋଟି ନକ୍ସା ତିଆରି କରିଥିଲା ଏବଂ ଏଇ ପାଞ୍ଚଟି ଉପନ୍ୟାସର ନାଁ ମଧ୍ୟ ଠିକ୍ କରି ରଖିଥିଲା : ଅପୂର୍ବ ଆନନ୍ଦ, ଅଦ୍ଭୁତ ଅମୃତ ଏବଂ ଅନନ୍ତ । ଗୋଟାଏ ଲାଲ୍ ମଲାଟର ବନ୍ଧେଇ ଖାତାରେ ସେ ପାଞ୍ଚଟି ଖଣ୍ଡର ସଂକ୍ଷିପ୍ତ ସୂଚନା ଲେଖି ରଖିଥିଲା । ବର୍ତ୍ତମାନ ଅବିନାଶର ଇଚ୍ଛା ହେଲା ମରିବା ଆଗରୁ ସେ ଏଇ ପଞ୍ଚାଙ୍ଗ ଉପନ୍ୟାସଟି ସମାପ୍ତ କରିଯିବ । ଅବିନାଶ ଏଇ ଲାଲ୍ ଖାତାଟିକୁ ଖୋଜିବାରେ ଲାଗିଲା ଏବଂ ଆଲମାରୀର ସବୁ ଜିନିଷ ଓଲଟ ପାଲଟ କରିବା ପରେ ମଧ୍ୟ ତାକୁ ସେଇଟି ମିଳିଲା ନାହିଁ । ସେ ମୋର ସେଇ ମୋଟା ଲାଲ ଖାତାଟା କେଉଁଠି ଅଛି ବୋଲି ପାଟି କରି କହିଲା ଏବଂ ହଠାତ ନିଜର ଭୁଲ ବୁଝିପାରି ମିଛରେ ହିଁ ମିଳିଗଲା କହିବା ପୂର୍ବରୁ ତାର ସ୍ତ୍ରୀ ଦୌଡ଼ିଦୌଡ଼ି ଘରୁ ଆସି ତା ଆଗରେ ଠିଆ ହେଲା । ତା ହାତରେ ଏଥର ଫାଳେ ବାଇଗଣ ଏବଂ ଅନ୍ୟ ହାତରେ ପଣିକ ଥିଲା ।

ଚଞ୍ଚଳ ଗାଧୁଆ ଘରେ ପଶି କବାଟ ବନ୍ଦ କରୁ କରୁ ଅବିନାଶ ଲାଲ ଖାତା କଥା ମନେ ପକାଇଲା । ନିଜର ସାହିତ୍ୟିକ ଉଚ୍ଚାଭିଳାଷ ବିଷୟରେ ମଧ୍ୟ ଅନେକ ଦିନ ତଳେ ଅବିନାଶ କେଉଁ ଏକ ଦୁର୍ବଳ ମୁହୂର୍ତ୍ତରେ ତାର ସ୍ତ୍ରୀକୁ

କହୁଥିଲା । ଘରେ ଅଫିସରୁ ଫେରି ସେ ଯେତେବେଳେ ସ୍ତ୍ରୀକୁ ଖାଇବାକୁ ମାଗିଲା, ତା'ର ସ୍ତ୍ରୀ କହିଲା : ଗ୍ରେଷେଇ ଆଜି ଡେରି ଅଛି । ଆହୁରି ଘଣ୍ଟାଏ ଲାଗିବ । ତମେ ଯୋଉ କହୁଥିଲ ପାଞ୍ଚଟା ଗପ ନାଁ । କଣ ଲେଖିବ ବୋଲି, ଯାଅ ବସି କରି ଲେଖ ଗ୍ରେଷେଇ ହେବା ଯାଏ । ଏ କଥାକୁ ସ୍ତ୍ରୀର ଅପ୍ରତିବାଦ ବିଷୟରେ ଅଜ୍ଞାନତା ମନେ କରି ଅବିନାଶ, ଉପହାସ କରି ଦେଇ ପାରିଥାନ୍ତା, କିନ୍ତୁ ସେଇ ସାମାନ୍ୟ ଭୋକ ଲାଗୁଥିଲା ଅବସ୍ଥାରେ ଏକଥା ତାକୁ ବିରକ୍ତିକର ମନେ ହେଲା ଏବଂ ସେ ଲାଲ ଖାତାଟାରୁ ଲେଖା ହୋଇଥିବା ଅଳ୍ପ ପୃଷ୍ଠାକୁ ଚିରି ତାକୁ ସାନପୁଅକୁ ଦେଇ ଦେଇଥିଲା । ଖାତାରେ ଅନେକ ଦିନ ତଳେ ଲେଖିଥିବା ନକ୍‌ସାର ବିନା ସହାୟତାରେ ସେ ଉପନ୍ୟାସ ଲେଖା ଆରମ୍ଭ କରି. 'ପାରିବ କି ନାହିଁ ସେ ବିଷୟରେ ବର୍ତ୍ତମାନ ସନ୍ଦିହାନ ହେଲା । ଏପରିକି ଉପନ୍ୟାସର ପାଞ୍ଚଟି ନାଁର ନାମ ବିଷୟରେ ମଧ୍ୟ ତାର ସନ୍ଦେହ ଜନ୍ମିଲା ଏବଂ ସେ ସ୍ଥିର କଲା ହୁଏତ ଶେଷ ସାଗର ନାଁ । ଅମୃତ ଥିଲା, ଅନନ୍ତ ନୁହେଁ ।

ଗାଧୁଆ ଘରେ ସେ ନିଜ ଦେହକୁ ଅନାଇଲା । ନାଁ ଏ ଦେହ ଆଉ ବେଶୀ ଦିନ ଚଳିବ ନାହିଁ । ସେ ବେଶ ମୋଟା ଏବଂ ଚନ୍ଦା ହୋଇ ଯାଇଥିଲା ଏବଂ ତାର ଛଅଟି ଦାନ୍ତ ନକଲି ଥିଲା । ଏପରିକି କିଛିଦିନ ତଳେ ତାର ଯୁବକ ବୟସର ଗୋଟିଏ ଫଟୋକୁ ଦେଖି ତା ଯେ ଅବିନାଶର ହୋଇପାରେ ସେ ବିଷୟରେ ତାର ସାନପୁଅ ଗଭୀର ସନ୍ଦେହ ପ୍ରକାଶ କରିଥିଲା । ନିଜର ସୁସ୍ଥସବଳ ଦେଖା ଯାଉଥିବା ଦେହ ସତ୍ତ୍ୱେ ଅବିନାଶ ସବୁବେଳେ ଦୁର୍ବଳ ଅନୁଭବ କରୁଥିଲା । ସେ ଭାବୁଥିଲା ହୁଏତ ଏ ଭିତରେ ତାର ରକ୍ତଚାପ ଓ ଅଳସର ଇତ୍ୟାଦି ବେମାରି ମଧ୍ୟ ହୋଇଥିଲା; କିନ୍ତୁ ସେ ଭୟରେ ଡାକ୍ତର ପାଖକୁ ଯାଇ ନଥିଲା ।

ଶାରୀରିକ ଦୁର୍ବଳତା ସହିତ ତାର ମାନସିକ ଦୁର୍ବଳତା ମଧ୍ୟ ଅତି ଅଧିକ ଥିଲା । ଅଫିସରେ ସେ ସବୁଠାରୁ ବେଶୀ ଭୟାଳୁ କର୍ମଚାରୀ ବୋଲି ଖ୍ୟାତ ଥିଲା । ହାକିମ ଡକାଇ ପଠାଇଲେ ତା ଦେହରୁ ଝାଳ ବାହାରୁଥିଲା ଓ ହାକିମଙ୍କ ଆଗରେ ଠିଆ ହୋଇ କଥା କହିବା ବେଳେ ତା ପାଟି ଖନି ବାଜୁଥିଲା । ବଜାରରେ ଜିନିଷ କିଣିବା ବେଳେ ସେ ଦୋକାନୀ ସହିତ ଦରଦାମ କରିପାରୁ ନଥିଲା ଏବଂ ଭିଡ଼ ଦେଖିଲେ ଦୂରରୁ ପଳାଇ ଆସୁଥିଲା । ଅଫିସରେ ବିନା କାରଣରେ ଉପରିସ୍ଥ କର୍ମଚାରୀମାନଙ୍କଠାରୁ ଶୁଣୁଥିବା ଗାଳି ମଧ୍ୟ ସେ ଚୁପ୍‌ଚାପ ସହି ନେଉଥିଲା । ବର୍ତ୍ତମାନ ଗାଧୁଆ ଘରେ ଏସବୁ କଥା ଭାବି ତାର ବଞ୍ଚିବାର ଅଧିକାର ଉପରେ ଯଥେଷ୍ଟ ସନ୍ଦେହ ଜନ୍ମିଲା ।

ଅଫିସ୍ ନଗଲେ ବି ସେ ଆଉ ଘରେ ରହିବାକୁ ମଧ୍ୟ ଚାହୁଁ ନ ଥିଲା । ସେଥିପାଇଁ ଗାଧୋଇ ସାରି ସେ ଘରୁ ବାହାରି ଆସିଲା । ତାର ସ୍ତ୍ରୀ ଅତି ଅଦ୍ଭୁତ ସ୍ୱଭାବର ଥିଲା ଏବଂ ଅବିନାଶ ସେଦିଓ ସକାଳୁ କିଛି ଖାଇ ନ ଥିଲା, ସେ ତାକୁ କିଛି ପଚାରିଲା ନାହିଁ । ରାସ୍ତାକୁ ଆସି ଅବିନାଶ ପ୍ରଥମେ ଗଲା ଗୋଟାଏ ଦୋକାନକୁ ଅଫିସରୁ ଛୁଟି ପାଇଁ ଟେଲିଫୋନ କରିବା ପାଇଁ । ସେ ଭାବିଥିଲା ଯେ ତାର ଦୁଃସମ୍ବାଦ କୌଣସି ଦୈବିକ ପ୍ରକ୍ରିୟା ଦ୍ୱାରା ତାଙ୍କ ଅଫିସରେ ପ୍ରତିଧ୍ୱନିତ ହୋଇ ଏକ ଦୁଃଖର ସ୍ରୋତ ଖେଳାଇ ଦେଇଥିବ । କିନ୍ତୁ ଅନେକ କଷ୍ଟରେ ସେ ଯେତେବେଳେ ଅରବିନ୍ଦ ବାବୁଙ୍କୁ ଫୋନରେ ପାଇଲା, ତାର ଦେହ ଖରାପ ଥିବା କଥା ଶୁଣି ସହାନୁଭୂତି ଦେଖାଇବେ କଣ, ଅରବିନ୍ଦ ବାବୁ ହୋ ହୋ ହସି କହିଲେ : ବୁଝିଲ, ଆଜି ଅଫିସରେ ବଡ଼ ମଜାର କଥା ହେଲା । ବିରକ୍ତିରେ ଅବିନାଶ ଫୋନକୁ ରଖିଦେଇ ରାସ୍ତାକୁ ଓହ୍ଲାଇଲା । ଦୋକାନି ହେ ବାବୁ ବୋଲି ପାଟି କଲା ଏବଂ ଅବିନାଶର ମନେ ପଡ଼ିଲା ଯେ ସେ ଟେଲିଫୋନର ପଇସା ଦେବାକୁ ଭୁଲି ଯାଇଛି ।

ଖରା ଆସ୍ତେ ଆସ୍ତେ ଟାଣ ହୋଇ ଆସୁଥିଲା ଏବଂ ବର୍ତ୍ତମାନ ତାକୁ ନିଜର ଦୁଃସ୍ୱପ୍ନର ଭୟ ଅପେକ୍ଷା ସାମୟିକ ଭୋକର ତାଡ଼ନା ଅଧିକ ପ୍ରବଳ ଜଣାଗଲା । ସେ ଗୋଟିଏ ଗ୍ରେଟ ହୋଟେଲରେ ପଶି ଜଳଖିଆ ମଗାଇଲା । ହୋଟେଲରେ ଆଉ କେହି ଲୋକ ନଥିଲେ ଏବଂ ହୋଟେଲବାଲା ନିଜର ରେଡ଼ିଓ ଶୁଣିବାରେ ବ୍ୟାହତ ହେଲା ବୋଲି ଅସନ୍ତୁଷ୍ଟ ଜଣା ପଡ଼ୁଥିଲା । ତାର ଖାଇବା ଆସିବାରେ ଯେତେ ବିଳମ୍ବ ହେଉଥିଲା, ଅବିନାଶର ଭୋକ ସେତିକ ବଢ଼ି ଚାଲିଥିଲା । ସେ ହୋଟେଲ ବାହାର ରାସ୍ତା ଆଡ଼କୁ ଅନାଇଲା, ଯେଉଁଠାରେ ସହରର ପ୍ରାତ୍ୟହିକ ଜୀବନ ଅବ୍ୟାହତ ଚାଲିଥିଲା । ରାସ୍ତାରେ ଯାଉଥିବା ଲୋକମାନେ ବ୍ୟସ୍ତ ଓ ପ୍ରସନ୍ନ ଜଣା ପଡ଼ୁଥିଲେ ଏବଂ ସେ କେଉଁଠାରେ ହେଲେ ତାର ଦୁଃଖର ସ୍ରୋତ ଦେଖିପାରୁ ନଥିଲା । ତାକୁ ବର୍ତ୍ତମାନ ସଂସାର ଏକ ସହାନୁଭୂତି ଓ ସମ୍ବେଦନା ବିହୀନ ସ୍ଥାନ ମନେ ହେଲା । ଏପରିକି ତାକୁ ଚା ଓ ଜଳଖିଆ ଦେଉଥିବା ଲୋକଟି ମଧ୍ୟ ପ୍ଲେଟଟିକୁ ଆବଶ୍ୟକତାରୁ ଅଧିକ ଜୋରରେ ଟେବୁଲ ଉପରେ ରଖିଲା ଏବଂ ସେ ତାକୁ ପାଣି ଗିଲାସେ ମାଗିବା ପୂର୍ବରୁ ସେଠାରୁ ଚାଲିଗଲା । ଅବିନାଶ ଭାବିଲା ନାଁ, ମରିଯିବା ହିଁ ଶ୍ରେୟସ୍କର ।

ସକାଳର ଶୁଇ ଶୁଇ ଅବସ୍ଥାରେ ଯେଉଁ ଦୁଃସ୍ୱପ୍ନ ତାକୁ ଅସମ୍ଭବ ଭାବରେ ଘାରିଥିଲା, ଦିନର ଉଜ୍ଜ୍ୱଳ ଆଲୁଅରେ ତାକୁ ସେ ସାମାନ୍ୟ ପରୀକ୍ଷା ନିରୀକ୍ଷା କଲା । ଖାଇବା ପରେ ସେ କିଞ୍ଚିତ ସବଳ ଅନୁଭବ କରୁଥିଲା ଏବଂ ସହରର

ଲୋକଗହଳ ରାସ୍ତାରେ ଅନ୍ତର୍ଦ୍ଧିଷ୍ଟ ଭାବରେ ଗୁଲୁବା ବେଳେ ତାର ଭୟ ଅନେକ କମି ଯାଇଥିଲା । ସେ ନିଜକୁ ପ୍ରଶ୍ନ କଲା ସେ କଳାପୋଷାକ ପିନ୍ଧିଥିବା ଲୋକଟିକୁ ଭଗବାନ ବୋଲି ଜାଣିଲା କପରି ? ତାର ଯେତେ ଦୂର ମନେ ଥିଲା ଲୋକଟି କେବେ ହେଲେ ମୁଁ ଭଗବାନ ବୋଲି କହି ନଥିଲା । ତେବେ ସ୍ୱପ୍ନରେ ସବୁ କଥା ପ୍ରାଞ୍ଜଳ ଓ ତର୍କସଙ୍ଗତ ଭାବରେ ଦେଖାଯାଇ ନଥାଏ; ଅନେକ କଥାକୁ ମନ ନିଜର ବ୍ୟାଖ୍ୟା କରି ବୋଧଗମ୍ୟ କରାଇଥାଏ । ଭଗବାନ ବ୍ୟତୀତ ସେ ଲୋକଟି ଆଉ କିଏ ହୋଇପାରେ ଅବିନାଶ ସେ କଥା କଳ୍ପନା କରିବାକୁ ଚେଷ୍ଟା କଲା । କିନ୍ତୁ ସେ ଏତେ ଚେଷ୍ଟା ସତ୍ତ୍ୱେ ମଧ୍ୟ ଏଭଳି ପୋଷାକ ପିନ୍ଧିଥିବା ଲୋକକୁ ଆଉ କୌଣସି ଚରିତ୍ରରେ ଅବସ୍ଥାପିତ କରି ପାରିଲା ନାହିଁ ।

ସେ ଆଉ ତାର ଆସନ୍ନ ମୃତ୍ୟୁ କଥା ଭାବୁ ନ ଥିଲା, ବରଂ ଅଫିସ ନ ଯାଇ ଛୁଟି ନେଇଥିବା ପୁରା ଦିନଟି କପରି କଟାଇବ ତାହା ହିଁ ତାର ଚିନ୍ତାର ବିଷୟ ଥିଲା । ସେ ବର୍ତ୍ତମାନ କୁଳାଙ୍ଗାର ପୁଅ, ବୀମାର ପଲିସି ଓ ପଞ୍ଚାଙ୍ଗ ଉପନ୍ୟାସର ନକ୍ସା ଇତ୍ୟାଦି କଥା ଭୁଲି ଯାଇଥିଲା । ବରଂ ସେ ସାଙ୍ଗରେ ଛତା ନ ନେଇ ବାହାରି ଆସିଥିବାରୁ ଅନୁତାପ କରୁଥିଲା । ଦୋକାନର କାଚ ଝରକା ପାଖରେ ଠିଆ ହୋଇ ସେ ଏପରି ସବୁ ଜିନିଷର ଦାମ ପରଖ କଲା ଯାହା ସେ କେବେ ବି କିଣିବାର ସମ୍ଭାବନା ନ ଥିଲା । ରାସ୍ତାକରର ଦୋକାନରେ ବିଭିନ୍ନ ପ୍ରକାରର ଖେଳନାକୁ ସେ ତନ୍ନ ତନ୍ନ କରି ଦେଖିଲା । ତାପରେ ସେ ଯାଇ ଫଳ ଦୋକାନରେ ଗିଲାସେ ଫଳରସ ପିଇଲା, ଯଦିଓ ତାକୁ ଶୋଷ ଲାଗୁ ନଥିଲା ।

ଘଣ୍ଟାକୁ ଅନାଇ ସେ ଦେଖିଲା ସେତେବେଳକୁ ଦିନ ମାତ୍ର ବାରଟା । ଖରାବେଳେ ଆଉ କଣ କରାଯାଇପାରେ ଅବିନାଶ ଭାବିପାରୁ ନଥିଲା । ଘରକୁ ଫେରିଯିବା କଥା ଭାବିବାରେ ସେ ହାତରେ ପଣନକ ଓ ଭଲ ମିଜାଜରେ ନଥିବା ତାର ସ୍ତ୍ରୀକୁ ଦେଖିଲା ଓ ସେ ଚିନ୍ତାରୁ ନିଜକୁ ନିବୃତ୍ତ କଲା । ଏହି ସମୟରେ ହଠାତ୍ ସେ ସାମାନ୍ୟ ଦୂରରେ ଏପରି ଏକ ଦୃଶ୍ୟ ଦେଖିଲା ଯାହା ତାର ରକ୍ତକୁ ପାଣି କରିଦେଲା । ଭିଡ଼ ଭିତର ଦେଇ ଭଗବାନ ଆଗକୁ ଗୁଲି ଯାଉଥିଲେ । ତାଙ୍କ ଦେହରେ ଲମ୍ବା କଳା ପୋଷାକ ଥିଲା ଏବଂ ଦଶଫୁଟ ନ ହେଲେ ବି ସେ ଭିଡ଼ ଭିତରେ ସବୁଠାରୁ ଲମ୍ବା ଲୋକ ଥିଲେ । ଅବିନାଶ ଆତଙ୍କ ଗଣିଲା ଏବଂ ଜାଣିଲା ଯେ ତାର ମୃତ୍ୟୁ ଆଉ ଡେରି ନାହିଁ । ମୁହୂର୍ତ୍ତକ ଭିତରେ ପୁଣି ତା ମୁଣ୍ଡ ଭିତରେ ତାର ପରିବାରର ଭବିଷ୍ୟତ, ଅପୂର୍ଣ୍ଣ ଉପନ୍ୟାସ ଓ ଟଙ୍କା ଦିଆଯାଇ ନଥିବା ପଲିସି କଥାମାନ ଧସି ପଶି ଆସିଲେ ।

ଏ ନିଷ୍ପତ୍ତି ତାଙ୍କର ସୂଚନାକୁ ଉପେକ୍ଷା କରିଥିବାରୁ ତା ପାଇଁ ଭଗବାନଙ୍କର ପରିହାସପୂର୍ଣ୍ଣ ଶିକ୍ଷା ଥିଲା । ସେ ଯେପରି ତାକୁ ଜଣାଇବାକୁ ଚାହୁଁଥିଲେ ଯେ ସ୍ୱପ୍ନରେ ଦେଖିଥିବା ତାଙ୍କୁ ଯଦି ସେ ଅସ୍ୱୀକାର କଲା ତେବେ ସେ ତାଙ୍କୁ ଏଥରକ ଦିନ ଦି ପହରେ ସଶରୀରେ ଦେଖୁ ଏବଂ ତାଙ୍କର ବାର୍ତ୍ତାର ବାସ୍ତବିକତା ଓ ଭବିଷ୍ୟାବହିତା ବୁଝୁ । ଏଥର ଯେମିତି ଦେଖା ହେଲେ ସେ କହିବେ, ମୁଁ ଏବେ ତୁମ୍ଭକୁ ନେଇଯିବି । ଅବିନାଶ ନିଜର ଧୃଷ୍ଟତା ପାଇଁ ମନେ ମନେ ଭଗବାନଙ୍କୁ କ୍ଷମା ମାଗିଲା ।

ଗଳି ମୋଡ଼ରେ ଭଗବାନ ଅଦୃଶ୍ୟ ହୋଇଯିବା ପରେ ଅବିନାଶ ମୁଣ୍ଡରେ ଚେତା ପଶିଲା । ସେ ନିଜକୁ ପ୍ରକୃତିସ୍ଥ କରି ଭଗବାନଙ୍କ ସନ୍ଧାନରେ ଯିବା ପାଇଁ ସ୍ଥିର କଲା ଏବଂ ଦ୍ରୁତ ପଦକ୍ଷେପରେ ଚାଲିବାକୁ ଲାଗିଲା । ଗଳି ମୁଣ୍ଡରେ ପହଞ୍ଚି ସେ ଭଗବାନଙ୍କୁ ଦେଖିବାକୁ ନପାଇ ହତୋତ୍ସାହ ହେଲା । ଏପାଖ ସେପାଖ ଅନେକ ଖୋଜିଲା ଏବଂ ଶେଷରେ ଧାଇଁବାକୁ ଲାଗିଲା । କିନ୍ତୁ ଭଗବାନ ସମ୍ପୂର୍ଣ୍ଣ ଭାବରେ ଉଭେଇ ହୋଇ ଯାଇଥିଲେ ଏବଂ ଯେତେ ଲୋକଙ୍କୁ ସେ ଲମ୍ବା କଳା-ପୋଷାକ ପିନ୍ଧିଥିବା ଲୋକଟି କଥା ପଚାରିଲା କେହି କହି ପାରିଲେ ନାହିଁ । କେବଳ ଜଣେ ଲୋକ ତାକୁ ଓଲଟି ଲୋକଟିର ଦାଢି ଥିଲା କି ନା ପ୍ରଶ୍ନ କଲା, ଅବିନାଶ ଯାହାର ଉତ୍ତର ଦେଇ ପାରିଲା ନାହିଁ ।

ଗଳିରୁ ଗଳିକୁ ଧାଇଁ ସେ କ୍ଳାନ୍ତ ହୋଇ ଯାଇଥିଲା । ସେ ପାଖରେ ଗୋଟିଏ ଛୋଟ ତିନିକୋଣିଆ ପାର୍କ ଦେଖିଲା ଯାହା ଭିତରେ କେତୋଟି ଗଛ ଥିଲା । ସେ ଭିତରକୁ ଯାଇ ଗଛ ତଳେ ପଡ଼ିଥିବା ସିମେଣ୍ଟ ବେଞ୍ଚ ଉପରେ ବସିଲା । ଏଇ ସମୟରେ ତାର ମନ ଭିତରେ ଭୟ କ୍ଳାନ୍ତି ବିରକ୍ତି ଅନୁଶୋଚନା ଆଦି ଅନେକ ଭାବଧାରା ଖେଳିଗଲା । କିଛି ସମୟ ବିଶ୍ରାମ ନେଇ ସେ ବେଞ୍ଚ ଉପରୁ ଉଠିଲା ଓ ପାର୍କ ବାହାରକୁ ଯିବା ପାଇଁ ପାଦ ବଢ଼ାଇଲା । ଏତିକିବେଳେ ଗଛର ଆରପାଖେ ଲମ୍ବା କଳାପୋଷାକ ପିନ୍ଧି ଶୋଇଥିବା ଲୋକଟି ତା ଆଖିରେ ପଡ଼ିଲା । ତାର ଉଚ୍ଚତା ଠିକ୍ ଜଣାପଡୁ ନଥିଲେ ବି ଲୋକଟି ଦୀର୍ଘକାୟ ନ ଥିଲା । ତା ମୁଣ୍ଡତଳେ ଗୋଟିଏ ବୁଜୁଳା ଥିଲା ଓ ପାଖରେ ଗୋଟିଏ ମାଙ୍କଡ଼ ବନ୍ଧା ହୋଇଥିଲା । ଲୋକଟି ନିଘୋଡ଼ ନିଦରେ ଶୋଇଥିଲା ଏବଂ ମାଙ୍କଡ଼ଟି ନିଜେ ନିଜେ ବିଭିନ୍ନ ପ୍ରକାରର ଖେଳ ଖେଳିବାରେ ବ୍ୟସ୍ତ ଥିଲା ।

ପ୍ରତିକ୍ରିୟା ଶୂନ୍ୟ ହୋଇ ଅବିନାଶ କିଛିକ୍ଷଣ ଶୋଇଥିବା ଲୋକଟିକୁ ଚାହିଁଲା ଏବଂ ଶେଷରେ ପାର୍କରୁ ବାହାରି ଅଫିସକୁ ଯିବା ପାଇଁ ଗୋଟିଏ

ରିକ୍ସା ଧରିଲା । ଲଞ୍ଚ ଛୁଟି ପରେ ଅଫିସରେ ସମସ୍ତେ ଯେ ଯାହା ଜାଗାରେ ଥିଲେ ଏବଂ ଅବିନାଶ ଯାଇ ନିଜ ଚଉକିରେ ବସିଲା । ଅରବିନ୍ଦ ବାବୁ ଫାଇଲରୁ ମୁହଁ ଉଠାଇ ତା ଆଡ଼କୁ ଚାହିଁଲେ ଏବଂ ଅବିନାଶ ଧୀର ସ୍ୱରରେ ଦେହ ଭଲ ଲାଗିଲା, ଚାଲି ଆସିଲି ବୋଲି କହିଲା । କିନ୍ତୁ ଅରବିନ୍ଦ ବାବୁ କୌଣସି କାରଣରୁ ଚିନ୍ତିତ ଜଣା ପଡ଼ୁଥିଲେ ଏବଂ ଏ କଥାକୁ ଅଶୁଣା କରିଦେଇ ପୁଣି ଫାଇଲରେ ମୁହଁ ଗୁଞ୍ଜି ଦେଲେ । ଅବିନାଶକୁ ନିଜର ସ୍କିମ ଓ ପ୍ରମୋଶନ କଥା ମନେପଡ଼ିଲା ଏବଂ ସେ ଗୋଟାଏ କାଗଜ ଆଣି ଦରଖାସ୍ତ ଲେଖିବାକୁ ଆରମ୍ଭ କଲା ।

ହଠାତ୍ ସେ ଆବିଷ୍କାର କଲା ଯେ ସେ କାଗଜ ଉପରେ ଡିଅର୍ ଗଡ଼୍ ବୋଲି ଲେଖିଥିଲା । ସେ ବିରକ୍ତିରେ କାଗଜଟିକୁ ଗୁଳା କରି ଦୂରକୁ ଫିଙ୍ଗି ଦେଲା ଏବଂ ଏ ଥରକ ଆଉ ଖଣ୍ଡେ କାଗଜ ଉପରେ ସ୍ପଷ୍ଟ ଭାବରେ ତାର ପ୍ରମୋଶନର ଅର୍ଜି ଲେଖିବାକୁ ଆରମ୍ଭ କଲା : ରେସ୍‌ପେକ୍‌ଟେଡ଼୍ ସାର୍ ଇତ୍ୟାଦି ।



# ଗୋଟାଏ ଉପୁଡ଼ା ଗଛର କାହାଣୀ

**ରବି ପଟ୍ଟନାୟକ**

"ତୁ ତାହେଲେ ପୁରାପୁରି ଠିକ୍ କରିନେଇଛୁ ସ୍ୱର୍ଣ୍ଣପୁର ଛାଡ଼ିଦେବାକୁ ।" ତନ୍ଦୁରି ଚିକେନ୍‌ର ଦରପୋଡ଼ା ଗୋଡଟିକୁ ଦୁଇ ଆଙ୍ଗୁଳିରେ ନିରୀକ୍ଷଣ କରୁ କରୁ ଅନେକ ସମୟ ପରେ ଭଗବତୀ ଅଗ୍ରୱାଲ୍ କହିଲା "ତା ଛଡ଼ା ଉପାୟ କଣ ଅଛି କହ ? ମୁଁ ତ ଏକ ପ୍ରକାର ନିରୁପାୟ ।"

ଅଜାଣତରେ ଛାତି ଭିତରେ ମୁଁ ଗୋଟାଏ ଅଦ୍ଭୁତ ଯନ୍ତ୍ରଣାର ବ୍ୟଥା ଅନୁଭବ କଲି । ହୁଇସ୍କି ଗ୍ଲାସରେ ଗୋଟାଏ ଚୁମକ୍ ଦେଇ ମୁଁ ବି କିଛି ସମୟ ନୀରବ ରହିଲି । ସିଗାରେଟ୍ ଧରାଇ କଳେ ଧୂଆଁ ଛାଡ଼ି ପୁଣି ଆଉଥରେ ପଚାରିଲି "ଏଇ କଣ ତୋର ଶେଷ ନିଷ୍ପତ୍ତି ? ସ୍ଥିର, ନିଶ୍ଚିତ ।"

ଭଗବତୀ ତା ଗ୍ଲାସରୁ ଢୋକେ ପିଇଲା । ତାପରେ କିଛି ସମୟ କୁକୁଡ଼ା ଗୋଡ଼ଟି ଚୋବାଇବାରେ ମନୋନିବେଶ କଲା କିଛି ଉତ୍ତର ନଦେଇ । ମୁଁ ସେମିତି ତା ଆଡ଼କୁ ଅପଲକ ନୟନରେ ଚାହିଁ ରହି ସିଗାରେଟ୍ ଫୁଙ୍କୁଥାଏ । ଯନ୍ତ୍ରଣାଟା ସେମିତି ଗୁରୁତର ନୁହେଁ । କଷ୍ଟକର ନୁହେଁ । ଅଥଚ ଛାତି ଭିତରେ ସେଇଟା କ୍ରମାଗତ ଗୋଟିଏ ତାଳରେ ଆଘାତ କରି ଚାଲିଛି ।

"ମୋର କିଛି ଜମା ଇଚ୍ଛା ନାହିଁ । ନିଜର ଭିଟାମାଟି ଛାଡ଼ି କାହାକୁ ଯିବାକୁ କଷ୍ଟ ନହୁଏ କହ ? କିନ୍ତୁ ପୁଅମାନେ ବାଧ କରୁଛନ୍ତି । କହୁଛନ୍ତି ଚାଲ, ସବୁ ଜିନିଷ ବିକ୍ରିବଟା କରି ଅନ୍ୟ କୌଣସି ସହରକୁ ଉଠିଯିବା ।"

ଭଗବତୀ ମୋର କ୍ଲାସ୍‌ମେଟ୍ । ମୋର ଅତି ଘନିଷ୍ଠ ଅନ୍ତରଙ୍ଗ ବନ୍ଧୁ । ବୟସ ତାର ମୋଠୁ କିଛି ବେଶୀ । ହୁଏତ ବେଶୀ ହେଲେ ବର୍ତ୍ତମାନ ତାକୁ ୬୨ କି ୬୩ ବର୍ଷ ହେବ । ଅଥଚ ତାର ଗୋଟିଏ ପୁଅର ବୟସ ଛବିଶ ଓ ସାନଟାର ଚବିଶ ।

(୧୯)

ଭାଲ୍ ପରି ମନେପଡ଼ୁଛି ତାର ବାହାଘର କଥା । ସେତେବେଳକୁ ଆମର ଦଶମ ଶ୍ରେଣୀ । ଦିନେ ଆସି କହିଲା "ବୁଝିଲୁ ହୁରି, ମୋର ବାହାଘର ଠିକ୍ ହୋଇ ଯାଇଛି । ଆସନ୍ତା ମାସରେ ହେବ । ମୁଁ ଆଉ ପଢିବି ନାହିଁ । ବାପା ମନା କରୁଛନ୍ତି । ତାଛଡ଼ା, ତୁ ଜାଣୁ ମୋ ଦେଇ ପାଠପଢ଼ା ହେବ ନାହିଁ । ସେତେବେଳକୁ ଆମର ଗେମାଷ୍ଟକର କିଶୋର ବୟସ । ଯେତେବେଳେ ପ୍ରେମ ସ୍ୱାଭାବିକ ଏବଂ ନାରୀ ଏକ ରହସ୍ୟ । ଆମ ସ୍କୁଲରେ କେହି ଛାତ୍ରୀ ନ ଥିଲେ । ଯେତେକ ବା ଥିଲେ ସବୁ ସପ୍ତମ ଶ୍ରେଣୀ ତଳକୁ । ସପ୍ତମ ଶ୍ରେଣୀ ପାଶ୍ କରି ଅଷ୍ଟମ ଶ୍ରେଣୀରେ ପାଠ ପଢୁଥିବା ଝିଅ ମୁଁ ସ୍କୁଲ ଜୀବନରେ ଦେଖିନାହିଁ । ତେଣୁ ତା ବାହାଘର କଥା ଶୁଣି ଆମେ ଯେତିକି ଆଶ୍ଚର୍ଯ୍ୟବୋଧ କରି ନଥିଲୁ ତାଠାରୁ ବେଶି କୌତୁହଳୀ ହୋଇ ପଡ଼ୁଥିଲୁ ।

ପ୍ରେମ, ନାରୀ, ନାରୀର ଦେହ, ସମ୍ଭୋଗ ସବୁର କିଛି ସ୍ପଷ୍ଟ ଆଇଡ଼ିଆ ତାହାର ନଥିଲା । ସବୁ କଥା କେବଳ ଭସା ଭସା ଅସ୍ପଷ୍ଟ, ରହସ୍ୟମୟ ସେତେବେଳକୁ ଏବପରି ଏକ ମାଗାଜିନ୍ ନଥିଲା, ସେକ୍ସ ନଥିଲା ବା ସେକ୍ସ ଜାଣିଥିବା ଅଭିଜ୍ଞ ବନ୍ଧୁ ବି ନ ଥିଲେ । କିଏ କାହାଠାରୁ ଟିକିଏ କଣ ଶୁଣିଛି, ସେ କଥାକୁ ଫେଣେଇ ଫେଣେଇ କହି ଆମ ମହଲରେ ଏକ ବିଜ୍ଞପୁରୁଷ ବୋଲି ପ୍ରତିଷ୍ଠା ଲାଭ କରୁଥିଲା । ଏପରିକି ସବୁଠାରୁ ବୟସ୍କ ବନ୍ଧୁ ନରହରି ମଧ୍ୟ ଭଗବତୀକୁ ଏ ସମ୍ବନ୍ଧରେ କିଛି ନିର୍ଦ୍ଦିଷ୍ଟ ଧାରଣା ଦେଇପାରି ନଥିଲା ।

ଅତଏବ ଭଗବତୀ ଆମ ଆଖିରେ ହୋଇ ଉଠିଥିଲା ଏକ ବିରାଟ ଭାଗ୍ୟବନ୍ତ ପୁରୁଷ, ଯେ କି ଆମ ସମସ୍ତଙ୍କଠାରୁ ପ୍ରଥମେ ଏ ବିଷୟରେ ଅଭିଜ୍ଞତା ହାସଲ କରିବ । ଆମେ ତାକୁ କେତେବେଳେ ଈର୍ଷାର ଦୃଷ୍ଟିରେ ଦେଖୁଥିଲୁ ତ କେତେ-ବେଳେ କୌତୁହଳର ଦୃଷ୍ଟିରେ ଦେଖୁଥିଲୁ । ସେ ମଧ୍ୟ ନିଜକୁ ଆମ ସମସ୍ତଙ୍କଠାରୁ ଅଲଗା ଓ ଅନନ୍ୟ ବୋଲି ଧାରଣା କରିନେଇ ନିଜକୁ ବୟସ୍କ ପର୍ଯ୍ୟାୟରେ ଉନ୍ନୀତ କରିଦେଇ ଆମକୁ ଅପୋଗଣ୍ଡ ଶିଶୁପରି ବ୍ୟବହାର କରିବାକୁ ଆରମ୍ଭ କରି ଦେଇଥିଲା ।

ଯାହାହେଉ, ଶେଷରେ ବହୁ ଧୂମ୍‌ଧାମ୍‌ରେ ଭଗବତୀର ବିବାହ ଉତ୍ସବ ସମାପ୍ତ ହୋଇଥିଲା । ଆମେ ସମସ୍ତେ ତା ବାହାଘରରେ ଘିଅ ପଚ୍‌ପଚ୍ ପୁରି, ଶୁଖିଲା ଆଳୁ ତରକାରୀ, ପାଞ୍ଚ ପ୍ରକାର ବେସନ ତିଆରି ମିଠେଇ, ଦଶ ପ୍ରକାର ଆଚାର ଓ ପାମ୍ପଡର ଭୁରି ଭୋଜନ କରିଥିଲୁ । ବିଶେଷତଃ ମୁଁ । ଆମ ଘରେ ପ୍ରାୟ ଦଶଦିନ ପର୍ଯ୍ୟନ୍ତ ଚୁଲ୍ଲୀ ଜଳି ନଥିଲା ।

ଭଗବତୀ ଅଗ୍ରବାଲ ଙ୍କ ଆମର ସମ୍ପର୍କ ଅନେକପୁରୁଷର । ମୋ ଜେଜେବାପା ଯେତେବେଳେ ମୟୂରଭଞ୍ଜ ଗଡ଼ଜାତର ଏକ ଦୁର୍ଗମ ଅଞ୍ଚଳରେ ସର୍ବଶକ୍ତିମାନ୍ ରାଜପ୍ରତିଭୂ ସେତେବେଳେ ଭଗବତୀର ଜେଜେବାପା ବନଓ୍ୱାରିଲାଲ୍ କୋଉଠୁ କେମିତି କେଜାଣି ଆମର ଶାସନରେ ଆବିର୍ଭୂତ ହୋଇଥିଲେ । ଏଣୁଣକ ତା' ପାଖରେ ବହୁବର୍ଷିତ ଲୋଟା କ କମ୍ବଳ ଖଣ୍ଡେ ନଥିଲା । ମୋ ଜେଜେବାପାଙ୍କର ଏଇ ଦେଶାନ୍ତରୀ, ଅଜଣା ପ୍ରଦେଶର ଛେଉଣ୍ଡ ପିଲାଟି ପ୍ରତି କାହିଁକି କେଜାଣି ଏକ ମମତ୍ୱବୋଧ ଜାଗ୍ରତ ହୋଇଥିଲା ଓ ସେ ତାକୁ ଆମ ପୈତୃକ ମନ୍ଦିର ଓ ମଠରେ କଣରେ ରହିବା ପାଇଁ ଜାଗାଟିଏ କରିଦେଇଥିଲେ । ବନଓ୍ୱାରିଲାଲ୍‌ର ମଠରେ ଦିଓଳ ଦମୁଠା ଖାଇ ଜେଜେବାପାଙ୍କ ପାଖରେ ଲୁଙ୍ଗ୍‌ରୁ ପୁଙ୍ଗ୍‌ରୁ ହେବା ଛଡ଼ା କିଛି କାମ ନଥିଲା । ଜେଜେବାପାଙ୍କର ଯାତ୍ରା ତାମସାରେ ଖୁବ୍ ଝୁଙ୍କ ଥିଲା । ଗୋପାଳଜୀଙ୍କ ମନ୍ଦିରରେ ଜନ୍ମାଷ୍ଟମୀ ଓ ଦୋଳ ପୂର୍ଣ୍ଣିମାରେ ସଙ୍କୀର୍ତ୍ତନ ଓ ଯାତ୍ରା କରାଇବା ପାଇଁ ସେ ଦିନ ରାତି ଆଖିଆ ଅପିଆ ଲାଗି ପଡ଼ୁଥିଲେ । ସେ ସମୟରେ ଏତେ ଯାତ୍ରା ଦଳ ବି ନଥିଲେ ଆଉ ଥିଲେ ବି ସେ ଖବର ଜେଜେବାପାଙ୍କ ପାଖରେ ପହଞ୍ଚି ନଥିଲା । ତେଣୁ ସେ ନିଜେ ଯାତ୍ରା ଲେଖି ନିଜ ନିର୍ଦ୍ଦେଶନାରେ ତାହା ମଞ୍ଚସ୍ଥ କରାଉଥିଲେ ।

ବନଓ୍ୱାରିଲାଲ ଥିଲେ ବେଶ୍ ମଉଜିଆ ଓ ହସଖୁସିଆ ଲୋକ । ତାଙ୍କର ଗୋଟାଏ ଅଦ୍ଭୁତ ଗୁଣ ଥିଲା ସେ ଯେ କୌଣସି ଭାଷାକୁ ମାସ ଦୁଇଟାରେ ଆୟତ୍ତ କରିନେଉଥିଲେ । ତେଣୁ ମାସ ଦୁଇଟା ଭିତରେ ସେ ପରିଷ୍କାର ଓଡ଼ିଆ ଭାଷାରେ କଥାବାର୍ତ୍ତା ଆରମ୍ଭ କରି ସମସ୍ତଙ୍କୁ ବିସ୍ମିତ କରି ଦେଇଥିଲେ । ତାଙ୍କର ଅନ୍ୟ ଗୋଟାଏ ଗୁଣ ଥିଲା, ସେ ଥିଲେ ଅସମ୍ଭବ ଭାବରେ ଚରିତ୍ରବାନ୍ । କାଳକ୍ରମେ କମିତି ଭାବରେ କେଜାଣି ଯାତ୍ରାରେ ଦ୍ରୌପଦୀ ପାର୍ଟ କରିବାକୁ ମନୋନୀତ ହୋଇ ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ସେହି ଦ୍ରୌପଦୀରେ ହିଁ ରହି ଯାଇଥିଲେ । ସେ ସମୟରେ ଆମ ଅଞ୍ଚଳର ସେ ଥିଲେ ବିଖ୍ୟାତ ବିଦୂଷକ । ତାଙ୍କର ଦ୍ରୌପଦୀ ପାର୍ଟର ଫାର୍ଶ ଦେଖିବାକୁ ହଜାର ହଜାର ଲୋକ କାହିଁ କେତେ ଦୁର୍ଗମ ଅରଣ୍ୟ ଭିତରୁ ବନ୍ଧୁଶ୍ରମ କରି ଆସି କେତେ ବିନିଦ୍ର ରଜନୀ ବିତାଉଥିଲେ । କ୍ରମେ କ୍ରମେ ମୋ ଜେଜେବାପାଙ୍କର ସେ ପ୍ରଧାନ ସଙ୍ଗୀ, ବିଶ୍ୱସ୍ତ ଅନୁଚର ଖାରବଳ ହୋଇ ଉଠିଲେ । କେବଳ ତାଙ୍କର ହିଁ ଅନ୍ଦର ମହଲକୁ ପ୍ରବେଶ କରିବାକୁ ଅନୁମତି ଥିଲା । ମୋ ଜେଜେମାଙ୍କର ସେ ହେଲେ ଆଦରର 'ମାଡ଼ୁଆଳ ଦିଅର'' ଓ ମୋର ବାପା ବଡ଼ବାପା, ଅପା ସମସ୍ତଙ୍କର ଆଦରର 'ବନୁଦାଦା' ।

ପ୍ରାୟ ପାଞ୍ଚବର୍ଷ ପରେ ହଠାତ୍ ବନଓ୍ୱାରିଲାଲ ଅନ୍ତର୍ଦ୍ଧାନ ହୋଇଗଲେ ଖରପୁରର ସମସ୍ତଙ୍କ ହୃଦୟରେ ଏକ ବିଚ୍ଛେଦ ବେଦନାର ଆଘାତ ହାଣି । ପୁଣି

ହଠାତ୍ ମାସକ ପରେ ବନଓ୍ୱାରୀଲାଲ ଫେର ଆସିଲେ ସମସ୍ତଙ୍କୁ ଚମକିତ କରି—ତାଙ୍କର ନବୋଢ଼ା ସ୍ତ୍ରୀ ସହିତ ।

ବନଓ୍ୱାରୀଲାଲ ସଳଖ ଭାବରେ ଆସି ଛିଡ଼ା ହେଲେ ଜେଜେବାପାଙ୍କ ପାଖରେ । 'ହଜୁର, ବହୁତ ଦିନ ମଠରେ ଖାଇ ଖଟରେ ଶୋଇଲି । ଏବେ ଆପଣଙ୍କ ବିନାନୁମତିରେ ଆଉ ଜଣକୁ ବି ସାଙ୍ଗରେ ନେଇ ଆସିଛି । ଏଥର ଦି ଜଣ ଖାଇଲେ ମୋତେ ଲାଜ, ଆପଣଙ୍କୁ ନିନ୍ଦା । ମୁଁ ମାରୁଆଡ଼ି ପିଲା, ମୋତେ କିଛି ମୂଳଧନ ଦିଅନ୍ତୁ । ମୁଁ ଏଇଠି କିଛି ବ୍ୟବସାୟ ଆରମ୍ଭ କରେ । ଆପଣ ଓ ଆପଣଙ୍କର ପରିବାରର ଏତେ ମାୟାମମତା ଲାଗିଯାଇଛି ଯେ ଆଉ କୋଉଠିକି ପଳେଇବାର ମୋର ଉପାୟ ନାହିଁ । ପଳେଇ ତ ଯାଇଥିଲି, ହେଲେ ରହିପାରିଲି କୋଉଠି । ଆପଣଙ୍କୁ ଛାଡ଼ି ରହିପାରିଲି ନାହିଁ । ଆପଣ ମାଇଲେ ବି ଏଇଠୁ ଯିବିନାହିଁ ।"

ଧୀରେ ଧୀରେ ବନଓ୍ୱାରୀଲାଲଙ୍କ ବ୍ୟବସାୟ ପ୍ରସାର ଲଭିଲା । ଟଙ୍କା ଜମିଲା କିନ୍ତୁ ଜେଜେବାପାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ତାଙ୍କର ବନ୍ଧୁତା ଅତୁଟ ଥିଲା ଓ ସେଇଦିନ ପର୍ଯ୍ୟନ୍ତ ଜେଜେବାପାଙ୍କ ନାଟକର 'ଏକମେବା ଦ୍ୱିତୀୟମ୍' ଦ୍ୱାରୀ ରହିଥିଲେ । ଜେଜେବାପାଙ୍କ ମୃତ୍ୟୁ ପରେ ସେ ମାତ୍ର ଦୁଇବର୍ଷ ବଞ୍ଚିଥିଲେ ! ଯଦିଓ ସେ ଜେଜେବାପାଙ୍କଠାରୁ ପ୍ରାୟ ପନ୍ଦର ବର୍ଷ ଜ୍ୟେଷ୍ଠ ଥିଲେ । ଲୋକେ କହୁଥିଲେ ସେମାନେ କୁଆଡ଼େ ପୂର୍ବଜନ୍ମରେ ଭାଇ ଥିଲେ । ନହେଲେ କୋଉ ଦେଶର ଲୋକ କୋଉଠିକି ଆସି ଏଇଠି ଗୋଟିଏ ଲୋକ ସାଙ୍ଗରେ ଏତେ ପ୍ରାଣର ମମତା ନେଇ ବାନ୍ଧି ହୋଇ ପାରିଲା କେମିତି ? ପୁଣି ସେଇ ଏକା ମାଟିରେ ମିଶିଗଲା କେମିତି !

ତା ପରେ ଦୁଇ ପରିବାରର ଘନିଷ୍ଠତା କ୍ରମଶଃ ବଢ଼ି ବଢ଼ି ପ୍ରାୟ ଗୋଟିଏ ପରିବାର ପରି ହୋଇଗଲା । ବନଓ୍ୱାରୀଲାଲଙ୍କ ପୁଅ ବଜରଙ୍ଗଲାଲ (ବଜୁ ଦାଦା) ଆମ ପରିବାରର ଜଣେ ଅନ୍ତରଙ୍ଗ ଆତ୍ମୀୟ ହୋଇ ରହିଗଲେ । ମୋ ବାପା, ବଡ଼ବାପା, ଦାଦା ସମସ୍ତଙ୍କ ପରି ସେ ମଧ୍ୟ ଜଣେ । ମୋ ଜେଜେବାପା ଯିନା ଷ୍ଟେଣପୁର ଛାଡ଼ିନଥିଲେ କିନ୍ତୁ ତାଙ୍କର ପୁତ୍ରମାନେ କିଏ ପାଟନାରୁ, କିଏ ରେଭେନ୍‌ସାରୁ ପାଶ କରି କିଏ ଦେଓ୍ୱାନ କିଏ ଓକିଲ, କିଏ ଦାରୋଗା ହୋଇ ଷ୍ଟେଣପୁର ଛାଡ଼ି ଚାଲିଗଲେ । ଘରର ସମସ୍ତ ଦାୟିତ୍ୱ ବଜରଙ୍ଗଲାଲ ହାତରେ ସମର୍ପି ଦେଇ । କିନ୍ତୁ ବାପାଙ୍କର ଅକାଳ ମୃତ୍ୟୁ ପରେ ଆମେ ପୁଣି ଫେରି ଆସିଲୁ ଷ୍ଟେଣପୁରକୁ । ସେଇଠି ଆମର ଦ୍ୱିତୀୟ ପୁରୁଷର ଘନିଷ୍ଠତାର ଆରମ୍ଭ ଭଗବତୀଲାଲ

ଓ ଚଣ୍ଡୀଲାଲ ସଙ୍ଗରେ । ଭଗବତୀଲାଲ ଆମ ସାଙ୍ଗରେ ପଢ଼ି ପ୍ରଥମେ ଅଣ୍ଡା, ଖାସି ମାଂସ ଖାଇ ଖାଇ ଶେଷକୁ କୁକୁଡ଼ା ବି ଧରିଲା । ତାପରେ ମୁଁ କଲିକତାରେ ପଢ଼ିଲାବେଳେ ଓ ପରେ-ଚାକିରି କଲାବେଳକୁ ସେଇଠିକା ସାଙ୍ଗମାନଙ୍କ ସାଙ୍ଗରେ ମିଶି ମଝିରେ ମଝିରେ ହୁଇସ୍କି ବି ପିଇଲା । ମୋତେ କହେ "ଶଳା, ମୋର ଜୈନତ୍ୱକୁ ତମେମାନେ ନଷ୍ଟ କରିଦେଲ । ମୋ ବାପ ଚଉଦ ପୁରୁଷରେ ସେମାନେ ଏଗୁଡ଼ା ଛୁଇଁବା ତ ଦୂରର କଥା ଆଖିରେ ବି ଦେଖି ନଥିଲେ ।" ଆମ ସାଙ୍ଗ ପ୍ରଭାକର କବି ଲୋକ । ସେ ଏବେ ଜଣେ ପ୍ରତିଷ୍ଠିତ କବି । ସେ ତାକୁ କହୁଥିଲା, "ଭଗବତୀ ଆମେ ତୋର କିଛି ନଷ୍ଟ କରିନାହୁଁ ଯେ ବନ୍ଧୁତ୍ୱର ବେଦୀରେ ତୁ ନିଜତ୍ୱକୁ ବଳି-ଦେଇଛୁ । ତୁ ଆଉ ନିଜକୁ ଆମଠାରୁ ଲୌକିକ ସ୍ତରରେ ବି ଅଲଗା ରଖିପାରି ନଥାନ୍ତୁ ।"

ପ୍ରତିବର୍ଷ ମୁଁ ପୂଜାଛୁଟି ବେଳକୁ ଗାଁକୁ ନିଶ୍ଚୟ ଯିବି । ମୋର ସମସ୍ତ ବନ୍ଧୁମାନେ ଯେଉଁମାନେ ବିଦେଶରେ ଅଛନ୍ତି ସେମାନେ ବି ନିଶ୍ଚିତ ଆସିବେ । ଏହା ଆମମାନଙ୍କ ପକ୍ଷରେ ଏକ ଅଲିଖିତ ଅଲଙ୍ଘନୀୟ ବୃନ୍ଦାମଣ୍ଡା । ଆଉ ପୂଜାଦିନର ସମସ୍ତ ମଉଜ ମଜଲିସ୍‌ର ଖର୍ଚ୍ଚ ଭଗବତୀର । ଗାଁରେ ତ ଆଉ ପାନୀୟ ଓ କୁକୁଡ଼ା ଚଳେନା । ତେଣୁ ପ୍ରାୟ ସାତ୍ତ୍ୱିକ ଆହାର । ପ୍ରଭାକର ତାକୁ ସବୁବେଳେ ଚିଡ଼ାଏ "ଦେଖ୍, ତୋ ସ୍ତ୍ରୀକୁ କହିଦେବି ତୁ ଶଳା ପୁରା ଓଡ଼ିଆ—ଆଉ ମାରୁଆଡ଼ି ହୋଇ ନାହୁଁ । କୁକୁଡ଼ା ଖାଉଛୁ—ମଦ ପିଉଛୁ ।" ଭଗବତୀର କି ନେହୁରା—

ସେଇ କେତେକାଳର, କେତେଦିନର କେତେ ନିବିଡ଼ ବନ୍ଧୁତ୍ୱ । କେତେ ସ୍ମୃତି ବିଜଡ଼ିତ ମୁହୂର୍ତ୍ତି—କେତେ ସ୍ମୃତିର ଅଲିଭା ଦାଗର ରେଖା । ଅଥଚ ଆଜି ଭଗବତୀ କହୁଛି ସେ ସବୁ ଛାଡ଼ିଦେଇ ଚାଲିଯିବ ବୋଲି । ଭଗବତୀ କଣ ପାଗଳ ହୋଇଗଲାଣି ? ହଁ, ସେ ଯୋଉଠିକି ଯିବ, ସେଇଠି ଏ ସମ୍ପତ୍ତିର ଦିଗୁଣ କରିପାରିବ—କିନ୍ତୁ ତାର ବନ୍ଧୁତ୍ୱକୁ ଓ ତାର ଏ ମାଟି ସହିତ ସମ୍ପର୍କର ନିବିଡ଼, ଅନ୍ତରଙ୍ଗ ଡୋରକୁ ସେ ଛିଣ୍ଡାଇ ଦେଇ ପାରିବ କାହାର ବଳରେ । ଧନର ଦୁର୍ବାର ଆକର୍ଷଣରେ ? ଭଗବତୀ କ'ଣ ସତରେ କେବଳ ସେଇ ଧନର ପୂଜାରୀ ? ଲକ୍ଷ୍ମୀଙ୍କର ଏକାନ୍ତ ଭକ୍ତ । ତା ପାଖରେ କଣ ପ୍ରେମ, ଭଲପାଇବା, ମମତା, ଅନ୍ତରଙ୍ଗତାର ମୂଲ୍ୟ କିଛି ନାହିଁ ? ଶଳା ଯକ୍ଷ–ଧନ, ଧନ ହୋଇ ମରିଯିବୁ ଯେ ମଲାବେଳେ ଗଙ୍ଗା ପାଣି ବଦଳରେ ନୋଟ୍ ବିଡ଼ାଏ ଗୁଞ୍ଜିଦେବେ ତୋ ମୁହଁରେ ।

"କଣ ହୋଇଛୁ ତୋର ଭଗବତୀ ? ତୁ ହଠାତ୍ ଏମିତ ସବୁ ଗ୍ରନ୍ଥ ଛୁଡ଼, ସବୁ ବନ୍ଧନ କାଟି ପଳେଇ ଯିବାକୁ ବସିଛୁ କାହିଁକ ? ମୋତେ ସତ କଥା କହ ।"

"ମୋ ପାଇଁ କିଛି ପ୍ରବ୍ଲେମ୍ ନାହିଁରେ, ସବୁ ଜଞ୍ଜାଳ ମୋ ପୁଅମାନଙ୍କ ପାଇଁ । ତୋ ପୁଅମାନଙ୍କ ପାଇଁ ।"

ମୁଁ ଅବାକ୍ ହୋଇ ତା ମୁହଁକୁ ଚାହିଁ ରହିଲି ।

"ତମେ ତ ଆଉ ଭାଣପୁର ଯିବା ବନ୍ଦ କରିଦେଇଛ । ଯୋଉ କେତେଦିନ ପାଇଁ ଯାଉଛ — ସେଇ କେତେଦିନ କୁଣିଆ ପରି ରହୁଛ । କେମିତି ବୁଝିବ ଭାଣପୁର କେତେ ବଦଳିଗଲାଣି । କେବଳ ଲମ୍ବ ପ୍ରସ୍ଥରେ ବାହାର ବଢ଼ିନାହିଁ, ଘର ଭିତରେ ଆତ୍ମାଟାବି ବଦଳି ଗଲାଣି । ଏତେଦିନ ଏଠାରେ ରହିସାରିଲା ପରେ ଆଜ ପ୍ରଥମ ଥର ପାଇଁ ମୁଁ ଅନୁଭବ କରୁଛି ଯେ ମୁଁ ବିଦେଶୀ ବୋଲି ।'

ହଠାତ୍ କରି ମୁଁ ବୁଝିପାରିଲି ଭଗବତୀର ସମସ୍ୟାଟିକୁ । ସେ ବିଚ୍ଛିନ୍ନ ହୋଇଯାଇଛି । ଏକ ପ୍ରଳୟଙ୍କରୀ ବନ୍ୟାର ସୁଅ ତାର ଶବ୍ଦେବର୍ଷର ଚେରକୁ ସମୂଳେ ଓପାଡ଼ି ନେଇ ତାକୁ ଏକ ବାଲିବନ୍ଧ ଉପରେ ନେଇ ରଖିଦେଇଛି । ସେ ଅସହାୟ, ଏକାକୀ, ବିଚ୍ଛିନ୍ନ ହୋଇ ଆଶ୍ରୟ ପାଇଁ ଆର୍ତ୍ତ ଚିତ୍କାର କରୁଛି । ତାର ଅନ୍ତରର ଆର୍ତ୍ତନାଦର ସ୍ୱର ଏଥିକବେଳେ ମୋ ଭିତରର ଯନ୍ତ୍ରଣାର ସ୍ୱର ସହିତ ମିଳିତ ହୋଇ ପ୍ରତିଧ୍ୱନିତ ହୋଇ ଉଠିଲା ଏକ ପ୍ରଚଣ୍ଡ ବିସ୍ଫୋରଣରେ ।

ମୁଁ ଧୀର ଭାବରେ ପ୍ରଶ୍ନ କଲି "ଭଗବତୀ, ଭାଣପୁର ତୋତେ ଏମିତି ଅଲୋଡ଼ା ଭାବରେ ଫୋପାଡ଼ି ଦେବା ଅସମ୍ଭବ ।'

"ଅସମ୍ଭବ ସମ୍ଭବ ହୋଇଛି । ଜଆଁ ଗୋଟିଏ ଘରୁ ଯେମିତି ଭାବରେ ଜଳୁନା କାହିଁକ, ସେଇ ଜଆଁରେ ପର୍ଘ ସାହିଟା ଜଳିଯିବା ନିଶ୍ଚିତ କଥା । କିଏ ସେଥିରୁ ଉଦ୍ଧାର ପାଇବ କହିତ ? ଶେଣୀକୁ ଶେଣୀ ଲାଗିଛି । ସ୍ୱାଳକୁ ସ୍ୱାଳ ।'

"ଦାୟୀ କିଏ ?'

"କିଏ ଦାୟୀ କିଏ କହିବ । ମୋତେ ପଚାରିଲେ ମୁଁ କହିବ ସମୟ । ଆଉ କିଏ କହିବ ଆମେ । ଆଉ କିଏ କହିବ ତମେ ! କି ଦରକାର ?"

ପ୍ରଭାକରଙ୍କର ଦୁଇପେଗ୍‌ରେ ହିଁ ନିଶା ହୋଇଯାଏ । ଶଳା, ପିଲାଦିନୁ ସେମିତି । ଅଥଚ ପିଇବା ପାଇଁ ତାର ଆଗ୍ରହ ସମସ୍ତଙ୍କଠାରୁ ବେଶୀ । ସେ ସେ କଣକୁ ବସି ବସି ଏତେସମୟ ଚୁପ୍‌ଚାପ ରହିଲା ପରେ ହଠାତ୍ ଆଗକୁ

ଚମକି ଆସି କହିଲି "ଶଳା ଭଗବତି, ତମେମାନେ ହିଁ ଦାୟୀ ! ଆମ ଟାଉନ୍‌କୁ ତ୍‌ମେମାନେ ଶୋଷି ଖାଇ ଯାଇଛ । ଶଳା, ଲୋଟା କମ୍ବଳ ଧରି ଆସି ଆମ ମାଟିର ଗ୍ରୁତ ଉପରେ ବସି କୋଠା ପିଟିଛ । ଭଲ ହୋଇଛୁ । ପଳା, ଶଳା ପଳା ।"

ମୁଁ ଟଙ୍କଣାଟିଏ ବଜେଇ ପ୍ରସ୍ତରକୁ ଟାଣି ନେଇ ପୁଣି ତା ଜାଗାରେ ବସେଇ ଦେଲି । ନୂଆ କଥା ନୁହଁ । ପ୍ରତିଥର ସିଟିଂରେ ସେ ମୋଠୁ ଏମିତି ମାଡ଼ ଖାଇଥାଏ ମାଡ଼ଲମି ଯୋଗୁ ।

ଭଗବତି ମୋ ଆଡ଼କୁ ଚାହିଁ ସାମାନ୍ୟ ହସି କହିଲା "ଦେଖିଲୁ ତ ।" ମୋ ଗ୍ଲାସରେ ଆଉ ଗୋଟିଏ ପେଗ୍ ଢାଳୁ ଢାଳୁ ମୁଁ ତାକୁ ପୁନର୍ବାର ପ୍ରଶ୍ନ କଲି ":ଭଗବତି, ତୁ କହ, ସତରେ ଦାୟୀ କିଏ ? ସତରେ ଏ ନୂଆଁ କଣ ଆମର ଚିରନ୍ତନ । ଖାଲି ବନ୍ଧୁତ୍ୱର ପାଉଁଶରେ ଢଙ୍କା ?"

ଭଗବତି ଚୁପ ରହିଲା କିଛି ସମୟ । ତାପରେ କହିଲା "ଦେଖ୍ ଝୁରୁ, ତୁ ମୋଠାରୁ ଅନେକ ବେଶୀ ପାଠ ପଢ଼ିଛୁ । ମୋଠାରୁ ତୋର ବଦ୍ୟାବୁଦ୍ଧି, ବିଚାରଶକ୍ତି ଅନେକ ବେଶୀ । ମୁଁ ତୋତେ କଣ ବୁଝେଇବି ? କିନ୍ତୁ ମୋର ପ୍ରାକ୍ଟିକେଲ ବୁଦ୍ଧିରେ ମୁଁ ଯାହା ବୁଝିଛି ସେଇଟା ହେଲା ଆମ ଉପରେ ଏଇ କ୍ରୋଧ କେବଳ ଅପାରଗତା ଜନିତ ଈର୍ଷାର ଫଳ । ତୁ ଭାବିଦେଖ୍, ମାରୁଆଡ଼ି ସମ୍ପ୍ରଦାୟ ଭାରତବର୍ଷର କୋଉ ଜାଗାରେ ବେଶୀ ପ୍ରତିପତ୍ତିଶାଳୀ ? କେବଳ ବିହାର, ଓଡ଼ିଶା, ବଙ୍ଗଳା, ଆସାମ ଓ ମଧ୍ୟପ୍ରଦେଶର କେତେକାଂଶରେ । ଦାକ୍ଷିଣାତ୍ୟରେ ନାହିଁ, ମହାରାଷ୍ଟ୍ରରେ ନାହିଁ, ଉତ୍ତର ଭାରତରେ ନାହିଁ । କାରଣ ସେଇଠିକା ଲୋକ ଆମର ପ୍ରତିଦ୍ୱନ୍ଦ୍ୱୀ—ଈର୍ଷାତୁର ନୁହନ୍ତି । ପୂର୍ବାଞ୍ଚଳର ଲୋକେ କଥା କହନ୍ତି ବେଶୀ କାମ କରନ୍ତି କମ୍ । ମୁଁ ମାନୁଛି ଆମ ଭିତରେ ଅନେକ ଚୋର ଅଛନ୍ତି, କଳାବଜାରି ଅଛନ୍ତି, କଳାଧନର ବ୍ୟବସାୟୀ ଅଛନ୍ତି, ଅସାଧୁ ବ୍ୟବସାୟୀ ଅଛନ୍ତି—କିନ୍ତୁ ତାଙ୍କ ପାଇଁ ତମର ଦେଶର ବିଚାରପତି, ତମର ଦେଶର ଓକିଲ, ରାଜକର୍ମଚାରୀ, ପୋଲିସ୍, ଭିଜିଲାନ୍‌ସ, ସେଲ୍‌ଟ୍ୟାକ୍‌ସ, ଇନ୍‌କମ୍‌ଟ୍ୟାକ୍ସ, ଯୋଗାଣ ବିଭାଗ, ଦୁର୍ନୀତି ବିଭାଗ କଣ କରିଛନ୍ତି ? ସେମାନେ ତ ତମରି ଦେଶର ଲୋକ—ତମରି ଭାଇ । ସେମାନେ ତାଙ୍କ ସାଙ୍ଗରେ ସହଯୋଗ କରନାହାନ୍ତି ? ତେଣୁ ଦୋଷ ଖାଲି ତାଙ୍କର—ତମର କିଛି ନାହିଁ । କାହିଁ ବର୍ଷ ବର୍ଷ ଧରି ତାଙ୍କର ଦୋଷ ଦେଖି ଆସିଛ, ସମାଲୋଚନା କରିଛ—। ତାଙ୍କର ଦୁଇଟି ଭଲଗୁଣକୁ ତ ଶିଖି ପାରନାହିଁ । ତାଙ୍କର ପ୍ରଥମ ଗୁଣ ମିତବ୍ୟୟିତା, ଦ୍ୱିତୀୟଗୁଣ-ପରସ୍ପର ପ୍ରତି ସହଯୋଗିତା । ଦୁଇଟି ଓଡ଼ିଆ, ଦୁଇଟି ବଙ୍ଗାଳି ଯଦି

ବିଦେଶରେ ପରସ୍ପରକୁ ସାହାଯ୍ୟ କରନ୍ତି ନାହିଁ, ନିଜ ଦେଶ ଭିତରେ ବା କରିବେ କିଣ ? ଏଇ ପରିସ୍ଥିତିର ସୁଯୋଗ ଯେ ନେଲା ସେ ଦୋଷୀ ଆଉ ତମେମାନେ ତୁଳସୀ ପତ୍ର ?"·

କଥା ବନ୍ଦ କରି ଭଗବତୀ ପୁଣି ଗ୍ଲାସରେ ମୁହଁ ଲଗାଇଲେ ।

କାଳସୀ ଲାଗିଲା ପରି ପ୍ରଭାକର ପୁଣି ଛିଡ଼ା ହୋଇପଡ଼ି କହିଲେ "ଶଳା, ପ୍ଲେଭର, ରକ୍ତ ଶୋଷଖୋର, ସଫେଇ ଦେଉଛୁ, ଶଳା ତମମାନଙ୍କ ତଣ୍ଟି ଚିପିବା ଦରକାର ।"

"ପ୍ରଭାକର, ଚୁପ୍ କର, ।" ମୁଁ ଆଉ ଜୋରୁଡ଼ାଏ ମାରିଲି ତାକୁ ।

"କହିବାକୁ ଦେବେ ତାକୁ । ଶଳା, ତା ପେଟ ଭିତରୁ ସେଗୁଡ଼ାକ ବାହାରିଯାଉ । ନ ହେଲେ ଶଳା ମୋ ଉପରକୁ ମାଡ଼ି ଆସିବ ।"

ପ୍ରଭାକର ଟଳି ଟଳି ହୋଇ ପୁଣି ଚଉକିକୁ ଆଉଜି ଶୋଇପଡ଼ିଲେ ।

"ଅପାରଗ ମଣିଷର ସହଜାତ ପ୍ରବୃତ୍ତି ହିଁ ଈର୍ଷା । ସକ୍ଷମ ମଣିଷ ପ୍ରତିଦ୍ୱନ୍ଦ୍ୱିତା କରେ । ମଇଦାନ ଉପରକୁ ଖଣ୍ଡା ଧରି ଓହ୍ଲେଇ ଆସେ । ଅପାରଗ ଅକ୍ଷମ ମଣିଷ ପଛରେ ପଛରେ କୁତ୍ସା ରଟନା କରେ । ଅନ୍ୟମାନଙ୍କୁ ଲଗେଇ ଚୁଗି ମାରେ—ନିଜେ କିଛି କରିବାର ସାହାସ ପାଏ ନା ।

ଦେଖ୍, ପ୍ରତ୍ୟେକ ମଣିଷର, ପ୍ରତ୍ୟେକ ସମାଜର, ପ୍ରତ୍ୟେକ ଜାତିର ବୈଶିଷ୍ଟ୍ୟ ରହିଛି । ସମସ୍ତେ ବଞ୍ଚିବାକୁ ଚାହାନ୍ତି ସେଇ ବୈଶିଷ୍ଟ୍ୟ ନେଇ । ସମସ୍ତେ ଲଢ଼ନ୍ତି ବଞ୍ଚିବାର ସଂଗ୍ରାମରେ ତାଙ୍କର ସେଇ ନିଜସ୍ୱ ଅସ୍ତ୍ର ନେଇ । ପାଠପଢ଼ା ଯେମିତି ଆମର 'ରକ୍ତରେ ନାହିଁ, ବ୍ୟବସାୟ ସେମିତି ତମର ରକ୍ତରେ ନାହିଁ । ହେବା ଯେ ଅସମ୍ଭବ ସେ କଥା ମୁଁ କହୁ ନାହିଁ—କୌଳିକ ପ୍ରଥାର ଏ ଏକ ସ୍ୱାଭାବିକ ମାନସିକ ପ୍ରକ୍ରିୟା ।

ମୁଁ ମାନୁଛି ଧନ ଲିପ୍ସା ଆମର ବୈଶିଷ୍ଟ୍ୟ । କିନ୍ତୁ ତୁ କେତେଟା ମାରୁଆଡ଼ି ଦେଖିଛୁ ଯେ ସେ ରାତାରାତି ବଡ଼ଲୋକ ହୋଇ ଯାଇଛି । ସେ ପଇସା ପଇସା କରି ଟଙ୍କାଟିଏ ସଞ୍ଚେ, ନିଜକୁ ଅନେକ ଉପଭୋଗରୁ ବଞ୍ଚିତ କରି । ତା ନିକଟରେ ହୁଏତ ଟଙ୍କା ସଞ୍ଚିବା ହିଁ ଏକ ଉପଭୋଗର ବସ୍ତୁ । ତାର ସୁଖ । ତାର ପରମାର୍ଥ । ଯେମିତି ବହୁ ନାରୀ ସମ୍ଭୋଗ, କି ବହୁ କ୍ଷମତା ପ୍ରାପ୍ତି ଜଣ ଜଣଙ୍କର ସୁଖ ଓ ପରମାର୍ଥ । ବହୁ ଟଙ୍କା ଅର୍ଜନ କଲେ ଯେ ଜଣେ ଧନୀ ହେବ ସେ କଥା ନୁହେଁ, କେତେ କମ୍ ଟଙ୍କା ଖର୍ଚ୍ଚ କଲେ ସେ ଧନୀ ହେବ, ସେଇଟା ହିଁ ଆମର ମୂଳମନ୍ତ୍ର । ହୁଏତ ଅନେକ ଶ୍ରେଷ୍ଠ ବ୍ୟବସାୟୀ ତୋଠାରୁ କମ୍ ରୋଜଗାର

କରୁଛନ୍ତି । କିନ୍ତୁ ଦେଖିବୁ ସେଇ ବ୍ୟବସାୟୀ ଜଣଙ୍କ କୋଡ଼ିଏ ବର୍ଷ ପରେ ବିରାଟ କୋଠାଟିଏ ତୋଳିଛି, ଅଥଚ ତୁ ଗରିବରୁ ଗରିବତର ହୋଇ ଯାଉଛୁ ।

ଧନଲିପ୍ସା ଆଧ୍ୟାତ୍ମିକ ଦୃଷ୍ଟିକୋଣରୁ ଗର୍ହିତ ହୋଇପାରେ କିନ୍ତୁ ମାନବୀୟ ଦୃଷ୍ଟିକୋଣରୁ ନିନ୍ଦନୀୟ ହେବ କାହିଁକି ?

"ଟୁଗ୍, ତୁ ଠିକ୍ ବୁଝି ପାରୁଛୁ କି ନାହିଁ ମୁଁ ଜାଣେନା । କାରଣ ତୋର ମୋର ବନ୍ଧୁତ୍ୱ ଓ ଘନିଷ୍ଠତା ଧନ ଉପରେ ପ୍ରତିଷ୍ଠିତ ନୁହେଁ । କିନ୍ତୁ ସତ କହିବାକୁ ଗଲେ, ମୁଁ ଭୟ କରୁଛି ମୋ ପୁଅମାନଙ୍କୁ । ଆମର ଏତେ କଷ୍ଟୋପାର୍ଜିତ ଅର୍ଥର ପରିଶ୍ରମକୁ ସେମାନେ ଅନୁଭବ କରି ନାହାନ୍ତି । ତେଣୁ ତାର ମୂଲ୍ୟ ବି ସେମାନେ ବୁଝନ୍ତି ନାହାନ୍ତି । ଧନର ଅହମିକା ତାଙ୍କୁ ଗ୍ରାସ କରି ଯାଇଛି । ସେମାନେ ତୋର ମୋର ବନ୍ଧୁତ୍ୱ, ଆମ ପରିବାରର ଘନିଷ୍ଠତା, ଆମର ଏଇ ମାଟି ସହିତ ନିବିଡ଼ ଯୋଗସୂତ୍ରକୁ ବୁଝି ପାରୁ ନାହାନ୍ତି—ବୁଝିବାକୁ ଚେଷ୍ଟା କରୁନାହାନ୍ତି । ଧନ ତାଙ୍କ ଆଖିରେ ଏକ ରଙ୍ଗୀନ ଚଷମା ପିନ୍ଧେଇ ଦେଇଛି । ତେଣୁ ସେମାନେ ଆମର ଏଇ ଏକାନ୍ତ ଅନୁଭବକୁ ଟଙ୍କାର ମୂଲ୍ୟ ଦେଇ ତଉଲୁଛନ୍ତି । ସେମାନଙ୍କ ପକ୍ଷରେ ଖଣିପୁର ଏକ ପରିତ୍ୟକ୍ତ ବ୍ୟବସାୟ କେନ୍ଦ୍ର । ଉନ୍ନତି ପାଇଁ ନୂତନ କେନ୍ଦ୍ର, ନୂତନ କ୍ଷେତ୍ର ଲୋଡ଼ା । ସେମାନେ କପରି ବୁଝିବେ ଖଣିପୁରର ମାଟିରେ ମୁଁ ପ୍ରଥମ ପୃଥିବୀର ସ୍ପର୍ଶ ପାଇଛି, ଖଣିପୁରର ପବନରୁ ମୋର ପ୍ରଥମ ନିଃଶ୍ୱାସ ଗ୍ରହଣ କରିଛି । ଖଣିପୁରର ସମସ୍ତ ପରିବାର ସହିତ ମୋର ଚେର ଛନ୍ଦା ଛନ୍ଦି । ଖଣିପୁରରୁ ମୁଁ ନେଇଛି ଯେତେ ଦେଇଛି ବି ସେତିକି । ଖଣିପୁର ମୋ ପାଖରେ ବ୍ୟବସାୟ ପେଣ୍ଠ ନୁହେଁ । ମୋର ଜନ୍ମଭୂମି । ମୋର ଆଉ ଦେଶ କେଉଁଠି, ମୋର ଆଉ ଗାଁ କେଉଁଠି । ମୁଁ ଆଉ କେଉଁଠିକି ଯିବି କହିତ ଟୁଗ୍ ? ମୁଁ ତ ସେଇଥିପାଇଁ ତୋ ପାଖକୁ ପଳେଇ ଆସିଛି । ମୋତେ ତୁ ଏଇଠୁ ତଡ଼ି ଦେବୁ କିରେ ? ମୋତେ ଦେଶାନ୍ତରୀ କରିଦେବୁ ? ମୋ ଜନ୍ମମାଟିରେ ମୋତେ ମରିବାକୁ ଦେବୁ ନାହିଁ ? ମୋ ବାପ, ମୋ ଜେଜେବାପାର ଶ୍ମଶାନରେ ମୋର ନିଆଁ ଜଳିବ ନାହିଁ ? ମୋର ଭାଇ ବନ୍ଧୁ କୁଟୁମ୍ବ କାନ୍ଧରେ ମୁଁ ବୁହା ହୋଇ ଯିବି ନାହିଁ ଖଣିପୁରର ମୋର ଏତେ ବଡ଼ କୁଟୁମ୍ବକୁ ଛାଡ଼ି ମୁଁ କୁଆଡ଼କୁ ଯିବିରେ ଟୁଗ୍ ?"

ଭଗବତୀ ଟେବୁଲ ଉପରେ ମୁଣ୍ଡରଖି କହିଁ କହିଁ ହୋଇ କାନ୍ଦୁଛି । ମୋ ପାଟିରେ କଥା ନାହିଁ । ମୋ ଆଖିରୁ ଲୁହ ଝରି ଯାଉଛି ଅବିଶ୍ରାନ୍ତ ଭାବରେ । ହଠାତ୍ ପ୍ରଭାକର ଭଗବତୀକୁ କୁଣ୍ଢେଇ ଧରି ହାଉ ଯାଉ କରି କାନ୍ଦି ଉଠିଲା ।

ମୁଁ ଆଉ ପ୍ରଭାକରକୁ ଜାବୁଡ଼ାଏ ମାରି ପାରିଲି ନାହିଁ ।

●

# ଜଣେ ଯୁବକ

## ବିଭୂତି ପଟ୍ଟନାୟକ

ସନ୍ଧ୍ୟାର ଅନୁଜ୍ଜ୍ୱଳ ଅନ୍ଧକାର ଅନେକ ଆଗରୁ ରାତିର ଗାଢ଼ କାଳିମା ମଧ୍ୟରେ ଲୀନ ହୋଇ ଯାଇଥିଲା । ଆକାଶରେ ଝଟକୁଥିଲା ଅଳ୍ପ କେତୋଟି ଆଲୋକିତ ନକ୍ଷତ୍ର । ଘରର ଛାତ ସମ୍ପୂର୍ଣ୍ଣ ନିର୍ଜ୍ଜନ । ସେଇ ନିଚ୍ଛଟିଆ ଛାତର ଗୋଟିଏ କୋଣରେ ଠିଆ ହୋଇ ଅରୁଣ ସିଗାରେଟ ଟାଣୁଥିଲା ଏବଂ ରାସ୍ତା ଉପରେ ଯାଆ ଆସ କରୁଥିବା ଲୋକଙ୍କୁ ଅନ୍ୟମନସ୍କ ଭାବରେ ଲକ୍ଷ୍ୟ କରୁଥିଲା । ଆଜିର ସେଇ ଅପ୍ରୀତିକର ଘଟଣାର ଛନ୍ଦପତନ ତା ମନକୁ ବିବର୍ଣ୍ଣ କରି ଦେଇଥିଲା ।

ଘରେ ସିଗାରେଟ ଖାଇବାରେ ତାର ଅନେକ ପ୍ରତିବନ୍ଧକ । ବାପା, ବଡ଼ଭାଇଙ୍କ ଆଗରେ ସିଗାରେଟ ଖାଇବା ନିଷେଧ । ବାପା ମଣ୍ଡଗଜପୁର ହାଇସ୍କୁଲର ପ୍ରଧାନ ଶିକ୍ଷକ, ଭାଇ ବେସରକାରୀ କଲେଜର କିରଣୀ । ତା' ଉପର ନାନୁଭାଇ ବନାରସରେ ଏମ୍. ଏ. ପଢ଼ୁଛି । ନାନୁ ଭାଇ ସିଗାରେଟ ଖାଇଲେ ଘରେ କେହି ଆପତ୍ତି କରନ୍ତି ନାହିଁ, କିନ୍ତୁ ତା ପାଇଁ ସବୁ ବାରଣ । ଅଥଚ ଆଜି ଅବନୀ ସାର୍‌ଙ୍କ ଘଟଣା ପରେ ତାର ସିଗାରେଟ ଖାଇବା ନିହାତି ଜରୁରି ।

ବୋଉକୁ ବାପା, ଭାଇଙ୍କ ଭଳି ସେ ମାନ୍ୟ କରେ ନାହିଁ । ତା ଆଗରେ ସିଗାରେଟ ଖାଇଲେ ଚଳନ୍ତା । କିନ୍ତୁ ହାତରେ ସିଗାରେଟ ଦେଖିଲେ ସେ ପ୍ରଶ୍ନ କରିବ—ପଇସା କେଉଁଠୁ ପାଇଲୁ ? ଯାହାର ରୋଜଗାର ନାହିଁ, ତାର ନିଶାଦ୍ରବ୍ୟ ଖାଇବାର କୁଆଡ଼େ ଅଧିକାର ନାହିଁ । ଅରୁଣ ସିଗାରେଟକୁ ନିଶାଦ୍ରବ୍ୟ ବୋଲି ଗ୍ରାହ୍ୟ କରେ ନାହିଁ । କିନ୍ତୁ ସେକଥା ସେ ବୋଉକୁ ବୁଝାଇ ପାରେ ନାହିଁ । ତାକୁ କିଏ କହିଦେଇଛି—ସିଗାରେଟ ଖାଇଲେ ଛାତି ଭିତର କଳିଜା ଜଳିଯାଏ, ନାନା ପ୍ରକାର ଅସାଧ୍ୟ ରୋଗ ହୁଏ । ବୋଉର ସେ ଅକାରଣ ଭୟକୁ ତା ମନରୁ ଦୂର କରିବା ସାଧ୍ୟାତୀତ ବ୍ୟାପାର । ଖଣ୍ଡିକ ପରେ ଖଣ୍ଡେ ଗୁଣ୍ଡି ପାନ ଚୋବାଇ ପିଚପିଚ୍ ଛେପ ପକାଇବା ଅପରାଧ ନୁହେଁ, କିନ୍ତୁ ବିଡ଼ି ବା ସିଗାରେଟ ଖାଇବା ପାପ !

ଅରୁଣ ଏଇସବୁ ଅସୁବିଧାକୁ ଏଡ଼ାଇବା ପାଇଁ ସିଗାରେଟ ଖାଇବା କଥା ଭାବିଲେ ସେ ଏଇ ଗ୍ରୁପ ଉପରକୁ ଉଠି ଆସେ । କର୍କିନ ରସ୍ତାକୁ ଦୃଷ୍ଟି କଲକଲ ଧୂଆଁ ପିଇଥାଏ । ନିଜ ଦେହ ମନର କ୍ଲାନ୍ତିକୁ ଟବାକୋ ନିକୋଟିନ୍‌ର ହଣ୍ଟ ଧୂଆଁରେ ପୋଡ଼ି ଜାଳି ନିଜକୁ ସତେଜ କରିଦିଏ ।

ବାପା ତାର ସିଗାରେଟ ପିଆ ଭଳି ଅନେକ କଥା ସହ୍ୟ କରିପାରନ୍ତି ନାହିଁ । ସେ' ଯେ ଝିଅଙ୍କ ଚୁଟ ବ୍ଲାଉଜ୍ କନାରେ ସାର୍ଟ ତିଆରି କରି ପିନ୍ଧେ, ସେଇଟା ତାଙ୍କର ପସନ୍ଦ ନୁହେଁ । କଲେଜ ୟୁନିୟନ୍ ସେକ୍ରେଟେରି ହୋଇଥିବା ହେତୁ ତାକୁ ପ୍ରତିଦିନ ବାପାଙ୍କଠାରୁ ଗାଳି ଶୁଣିବାକୁ ହୁଏ । ପ୍ରଥମେ ପ୍ରଥମେ ସେ ଲମ୍ବାକଲି, ଲମ୍ବା ବାଳ ରଖୁଥିବା ଯୋଗୁ ସେ ଖୁବ୍ ରାଗୁଥିଲେ । ବନାରସରୁ ଛୁଟିରେ ନାରୁ ଭାଇ ମଣ୍ଡିଗଜପୁର ଫେରିଲା ପରେ ତାର ଲମ୍ବା କଲି ଆଉ ଲମ୍ବା ବାଳ ଦେଖି ସେ ରାଗ କଲୁ ପରିମାଣରେ କମି ଯାଇଥିଲେ ସୁଦ୍ଧା ସମ୍ପୂର୍ଣ୍ଣ ଯାଇ ନାହିଁ । ସେ ବୋଉ ଆଗରେ ମନ୍ତବ୍ୟ କଲବେଳେ ଅରୁଣ ଶୁଣିଛି—ନାରୁ ଲମ୍ବା କଲି ରଖିଲା ବୋଲି ଅରୁ ଲମ୍ବା ବାଳ ରଖିବ ? ଏ ମଣ୍ଡିଗଜପୁର ସବ୍‌ଡିଭିଜନ୍ କଣ ବନାରସ ସହର ହୋଇଗଲା ? ଗାଳିରେ କଲି ରଖିଲା ବେଳକୁ ସେ ନାରୁ ସହିତ ତାଳ ଦେଇଛୁ, ଆଉ ପାଠ ପଢ଼ିଲା ବେଳେ ? ବି. ଏସ୍‌ସି. ପରୀକ୍ଷାର ମେଘନାଦ ପାଚେରି ପୁଅ କେତେ ଥରରେ ଡେଉଁଛି ଦେଖ ! ଶୁଣୁ କହୁଥିଲି ସବୁବେଳେ ସେ କଲେଜ ୟୁନିୟନ ପଲିଟିକ୍ସରେ ମାତିଛି । ଅଧ୍ୟାପକମାନେ ଅଭିଯୋଗ କରୁଛନ୍ତି, କ୍ଲାସରେ ତାର ପ୍ରକ୍ସି ପଡ଼ୁଛି । ବାବୁ ସବୁବେଳେ କଲେଜ ୟୁନିୟନ ଅଫିସରେ ବାଜେ ପିଲାଙ୍କୁ ନେଇ ଆଡ଼୍ଡ଼ା ମାରୁଛନ୍ତି !

କଲେଜରେ ବଡ ଭାଇ ତାର ସ୍ତାଇ !

ବାପାଙ୍କ ମନ୍ତବ୍ୟରେ ବୋଉ କ'ଣ ଉତ୍ତର ଦେଇଥିଲା ତାକୁ ଜଣା ନାହିଁ । ସେ କଥା ଶୁଣିବା ପାଇଁ ଶେଷ ପର୍ଯ୍ୟନ୍ତ ସେ ଅପେକ୍ଷା କରି ନ ଥିଲା । କିନ୍ତୁ ତାଙ୍କର ମନ୍ତବ୍ୟ ତା ମନକୁ ଏକ ଆହତ ଅଭିମାନରେ କ୍ଷତାକ୍ତ କରି ଦେଇଥିଲା । ସେ ଜାଣେ ଯେଉଁମାନେ ଭଲ ପଢ଼ୁ ନ ଥିବା ଗ୍ରୁପ, ବେକାର ସନ୍ତାନମାନଙ୍କ ଅପେକ୍ଷା ଅଧିକ ଆଦରସମ୍ମାନ ଲାଭ କରନ୍ତି; କିନ୍ତୁ ନିଜ ପାଞ୍ଚପୁଅ ଝିଅଙ୍କ ଭିତରୁ ବାପା ଜଣେ ଦୁଇଜଣଙ୍କୁ ମୁଣ୍ଡରେ ବସାଇବେ, ଆଉ ଜଣେ ଦୁଇଜଣଙ୍କୁ ଅବହେଳାରେ ଧୂଳିରେ ଗଡ଼ାଇ ଦେବେ; ଏକଥା ସେ ସହଜରେ ସହ୍ୟ କରି ପାରେ ନାହିଁ । ତାର ବଦ୍ଧମୂଳ ଧାରଣା ଗୁଣର ଅବଗୁଣରେ ଯାହା ହୁଅନ୍ତୁନା 'କାହିଁକି ବାପା ବୋଉଙ୍କ ସ୍ନେହ ଆଦର ଉପରେ ସବୁ ପିଲାଙ୍କର

ସମାନ ଅଧିକାର । ସବୁ ପୁଅ ଝିଅଙ୍କୁ ସେମାନେ ସମାନ ଦୃଷ୍ଟିରେ ଦେଖିବା ଉଚିତ ।

ଗୁରୁ ଭାଇ ଆଉ ନାରୁ ଭାଇକୁ ବାପା ବେଶୀ ଭଲ ପାଆନ୍ତି । ଏଥିପାଇଁ ଅରୁ ନିଜକୁ ଖୁବ୍ ଅବହେଳିତ ମନେ କରେ । ସେଥିପାଇଁ ଯେଉଁ ଦୁଷ୍ଟ ପିଲାମାନଙ୍କ ସାଙ୍ଗରେ ମିଶିଲେ ବାପା ବେଶୀ ବିରକ୍ତ ହୁଅନ୍ତି, ସେ ଜାଣି ଜାଣି ସେମାନଙ୍କ ସହିତ ବେଶି ମିଳାମିଶା କରେ । ଛାତ୍ର ୟୁନିୟନର ରାଜନୀତିରେ ଅଗ୍ରଣୀ ଭୂମିକା ନିଏ । ଗାଳିକୁ ଖାତିର କରେ ନାହିଁ, ଲୁଚିଲୁଚି ବେଶୀ ସିଗାରେଟ ଖାଏ । ପଢ଼ାବହି କିଣିବାକୁ ନେଇଥିବା ଟଙ୍କା ସିଗାରେଟ କିଣାରେ ଖର୍ଚ୍ଚ କରିଦିଏ ।

ସାର୍‌ମାନେ ମିଛ କହୁ ନାହାନ୍ତି ।

ସେ କ୍ଲାସରେ ଉପସ୍ଥିତ ନ ରହିଲେ ମଧ୍ୟ ତାର ପ୍ରେଜେଣ୍ଟ ପଡ଼େ । ସେ କଲେଜ ଛାତ୍ର ୟୁନିୟନର ସମ୍ପାଦକ । କଲେଜର ବହୁତ ଦୁର୍ଦ୍ଦାନ୍ତ ଛାତ୍ର ତାର ସମର୍ଥକ । ସେମାନେ ଦଳବଦ୍ଧ ଭାବରେ ଦୋକାନ ବଜାରରୁ ଚାନ୍ଦା ଆଦାୟ କରନ୍ତି । ଯେ କୌଣସି ଅଧ୍ୟାପକଙ୍କୁ ରାସ୍ତାରେ ସମ୍ମିଳିତ ଭାବରେ ଅଟକାଇ ଧମକ ଦେଇ ପାରନ୍ତି, ଅଶ୍ଳୀଳ ମନ୍ତବ୍ୟ ଶୁଣାଇ ଦେଇ ଜାଣନ୍ତି । ଅପମାନିତ କରି ପାରନ୍ତି, ସେଥିପାଇଁ ସେଇ ଭୟରୁ ସାର୍‌ମାନେ ସେମାନେ କ୍ଲାସରେ ଉପସ୍ଥିତ ନ ରହିଲେ ମଧ୍ୟ ଆଟେନ୍‌ଡ଼ାନ୍‌ସ ଦେଇ ଦିଅନ୍ତି । ସେମାନଙ୍କୁ ପ୍ରକ୍ସି ପକାଇବାକୁ ମଧ୍ୟ ପଡେ ନାହିଁ । ସେମାନଙ୍କ ମାର୍କାମରା ରୋଲ ନମ୍ବର ସାର୍-ମାନଙ୍କ ମୁଖସ୍ଥ ।

କଲେଜ ୟୁନିୟନ କର୍ମକର୍ତ୍ତା ହେଲେ ଏଇ କେତୋଟି ଅତିରିକ୍ତ ସୁବିଧା ମିଳେ ।

ଗତ କାଲି କଲେଜର ଇକନମିକ୍‌ସ ସାର୍ ଅବନୀବାବୁ ଦରମା ନେଇ ସାଇକେଲରେ ଘରକୁ ଫେରୁଥିଲେ । ନିର୍ଜ୍ଜନ ରାସ୍ତାରେ କେତେଜଣ ଦୁର୍ଦ୍ଦାନ୍ତ ଛାତ୍ର ଜବରଦସ୍ତ ତାଙ୍କଠାରୁ ଶହେ ଟଙ୍କା ସରସ୍ୱତୀ ପୂଜା ଚାନ୍ଦା ଆଦାୟ କରି ନେଇଛନ୍ତି । ଏଥିପାଇଁ କଲେଜ ସାରା ହୁଲସ୍ଥୂଲ ପଡ଼ି ଯାଇଛି । ବାପାଙ୍କୁ କିଏ କହି ଦେଇଛି ଯେ ଟଙ୍କା ଛଡ଼େଇ ନେଇଥିବା ପିଲାମାନଙ୍କ ମଧ୍ୟରେ ସେ ମଧ୍ୟ ଥିଲା !

ବାପା ଆକାରଣରେ ଆଜି ତାକୁ କଡ଼ା ଭାଷାରେ ଗାଳି ଦେଲେ । ପଚାରିଲେ—ମୁଁ ଦରମା ନେଇ ଘରକୁ ଫେରୁଥିବାବେଳେ ସଦର ବଜାରର

ବଳେ ଲୋକ ଦୁର୍ଗାପୂଜା ଚାନ୍ଦା ବାବଦ ମୋଠାରୁ ସବୁ ଟଙ୍କା ଛଡ଼ାଇ ନଥାନ୍ତି, ଘରେ ତମମାନଙ୍କ ଅବସ୍ଥା କଣ ହେବ ? ସାର୍‌ଙ୍କଠାରୁ ଜବରଦସ୍ତ ଟଙ୍କା ଛଡ଼ାଇ ନେଇ ସରସ୍ୱତୀ ପୂଜା ! ସରସ୍ୱତୀଙ୍କଠାରେ କି ପ୍ରଚଣ୍ଡ ଭକ୍ତି !

ଅରୁ କିଛି ସମସ୍ତ ଉତ୍ତର ନ ଦେଇ ଚୁପ୍ ହୋଇ ଠିଆ ହେଲା । ବାପାଙ୍କ ମୁହଁରେ ଉତ୍ତର ଦେବାର ସାହସ ଏ ପର୍ଯ୍ୟନ୍ତ ସୁଦ୍ଧା ତାର ହୋଇ ନାହିଁ । ସେ ଅବା ଏଭଳି ପ୍ରଶ୍ନ ଆଉ ମନ୍ତବ୍ୟର କି ଉତ୍ତର ଦଅନ୍ତା !

ତାର ମୌନତାକୁ ତାର ଅପରାଧର ସ୍ୱୀକାରୋକ୍ତି ବୋଲି ଧରି ନେଇ ବାପା ଲଜ୍ଜା ଓ ଅପମାନରେ ଜଳି ଉଠିଥିଲେ । ବୋଉଠାରୁ ଶହେଟଙ୍କା ନେଇ ଇକନମିକ୍‌ସ ସାର୍‌ଙ୍କୁ ଫେରସ୍ତ ଦେବା ପାଇଁ ସେ ଉଦ୍‌ଭୃଦଆ ଖରାବେଳେ ବାହାରିଗଲେ ।

ସେ ବୋଉ ପାଖକୁ ଯାଇ କହିଥିଲା —ଇକନମିକ୍‌ସ ସାର୍‌ଙ୍କ ଠାରୁ ଯେଉଁମାନେ ଜବରଦସ୍ତ ଶହେଟଙ୍କା ସରସ୍ୱତୀ ପୂଜା ଚାନ୍ଦା ଆଦାୟ କରିଛନ୍ତି, ସେମାନଙ୍କ ମଧ୍ୟରେ ମୁଁ ନାହିଁ । ବାପା ଅକାରଣରେ ଶହେଟଙ୍କା ସାର୍‌ଙ୍କୁ ଚାନ୍ଦା ଦେବାକୁ ଚାଲିଗଲେ ।

ବୋଉ କହିଥିଲା --ମୋ ଦେହ ଛୁଇଁ କହ, ତୁ ସେ ଟଙ୍କା ଛଡା ଘଟଣା ସ୍ଥଳରେ ଉପସ୍ଥିତ ନଥିଲୁ ?

ସେ ବୋଉର ଦେହ ଛୁଇଁ କଥାର ସତ୍ୟତା ପ୍ରମାଣ କରିବାକୁ ଶପଥ କରି ନଥିଲା । ତା କଥାକୁ ଯେ ତା ନିଜ ଘରେ କେହି ବିଶ୍ୱାସ କରନ୍ତି ନାହିଁ, ଏକଥା ଅନୁମାନ କରି ସେ ଖୁବ୍ ରାଗି ଯାଇଥିଲା ।

ପ୍ରଚଣ୍ଡ କ୍ରୋଧରେ ଫାଟି ପଡ଼ି ସେ ଚିତ୍କାର କରି ଉଠିଥିଲା—

: ମୁଁ ଅବନୀ ସାର୍‌ଙ୍କଠାରୁ ସରସ୍ୱତୀ ପୂଜା ଚାନ୍ଦା ଆଦାୟ ଘଟଣା ସହିତ ଆଦୌ ସଂପୃକ୍ତ ନୁହେଁ । କିନ୍ତୁ ଯେଉଁମାନେ ଏଭଳି କାର୍ଯ୍ୟ କରିଛନ୍ତି ମୁଁ ସେମାନଙ୍କୁ ମଧ୍ୟ ଏଥିପାଇଁ ଦୋଷ ଦେଇ ପାରିବି ନାହିଁ । ଅବନୀ ସାର୍ କ୍ଲାସରେ ମୋଟେ ପାଠ ପଢ଼ାନ୍ତି ନାହିଁ, ଅଧ୍ୟାପକ ହେବା ପାଇଁ ତାଙ୍କର କୌଣସି ଯୋଗ୍ୟତା ନାହିଁ । ସେକେଣ୍ଡ କ୍ଲାସରେ କୌଣସିମତେ ଏମ୍. ଏ. ପାଶ୍ କରିଦେଲେ କଣ ଜଣେ ଲୋକ ଯୋଗ୍ୟ ଅଧ୍ୟାପକ ହୋଇପାରେ ? ଅବନୀ ସାର୍ ସବୁବେଳେ କଲେଜ ସେକ୍ରେଟେରୀ ଶ୍ରୀନିବାସ ବାବୁଙ୍କ କାନରେ ଅନ୍ୟ ସାର୍‌ମାନଙ୍କ ନାମରେ ଚୁଗୁଲି କରନ୍ତି । ସେକ୍ରେଟେରୀଙ୍କ ପାଖ ଲୋକ ବୋଲି କ୍ଲାସରେ ପାଠ ନ ପଢାଇଲେ ମଧ୍ୟ ପ୍ରିନ୍‌ସିପାଲ ତାଙ୍କୁ କିଛି କହିପାରନ୍ତି ନାହିଁ ।

ଗତବର୍ଷ ତାଙ୍କ କଲେଜରୁ ତଡ଼ିବା ପାଇଁ ଷ୍ଟ୍ରାଇକ୍ ହୋଇଥିଲା । ସେ ରାଜନୈତିକ ଚାପ ପକାଇ, ଷ୍ଟ୍ରାଇକ୍ କରୁଥିବା ଛାତ୍ରମାନଙ୍କ ମଧ୍ୟରୁ କେତେ ପିଲାଙ୍କୁ ଜଳଖିଆ ଖୁଆଇ ଷ୍ଟ୍ରାଇକ୍ ଖର୍ଚ୍ଚ ଚାକରିରେ ରହିଗଲେ । ପ୍ରାଇଭେଟ କଲେଜ ବୋଲି ସାର କେହି ମାଆ ବାପା ନାହାନ୍ତି । ଯେ କଲେଜରେ ପାଠ ନ ପଢ଼ାଇ ଦରମା ନିଅନ୍ତି, ତାଙ୍କଠାରୁ ଶହେଟଙ୍କା ଯୋର କରି ସରସ୍ୱତୀ ପୂଜା ଚାନ୍ଦା ନେଇଗଲେ କିଛି ପାପ ହେବ ନାହିଁ ।

ଅରୁଣ ଜାଣେ, ଯେଉଁ ପିଲାମାନେ ସରସ୍ୱତୀ ପୂଜା ଚାନ୍ଦା ନାମରେ ସାରଙ୍କଠାରୁ ଜବରଦସ୍ତ ଟଙ୍କା ନେଇ ଯାଇଛନ୍ତି, ସେମାନେ . ପୂଜା କରିବା ପିଲା ନୁହଁନ୍ତି । ସେ ଟଙ୍କା ସେମାନେ ଦେଶୀ ମଦ ପିଇବାରେ ଖର୍ଚ୍ଚ କରିବେ । ମଲ୍ଲିଗଡପୁର ସବ୍‌ଡ଼ିଭିଜନ୍ ହେଲା ପରେ ଏଠାରେ ଗୋଟିଏ ସିନେମା ହଲ୍, ଆଉ ବେସରକାରୀ କଲେଜ ପ୍ରତିଷ୍ଠା କରିବା ଯେପରି ଜରୁରି ମନେ ହୋଇଥିଲା, ଏକ ଦେଶୀ ମଦଭାଟି ଖୋଲିବା ପାଇଁ ଲାଇସେନ୍‌ସ ଦେବା ସରକାର ସେହିପରି ନିହାତି ଆବଶ୍ୟକ ମନେ କରିଥିଲେ । ସିନେମାର ପ୍ରମୋଦକର ଆଉ ଦେଶୀ ମଦ ଦୋକାନ ନିଲାମ ଟଙ୍କାରେ ତ ସରକାର ଚାଲିଛି ! ସେହି ମଦ ଦୋକାନରେ ସଂଧ୍ୟା ହେଲେ ଯେଉଁମାନେ ଝାମେଲା କରନ୍ତି ସେମାନଙ୍କ ମଧ୍ୟରେ ଅନେକ କଲେଜ ପିଲା । କିନ୍ତୁ ଅରୁଣ ସେକଥା ବୋଉ ଆଗରେ କହିଲା ନାହିଁ । କାରଣ ସତ୍ୟ କଥା କହିଲେ ବୋଉର ମଧ୍ୟ ସନ୍ଦେହ ହେବ ଅନ୍ୟ ପିଲାମାନଙ୍କ ସହିତ ସେ ମଧ୍ୟ ସେ ଭାଟିକୁ ଯାଏ !

ତାର କଥା ଶୁଣି ବୋଉ ତାତିଲା ତେଲ କଡ଼େଇରେ ପାଣି ପଡ଼ିଲା ଭଳି ଚଡ଼ ଚଡ଼ ଶବ୍ଦ କରି ଗର୍ଜି ଉଠିଲା ।

: କଣ କହିଲୁ ? ସାର୍ ପାଠ ପଢ଼ାନ୍ତି ନାହିଁ ? ତୁ ତ ସାଇନ୍‌ସ ପଢ଼ିବା ପିଲା । ଇକନମି ସାର ପାଠ ପଢ଼ାନ୍ତି କି ନାହିଁ କେମିତି ଜାଣିଲୁ ? ଯେଉଁମାନେ ବାପା ମାଆଙ୍କର ନିନ୍ଦା କରନ୍ତି ସେମାନେ କୁଳାଙ୍ଗାର, ଯେଉଁମାନେ ଗୁରୁ ନିନ୍ଦା କରନ୍ତି ସେମାନେ ଅପଦାର୍ଥ···ପାଠ ପଢ଼ି ଏଇ ବୁଦ୍ଧି ଶୁଦ୍ଧି ହୋଇଛି ? ଆଉ ତୋର ପାଠପଢ଼ା ଦରକାର ନାହିଁ । ଗାଁକୁ ଯାଆ । ଦାଦାଙ୍କ ପାଖରେ ରହି ଚାଷବାସ କରିବୁ···ହଳ ଧରିବୁ···ବିଲ ବାଛିବୁ···ତାହାହେଲେ ବୁଝିବୁ କେତେ ଧାନରେ କେତେ ଚାଉଳ ହୁଏ !

ବୋଉ ସୁବିଧା ପାଇଲେ ତାକୁ ଗାଁରେ ଚାଷବାସ କରିବା କଥା ଧମକ ଦିଏ । ଗାଁରେ ସେମାନଙ୍କର ଭାଗ ବାବଦ ବହୁପରିମାଣ ନାଲକୂଳିଆ ଚାଷ ଜମି ଅଛି । ଦାଦା ସେ ଜମି ଚାଷ କରନ୍ତି; ସେମାନଙ୍କୁ କିଛି ଭାଗ ଦିଅନ୍ତି ନାହିଁ ।

ବୋଉ ଜାଣେ, ପାଠ ପଢୁଥିବା ପିଲାଙ୍କୁ ଗ୍ରୀଷ୍ମ ପାଇଁ ଗାଁଆକୁ ପଠାଇବା ହେଉଛି ସବୁଠାରୁ ବଡ଼ ଶାନ୍ତି । ସେଥିପାଇଁ ସେ ରାଗିଗଲେ ତାକୁ ଗାଁଆରେ ଗ୍ରୀଷ୍ମବାସ କରିବା ପାଇଁ ଖୁଣ୍ଟା ଦିଏ । ଆଜି ମଧ୍ୟ ଦେଲା । କିନ୍ତୁ ବୋଉର ସେ ଧମକକୁ ଅରୁଣ ଦେହକୁ ନେଲା ନାହିଁ । ସେ ଜାଣେ ବାପା ବୋଉ ତାକୁ କଷ୍ଟ ଦେବେ ନାହିଁ । ବୋଉର ଯେଉଁ ଶେଷ ଗହଣା କେତେ ଖଣ୍ଡ ଥିଲା ତାକୁ ବନ୍ଧା ପକାଇ ଅରୁ ସ୍କୁଲର ପରୀକ୍ଷା ଖର୍ଚ୍ଚ ପଠାଇ ଦିଆଗଲା । ଗାଁଆରେ ଯେଉଁ ଗ୍ରୀଷ୍ମଜମି ସ୍ମରମାଣ ଅଛି ତାହା ଠିକ୍ ରୁନୁ ଆଉ ଝୁନୁ ବାହାଘର ବେଳକୁ ବନ୍ଧୀ କରାଯିବ ।

ଅନ୍ୟଦିନ ହୋଇଥିଲେ ବୋଉଠାରୁ ଗାଳି ଶୁଣି ସାରିବା ପରେ ସେ ସାଇକେଲ ଧରି ସାଙ୍ଗମାନଙ୍କ ମେଳରେ ମଞ୍ଚଗଜପୁର ବଜାର ଯାଏ ଆଡ୍‌ଡା ମାରି ବାଧା ଖାଇ ଶୋଇଗଲା ପରେ ରାତି ଏଗାରଟା ବେଳକୁ ଘରକୁ ଫେରି ଆଆନ୍ତା । କିନ୍ତୁ ବାପା ଇକନମିକ୍‌ସ ସାର୍‌ଙ୍କୁ ଅକାରଣରେ ଶହେଟଙ୍କା ଫେରନ୍ତ ଦେବାକୁ ଯାଇଥିବା ହେତୁ ସେ ତାର ଶୟନ କକ୍ଷରେ ମିଛରେ ଅଖି ବୁଜି ଖଟ ଉପରେ ଶୋଇ ରହିଲା ।

ପ୍ରାୟ ମୁହଁ ସଞ୍ଜ ବେଳକୁ ବାପା ଇକନୋମିକସ ସାର୍‌ଙ୍କ ଘରୁ ଫେରି ଆସିଲେ ।

ବୋଉ ପଚାରିଲା—କଣ ହେଲା ?

ବାପା ବିମର୍ଷ ସ୍ୱରରେ କହିଲେ—ଅବନୀ ବାବୁ ଟଙ୍କା ନେଲେ ନାହିଁ । କହିଲେ ମୁଁ ଭଲ କରି ଜାଣେ ସରସ୍ୱତୀ ପୂଜା ଚାନ୍ଦା ନାମରେ ଯେଉଁମାନେ ତାଙ୍କଠାରୁ ଟଙ୍କା ଛଡ଼ାଇ ନେଇଛନ୍ତି ସେମାନଙ୍କ ମଧ୍ୟରେ ଅରୁଣ ନଥିଲା । ଅରୁଣ ଆପଣଙ୍କ ପୁଅ, ସେ ଏତେ ତଳକୁ ଯାଇପାରେନା । ଗତବର୍ଷ ବିଶ୍ୱବିଦ୍ୟାଳୟ ପରୀକ୍ଷାବେଳେ କପି କରୁଥିବା ପିଲାମାନଙ୍କ ମଧ୍ୟରୁ ଯେଉଁମାନଙ୍କୁ ଧରି ରିପୋର୍ଟ କରିଥିଲେ, ଏଇଟା ସେଇମାନଙ୍କ କାଣ୍ଡ । ପରୀକ୍ଷାରେ କପି, ସରସ୍ୱତୀଙ୍କଠାରେ ଭକ୍ତି !

: ତାହେଲେ ଅରୁକୁ ତମେ ମିଛରେ ଗାଳି ଦେଲ ?

: ମୁଁ ତ ଆମ ସ୍କୁଲରୁ ଶୁଣିଲି ସେମାନଙ୍କ ସାଙ୍ଗରେ ଅରୁ ଥିଲା ! ଏସବୁ କଥା ଶୁଣିଲେ କାହାର ମୁଣ୍ଡ ଠିକ୍ ରହେ ? ଛି...ଛି...ଆଜିକାଲି ପିଲାମାନେ ଯେ କି ଉଦ୍‌ଭାର୍ଯ୍ୟ ହେଲେଣି !

ବାପାଙ୍କ ବିରକ୍ତି ତଥାପି କମି ନ ଥିଲା ।

ଖଟ ଉପରେ ମୁହଁମାଡ଼ି ଶୋଇ ଅରୁଣ ବାପାଙ୍କ ଉତ୍ତରେ ଆଉ ପଦାକୁ ଆସି ବୋଉ ଆଗରେ ନିଜର ସାଧୁତା ପାଇଁ ପ୍ରଶଂସା ଦାବୀ କରିବାକୁ ସାହାସ କଲାନାହିଁ । ବାପା ବଜାର ଚାଲିଗଲା ପରେ ପକେଟରୁ ସିଗାରେଟ ଆଉ ଦିଆସିଲି ଧରି ଏଇ ଛାତ ଉପରକୁ ଚାଲିଆସିଛି ।

ସେ’ ଯେ ସରସ୍ୱତୀ ପୂଜା ଚାନ୍ଦା ନାମରେ ଇକନମିକ୍ସ ସାର୍‌ଙ୍କଠାରୁ ଟଙ୍କା ଛଡ଼ାଇ ନାହିଁ, ଏକଥା ବାପା ଆପେ ଆପେ ସାର୍‌ଙ୍କ ମୁହଁରୁ ଶୁଣି ଆସିବା ପରେ ଅରୁଣ ଖୁବ୍ ଆଶ୍ୱସ୍ତ ବୋଧ କରୁଥିଲା । ଏଇ ପ୍ରଥମ ଥର ବାପା ତାର ସରଳତା ଆଉ ସତ୍ୟବାଦିତା ସମ୍ପର୍କରେ ନିଃସନ୍ଦେହ ହୋଇଛନ୍ତି । ଆଜିକାଲି ଯାହା ସମସ୍ତ ହୋଇଛି, ସେଥିରେ ନିଜର ସରଳତା ଆଉ ସାଧୁତା ସଂପର୍କରେ ବାପା ବୋଉଙ୍କ ଆଗରେ ପ୍ରମାଣ ଦେବା ଭାରି କଷ୍ଟ ।

ଛାତର ସିଡ଼ିରେ କାହାର ପାଦଶବ୍ଦ ଶୁଣାଗଲା ।

କାହାର ପାଦଶବ୍ଦ ? ବାପା, ବୋଉ ନା ଭାଇ !

ଆଉ କାଳ ବିଳମ୍ବ ନକରି ଅରୁଣ ଛାତର ଗୋଟିଏ କୋଣକୁ ଘୁଞ୍ଚି ଯାଇ ଅର୍ଦ୍ଧଦଗ୍ଧ ସିଗାରେଟକୁ ରାସ୍ତା ଗଳିକୁ ଫିଙ୍ଗି ଦେଲା । ଆଉ ଦୁଇ ଚାରି ଦମ୍ ଟଣାଯାଇ ପାରିଥାଆନ୍ତା । କିନ୍ତୁ ବାପା, ବୋଉ, ଭାଇଙ୍କ ଭୟରେ ସେ ଲୋଭ ତାକୁ ତ୍ୟାଗ କରିବାକୁ ହେଲା ।

ନା, ବାପା, ବୋଉ, ଭାଇ—କେହି ନୁହନ୍ତି । ରୁନୁ !

: ସାନ ଭାଇ ! ବୋଉ ତତେ ଘର ସାରା ଖୋଜି ହେଉଛି, ଆଉ ତୁ ଏ ଅନ୍ଧାରରେ ଛାତ ଉପରେ ବୁଲି କଣ କରୁଛୁ ?

ବୟସରେ ପାଞ୍ଚବର୍ଷ ସାନ ହେଲେ ବି ରୁନୁ ତାକୁ ତୁ’ତା କରି କଥା କହେ । ଭାଇ ଭଉଣୀଙ୍କ ଭିତରେ ମାଇଁ ଡିଅର୍...ମାଇଁ ଡିଅର୍...ସମ୍ପର୍କ ।

ସେ ଲଘୁ ପରିହାସରେ କହିଲା—ଅବନୀ ସାର୍ ତ କହିଲେ ଯେ ସେ ଟଙ୍କା ଛଡ଼ା ଘଟଣା ସହିତ ମୁଁ ସଂପୃକ୍ତ ନୁହେଁ, ବୋଉ ଆଉ କଣ ପାଇଁ ମତେ ଖୋଜୁଛି ?

ଅନୁଜ୍ଜ୍ୱଳ ଅନ୍ଧକାରରେ ଭାଇ ମୁହଁକୁ ଚାହିଁ ଚୁନୁ ସନ୍ଦିଗ୍ଧ କଣ୍ଠରେ କହିଲା—ଅବଶ୍ୟ ସାର୍ ହୁଏତ ଭୟରେ ଡର କରି ତୋ ନାମ ବାପାଙ୍କ ଆଗରେ କହିଲେ ନାହିଁ । ପ୍ରାଇଭେଟ କଲେଜରେ ବଦଳି ନାହିଁ । ଆଉ ତୁ ହେଉଛୁ କଲେଜ ୟୁନିୟନ ସେକ୍ରେଟେରୀ । ଟଙ୍କା ଛଡ଼ାଇ ଥିଲେ ମଧ୍ୟ କଣ ସେ ତୋ ନାମ କହନ୍ତେ ?

ଚୁନୁର କଥା ଶୁଣି ଅରୁଣର ମୁହଁ ଆଉ ଥରେ ଅନ୍ଧକାର ହୋଇଗଲା । ସେ ବୁଝି ପାରିଲା, ଏକା ବାପା, ବୋଉ କିମ୍ବା ଭାଇ ନୁହନ୍ତି, ତାର ସାନ ଭଉଣୀ ମଧ୍ୟ ତାକୁ ସନ୍ଦେହ କରେ । ଅଗ୍ନି ପରୀକ୍ଷା ପରେ ମଧ୍ୟ ସୀତାଙ୍କୁ ପାତାଳ ପ୍ରବେଶ କରିବାକୁ ହୋଇଥିଲା । ସେ କିନ୍ତୁ ପାତାଳ ପ୍ରବେଶ କଲେ ମଧ୍ୟ ତାର ସତ୍ୟବାଦିତା ସମ୍ପର୍କରେ କେହି ନିଃସନ୍ଦେହ ହେବେ ନାହିଁ । କାରଣ ସେ ଏ ଯୁଗର ଜଣେ ଯୁବକ !



## 'ଚାଲ୍ ସେଇଠିକି ଯୋଉଠି ଭଗବାନ ଅଛନ୍ତି'

### ଶାନ୍ତନୁ କୁମାର ଆଚାର୍ଯ୍ୟ

"ଏଠି ଆମର ଗୋଟାଏ ଉଡ଼ାଜାହାଜ ଦୁର୍ଘଟଣା ଘଟନ୍ତା ନାହିଁ—"

ଗାଁ ଟୋକାମାନେ ପ୍ରାୟ ଅଧିକାଂଶ ଦିନ ଏମିତି କଥାବାର୍ତ୍ତା ହୁଅନ୍ତି— ଆକାଶକୁ ଅନିଷା କରି – ଯେତେବେଳେ ବହୁ ଉଚ୍ଚରେ, ବାଦଲ ଉପରେ, ନେଲୀ ବା ଛେନାଛିଡ଼ା ଆକାଶକୁ ଦଫାଳ କରି ଚିରଦେଇ ଗୋଟାଏ 'ଜେଟ୍' ଉଡ଼ାଜାହାଜ ବଡ଼ ସକାଳୁ ସକାଳୁ ଗାଁ ଉପର ଦେଇ କୁଆଡ଼ୁ କୁଆଡ଼କୁ ଉଡ଼ି ଚାଲିଯାଏ - ଏକ ଲମ୍ବ ଧୂଆଁର ସିଅର କାଟିଦେଇ ।

"ଶଳାଗୁଡ଼ାକ ଖୁବ ଅଏଇସ୍‌ରେ ଅଛନ୍ତି, ଯାଉଁକନା ଉଡ଼ିଯାଉଚନ୍ତି ମୁଣ୍ଡ ଉପରେ ଆମର···ଓଃ କି ଫୁଟାଣି !"

"ଫୁଟାଣି ? ବଢ଼ିଆଭ—ବଢ଼ିଆଭ୍ ବାହୁଛି ! କେତେ ଟଙ୍କା ଲୁଟିଚନ୍ତି ଦେଖ୍ନ ! ନହେଲେ ଆମକୁ ଖାଇକଲ୍ ଖଣ୍ଡେ ମିଳୁନି—ଖାଇ ମୁଠାଏ ମିଳୁନି—ଲୁଗା ଖଣ୍ଡେ ମିଳୁନି—ଆଉ, ଏ ଶଳେ ପ୍ରତିଦିନ ଉଡ଼ୁଛନ୍ତି ଆମ ମୁଣ୍ଡ ଉପରେ । ପୁଣି ଜେଟ୍ ଉଡ଼ାଜାହାଜରେ ! ଆଚ୍ଛା, ହଇରେ, ଏ ହ୍ୟାପ ଜାହାଜ ଗୁଡ଼ାକ କିଡି କୁଆଡ଼େ ଯାଉଚି ଆସୁଚି କରେ ? ଏଃ, କି ବେଗଲେ ବାପ ! କାନରେ ଶବ୍ଦ ନବାଜୁଣୁ ଆଖିରୁ ଅନ୍ତର୍ଦ୍ଧାନ । ଶଳା ଶବ୍ଦଭେଦୀ ବାଣ ମାରିଲା ପ୍ରାୟେ ଯାଉଚି କେମେତେ ଦେଖ୍ନ ! ଓଃ, ପଡ଼ନ୍ତା ନାହିଁ ଗୋଟାଏ ଖଣ୍ଡେ ଆମର ଏଠେଇଁ···ଦେଖନ୍ତେ କିଏ କିଏ ଯାଉଚନ୍ତି, କିଏ କିଏ ମହାତ୍ମା ସେମାନେ !

"ଧାତ୍ ! ଏ ସବୁ ଉଡ଼ାଜାହାଜ ପଡ଼େନି ଏଡ଼େ ସହଜରେ । ଆଉ, ପଡ଼ିବ ଯଦି ନା —ମଞ୍ଚି ପକେଇବ, ଚୁନ୍‌ଭୁତ୍ କରିଦବ, ଜାଳି ଦବଟି ଘରଦ୍ୱାର

ଗାଁ। ଗଣ୍ଡା ଚତୁର୍ଦ୍ଦିଗ ! କଅଣ କମି ଫୋର୍ସରେ ପଡ଼ିବ ଖ୍ରବଚ ? ଖବର କାଗଜରେ ପଢ଼ନ୍ତୁ—ଯୋଉଠି ଉଡ଼ାଜାହାଜ ପଡ଼େ ସେଠି କେମିତି ମଚ୍ଛି ପକାଏ, ଧଳଚକଟି ଜାଳପୋଡ଼ି ନଷ୍ଟଭ୍ରଷ୍ଟ କରିଦିଏ ! ସେ ଲୋକଙ୍କ ମରିବେ—ହାତ-ଗୋଡ଼-ଚନ୍ଥିବର୍ତ୍ତି ମିଳିବ ନାହିଁ ତାଙ୍କର। ତାଙ୍କ ସାଙ୍ଗେ ସାଙ୍ଗେ ଆମେ ଯିବା ଯେ—"

"ଆଃ, ଆମେ କ'ଣ କହୁଛୁ ଆଁ ପଡ଼—ଆମ ମୁଣ୍ଡ ଉପରେ ! ପଡ଼ିବ ଯଦି ପଡ଼ନ୍ତା ଏଇ ମଧ୍ୟର ଡଲ ଗଞ୍ଜରରେ କି ନଈ ବାଲିରେ କି ଗ୍ରମଳାଲା ଯାହା ଛୋଟାପାଖ ଖେଳ ପଡ଼ିଆରେ ଯୋଉଠି ନିତ୍ୟା କଲେଜ ପିଲେ ଏବେ ଫୁଟବଲ ଖେଳୁଚନ୍ତି···ସେମିତିକଆ ଜାଗାରେ ନା, ଆଉକଣ ଆମ ମୁଣ୍ଡ ଉପରେ !"

"କଲେଜ ପିଲ ! ଆଉ କହନା ଲଦ୍ଦନା ସେ କଥା ! ଆରେ, ଦେଖିଲଣି ସେ ପିଲେ କି କାଣ୍ଡ କଲେ ସେଦିନ—ଘ୍ରରଘ୍ରରଟା ଲାଇନ୍ ବସକୁ ଲାଇନ୍‌ରୁ ଖସେଇ ପକେଇ କେମିତି ପୁରେଇ ଦେଲେ ବିଲ ଭିତରେ ! କେମିତି ଲଗେଇ ଦେଲେ ନିଆଁ ! ଗାଡ଼ିଗୁଡ଼ାକ ହୁରୁହୁରୁ ହୋଇ ଜଳିଗଲା ଜଉଘର ଭଳି । ମଣିଷ ଗୁଡ଼ାକ କି କାଲୁବାଲୁ ହୋଇ ତେଇଁ ଡାଇଁ ପଳାଉଥିଲେ—କି ଭୟଙ୍କର ଦୃଶ୍ୟ ସେ । ଆଚ୍ଛା, ମଟରଗାଡ଼ି ଗୁଡ଼ାକ ଯଦି ଏମିତି ପାଲଗଦା ଭଳି ଜଳିଯାଏ ଟିକିଏ ନିଆଁ ଦେଙ୍ଗି ଦେଲେ—ଉଡ଼ାଜାହାଜ ଗୁଡ଼ାକ କେମିତି ନଜଳୁଥିବ କହିଲୁ । ସେଥିରେ ସବୁ କୋଉ ଗୋଟାଏ ଦୋଷରୁ କସମ ତେଲ ଥାଏ—ମାଇଲିଏ ଦୂରରୁ ନା କଅଣ ନିଆଁ ଧରି ପକାଏ !"

"ନାଇଁମ ! ମାଇଲିଏ ଦୂରରୁ !"

"ନାହିଁ ଆଉ କଅଣ ! ସହରରେ ଦେଖିନୁ—ପେଟ୍ରୋଲ ପମ୍ପ ଆଗ ପାଖରେ ସିଗ୍ରେଟ୍ ଖାଇବାକୁ କାହିଁକି ମନା କରାହୋଇଥାଏ ଯେ—"

"ଓଃ. ସେଥିରୁ କଅଣ ମିଳିବ ଆମକୁ ହୋ ! ଆମର ଦରକାର ଏଠି, ଆମର ଏଇ ଅଞ୍ଚଳରେ ହଉ ଗୋଟାଏ ଦୁର୍ଘଟଣା, ବଡ଼ ଧରଣର, ଖୁବ୍ ବଡ଼ ଧରଣର—ପଡ଼ୁ ଗୋଟାଏ ଉଡ଼ାଜାହାଜ—ବିଶେଷତଃ ଗୋଟାଏ ଏମିତିକଆ ଜେଟ୍ ଉଡ଼ାଜାହାଜ—ଯୋଉଥିରେ ବସିଥିବେ ସେମାନେ ବଡ଼ ବଡ଼ ନେତାଏ କି ବଡ଼ ବଡ଼ ପୁଞ୍ଜିପତି ଦେଶୀ କି ବିଦେଶୀ ପଞ୍ଚାଏ ! ହନ୍ତା ଗୋଟାଏ ମଜା । ଆଖି ଦେଖନ୍ତା ଗୋଟାଏ ଦୃଶ୍ୟ । ଲଗନ୍ତା ଗୋଟାଏ ହୁଲ ହୁଲ୍ଲା ।"

"ଖାଲି ସେତିକି ! ଶଳା ମିଳିବ ଯାହା କିଛି ମାଲମତ୍ତା !"

"ଆଃ, ମୋର ଗୋଟାଏ ଟେପ୍‌ରେକର୍ଡ଼ର ଦରକାର ଥିଲାବେ—"

"ଆଉ ଆମର ପଚେତକ ଦରକାର ନାହିଁ କିଛୁ—ଶଳା ପାଞ୍ଚବର୍ଷ କଗଣୀ ଗଣକଷ୍ଟ କଲଣି ଯେ ଭଲକର ଦେଢ଼ଓ ଖଣ୍ଡେ ଜାଣିପାରିଲ ନାହିଁ ଯେ ସବୁ ଶନିବାର ରାତିରେ ମାଇପ ଉପୋଉଚ ଖଟ ଉପରେ "

"ହେଃ ହେଃ ହେଃ…"

"କ'ଣ ହେଃ ହେଃ ବେ —ସତ କହିଲେ…ଫାଟେ ! ଆରେ କହିଲୁ— ଆର ହପ୍ତାରେ ଡାଲି କିଲୋ ଦର ଥିଲା କେତେ, ହେଲା କେତେ ଏ ହପ୍ତାରେ ! ତେଲ ଥିଲା କେତେ ହେଲା କେତେ ! ଚିନି ଗହମ କିରାସିନି…ମିଳୁଚି ତମକୁ ? ସିମେଣ୍ଟ ବସ୍ତାକ ପରା ହେଲାଣି ଶହେ ! ଏଥିରେ ହେଃ ହେଃ ହେଃ ହଉଚୁ, କ'ଣ ଘୋଡ଼ାଦେବରେ—"

"ଘୋଡ଼ାଦେବରେ ନୁହଁ ଖଡ଼ୁଆ ଦେବରେ ! ଓ୍ୱାଜିବ କଥା— ଏ ଯୋଉ ଦେଶରେ ବଜାର ଦର ଛୁଟିଚି ଘଡ଼ିକ ଘୋଡ଼ା ଛୁଟିଲା ବେଗରେ, ସେଟା ଗୋଟାଏ ଖଡ଼ୁଆଙ୍କ ଦେଶ ନା ଆଉ କ'ଣ । ଏଇ ଖଡ଼ୁଆ ପଞ୍ଝାକତ ବସିଥିଲେ ସେ ଘୋଡ଼ାରେ ଏବେ ଘୋଡ଼ା ଗୁଡ଼ା ବସିଲେଣି ଯାଇ ଜେଟ୍ ବିମାନରେ ! ଦେଖୁନ ! ଶଳା ଗୁଡ଼ାକ କେମିତି ଉଡ଼ିଯାଉଚନ୍ତି ଲମ୍ବା ଧୂଆଁ ଗୁଡ଼ା ଦେଇ ଛାଣ୍ଡି ଅଡ଼େଇ ପୁଣି ଆମ ମୁଣ୍ଡ ଉପରେ ! ଆଚ୍ଛା, କହିଲ ଯାଉଚନ୍ତି ଭଲା କୁଆଡ଼େ ନଇତି ସକାଳେ ଆଉ ଫେରୁଛନ୍ତି ରାତି ଅଧରେ ! କେତେ ଟଙ୍କା ଖରଚ ହଉଥିବ ନିତି ତାଙ୍କ ପିଛାରେ ?"

"କିଏ ଜାଣେ ହୋ !—ଆମେତ ଏଇଠି ବଇଚୁ ସାତପୁରୁଷିକା ଶହେ ପୁରୁଷି, କିଏ ଜାଣେ ! ଆମର ଏଇ କିଆ ବଣ, ତାଳ ବଣ—ଏଇ ନଈ, ଏଇ ଗୋହିରି, ଏଇ କୁଡ଼ିଆ ଘର, ଏଇ ଭଙ୍ଗା ମନ୍ଦିର…"

"ଭଙ୍ଗା ମନ୍ଦିର ! ହୁଁ ! କିନ୍ତୁ ଭଙ୍ଗା ମନ୍ଦିର ଭିତରେ ଯେ ପ୍ରତ୍ୟକ୍ଷ ଠାକୁର ! ଭୁଲି ଯାଉଚ କି ସେକଥା ! ତମେ ତ ଜାଣ—ଆମର ଏ ଠାକୁର କେଡ଼େ ପ୍ରତ୍ୟକ୍ଷ । ଶହ ଶହ କ'ଣ ହଜାର ହଜାର ମାଇଲ ଦୂରରୁ ସାଧୁସନ୍ଥ ଆସୁଚନ୍ତି ଏ ଠାକୁରଙ୍କ ଦର୍ଶନକୁ ! ଗଲାବର୍ଷ ହିମାଳୟରୁ ଯୋଉ ମହାତ୍ମା ଆସି-ଥିଲେ ? କ'ଣ କହିଗଲେ ? ମନେ ନାହିଁକି ? କହିନଥିଲେ—ଧର୍ମ ଆଉ କୋଉଠି ନାହିଁ, ଅଛି ଆମର ଏଇ ଅଞ୍ଚଳ ଖଣ୍ଡିକରେ—କହିନଥିଲେ ? କାହିଁକି କହିଥିଲେ କହୁନ ! ଏଇ ଭଙ୍ଗା ମନ୍ଦିର ଖଣ୍ଡିକରେ ବସିଚନ୍ତି ଯୋଉ ଠାକୁର ମୂର୍ତ୍ତିକ ତାଙ୍କରି ପାଇଁ ତ ! କହିନଥିଲେ—ଏହି ଠାକୁରଙ୍କ ଯୋଗୁଁ ଧର୍ମ ତଥାପି ବଞ୍ଚିଚି ଏଇ ଅଗଏ ଭୂଇଁ ଖଣ୍ଡିକରେ ? କହିନଥିଲେ—ଏଠି, ଆମ ଗାଁର

ମଣିଷମାନେ ମଣିଷ ନୁହଁନ୍ତି, ଦେବତା ! ତେବେ, ଆମେ କିଆଁ ନିନ୍ଦିବା ଆମକୁ ! ଆମ କଥା ବଣ, ଅମଙ୍ଗିବଣ, ଆମକୁ ବଡ଼ ! ଆମ ନଈ, ଆମ କୁଡ଼ିଆ, ଆମ ଭଙ୍ଗା ମନ୍ଦିର ବଡ଼ ଆମକୁ !"

"ହେ ଯାଃ—ବଡ଼ ଆମକୁ ! ଖିଆଲି ବଡ଼—ବଡ଼ ନା ଫଡ଼ ! ଯୁଗ ଗଲାଣି କୁଆଡ଼େ, ଆଉ ଏଠି ଶୁଭୁଛି ବଡ଼ ! ପୁଣି କଅଣ ନା ଧର୍ମ ଠାକୁର— ଭଙ୍ଗା ମୂର୍ତ୍ତି, ଭଙ୍ଗା ମନ୍ଦିର ଯାବତ ବାଜେ କଥା ! ଆମ କିଆ ବଣ ଆମ ଅମଙ୍ଗି ବଣ ! ପୁଣି ଆମ ମଣିଷ—କୁଆଡ଼େ ଦେବତା ! ଦେବତା ନା ଦେ—ବତା ! ହ୍ୟାପ ଯାବତ ଚୋର । ଡାକୁଙ୍କ ସରଦାର । କେମିତିଆ ଦେବତା ଦେଖନ୍ତୁ ନି ? ଗଲା ହପ୍ତାରେ ଆମ ଏଇ ଦେବତା ଦଳେ କଅଣ କଲେ, କହନ୍ତୁ ! ହଇଓ ନାରୀଧର୍ଷଣ କି ଜିନିଷ ଆମ ୧ ଖଣ୍ଡମଣ୍ଡଳର କିଏ ଦେଖିଥିଲା କି ଶୁଣିଥିଲା ! କିନ୍ତୁ, ନିଜ ଆଖିରେ ତ ଦେଖିଲ–ଦଳେ ଛତରା କି କାଣ୍ଡ ନକଲେ ଦେଲେ ଆମ ଏ ଅଞ୍ଚଳରେ ! ଜଣେ ମାଇପିକି ପୁଣି ଆଠ ଦଶଜଣ···ଛି, ଛି, ଛି । ଏ ପାଷଣ୍ଡ ସବୁ ବାହାରିଲେ କୋଉଠୁ ! ଏଇ ଅଞ୍ଚଳରୁ ଟି ! ଯୋଉଠି ତମ ହିମାଳୟ ଯୋଗୀ କହିଗଲେ ଧର୍ମ କୁଆଡ଼େ ବଇଚି, ଜଳ ଜଳ କରି ଅନେଇଚି ସେଇ ଭଙ୍ଗା ମନ୍ଦିର ଝର୍କିକର କାନ୍ଥ ଫାଟ ସନ୍ଧିରୁ, ନା କଅଣ ?"

"ହଁ ତ ! ଧର୍ମ ଅନେଇଚି —ବିଶ୍ୱ ଅନେଇଚି ! ନ ହେଲେ ଦେଖୁଚି କିଏ କହନ୍ତୁ ଏ ଯାବତ ଧର୍ମଛଡ଼ା, ପ୍ରକୃତିଛଡ଼ା, ପାପାଣ୍ଡ ବୋଲି କହିଲ ଯାହାଙ୍କୁ ସେ ନରାଧମଗୁଡ଼ାଙ୍କର ଅପକର୍ମମାନଙ୍କୁ ? କିଏ ଅନୋଉଚି, କିଏ ତଉଲୁଚି ଆଉ କହୁଚି ଯେ ଏ କର୍ମ କର୍ମନୁହେଁ—ଦୁଷ୍କର୍ମ ଅଧର୍ମ ମହାପାପ କହୁଚି କିଏ ଏ ବାକ୍ୟ କହନ୍ତୁ ! ସେ ଯେ କହୁଚି—ସେ ଦେବତା ନା ଆଉ କିଏ ?

"ଦେବତା ଫେବତା କିଛି ନୁହଁ—ସବୁ ଗାଲୁ—ସବୁ ଗାଲୁ···"

"ଯଦି ଗାଲୁ—ତେବେ ହଉ ପରୀକ୍ଷା—ପରୀକ୍ଷାଟାଏ ହେଇଯାଉ !"

"କି ପରୀକ୍ଷା····?"

"କି ପରୀକ୍ଷା ? କାହିଁକି ! ଏଇ ହଡ଼ାଜାହାଜ ଦୁର୍ଘଟଣା— । ଆଜି ତ ଗଲା । କାଲି ସକାଳୁ— । ଆସ ସମସ୍ତେ । ବାହାର ଗାଁବାଲା । ସ୍ତ୍ରୀ ପୁରୁଷ ବୁଢ଼ାବୁଢ଼ୀ ଛୁଆ ପିଲା ସମସ୍ତେ ଯଦି ବାହାରି ଆସିବେ ଘରୁ—ଏକାବେଳକେ ଅନେଇବେ ଆକାଶକୁ—ଏକାବେଳକେ ଡାକ ଦେବେ, ଆରେ ! ଆମେ ଯଦି ଧର୍ମରେ ଅଛୁ ତେବେ ତେମେ ସବୁ ଯେ ଯାଉଚ ହୋ ଗଗନମାର୍ଗରେ, ତେମେ

ଦେବ ଦାନବ ଗନ୍ଧର୍ବ କିନ୍ନର ଯେ କେହି ହୋଇଥାଅ···ଓହ୍ଲେଇ ଆସ ! ଓହ୍ଲେଇ ଆସ ! ତମ ଶୂନ୍ୟ ରଥର ଚକ ବନ୍ଦ ହୋଇଯାଉ ! ବନ୍ଦ ହୋଇଯାଉ ! ଆସ ଏସି ! ଏସି ଆସ ! ଦେଖିବା କିଏ ସବୁ ଯାଉଛ ତମେ ଆମ ମୁଣ୍ଡ ଉପରେ ରାତି ଦିନ, ପ୍ରତିଦିନ—ଦେଖାଦିଅ, ଦିଅ ଦର୍ଶନ । ଟାଙ୍ଗି ପକେଇ କହୁବ — ଯଦି ସେ ଉଡ଼ାଜାହାଜ ବାଧ୍ୟ କରିବ ଓହ୍ଲେଇ ପଡ଼ିବାକୁ !"

''ହେ ଯାଃ—ଗାଲୁଆ ଡହରର ଭମ୍ପା କ'ଣ ଆଉ ଗଛରେ ଫଳନ୍ତି ! ଉଡ଼ାଜାହାଜ. ପୁଣି ଜେଟ୍—କୁଆଡ଼େ ଖସିପଡ଼ିବ, ଗଳିପଡ଼ିବ କଥା କଥାକେ ! —ପୁଣି ଏଇ ଡହରର ଭମ୍ପା କଥାରେ । ଧାତ୍ !

* * * *

କିନ୍ତୁ ଚବିଶ ଘଣ୍ଟା—ସକାଳରୁ ସକାଳ ଚବିଶ ଘଣ୍ଟା ମଧ୍ୟ ସତାର୍ ଭଗପାଳଙ୍କ ନାହିଁ ଧର୍ମର ପ୍ରସ୍ତବ ସରେଚବା । ପ୍ରାୟ ଦି ପହର ସୁଦ୍ଧା ଗୋଟାଏ ଅଦ୍ଭୁତ ଆଧିଭୌତିକ ଶବ୍ଦରେ ହକୁନ୍ଦା ନାମକ ସେଇ ଗ୍ରେଞ୍ଚିଆ ନଇକୂଳିଆ ଗାଁଟି କମ୍ପିବାକୁ ଲାଗିଲା । ଓଃ କି ଶବ୍ଦ, କି ରାବ, କି କଳକଳା ଶବ୍ଦରେ ବାପ ! ଦକ୍ଷ କି ଶୂନ୍ୟରୁ ସାତଥର କ'ଣ ଶହେଥର କି ହଜାର ଥର ଘଡଘଡ଼ି ମାରିଲା ଭଳି ସେ ଶବ୍ଦ ପ୍ରଥମେ ଚକ୍ର ହେଇ ଫାଟିଲା ଭଳି ଶୁଣାଗଲା ଗାଁ ଉପରେ । ଯେ ଶବ୍ଦ ଶୁଣିଲା ମାନେ ମନେହେବ ଯେମିତିକି ଆକାଶଟା—ସେଇ ବିଶୁଦ୍ଧ ନେଳୀକଙ୍କର ଭପଡ଼ା ଭଳି ବିଶାଳ ବିସ୍ତୃତ ଆକାଶଟା—ଫଡ଼-ଫଡ଼-ଫଡ଼-ଫଡ଼ ହେଇ ଚିରି ଟୁକୁରା ଟୁକୁରା ଖଣ୍ଡ ଖଣ୍ଡ ହେଇ ଫାଟି ହୋଇଗଲା ଆଉ ସେ ଚିରାଫଟା ଫାଙ୍କରୁ ଟିଏ ଖସିପଡ଼ିଲା ସେଇଟା ଗୋଟାଏ ଉଡ଼ାଜାହାଜ ତ ନୁହେଁ— ଗୋଟାଏ ଦୁର୍ଗ—ଜଳନ୍ତା ଦୁର୍ଗ ସେ ! ଆଉ, ସେ ଦୁର୍ଗଟା ଧାଇଁ ଧାଇଁ ହୋଇ ଚକ୍କର ଭାଜିଭାଜି ହକୁନ୍ଦା ଗାଁ ଉପରେ ଏତେ ପାଖରେ ଉଡ଼ି ବୁଲୁଥିଲା ଯେ ଯଦି ଆଉ ଟିକିଏ ତଳକୁ ଖସିଥାନ୍ତା କେବେ ହୁଏତ ମିଶ୍ରଘର ନଡ଼ିଆଗଛ କିମ୍ବା ପଟ୍ଟନାୟକଙ୍କ ଦୋମହଲା ଘର ଉପରେ ଧକ୍କା ଖାଇ ସିଧା ଖସିପଡ଼ନ୍ତା ତଳକୁ ।

କିନ୍ତୁ, ନାଃ । ଉଡ଼ାଜାହାଜଟା ନା ଧକ୍କା ଖାଇ ଖସି ପଡ଼ୁଥିଲା । ନା ଗାଁ ଛାଡ଼ି ଉଡ଼ି ଯାଉଥିଲା ଡଗ୍ବଲଗ୍ବକୁ ନଈ ଆରପାରିକୁ କି ଆଉ କୋଉଠିକୁ ।

"ହେ ଭଗବାନ, ହେ ନୀଳମାଧବ ଠାକୁରେ ରକ୍ଷାକର ରକ୍ଷାକର··· ।"
ହକୁନ୍ଦା । ଗାଁର ଆବାଳ-ବୃଦ୍ଧ-ବନିତା ସେତେବେଳକୁ ଯେଝା ଘରୁ, ଯେଝା କୁଡ଼ିଆରୁ ବାହାରି ଆସି ଠୁଳ ହେଇଗଲେଣି ସେଇ ଗୋଟିଏ ଅଶ୍ୱତ୍ଥ ଥଳ ଗାଁର

ଇଷ୍ଟ ଦେବ ନୀଳମାଧବ ମନ୍ଦିରର ବେଢ଼ା ଭିତରେ, ବେଢ଼ା ସ୍ବଶପଟେ । ଆଉ ଏକ ଲପ୍ତରେ ଘାଇଁ ଘାଇଁ ଚକ୍କି ଖାଇ ବିକଟାଳ ନାଦ ସହିତ ଗ୍ରାମ ପରିକ୍ରମା କରୁଥିବା ସେଇ ଭୟଙ୍କର ଉଡ଼ନ୍ତା ଦୁର୍ଗଟାକୁ ଅନେକ ସମସ୍ତେ ଏକାବେଳକେ ହାଉଳି ଖାଉଥାନ୍ତି. "ଆରେ ବାଜିଲା ତ ଉ! । ବାଜିଲା ତ–ଉ ! ଏଇ ବାଜିଲା ମିଶ୍ରଘର ଡେଙ୍ଗା ନଡ଼ିଆ ଗଛରେ । ଆରେ ଆରେ—ଖସିଗଲା ତ—ଉ ' ହୁଁ। ହଁ। ବାଜିଲା ବାଜିଲା ପଟ୍ଟନାୟକଙ୍କ କୋଠା ଉପରେ....ବାଜିଲାତ –ଉ ! ହେ ଭଗବାନ ! ହେ ନୀଳମାଧବ !—ବାଜିଲା ତ···ଉ !"

କିନ୍ତୁ, ନାଃ—ଉଡ଼ାଜାହାଜଟା—ଜେଟ୍ ବିମାନଟା –ଗୋଟାଏ ସମ୍ପୂର୍ଣ୍ଣ ବିଦେଶୀ ରଙ୍ଗ, ବିଦେଶୀ ପତାକାର ପଟାପଟା ଛିଟଛିଟକା ରଙ୍ଗ ଆଉ ଝରକା କାଚ ଭିତରୁ ଗୁଡ଼ାଏ ଗୋରାଗୋରା ବିଦେଶୀ ମୁହଁଭଳି ଦିଶୁଥିବା ସେସବୁ କ ଅଦ୍ଭୁତ ବିଚିତ୍ର ଯାତ୍ରୀମାନଙ୍କୁ ନିଜ ଗର୍ଭରେ ଧରିଥିବା ଅବସ୍ଥାରେ-–ବଡ ଅସହାୟ ବଡ଼ ଶ୍ରାନ୍ତକ୍ଳାନ୍ତ ଅବସ୍ଥାରେ ଧଇଁସଇଁ ହୋଇ ଖାଲି ଚକ୍କରର ପରେ ଚକ୍କର କାଟି ବୁଲୁଥାଏ ଗା ଗ୍ରାମପାଖେ । ନା ଉଡ଼ିପଳାଉଥାଏ, ନା ଖସି ପଡ଼ୁଥାଏ । ସେତେବେଳକୁ ନୀଳମାଧବଙ୍କ ମନ୍ଦିର ବେଢ଼ା ଭିତରେ ଆଉ ବେଢ଼ା ବାହାରେ ହାଉହାଉ ଗାଉଗାଉ ହେଉଥିବା ମଣିଷ ଗୁନ୍ଦାଙ୍କ ଭିତରେ ଖାଲି ଗୋଟାଏ କୋକୁଆଭୟ ପ୍ରବେଶ କରି ସାରି ନଥାଏ । ପ୍ରଗାଢ଼ ଭୟ ସହିତ ଏକପ୍ରକାର ପ୍ରଗାଢ଼ ଉତ୍ତେଜନା ଉଦ୍ରେକ ହୋଇ ଯେପରି ସଚରାଚର ମାନବ ବା ମାନବେତର ପ୍ରାଣୀଜଗତକୁ ସେ ଉତ୍ତେଜନା ହଠାତ୍ ରୂପାନ୍ତରିତ କରିପକାଏ କେଉଁ ଏକ ଆଧିଭୌତିକ ଅବସ୍ଥାକୁ ଏବଂ ଏହି ଅବସ୍ଥାହିଁ ଶେଷରେ ପ୍ରସ୍ତୁତ କରିପକାଏ ମଣିଷର ମନକୁ ବା ପ୍ରାଣୀର ପ୍ରାଣକୁ ଏକ ଚରମ ପରିସମାପ୍ତିର ଶେଷ ସିଦ୍ଧାନ୍ତକୁ ଶେଷରେ ନିର୍ଭୟରେ ଗ୍ରହଣ କରିନେବାକୁ ଉତ୍କୁଣ୍ଠା ନାମକ ସେଇ ଗ୍ରେଟିଆ ନଇକୂଳିଆ ଗାଁଟିର ସମବେତ ଗ୍ରାମବାସୀମାନେ ଇତି ମଧ୍ୟରେ ପରସ୍ପରକୁ ସାମୂହିକ ଭାବେ ସେଇ ଶେଷ ସିଦ୍ଧାନ୍ତ ଦିଗରେ ଆଗେଇ ନେଇ ବୁଲୁଥାନ୍ତି ବେଶ୍ ଦ୍ରୁତ ଗତିରେ ।

"ଦେଖିଲ, ଦେଖିଲ ! କ'ଣ କହୁଥିଲି ମୁଁ ଆଜି ସକାଳେ । ଓହୋ, ହେ ନୀଳମାଧବ ଠାକୁରେ ! ଧର୍ମ ଅଛୁ, ଧର୍ମ ଅଛନ୍ତି ତେବେ ଆମ ଏଇଠି, ଏଇ ଅଞ୍ଚଳରେ···ଏଇ ଗାରେ···ଏଇ ମନ୍ଦିରରେ ! ଯାହା କହୁଥିଲି ଫଳିଗଲା··· ଫଳିଗଲା ଗୋଟାପଣେ···"

"କିନ୍ତୁ, ତମ୍ଭେ ତ ଏକଥା କହି ନଥିଲ—ତମେ କହିଥିଲ ଯଦି ଗ୍ରାମବାସୀ-ମାନେ ଏକାବେଳକେ ସମସ୍ବରରେ···କିନ୍ତୁ ଏ ତ ଅସ୍ବାଭାବିକ ବ୍ୟାପାର । କାହୁଁ

ଅଇଲ୍ଷ ଏ ଦାନବ—ଉଡ଼ି ଆସିଲ ଗ୍ରାଁକୁ । ଏ ତ ଆମର ଏବାଟେ ମାଡ଼ ଗଲ ଆଇଲ୍ଷ ବାଲ୍ଷ ଜାହାଜ ନୁହଁ – ”

"ମାଡ ହୁଉ କ ଅନତ ହୁଉ, ଅଇଲ ତ ! ତମେ ପସ୍ ନହୁଥେଲ— ହୁଉ ଗୋଟାଏ ଦୁର୍ଘଟଣା ! ପଡ଼ୁ ଗୋଟାଏ ଏଠି ବ୍ୟୋମଜାନ ଶୂନ୍ୟରୁ··· କହୁନଥିଲ ?"

"କଲ୍ଷ ମୁଁ କହୁଚ—ଗାଁ ଉପରେ ନପଡ଼ୁ । ପଡ଼ୁ ପଛକେ ଗମ୍ଭର ବିଲରେ – କ ନଈ ବାଲିରେ କ କଲେଜ ପିଲାଙ୍କ ଖେଳ ପଡ଼ିଆରେ ।"

"ସେଇ କଲେଜ ତ ସବୁ ସାଇଲା -କଏ କହୁଥେଲା ଏଠି ଏ ପଲ୍ଲୀ ଗାଁରେ ବଜାଣିଆଙ୍କ ଆଖଡ଼ା ଖୋଲି ଏ ତାମସା ଭିଆଇବାକୁ । କ ଦରକାର ଥିଲ ? ଏବେ ପାଅ । ଯୋଉ ଅଧର୍ମ ବ୍ୟାପିଲାଣି ଏ ସଂସାରରେ, ଏ ମୁଲକରେ, ଏବେ ପାଅ । ମର ସମସ୍ତେ । ଏ ଉଡ଼ାଜାହାଜ ନଷ୍ଟେ ପଡ଼ିବ ତମ ମୁଣ୍ଡ ଉପରେ ଆଉ କ୍ଷଣକେ । ମରିବ ସମସ୍ତେ···ମରିବ ସମସ୍ତେ । ଏଇ ବାଜିଲା ତ ମିଶ୍ରସାଇ ନଡ଼ିଆ ଗଛରେ····"

କଲ୍ଷ, ନା । ବିଦେଶୀ ଜେଟ୍ ବିମାନଟାର ପାଇଲଟ୍ ଏତେ ଗରହୁସିଆର୍ ନୁହେଁ ନଷ୍ଟେ । ମିଶ୍ରଘର ନଡ଼ିଆ ଗଛ ବା ପଟ୍ଟନାୟକଙ୍କ ଦୋମହଲା କୋଠାଠୁଁ ମାଡ ଜେଇ ଇଞ୍ଚ ଉଚ୍ଚରେ ଉଡ଼ି ଯାଉଥିଲେ ମଧ୍ୟ ଉଡ଼ାଜାହାଜର ଗୁମଟିଏ ମଧ୍ୟ ସେ ପର୍ଯ୍ୟନ୍ତ ଛୁଉଁ ନଥାଏ ତଳର କୌଣସି ପ୍ରତିବନ୍ଧକକୁ । ଘାଉଁକନା ଆସୁଥାଏ ଘାଉଁକନା ଉଡ଼ି ବାହାରି ଯାଉଥାଏ ସାମନାର ଯେ କୌଣସି ପ୍ରତିବନ୍ଧକର ଉପରେ ଉପରେ । କଲ୍ଷ ନା ଗାଁ ଗ୍ରୁଡ଼ି ବାହାରି ଯାଉଥାଏ ନା ଧକ୍କା ଖାଇ ଖସି ପଡୁଥାଏ । ଖାଲି ଘାଉଁ ଘାଉଁ ଚକ୍କର—ସତେ କ ବନ୍ଧନରେ ପଡ଼ି ଯାଉଥାଏ । କଏ ଯେମିତ ଗୁଣିକଣ ବାନ୍ଧି ପକେଇଥାଏ, ଛନ୍ଦି ପକେଇଥାଏ ସେ ବିରାଟ ଉଡ଼ନ୍ତା ପାହାଡ଼ ଭଳି ଚଢ଼େଇଟାକୁ ! ଓଃ ବାପଲୋ, କ ରବ, କ ଚିତ୍କାର । କଲ୍ଷ, ମୁକୁଳି ପାରୁନଥାଏ ।

"ଅଧର୍ମ ବ୍ୟାପିଚୁ ହଁ । କଲ୍ଷ କଏ କରୁଚ ଏ ଅଧର୍ମ ? ଆମେ ତ ନହୁଁ । ଆମ ଉଦୁଙ୍କ ବାଲାଏ ଅଧର୍ମ କ'ଣ ଜାଣନ୍ତି ଭଲା ! ଏ ଗାଁର ଜଣେ ଦଳଙ୍କୁ ଗ୍ରୁଡ଼ିଦେଲେ—ସେଇ ମିଶ୍ରଘର ସେଇ ପଟ୍ଟନାୟକ ଘରକୁ ଗ୍ରୁଡ଼ିଦେଲେ– ବାକ ଏଠି ଅଛନ୍ତି କଏ କହିଲ ଅଧର୍ମ କରିବାକୁ ! କଅଣ ଢନମାନ ପର କ୍ଷେତରେ ହେତା ଲାଗି ସଞ୍ଜକୁ ଖତଗଣ୍ଡିଏ ଖାଇବାକୁ କହନ୍ତି ଅଧର୍ମ ? ସେଇ ଖତଗଣ୍ଡିଏ ତ ମିଳୁନ ଏଇଲେ ଅନେକଙ୍କୁ । ଏଥେରେ ଅଧର୍ମ ଆସୁଚ କୋଉଠୁ ? ଆମ୍ଭ ମୁଣ୍ଡ ଉପରେ ଏ ବିପତ୍ତି ପଡ଼ିଲା କାହିଁକ ହେ ବାବୁ ?"

"ଆହେ, ଅଧର୍ମ ସମସ୍ତେ କରନ୍ତି ନାହିଁ । କରନ୍ତି କେତେ ଅଧେ । ଭୋଗନ୍ତି ସମସ୍ତେ । ଏଇ ହେଲା ଧର୍ମତନ୍ତ୍ର । ଯଦି ଏ ଗାଁରେ ଦି ଜଣ ଅଧର୍ମ କଲେ—ସାରା ଗାଁବାଲା ତାକୁ ନମୁଣ୍ଡେଇବେ ବୋଲି ଭାବଚ ? କାହିଁକି ! ଏଇ ଦେଖିଲ, ଦେଖିଲ ଶଳା ପାଇଲଟଟା ମଦ ଖାଇଚ ନା କଅଣ । ଆରେ—ଏ ତ ସୁଦ୍ଧା ଯେମିତି ତଆର ହେଲାଣି ଓହ୍ଲେଇ ପଡ଼ିବ ବୋଲି ସିଧା ତାଉଣ୍ଡ ଯାଇ, ମାନେ ହରିଜନ ସାଇ କୁଣ୍ଡିଆ ପୁଡ଼ାକର ମୁଣ୍ଡ ଉପରେ କି କଅଣ ! ଗଲା ଗଲା ଗଲା ଏଇଲେ ତ ଭସୁକନା ନିଆଁ ଉଠିବ ସେଠି । ଜଳିଯିବ, ପୋଡ଼ିଯିବ··· ଗଲା ଗଲା ଗଲା ତ ସେ ଯାଇଟା ନା କଅଣ ?"

କିନ୍ତୁ, ନା । ଜେଟ୍ ବିମାନ ଇତିମଧ୍ୟରେ ସତକୁ ସତ ତଳକୁ ଝାମ୍ପ ମାଇଲା ଭଳି ଥରେ ଖସି ଆସିଥିଲେ ମଧ୍ୟ ପୁଣି ଉଠିଗଲା ଉପରକୁ । ସମ୍ଭବତଃ ଯେଉଁ ସ୍ଥାନଟାକୁ ଲକ୍ଷ୍ୟ କରି ଓହ୍ଲାଇ ପଡ଼ିବ ବୋଲି ଭାବି ନେଇଥିଲା— ସେଟା ଅଖାଡ଼ୁଆ ଦେଖି ପୁଣି ଉଠିଗଲା ଉପରକୁ । ଏଇ ଅବସରରେ ଗୋଟାଏ ଭୀଷଣ କୋଳାହଳ ଶୁଣାଗଲା ମନ୍ଦିର ବେଢ଼ା ବାହାରୁ । ଆଉ, ସାଙ୍ଗେ ସାଙ୍ଗେ ପଂଝାଏ ଲୋକ ଧାଇଁ ଯାଉଥିଲେ ହରିଜନ ସାଇଆଡ଼େ । କିନ୍ତୁ, ଉଡ଼ାଜାହାଜଟା ଗୁଡ଼ିଭଳି ଗୋଟାଏ ଗୋଡ ଖାଇ ଉପରକୁ ଉଠିଯିବା ଷଣି ଅଟକିଗଲେ ସେ ପଂଝାକ ।

"ଗଲା ଯାଃ ଭାବିଥିଲୁ ପଡ଼ିଗଲା ନିଶ୍ଚେ !"

"କିନ୍ତୁ, ଗଲା କୁଆଡ଼େ ! ହେଇତ ଲେଉଟିଲା—ଓହୋ, କି ଗର୍ଜନ ଲୋ ବୋଉ !"

"ତାକୁ କିଏ ବାନ୍ଧି ଦେଇଚ ନିଶ୍ଚେ ! ମନ୍ତ୍ର କରିଚ । ନ ହେଲେ ଦେଖନ୍ତୁ ପୁଣି କେମିତି ଘୂରିଲାଣି ଶାଗୁଣା ପ୍ରାୟେ—

"କେହି ବାନ୍ଧି ନାହାନ୍ତି - ବାନ୍ଧିଥିଲେ ବାନ୍ଧିଥିବେ ନୀଳମାଧବ ଠାକୁର । ହିମାଳୟର ମହାତ୍ମା କହିଚନ୍ତି ପରା—ଏ ଏକ ଅଦ୍ଭୁତ ଠାକୁର । ସାରା ଜଗତରେ ନାହାନ୍ତି ଏମିତି ଠାକୁର । ନ ହେଲେ ହିମାଳୟରୁ ମହାତ୍ମାମାନେ କାହିଁକି ଆସନ୍ତି ଏଠିକି କହନ୍ତୁ ।"

"ସେ ଯାହା ପାରେ ତା ହଉ—ଯଦି ଏ ଜନ୍ତୁ ଏଠି ପଡ଼େ ହଜାରେ ମୁଣ୍ଡ ସେ ଖାଇବ ନିଶ୍ଚେ । ନୀଳମାଧବ କ'ଣ ସ୍ବୁଡ୍‌ନିକ୍ ଏଇଆ ? ଆମେ ମରିବା ଆମ ମୁଣ୍ଡ ଉପରେ ଉଡ଼ାଜାହାଜ ପଡ଼ିବ ?"

"ସେ କଅଣ ସ୍ବୁଡ୍‌ନିକ୍ ତମେ କଅଣ ଜାଣ । ସେ ଯଦି ସ୍ବୁଡ୍‌ନିକ୍ ଏଠି ଗୋଟାଏ ଉଡ଼ାଜାହାଜ ପଡ଼ୁ । ଧନ ରତ୍ନ ସାରିମାଳା ସ୍ବର୍ଗରୁ ଖସିପଡ଼ୁ । ଉତ୍ତୁଙ୍ଗ

ଗାଁର ଦରିଦ୍ର ଲୋକଙ୍କୁ ସେ ଧନ ପରିପତ ହେଉ । ଦାରିଦ୍ର୍ୟ ଘୁଞ୍ଚୁ—ଗରିବୀ ହଟୁ ।"

"କାହିଁକି ନ ରହୁଥିବେ ସେଇଆ ? ପାଞ୍ଚ ବରଷ ହେଲାଣି—କିରାଣୀ ଚାକିରିଟିଏ କଲ୍‌ସିନା । ଏଠୁ କାହିଁ ପଚାଶ ମାଇଲ ଦୂର ସହର । କି ମହରଗ ଜାଗା । କଅଣ ଖାଏ ପିଏ । ସୋମବାର ସକାଳୁ ଯାଏ ଯେ ଆସୁ ଆସୁ ଶନିବାର ରାତି ଅଧ । ଆମ କଥା କିଏ ବୁଝେ । ଖଣ୍ଡିଏ ଟ୍ରାଂଜିଷ୍ଟର ରେଡ଼ିଓ ପରି କରି ପାରିଲି ନାହିଁ ବୋଲି ଆମ ଘରେ କି କେଲେଙ୍କାରି କରୁଥିଲି ତୁମକୁ ଆଜି ବଡ଼ି ସକାଳେ । ନୀଳମାଧବ ଏବେ ମୋ ଗୁହାରି ଶୁଣି ଏ ବ୍ୟବସ୍ଥା ନ କରୁଚନ୍ତି ବୋଲି କହିବା କେମିତି । ମୋର ତ ମନେ ହେଉଚି···

ହଠାତ୍ ଏକ ପ୍ରଳୟଙ୍କରୀ ଶବ୍ଦ ସହିତ କି ଭୀଷଣ ଆଉ ଏକ ପ୍ରକାର ରାବରେ ସମଗ୍ର ଅଞ୍ଚଳଟି ଥରି ଉଠିଲା ଓ ପ୍ରାୟ ସେହିପରି ହଠାତ୍ ଚତୁର୍ଦ୍ଦିଗ ନିସ୍ତବ୍ଧ ହୋଇଗଲା ମଧ୍ୟ ।

"ଆରେ ପଡ଼ିଗଲା ପଡ଼ିଗଲା···କଲେଜ ଖେଳ ପଡ଼ିଆରେଇ ପଡ଼ିଗଲା···· ପଡ଼ିଗଲା···"

ଆଉ, ମୁହୂର୍ତ୍ତିକ ଭିତରେ ଶହ ଶହ ଲୋକ ଉତ୍କଣ୍ଠା ନାମଧାରୀ ସେଇ ନଇକୂଳିଆ ପଲ୍ଲୀଗ୍ରାମଟିର ଆବାଲ ବୃଦ୍ଧବନିତା—ଗାଁର ଇଷ୍ଟଦେବତା ନୀଳମାଧବ ମନ୍ଦିର ପ୍ରାଙ୍ଗଣ ପରିତ୍ୟାଗ କରି ଧାଇଁବାକୁ ଆରମ୍ଭ କଲେ ସେଇ ଗୋଟିଏ ଦିଗରେ ରାମଲୀଳା ଛୋଟା ପାଖ ଗ୍ରେଟ ଖୋଲାଜାଗା ବା କଲେଜ ପଡ଼ିଆରେ ଖସି ପଡ଼ି ହୁତ୍ ହୁତ୍ ହୋଇ ଜଳିଯାଉଥିବା ସେଇ ବସ୍ତୁଟିକର ବସ୍ତୁର ପାହାଡ଼ଟା ଆଡ଼କୁ ।

କିନ୍ତୁ, ଘଟଣାସ୍ଥଳରେ ଉପନୀତ ହେବାର ଡେର ପୂର୍ବରୁ ଜଣେ କିଏ ଚିତ୍କାର କରି ଉଠିଲା ।

"ଆରେ ହେ । ଗୋଟିଏ ଟ୍ରାଂଜିଷ୍ଟରଟାଏ ନା କଅଣଟାଏ ମ ।" ଅଟକି ଗଲା ଓ ପ୍ରକୃତରେ ସେଇ ବର୍ଣ୍ଣନାତ୍ମକ ଚିତ୍କାର ଅନୁଯାୟୀ ମୁକ୍ତ କୃଷି କ୍ଷେତ ଉପରେ ପଡ଼ିଯାଇଥିବା ପଦାର୍ଥଟା ଉପରେ ଅଜାଡ଼ି ହୋଇ ପଡ଼ିଲା ।

ଏହାର କିଛି ସମୟ ପରେ ଅଦୂରରୁ ଆଉ ଏକ ଉତ୍ସାହଜନକ ଆହ୍ୱାନ ଶୁଣାଗଲା, "ଆରେ କାଙ୍ଗାଳ ଗୁଡ଼ାକ । ସେଇଠି କାହିଁକି ଧରାପରି ହଉଚ ଭଲା । ହେଇ ଦେଖନ୍ତୁ । ଛୋଟା ଭିତରଯାକ ମୋ ବାପଲୋ । ଏତ ପୁରାପୁରି ଆମେରିକାନ ଜିନିଷ—ଖାଣ୍ଟି ଆମେରିକାନ୍ ଅର୍ଥ ନୂଆ—ରେଡ଼ିଓ ।

ଟେପ୍‌ରେକର୍ଡ଼ର । କ୍ୟାମେରା । ଭ୍ୟାନିଟି ବ୍ୟାଗ । ଶାଢ଼ୀ । ଘଣ୍ଟା । ଆଉ ମୋ ବାପଙ୍କ ସୁନା ନା କଅଣ ସେଗୁଡ଼ାକ ।”

ଅଧାବାଟରେ, ମୁକ୍ତ ଗୃପକ୍ଷେତରେ ପଡ଼ିଯାଇଥିବା ଗୋଟାଏ ଚୂନ୍‌ଭୁତ୍ ଟ୍ରାଞ୍ଜିଷ୍ଟର ରେଡ଼ିଓକୁ ନେଇ ଧରାପରା ହେଉଥିବା ଜନତା ଏଥର ଛୁଟିପଡ଼ି ଧାଇଁବାକୁ ଲାଗିଲେ ରାମଲୀଲା ତୋଟା ଭିତରକୁ । ଝଡ଼ଦିନ, ତୋଟାରେ ଆମ୍ବ ପାଚିବା ବେଳ ହେବାର ଯଥେଷ୍ଟ ପୂର୍ବରୁ ଅଧାଡ଼ୁଆ କୋଇଲିପାରେଡ଼ା କି ସତ ସତ ଅବେଳରେ ପାଚି ଝଡ଼ିଯାଇଥିବା ଆମ୍ବକୁ ନେଇ ଗାଁର ଜଗୁଆଳି ପିଲାମାନେ ଯେପରି ଧରାପରା ହୁଅନ୍ତି ହୁଲୁଡ଼ି । ଗାଁ ଓ ଆଖପାଖର ଅଧିବାସୀମାନେ ସେଦିନ ଦିପହରର ଗୋଟାକଯାକ ସେମିତି ଧରାପରା ହେଉଥାନ୍ତି ରାମଲୀଲା ତୋଟା ଭିତରେ ।

ଅଦୂରରେ, ତୋଟା କଡ଼କୁ ଲାଗି, ଗୋଟିଏ ଶ୍ରେଷ୍ଠ ଅପ୍ରଶସ୍ତ ସ୍କୋଲ ପଢ଼ୁଆ ବା କଲେଜ ପଢ଼ୁଆ ଦାଢ଼ିକୁ, ଥଣ୍ଟି ତଳକୁ ଆଉ ଲାଞ୍ଜ ଉପରକୁ କରି ମୁହଁମାଡ଼ି ପଡ଼ିଯାଇଥିବା ବ୍ରଟିକାସ୍ଥ ଜେଟ୍ ବିମାନଟା ସେଦିନ ଦିପହରରେ ମାତ୍ର କେଇଘଣ୍ଟା ଭିତରେ ପୋଡ଼ି ପାଉଁଶ ହୋଇ ସାରିଥାଏ । ବିମାନରେ ଥିବା ସମସ୍ତ ପାସେଞ୍ଜର ଏକ ସମୂହ ଚିତାଗ୍ନିରେ ଜଳି ଯାଇ ସାରିଥାନ୍ତି ବହୁତ ବେଳୁ । ଜଳନ୍ତା ବିମାନର ଚାରିପାର୍ଶ୍ୱରେ ଠାଏ ଠାଏ କଅଣ ସେଗୁଡ଼ାକ ପଡ଼ିଥାଏ କେଜାଣି । ସେଥିମଧ୍ୟରୁ ଗୋଟିଏ ଜିନିଷ ଦିଶୁଥାଏ ଅତି ଭୟଙ୍କର; ତଥାପି ଅତି ଆକର୍ଷଣୀୟ ମଧ୍ୟ । ଭୟଙ୍କର ଜିନିଷଟା, ଗୋଟିଏ ଦରପୋଡ଼ା ମଣିଷର ଅବଶିଷ୍ଟାଂଶ ନିଶ୍ଚୟ । କିନ୍ତୁ, ଆକର୍ଷଣୀୟ ବସ୍ତୁଟା ଥିଲା ସେଇ ମଣିଷର ଗୋଟାଏ ହାତ ସମ୍ଭବତଃ । ସେଇ ହାତରେ ତଥାପି ଧୃତ ହୋଇଥିବା ପଦାର୍ଥଟିକୁ ଲକ୍ଷ୍ୟ କରି ଜନୈକ ଗ୍ରାମବାସୀ ତୋଟା ଭିତରୁ ସବୁରି ଅଲକ୍ଷ୍ୟରେ ପ୍ରକୃତ ଘଟଣା ସ୍ଥଳକୁ ଧାଇଁ ଆସିବା ମାତ୍ରେ ତା ପାଟି ଆଙ୍କାଖାଇଗଲା—

“ବ…ବ…ବନ୍ଧୁକ ଲୋ ବୋଉ !”

ଇତିମଧ୍ୟରେ ତୋଟା ଭିତରୁ ଅର୍ଣ୍ଣି, ଜାନ, ମୂର୍ତ୍ତି, ଟୋକେଇରେ ସ୍ୱର୍ଗରୁ ବର୍ଷିଯାଇଥିବା ଅସଂଖ୍ୟ ବିଦେଶୀ ସମ୍ପତ୍ତି ସଞ୍ଚୟ କରିସାରିଥିବା ଜନତା ତୋଟାରୁ ବାହାରି ପଡ଼ିଥିଲେ ଏବଂ ପ୍ରକୃତ ଘଟଣାସ୍ଥଳରେ ଘଟିଯାଇଥିବା ମହାଭୟଙ୍କର କରୁଣ ଦୃଶ୍ୟଟିକୁ ସ୍ୱଚକ୍ଷୁରେ ଦେଖି ଦେଇ ମୂକ ପାଲଟିଲା ଭଳି ସ୍ତବ୍ଧ ହୋଇ ରହିଯାଇଥିଲେ । ସେତିକିବେଳେ ପୁଣିଥରେ ଶୁଣାଗଲା—

“ହାଇଜାର୍କି…ଏ କଷ୍ଟେ ହାଇଜାର୍କି…ଏଇ ଦେଖ ବନ୍ଧୁକ…ଏଇ ଲୋକର କାମ ଏ…ଏଇ ସେଇ ହାଇଜାକର୍…ଏଇ…ଏଇ ।

କେହି ବୁଝିପାରିଲେ ନାହିଁ ।

ବୁଝିବା ଅବସ୍ଥାରେ ନଥିଲେ କେହି ।

ଦିନକ ପରେ ବୁଝାପଡ଼ିଗଲା ସବୁ ।

ପୁଲିସ୍ ଆସିଲା ।

ଗାଁର ଅଧକଟା ଧୂଆଁଳିଆ ଯାବତ୍ ବଦେଶୀ ଜିନିଷ ଜବତ କରାଯାଉଥିଲା-ବେଳେ ପ୍ରକୃତ ବିଷୟ ବୁଝାଇ ଦେଲେ ସେମାନେ—

"ଯୋଉ ଲୋକ ବନ୍ଧୁକ ଧରି ପୋଡ଼ି ମଲା ସେଇ ଏ କାଣ୍ଡର ମୂଳ । ଜାହାଜରେ ତିନଣ ଲୋକ ଥିଲେ । ଏ ପାଗଳା ହଠାତ୍ ପାଇଲଟ୍ ବେକମୂଳେ ପିସ୍ତଲଟାକୁ ଚିପି ବାରମ୍ବାର ରଡ଼ି ପକେଇଲା—'ଯ୍ୱଲ୍ ସେଇଠିକି ଯୋଉଠି ଭଗବାନ ଅଛନ୍ତି'—ପାଇଲଟ୍ ବୁଝିବାକୁ ନପାଇ ଇଣ୍ଡିଆକୁ ଉଡ଼ିଆସିଲା । ଇଣ୍ଡିଆ ମାନେ ଆମ ଦେଶରେ ଭଗବାନ କୋଉଠି ବିଚାରି ପାଇଲଟ୍ ସ୍ଥିର ପାରିଲା ନାହିଁ । ହଠାତ୍, ଉଡ଼ୁ ଉଡ଼ୁ, ହାଇଜାକର୍ କହିଲା—'ଓହ୍ଲା ! ଓହ୍ଲା ଏଇଠି ।' ପାଇଲଟ୍ ବହୁତ ଚେଷ୍ଟା କଲା - କିନ୍ତୁ, ହେଲା ନାହିଁ । ତମ ଗାଁ ଠାକୁର ନୀଳମାଧବ, ପ୍ରତ୍ୟକ୍ଷ ଠାକୁର ନିଶ୍ଚେ । ତମ ଗାଁ ବାଲିଙ୍କ ଉପରେ ରେଡ଼ିଓ ଟେପ୍‌ରେକର୍ଡର, ସୁନା ରୂପା ଅଜାଡ଼ି ଦେଲେ । କିନ୍ତୁ, ବିଧର୍ମୀକୁ ଧର୍ମକ୍ଷେତ୍ର ଜାଅନ୍ଧାରେ ଛୁଏଁଇ ଦେଲେ ନାହିଁ । ହଁ, ବାହାର କଥା ଏଥର ଆଉ କୋଉଠି କଥଣ କଏ ପୁରେଇଚ । ବାହାର କରିବ ନା ଦେଖିବ ଏଇଲେ..."

ବନ୍ଧୁକଧାରୀ ପୁଲିସ୍ ଠାକୁର ନୀଳମାଧବଙ୍କ ସମେତ୍ ସାରା ଗାଁଟାକୁ କବ୍‌ଜା କରି ରଖିଥାନ୍ତି ତଥାପି ।



# କଣ୍ଟିତ୍ କାନ୍ତା

## ଶ୍ରୀମତୀ ସୁଧାଂଶୁବାଳା ପଣ୍ଡା

ଘଡ଼ି ଦଶଟା ବାଜିବାକୁ ବସିଲାଣି । କାନ୍ଥ ଘଣ୍ଟାକୁ ବାରମ୍ବାର ଲକ୍ଷ୍ୟ କରି ମୁଁ ପ୍ରାୟ ଅନ୍ୟମନସ୍କ ହୋଇ ପଡ଼ୁଛି । କାରଣ ନ'ଟା ପୂର୍ବରୁ ମୋର ଘରେ ପହଞ୍ଚିବାର କଥା । ଯେତେ ଶୀଘ୍ର ଶୀଘ୍ର କାମ ତୁଟାଇଲେ ବି କାମ ତୁଟି ପାରୁନି । ଅଶୋକ ସହିତ ଅଯଥା ବାକ୍ୟାଳାପରେ ଏ ଭଳି ବିଳମ୍ବ ଘଟିବାରୁ, ମୁଁ ଅଶୋକ ଉପରେ ବଡ଼ ବିରକ୍ତିର ସହିତ ଗୁଡ଼ାଏ ଅଭିସମ୍ପାତ ବର୍ଷଣ କରୁଥିବା ବେଳେ, ହୋଟେଲର ମାଲିକ୍ ଆସି ତାଙ୍କ ମହାମାନ୍ୟ ଗୁଣରେ ମତେ ସୂଚେଇ ଦେଲେ ଯେ, "ବାକି କାମ କାଲିକି କଲେ ଚଳିବ, ଏତେ ରାତି ଯାଏଁ କାମ କରିବା ସେମିତି କିଛି ବିଶେଷ ଜରୁରୀ ନାହିଁ ।" ମୁଁ ଆଶ୍ୱସ୍ତ ହେଲି ଓ ହୋଟେଲ ମାଲିକଙ୍କୁ ମନେ ମନେ ଅଜସ୍ର ଧନ୍ୟବାଦ ଦେଇ ଯଥା ସମ୍ଭବ କ୍ଷିପ୍ର ପାଦ ବଢ଼େଇଲି ।

ହୋଟେଲରୁ ବାହାରି ଆସି ଦେଖେ, ତଥାପି ଅଶୋକ ଠିଆ ହୋଇ ରହିଛି ମୋର ପ୍ରତୀକ୍ଷାରେ । ତାକୁ ଦେଖି ମୋର ମନେ ହେଲା, ମୋ ଗତାନୁଗତିକ କାର୍ଯ୍ୟସୂଚୀରେ ଅଶୋକ ହେଉଛି ଯେମିତି ଅନ୍ୟ ଏକ ଅଂଶ, ତାକୁ ବି ଏଡ଼ି ଯିବା ମୋ ପକ୍ଷେ ସମ୍ଭବ ନୁହେଁ ।

କିନ୍ତୁ ଆଶାତୀତ ବିଳମ୍ବ ହୋଇ ଯାଇଥିବାରୁ, ମୁଁ ଅଶୋକକୁ ଦେଖି ପାରୁ ନଥିବାର ଛଳନା କରି, ଘରକୁ ଖସି ଯିବା ପାଇଁ ରିକ୍ସା ମୂଲଉଛି, ଅଶୋକ ଦ୍ୱିଗୁଣ ଉତ୍ସାହର ସହିତ ପଛ ପାଖରୁ ଆସି ମତେ ପ୍ରଶ୍ନ କରୁଛି, "କଣ ପ୍ରେଜେଣ୍ଟେସନ କଣି ସାରିଚ ?"

ଅଶୋକ ପ୍ରଶ୍ନରେ ମୁଁ ଏକ ଗମ୍ଭୀରତର ଉଦାସୀନତାରେ ଉପନୀତ ହୋଇ କହିଲି, ଦେଖ ଅଶୋକ ! ମୁଁ ତୁମକୁ ବାରମ୍ବାର ମନା କରି ଆସୁଛି ଯେ ପ୍ରତ୍ୟହ ଘରକୁ ମୁଁ ଯାଇଁ ପାରିବନି । ତଥାପି ତୁମେ ସେଇ ପ୍ରଶ୍ନକୁ ପୁନରାବୃତ୍ତି କରୁଚ ।

ମୁଁ ବର୍ତ୍ତିମାନ ପ୍ରଶ୍ନଟର ପୁଅ ଏକୋଇଶିଆ ଭୋଜ ଖାଇବାକୁ ଯାଉନ । ଯାଉଚ ଘରକୁ । ପ୍ରେଜେଣ୍ଟେସନ କରିବାର ପ୍ରୟୋଜନ କ'ଣ ? ମୋର ସମସ୍ତର ଅଭାବ ସମୟରେ ତମେ ମୋତେ ନମାଗତ ଭାବେ ଯେଉଁ ଭଲ ଉପ ୍ଟବ କର ଚାଲିଚ, ହେନେ ନାଁ ହେନେ ମୋର ଏ ସ୍ନେହ ବ୍ୟାପାରଟା ଧରା ପଡ଼ିଯିବ ।

. ସ୍ନେହ ବ୍ୟାପାର···? ଆକାଶରୁ ଯେମିତ ପଡ଼ିଲା ଅଶୋକ । ସେ ମନେ ମନେ ଭାବ ନେଲା ବୋଧେ, ତା' ସହିତ ମୋର ଏ ମିଳାମିଶାଟା ଜମେ ଯୌନ କ୍ଷୁଧା ଆଡ଼କୁ ପଡ଼ରେ ସଜମିତ କଲଣି । ଯେଉଁଟା କ ବନା ଦ୍ୱିଧାରେ ମୁଁ ପ୍ରକାଶ୍ୟ ଭାବେ ଘୋଷଣା କର ପାରୁଚ । ବିବାହ ପୂର୍ବରୁ ଆମର ଏ ମିଳାମିଶାଟା ସମାଜ ପାଇଁ ଯେ ନିଶ୍ଚିତ ଭାବରେ ଏକ ସ୍ନେହ କାରବାର ଏଥିରେ ସନ୍ଦେହ ନାହିଁ ।

ମାତ୍ର ମୁଁ ତାର ସେହି ସନ୍ଦେହକୁ ମୋଚନ କର ନେଇ ଅତି ଅସହଷ୍ଣୁ ଗଳାରେ କହିଲି, ହଁ, ସ୍ନେହ ବ୍ୟାପାର ନୁହେଁ ତ ଆଉ କ'ଣ ଇଏ··· ଘରେ ସମସ୍ତେ ଜାଣନ୍ତି ଯେ ଜଣେ ପଦସ୍ଥ ଅଫିସରଙ୍କ ଝିଅକୁ ଖୁବ୍ କମ ସମୟ ପାଇଁ ମୁଁ ଟ୍ୟୁସନ କରିବାକୁ ଯାଉଛୁ । ଟ୍ୟୁସନରେ ଏତେ ବିଳମ୍ବ ହୋଇ ଯିବାଟା ନହାତ ଅପ୍ରାସଙ୍ଗିକ ନୁହେଁ କ ?

ଏକ ବିରକ୍ତି ସୂଚକ ସ୍ୱରରେ ଅଶୋକ ପାଟିରୁ ଏକ ସଂକ୍ଷିପ୍ତ ଉତ୍ତର ଖସି ଆସିଲା, "ତା' ହେଲେ ତମେ ଯାଉନ··· "

ଅଶୋକ ସ୍ୱରଟା ମତେ ଏତେ ବେଖାପ୍ ଶୁଣାଗଲା ଯେ ମୁଁ ବିରକ୍ତ ନ ହୋଇ ରହି ପାରଲିନ । ବଡ଼ ଅଶାନ୍ତିର ସହିତ କହିଲି, ମୋ ଯିବା ନ ଯିବା ସମ୍ପୂର୍ଣ୍ଣ ମୋ ଉପରେ ନିର୍ଭର କରୁଚ ଅଶୋକ ! ମୋ ଯିବା ପାଇଁ ତମେ ଏତେ ବ୍ୟସ୍ତ କାହିଁକ ମୁଁ ମୋଟେ ବୁଝି ପାରୁନ ।

କଥାରେ ମୋର ନିଶ୍ଚିତ ଆଘାତ ପାଇଲା ଅଶୋକ । କିନ୍ତୁ ମୁହଁରେ ତାର କୌଣସି ବିରକ୍ତି ସୂଚକ ଭାବ ପରିଲକ୍ଷିତ ହେଉ ନ ଥିଲା । ମୋର ଏତେ କଟୁ ଉକ୍ତି ବକ୍ତବ୍ୟ ସତ୍ତ୍ୱେ ଓଠରେ ତାର ସେଇ ଚିରନ୍ତନ ବେପରୁଆ ପୁଞ୍ଚଟିକୁ ଅକ୍ଷତ ରଖି କହିଲା, "ମୋର ଏ ଅନଧିକାର ଚର୍ଚ୍ଚା ପାଇଁ ଆଶା କରେ କ୍ଷମା ଦେବ ।"

କେଜାଣି କାହିଁକ ଅଶୋକର ଏଇ କଥା ପଦକ, ମୋ ଦୃଷ୍ଟିରେ ଅଶୋକକୁ ଏକାନ୍ତ ଅସହାୟ ପରି ମନେ ହେଲା । ମନେ ହେଲା ମତେ, ଯେମିତ ଗୋଟାଏ ଆକସ୍ମିକ ଯନ୍ତ୍ରଣାରେ ସେ ଭଜ ଭଜି ଯାଉଚ । ଭାବିଲି ଅଶୋକ

ମନରେ ଦୁଃଖ ଦେଇ ମୁଁ ଭୁଲ କରୁଛି । ମୋର ଯିବା ନ ଯିବାରେ ତାର ବା ସ୍ୱାର୍ଥ କ'ଣ ? ମୋ ସ୍ୱକଣ୍ଠର କଣ୍ଟିନ୍ୟୁଟି ରକ୍ଷା କରିବା ଲଗି ତାର ଏତେ ଚେଷ୍ଟା । ତାର ଜଗୁଆରେ ପ୍ରଭାତ ହୋଟେଲରେ ମୋର ଏ ସ୍ୱକଣ୍ଠ ଖଣ୍ଡକ ।

ଅଗତ୍ୟା ମୁଁ ଜାରବରେ ଠିଆ ହୋଇ ରହିଥିବାବେଳେ, ଅଶୋକ ତାର ଅର୍ଦ୍ଧ ଦଗ୍‌ଧ ସିଗାରେଟ୍‌ଟାକୁ ଜୋତା ତଳେ ଚାପି ଦେଇ ବଡ଼ ବଡ଼ ପାହୁଣ୍ଡରେ ଆଗେଇ ଯାଉଥିଲା ଅଗକୁ....ଆଗକୁ...।

ରାସ୍ତାଟା ସ୍ୱା ଭିତରେ ପୁରାପୁରି ଜନଶୂନ୍ୟ ହୋଇ ଗଲଣି । ସେ ଜନଶୂନ୍ୟ ରାସ୍ତା ଉପରେ ଆମର ଏ ପ୍ରକାର ଗଡ଼ବଡ଼ ସିନେମାର ସୁଟିଂ ପରି ମନେ ହେଉଥିଲା । ତଥାପି ସେ ଅଭିନୟ ଭିତରେ ଦେଇ ମତେ ପହଁଚିବାକୁ ପଡ଼ିଲା ଓ ତା ଠାରୁ ଉତ୍ତର ଆଶା କରି ପଚାରିଲି, ତମେ ତ ଆମ ଘର କଥା ଜାଣିଚ, ଏତେ ରାତିରେ ମୁଁ ଯିବା ପାଇଁ ବୋଉ ହଁ କରିବନି ?

ଅଶୋକ ହସିଲା ଓ ଆଉ ଖଣ୍ଡେ ନୂଆ ସିଗାରେଟ୍‌ରୁ ଗୋଟାଏ ଅଚ୍ଛନ୍ନ ଧୋଇ ନିଜ କହିଲା, ବୁଝିଲ ପଦ୍ମା ! ସ୍କୁଲ ପଢ଼ିବା ବେଳର ଫ୍ରକ୍ ପିନ୍ଧା ଗ୍ରେଟ ଟ୍ୱିଅଷ୍ଟିଏ ପରି ବାଳକା ସୁଲଭତା ଦେଖାଇ ମତେ ବୋକା ବନାଅନା । ସନ୍ଧ୍ୟା ବେଳରୁ ଟ୍ୟୁସନ କରିବାକୁ ଆସି, ଯିଏ ବ୍ରିଡ଼ି ସ୍ୱକଣ୍ଠକୁ ଭୁଲାଇ ପାରୁଚ, ସେ କ'ଣ ଆଉ ଘଣ୍ଟେ ଦି' ଘଣ୍ଟା ବିଳମ୍ବ ହୋଇ ଯିବାର କାରଣ ଦର୍ଶାଇ ପାରିବନି ?

ଅଶୋକର ଏ ଭଳି ତାତ୍ସଲ୍ୟ ହଚାରରେ ମୋ ଆଖି ଛଳ ଛଳ ହୋଇଗଲା । କେତେ ଥର ମୁଁ ତାକୁ ଆଉ ବୁଝାଇ କହିବି ଯେ, ଟ୍ୟୁସନ ସ୍ୱକଣ୍ଠର ଅତି ବେଶୀ ହେଲେ ମାତ୍ର ଶହେ ଦେଢ଼ ଶହ ଟଙ୍କାରେ ପରିବାରକୁ ପୋଷିବା ସମ୍ଭବ ହେବନି ଜାବି, ବିପଦ ହେଲେ ବି ସାଢ଼େ ତିନିଶହ ଟଙ୍କାର ଏ ରାତ୍ରି ସ୍ୱକଣ୍ଠକୁ ବାଛି ନେଇଛି ମୁଁ ଜାଣି ଜାଣି । ସ୍ୱା ବୋଲି ସେଇ ସୁଯୋଗ ନେଇ ଏତେ ଦୀର୍ଘ ସମୟ ବାହାରେ ରହିବା ମୋ ପକ୍ଷେ ସମ୍ଭବ କି ?

ବୋଉ ପକ୍ଷାଘାତ ରୋଗୀ ନ ହୋଇ ଚାଲି ବୁଲି ପାରୁଥିଲେ ବି ଯେତେ ଅଭାବ ହେଉ ପଛେ ମତେ ଏଇ ନ୍ୟୂନ ସ୍ୱକଣ୍ଠ କରିବାକୁ ପଡ଼ି ନ ଥାନ୍ତା । ମୋର ଚାନ୍ସରେ ହୁଏତ ଆଜି ବାପାଙ୍କର ମସ୍ତିଷ୍କ ବିକୃତି ଦେଖା ଦେଇଛି । ଠିକ୍ ଟାଇମ୍‌ରେ ସେ ଔଷଧ ନ ଖାଇଲେ ବାଇଲା ହୋଇ ପଡ଼ୁଛନ୍ତି । ବୋଉ ରୋଗାକ୍ରାନ୍ତ ହେଲେ ବି ସମସ୍ତ ଜ୍ଞାନ ହରେଇ ବସିନି । ଆଉ "ଆଶା" "ରେଖା" କେଡ଼େ ଟିକି ଟିକି ଭଉଣୀ ଦି' ଟି ! ଜାହାକୁ ବିଳମ୍ବ ହୋଇ ଯିବାର କୈଫିୟତ୍ ଦେବି ମୁଁ ? ସମସ୍ତେ ତ ମତେ ଅପେକ୍ଷା କରି ବସିଥିବେ, ମୁଁ ଗଲେ ସେମାନଙ୍କୁ ରାନ୍ଧି ଖାଇବାକୁ ଦେବି ।

ତଥାପି ଅଶୋକ ତା' କଣ୍ଠରେ ଶ୍ଳେଷ ମିଶାଇ କହୁଥିଲା, "ତମର ଅନ୍ତତଃ ଏତକ ଜାଣି ରଖିବା ଉଚିତ୍ ଯେ, ପ୍ରଭାତ ଆମର ଅନ୍ୟମାନଙ୍କ ପରି ଆଜେ ବାଜେ ସାଙ୍ଗ ନୁହେଁ । ତମର ଏ ସୁବିଧା, ମୋ କମ୍ପାର୍ଟମେଣ୍ଟ ପଛରେ ଖଟାଉଥିବା ସମସ୍ତ ଟଙ୍କା, ଏହା କିଛି କମ୍ ଅବଦାନ ନୁହଁ । ସତରେ ଆମେ ତା' ପାଖରେ ଋଣୀ । ତା' ପୂଅର ଏକୋଇଶିଆ ଭୋଜିରେ ଆମର ଅନୁପସ୍ଥିତ, ନିଶ୍ଚୟ ଏକ ଅପ୍ରୀତିକର ପରିସ୍ଥିତି ସୃଷ୍ଟି କରିବ ।"

ମୁଁ ଏଥର ସହଜ ହେବାକୁ ଚେଷ୍ଟା କଲି ଓ ବିନୟର ସହିତ କହିଲି, ଦେଖ ଅଶୋକ ! ଖାଲି ଆମେ ଋହେଁ କାହିଁକି ଆମ ପରି ଆହୁରି କେତେ କେତେ ବେକାର ହତଭାଗ୍ୟ ଓ ଅସହାୟ ଲୋକମାନେ ବି ପ୍ରଭାତ ପାଖରେ ଋଣୀ । କିନ୍ତୁ ସେ କଥା କ'ଣ ସ୍ୱୀକାର କରିବା ବେଳ ଇଏ ? ତମେ ତ ଆମ ଘର କଥା ଜାଣିଚ, କି ଉପାୟରେ ଯାଇ ପାରିବି କହିଲ ?

ଅଶୋକ କଥାରୁ ଜାଣି ପାରିଲି, ଯେମିତି ମୋ ସହିତ ପ୍ରଥମ ଆଳାପରୁ ସେ ମୋତେ ଉପାୟ ବତାଇବାକୁ ଆସିଥିଲା । ମୁଁ ଆଉ ଅନ୍ୟ ଉପାୟ ନ ପାଇ, ଶେଷ ଅନିଚ୍ଛା ସତ୍ତ୍ୱେ କଥାରେ ତାର ରାଜି ହୋଇ, ଶେଷକୁ ଦୋକାନରୁ କିଛି ଖଜା, ବଡ଼ ପାଉଁରୁଟି ଦି'ଟା ଓ ଗୋଟାଏ ବଟର ପ୍ୟାକେଟ କିଣି ଘରକୁ ଫେରିଲି !

ପ୍ରକୃତରେ ସମୟ ହୋଇ ଯାଇଥିଲା ଅନେକ ଡେରି । ଘର ଭିତରେ ସମସ୍ତଙ୍କ ମୁହଁରେ ଏକ ଦୀର୍ଘ ପ୍ରତୀକ୍ଷା ଜନିତ କ୍ଳାନ୍ତି ମୁଁ ଅନୁଭବ କରୁଥିଲେ ବି, ସେ କ୍ଳାନ୍ତିକୁ ମୁଁ ଅପନୋଦନ କରିବା ପାଇଁ ମୋ'ର କୌଣସି ଉପାୟ ନ ଥିଲା । ବୋଉ ମୁହଁ ଉପରେ ଛାଇ ରହିଥିବା ଏକ ଅହେତୁକ ସନ୍ଦେହକୁ ଦୂର କରିବା ପାଇଁ ମୁଁ ଯେ ସନ୍ତୋଷଜନକ ଉତ୍ତର ଦେଇ ପାରିବିନି ଏ କଥା ମୁଁ ସ୍ପଷ୍ଟ ଜାଣି ପାରୁଥିଲି ।

ତଥାପି ବୋଉର ଅନୁନାସିକ ସ୍ୱରର ବକ୍ତବ୍ୟ ଶୁଣିବା ଆଗରୁ ମୋତେ ମିଛରେ କୈଫିୟତ୍ ଦବାକୁ ପଡ଼ିଲା ଯେ, ଟ୍ୟୁସନ କରୁଥିବା ଝିଅଟିର ଇଣ୍ଟରନାଲ ପରୀକ୍ଷା ଥିବା ଯୋଗୁଁ ମତେ କିଛି ସମୟ ଅଧିକା ପଢ଼େଇବାକୁ ପଡ଼ିଲା ଓ ଆଉ କିଛି ସମୟ ଅଧିକା ପଢ଼େଇବା ଅନୁରୋଧକୁ ପ୍ରତ୍ୟାଖ୍ୟାନ କରି ନ ପାରି, ପୁଣି ଥରେ ତା' ପାଖକୁ ମତେ ଏଇଲେ ଯିବାକୁ ପଡ଼ିବ ।

ଆଶା ଓ ରେଖା ନିଦ ମଳ ମଳ ଆଖିରେ ପାଉଁରୁଟି ଖଜାର ପୁଡ଼ିଆ ଛଡା ଛଡ଼ି ହୋଇ ଖାଉଥିବାବେଳେ, ମୋର ଆଉ ଥରେ ଯିବା କଥା ଶୁଣି ସେମାନେ ଆଶ୍ଚର୍ଯ୍ୟ ହୋଇ ଯାଉଥିଲେ ବି ଚୁପ୍ ହୋଇ ରହିଗଲେ । କାରଣ ସେମାନଙ୍କ ବୟସର ଶିଶୁମାନେ ସନ୍ଦେହ ବି କରି ପାରନ୍ତି ନାହିଁ ଯେ ବଡ଼

ମଣିଷ ମାତ୍ରେ ମିଛ କହନ୍ତି ବୋଲି । କିନ୍ତୁ ବୋଧେ ଠିକ୍ ଜାଣି ପାରୁଥିଲି ମୁଁ ସତ କଥାଟା କହୁ ନାହିଁ । ବରଂ ଏଇ ଆପାତ-ସତ୍ୟଟିକୁ ସତ୍ୟ ବୋଲି ଗ୍ରହଣ କରି ନେବା ପାଇଁ ବାଧ୍ୟ ହୋଇଥିଲି, କେବଳ ଉପାୟଶୂନ୍ୟ ହୋଇ । ଯେଉଁଠି ଗୋଟିଏ ନାରୀର ଅସହାୟ ପରିବାରର ସହାୟ ହେଉଛି ଗୋଟିଏ ଚିଠି, ତା ପାଇଁ ଆଉ କେଉଁ କଳ୍ପନା କ'ଣ ?

ଘରର ସମସ୍ତ ଦାୟିତ୍ୱ ସମାପନ କରି ଦେଇ ଅଶୋକ ପାଖରେ ପହଞ୍ଚିଲି ବେଳକୁ ମାତ୍ର ପଚିଶ ମିନିଟ୍ ସମୟ ଅତିକ୍ରାନ୍ତ ହୋଇଚି । ଏଇ ସ୍ୱଳ୍ପ ସମୟ ଭିତରେ ବି ଅଶୋକର ଧୈର୍ଯ୍ୟହୀନର ପ୍ରଚୁର ସଂକେତ ମୁଁ ଅନୁମାନ କରିପାରୁଚି । ମୋର ଉପସ୍ଥିତି ତାର ଅଯଥା କ୍ରୋଧକୁ ନିୟନ୍ତ୍ରିତ କରୁଥିଲେ ବି ସେଇ କ୍ରୋଧ ମିଶ୍ରିତ ସ୍ୱରରେ ସେ ମତେ କହୁଚି, "ଆସିବା ଟିକିଏ ଯଥେଷ୍ଟ ଡେରି ହୋଇନି, ତଥାପି ଡେରି ହୋଇ ଯାଉଥିବାର କାରଣ ଦର୍ଶାଇ ଗୋଟେ ରିକ୍ସା ଚାଲି ଗଲା । ବାକି ଗୋଟାକରେ ଆମେ ଦୁହେଁ..."

ଅଟକି ଯାଉଥିବା ଅଶୋକର ସ୍ୱରରେ ପୁରୁଷତ୍ୱ ଓ ତଦ୍‌ଜନିତ ସଂଯମ ସ୍ପଷ୍ଟ ହୋଇ ଉଠୁଥିଲେ ବି, ମୋ ଆଶଙ୍କା ଅନୁଯାୟୀ ଅଶୋକର ଯେ ଏହା ଏକ ଚକ୍ରାନ୍ତ, ମୋ ପାଇଁ ଆଉ ଅଜଣା ରହିଲାନି । କିନ୍ତୁ ମୋର ଏଠି ଉପାୟ କ'ଣ ? ଅଶୋକ ତ ଚପଳ ଶିଶୁ ନୁହେଁ. ମାଙ୍କଡ଼ କୁମ୍ଭୀର ଗଳ୍ପରେ. ମାଙ୍କଡ଼ କଳିଜା ଛାଡ଼ି ଆସିଥିବାର କାରଣ ଦର୍ଶାଇ ଫେରି ଯାଇଥିବା ପରି, ମୁଁ ରୁମାଲଟେ, କି ମନି ପର୍ସଟା କି ସେଇ ଭଳି ଏକ ଦରକାରୀ ଜିନିଷ ଛାଡ଼ି ଆସିଥିବାର ବାହାନା ଦେଖାଇ ଏଠୁ ଲେଉଟି ଯିବା ସମ୍ଭବ କି ?

ଅଶୋକ କହୁଚି, ' ଚାଲ...ଯିବା ଖାଲି ଏବେ ଗୋଟିଏ ରିକ୍ସାରେ..."

ଏଠି କ'ଣ କହି ଅଶୋକ କବଳରୁ ରକ୍ଷା ପାଇବାକୁ ହେବ, ମୁଁ ଚିନ୍ତା କରି ପାରୁ ନ ଥିଲି । ସମ୍ପୂର୍ଣ୍ଣ ନୀରବ ଭାବେ ବ୍ୟାଧ-ଭୀତା ହରିଣୀ ପରି ଅଶୋକକୁ ଚାହିଁ ରହିଲି ମୁଁ...ନୀରବ ଅଶୋକ ନିଶ୍ଚଳ ହୋଇ ଠିଆ ହୋଇ ରହି, ନିର୍ବିକାରରେ ସିଗାରେଟ୍ ଟାଣି ଚାଲିଚି... । କିନ୍ତୁ ଆଖି ଦୁଇଟା ବ୍ୟାଧର ଆଖି ପରି ଜଳି ଉଠୁଚି ବିଦ୍ୟୁତର ଆଲୋକରେ । ସେ ହିଂସ୍ର ଆଖି ଯେପରି ଆଦେଶ ଦେଉଚି, "ଉଠ ରିକ୍‌ସା ଉପରକୁ...ଆଉ ଡେରି କାହିଁକି.... ? ଭାବୁଚ କି ମୋ କବଳରୁ ରକ୍ଷା ପାଇ ଯିବ ତମେ ?"

ଘୃଣାରେ ମୁଁ ଶିହରି ଉଠିଲି । ଆଉ ସେଇ ଘୃଣିତ ଅବସ୍ଥାରେ ଅଶୋକ କେତେବେଳେ ଗୋଟାଏ ଝାଙ୍କରେ ମତେ ରିକ୍‌ସା ଉପରକୁ ଉଠେଇ ନେଲାଣି ମୋର ଖିଆଲ ନାହିଁ । ଆସ୍ତେ ଆସ୍ତେ ମୋର ସମସ୍ତ ଅବୟବରୁ ଶକ୍ତି କ୍ଷୀଣ ହୋଇ

ଆସୁଚ । ମୁଁ ଠିକ୍ ଭାବେ ଅଶୋକର କାର୍ଯ୍ୟକଳାପକୁ ଅନୁଭବ କରିବା ଅବସ୍ଥାରେ ଆଉ ନାହିଁ । ସେ ସଙ୍କୀର୍ଣ୍ଣ ସ୍ଥାନରେ ଏତେ ଲଗା ଲଗି ହୋଇ ବସିବା ଦ୍ୱାରା କଛୁଟା ବସ୍ତ୍ରସ୍ତ କଛୁଟା ଆତଙ୍କ ମତେ ଗ୍ରାସ କରବାରେ ଲଗିଚ । ଅଶୋକ ହାତର ଉଷ୍ମ ସ୍ପର୍ଶ କ୍ଷିପ୍ର ନିଃଶ୍ୱାସରେ ମୁଁ ଅତଷ୍ଟ ହୋଇ ଉଠୁଚ । ମୋର ଭୟ ବହ୍ୱଳିତ ଘୃଣିତ-ନୀରବ ଗୁହାରୀକୁ ଭୃକ୍ଷେପ ନକର ଗୋଟାଏ ଅନ୍ଧ ଉଗ୍ର ଲାଲ-ସାରେ ଗୋଟାଏ ପିଶାଚ ପର ଅଶୋକ ଉନ୍ମତ୍ତ ହୋଇ ଉଠିଚ··· । ମୋର ବାରମ୍ବାର ବାରଣରେ ଅଶୋକ ଆସ୍ତେ ଆସ୍ତେ ହୁଇସ୍କିର ନିଶା କାଟି ଏକ ଅନମନସ୍କ ଉତ୍କଣ୍ଠାରେ କହୁଚ, ମୋର ଅନେକଦନର ସ୍ୱପ୍ନ ଆଜ ବାସ୍ତବ ହେବାକୁ ଯାଉଚ ପଦ୍ମା··· ପ୍ଲିଜ୍ ମତେ ଏଥିରୁ ବଂଚତ କରନ୍ତନ । କୋଉ ପ୍ରଗ୍ରାଚ ଐତିହାସିକ ପୂର୍ବ ଏକୋଇଶିଆ ଭୋଜ ଖାଇବାକୁ ଆମେ ଯାଉନେ । ଯାଉଚେ ବନ୍ଦୋବସ୍ତ କର ଆସିଥିବା ହୋଟେଲର ସବୁଠାରୁ ଗୋଟିଏ ମନୋରମ କକ୍ଷକୁ···· ।

ମୋର ଉପାସ୍ଥିତାନ କରୁଣ ଆର୍ତ୍ତ ଚିତ୍କାରରେ ଟ୍ୟାକ୍ସୀଟା ହଠାତ୍ ଅଟକ ଗଲା ଯେମିତ··· । ତଥାପି ଅଶୋକର ହିଂସ୍ର ଆକ୍ରମଣରୁ ମୁଁ ରକ୍ଷା ପାଇ ପାରୁନ । ବାରଣ କରବାର ନିଷ୍ଫଳ ଚେଷ୍ଟାରେ ବିଡ଼ମ୍ବିତ ହେଉଚ ମୁଁ ଥରକୁ ଥର ।

ଟ୍ୟାକ୍ସୀର ପୁନଃ ଗତିବେଗ ତଳେ ମୋର ସକଳ କାରୁଣ୍ୟ ଆର୍ତ୍ତ ଚିତ୍କାର ଶୂନ୍ୟରେ ମିଳେଇ ଯାଉଚ । ଅଶୋକ ଅଧିକ ହିଂସ୍ର ହୋଇ ମୋ ବାରଣକୁ ଦମନ କରବା ପାଇଁ ପକେଟ ଭିତରୁ ଗୋଟାଏ ଚକ୍ ଚକ୍ ଛୁରୀ ଦେଖାଇ ମତେ ଭୟ ଦେଖାଉଥିବା ବେଳେ, ମୁଁ ଆଉ ଚେତନାବସ୍ଥାରେ ନଥିଲି ।

ଚେତନା ଫେର ପାଇଲି ପରେ ଜାଣିଲି, ଗୋଟାଏ ଭୟଙ୍କର ବିପଦରୁ ମୁଁ ରକ୍ଷା ପାଇ ଯାଇଚ ଏଇ ଟ୍ୟାକ୍ସୀବାଲାଟିର ଅଶେଷ କୌଶଳତାରୁ । ସେ ପୁଲିସ୍ ଷ୍ଟେସନ ପାଖେ ଟ୍ୟାକ୍ସୀ ରଖି ଖବର ଦେବା ପାଇଁ ଦଉଡ଼ିବାବେଳେ ଅଶୋକ ଟ୍ୟାକ୍ସୀରୁ ଖସି ଯାଇ କେଉଁଠି ଆତ୍ମଗୋପନ କରିଚ । ଅବଶ୍ୟ ସାଧାରଣ ଟ୍ୟାକ୍ସୀ ଚାଳକ ପକ୍ଷେ, ଏ ଅସାଧାରଣ ଚିନ୍ତା, ଆଶା କରବା ବୃଥା । ଯୋଗକୁ ଏଇ ଦ' ବର୍ଷମାସ ହେଲା ଗୃହରକ୍ଷୀ ବାହିନୀରେ ଯୋଗ ଦେଇ ଏ ସାହସିକତା ଅର୍ଜନ କର ପାରିଚ । ପୁଲିସ ଓ ଟ୍ୟାକ୍ସୀବାଲାଟିର ସାହାଯ୍ୟରେ ମୁଁ ଆସି ପହଞ୍ଚିଲି ବେଳକୁ ସମୟ କେତେ ହେବ, ଆଉ ଅନ୍ଦାଜ କରବା ଅବସ୍ଥାରେ ନ ଥିଲି । ମୋ ପାଇଁ ସମୟର ପେଣ୍ଡୁଲମ ଯେପର ଅଚଳ ହୋଇ ଯାଇଥିଲା ଅନେକ ଆଗରୁ ।

କିନ୍ତୁ ତା' ପରଦନ ମୁଁ ଚିରଚରିତ ରୀତରେ ହୋଟେଲରେ ପହଞ୍ଚନ୍ତେ, ହୋଟେଲର ମାଲିକ ପୂର୍ବ ପର ତାଙ୍କ ବିନମ୍ର ସ୍ୱରରେ ମତେ କହିଲେ, "ଆଉ

ଜଣେ ନୂଆ କ୍ୟାଣ୍ଡିଡେଟ୍ ଅଶୋକ ବାବୁ ଆଣିଛନ୍ତି ଆପଣଙ୍କ କାମ ଚଳାଇବାକୁ । ଆପଣଙ୍କ ପୂର୍ବ ଦିନ ଗୁଡ଼ିକର ପାରିଶ୍ରମିକ ଏଇ ରଖନ୍ତୁ ।”

ଝଲକାଏ ରକ୍ତ ମୋ ଗୁଣ୍ଡ ଭିତରୁ ଖସି ଆସିଲା ଯେମିତି··· । ଅଜଣା ଏକ ଉତ୍ତେଜନାରେ କମ୍ପି କମ୍ପି ଘରେ ଆସି ପହଞ୍ଚିଲା ବେଳକୁ, ସମସ୍ତଙ୍କ ଆଖିରେ ବିସ୍ମୟ । ଯିଏ ପ୍ରତିଦିନ ଘଣ୍ଟାକ ପାଇଁ ଯାଇ, ଦି ଘଣ୍ଟା ଭିତରରେ ଘରକୁ ଫେରେ, ତା’ ପକ୍ଷେ ଏତେ ଶୀଘ୍ର ଘରକୁ ଫେରି ଆସିବାଟା ଯେ କେବଳ ବିସ୍ମୟ, ତା’ ନୁହେଁ, ଅନେକ ବିପଦର କାରଣ ପରି ମନେ ହେଉଥିଲା । ସେ ବିସ୍ମୟର କୌତୂହଳ ଦମନ କରି ନ ପାରି ସମସ୍ୱରରେ ତେଣୁ ପଚାରି ଉଠିଲେ, “ତୁ ପଢ଼ାଇବାକୁ ଗଲୁନି କି ?”

ମୋ ଆଖିରେ ଚକ୍ ଚକ୍ କରୁ ଉଠୁଥିବା ମୁକ୍ତା ଭଳି ଲୁହର ଦୁଇ ବିନ୍ଦୁ ସେମାନଙ୍କୁ ସୂଚେଇ ଦେଉଥିଲା ଯେ, ମୁଁ ଆଉ କୌଣସି ଦିନ ବି ପଢ଼ାଇବାକୁ ଯିବିନି ।



# ଅରଣ୍ୟ-ଜାତ

## ଡକ୍ଟର ପୂର୍ଣ୍ଣାନନ୍ଦ ଦାନୀ

ସେ'ଦିନ କୌଣସି ଏକ ଦୈନିକ ସମ୍ବାଦପତ୍ରରେ ଏକ ଚାଞ୍ଚଲ୍ୟକର ସମ୍ବାଦ ପ୍ରକାଶ ପାଇଥିଲା ଏବଂ ତାକୁ ପରିବେଷଣ କରାଯାଇଥିଲା ଦୃଷ୍ଟି ଆକର୍ଷଣକାରୀ 'ବକ୍‌ସ୍ ନ୍ୟୁଜ୍' ଆକାରରେ । ସମ୍ବାଦଟିକୁ ପଢ଼ିବା ମାତ୍ରକେ ମୋର ସ୍ମୃତିର ସମୁଦ୍ରରେ ଆନ୍ଦୋଳିତ ହୋଇଥିଲା ଅନ୍ୟ ଏକ ସ୍ମୃତି । ସମ୍ବାଦଟି ପ୍ରକାଶିତ ହୋଇଥିଲା ଏହିପରି—

: "ମଣିଷ ଜୀବନରେ ଏମିତି ବି ହୁଏ । ଯେ ଅତି ନିକଟତମ ସେ ଜୀବନ ମଧ୍ୟ ନିଏ । × × ଇସ୍ପାତ ନଗରୀରେ ଶ୍ରୀ ସିଂହ ଜଣେ ଇସ୍ପାତ କର୍ମଚାରୀ । ବିବାହ କରିଛନ୍ତି । ପୁତ୍ର ସନ୍ତାନର ପିତା ହୋଇଛନ୍ତି । ସ୍ତ୍ରୀଙ୍କ ସହିତ ଦିନେ ହେଲେ ତାଙ୍କର ମତାନ୍ତର ଘଟି ନାହିଁ । ଝଗଡ଼ା ହୋଇ ନାହିଁ । ସ୍ତ୍ରୀଙ୍କ ବ୍ୟବହାରରେ ମଧ୍ୟ କେବେ ତ୍ରୁଟି ହୋଇ ନାହିଁ । ଶ୍ରୀ ସିଂହଙ୍କର ବୟସ ମାତ୍ର ୩୨ (ବତିଶି) ଓ ସ୍ତ୍ରୀ ତାଙ୍କଠାରୁ ମାତ୍ର ୬ (ଛଅ) ବର୍ଷ ସାନ । ଗତ ୨୦ ତାରିଖ ରାତିରେ, ଶ୍ରୀ ସିଂହ ଖିଆପିଆ ସାରି ଶୋଇବାକୁ ଗଲେ । ସ୍ତ୍ରୀ ଶୋଇଲେ । ସାନ ପୁଅଟି ମଧ୍ୟ ଶୋଇଲା । ରାତି ପାହାନ୍ତାରେ ସ୍ତ୍ରୀ ଏକ ଦାଢ଼ୁଆ ଟାଙ୍ଗିଆରେ ଶ୍ରୀ ସିଂହଙ୍କୁ ନୃଶଂସ ଭାବେ ହାଣି ହତ୍ୟା କଲେ । ପୋଲିସ ଅନୁସନ୍ଧାନ କରି ମୃତ ସିଂହଙ୍କ ସ୍ତ୍ରୀ ଓ ସ୍ତ୍ରୀଙ୍କର ପ୍ରେମିକଙ୍କୁ ଗିରଫ କରିଛନ୍ତି । ପ୍ରେମିକଙ୍କ କଥାରେ ସେ ନିଜ ସ୍ୱାମୀଙ୍କୁ ହତ୍ୟା କଲେ । ତାଙ୍କର ଜଣେ ପ୍ରେମିକଙ୍କ ସହିତ ଗୁପ୍ତ ପ୍ରଣୟ ଥିଲା ବୋଲି ଶ୍ରୀ ସିଂହ ଭୁଲରେ ଚୁକା ସନ୍ଦେହ କରି ନ ଥିଲେ କି ଜାଣି ନ ଥିଲେ ।" *

ଏଇ ସମ୍ବାଦଟି ପଢ଼ିବା ପରେ ମୋର ସ୍ମୃତିରେ ଆନ୍ଦୋଳିତ ହୋଇଥିଲା 'କାହ୍ନୁ' । କାହ୍ନୁ ଦିନ-ମଜୁରିଆ । ଆମ ସହରରେ ଆସି ଝଟି

---

* ସମ୍ବାଦ (ବକ୍‌ସ ନ୍ୟୁଜ) : ଧରିତ୍ରୀ ଦୈନିକ – ୭ମ ଭାଗ—୨୬୩ ସଂଖ୍ୟା ତା ୩୧ । ୧ । ୧୯୮୧ ଶନିବାର

ଖାଏ । କଳାହାଣ୍ଡି ଜିଲାର କେଉଁ ଏକ ନିପଟ ମଫସଲରେ ଜନ୍ମ । ତା’ ଗାଁର ଚାରିପଟେ ଘେରି ରହିଛି କୁଆଡ଼େ ଅରଣ୍ୟର ଫୁଲ ଆଉ ଫଳ । ସେ ଅରଣ୍ୟରେ କୁଆଡ଼େ ଦିନରେ ବି ହେଟା ବାଘ ଏଣେତେଣେ ବୁଲେ । ସେହି ଅରଣ୍ୟରୁ ଜାତ ହୋଇଛି କାହ୍ନୁ ଏବଂ ସେ ଏକ ରପ୍ତାନି ଆମ ସହରକୁ । ବାପ ଅଛି ଗୋବରେ ଗୋବେ ବୋଲି ତାର ଜମି ନାହିଁ; ଅଛି ଚାଳଘର ଖଣ୍ଡେ । ଅଛନ୍ତି କେତୋଟି ଭାଇ ଭଉଣୀ । ସେମାନଙ୍କ ଗୁଣ୍ଡରେ ତୋରାଣି ମୁନ୍ଦିଏ ଦେବାପାଇଁ ଏ ସହରରେ ତାର ଜୀବନ-ସଂଗ୍ରାମ ।

ଆମ ଘରେ କାହ୍ନୁ ପାଣି ବହେ, କାଠ ଚିରେ; ଦରକାର ପଡ଼ିଲେ କେବେ-କେବେ ଗୋଡ଼ ହାତ ଚିପି ଦିଏ, ଦେହର ଦରଜ ଟାଣେ । କେବେ କେବେ ତୋରାଣି କଂସେ ପିଇବାକୁ ଜୋର କଲେ, ‘ନାହିଁ’ ‘ନାହିଁ’ କହୁଁ କହୁଁ, ସେତିକିରେ ସନ୍ତୋଷ ତା’ର । ଯେତିକି ସରଳ ସେ, ସେତିକି ଅମାୟିକ । ଅଥଚ ଦେହରେ ପଶୁଟାକର ବଳ । ଖାଲି ଓଜନ ବୋହି ଦଶ କୋଶ ବାଟ ଚାଲିଯିବାର ଶକ୍ତି ଅଛି । ତେବେ କାହା ଦେହରେ ଅନ୍ୟାୟରେ ହାତ-ଟିପ ଶୁଖା ଦିଏ ନାହିଁ । କଳା ମଚ୍ ମଚ୍ ଦେହକୁ ତାର ଦେଖିଲେ, ଜଣେ ଘଡ଼ିଏ ରହିଯିବ ପର ମୁହୂର୍ତ୍ତରେ ଯେତେବେଳେ ସେ ବୁଝିଯିବ ଯେ, ତା’ ହୃଦୟଟା ଫୁଲଭଳି କୋମଳ, ସେତେବେଳେ ସେ ଜଣକ ତା’ ପ୍ରତି ଖାଲି ସ୍ନେହୀ ହୋଇ ଉଠିବ । ଏଇଭଳି ସେ କାହ୍ନୁ ।

ଦିନେ ସନ୍ଧ୍ୟାବେଳେ ମୋତେ ଭଲ ଲାଗୁ ନଥାଏ । କଲେଜରେ କଣ ଗୋଟେ ଉତ୍ସବ ଥିଲା । ସେଇଠୁ ଫେରିଥିଲି ଏବଂ ଦଉଡ଼ିଆ ଖଟରେ ଗଡ଼ୁଥିଲି । ଗୋଡ଼ ହାତରେ ଖାଲି ଦରଜ । ସ୍ତ୍ରୀଙ୍କୁ ବରାଦ କରିଥିଲି, କପେ କଡ଼ା-ମିଠା ଚା’ ପାଇଁ । ଏଇ ଅବସରରେ ପହଞ୍ଚିଲା କାହ୍ନୁ । ତା’ ନିଜ ଭାଷାରେ ପଚାରିଲା : “ବାବୁ, ଦେହରେ ଟିକେ ହାତ ବୁଲେଇ ଦେବି କି ?”

ମୁଁ କହିଲି : “ଆରେ, ତମେ ତ ଠିକ୍ ସମୟରେ ପହଞ୍ଚି ଯାଇଛ କାହ୍ନୁ ! ତମର ହିଁ ଲୋଡ଼ା ଥିଲା । ମୋ ଦେହ ହାତ କାହିଁକି ଖାଲି ବିନ୍ଧୁଛି...”

ମୁଁ ଏତିକି କହୁଁ କହୁଁ ମୋ’ ଗୋଡ଼ରେ ତା’ ହାତ ଲଗେଇ ସାରିଥିଲା କାହ୍ନୁ । ଅଳ୍ପ ସମୟ ପରେ ହିଁ ଆମ ଶ୍ରୀମତୀ କପେ ଚା’ ଧରି ପହଞ୍ଚିଲେ । ଚା’ କପ୍ ଧରି ମୁଁ କାହ୍ନୁକୁ ପଚାରିଲି : “ଟିକେ ଚା’ ପିଇବ କାହ୍ନୁ ?”

ମୁନା ଜିଭ କାହ୍ନୁ ତା’ ନିଜ ଭାଷାରେ ହିଁ କହିଥିଲା : “ଆମ ପାଇଁ ଚାହା କଣ ହେବ ବାବୁ ! ତୋରାଣି ମୁନ୍ଦିଏ ଲେଖେଁ ମିଳୁଥିଲେ, ହେଲା...’

ଠିକ୍ ସେତିକବେଳକୁ ମୋର ହଠାତ୍ ମନେପଡ଼ିଲା ଯେ, ଆଜି ସନ୍ତୋଷ ବାବୁଙ୍କର ବାହାଘର । ସେ ପୋଲିସ ବିଭାଗର ଲୋକ । ଯେତେହେଲେ ବି ଏକ ରକମ କିଛିଟା ବନ୍ଧୁତା ଜମିଯାଇଛି । ନିମନ୍ତ୍ରଣ ଥିଲା । ବାହାଘରକୁ ଯିବାର କଥା । ସ୍ତ୍ରୀଙ୍କୁ ଡାକି କହିଲି : "ସନ୍ତୋଷ ବାବୁଙ୍କ ଆଜି ବାହାଘର; ଯାଇ ତ ହେବ ନାହିଁ; ଭଲ ଲାଗୁ ନାହିଁ ଆଦୌ..."

ଶ୍ରୀମତୀ କହିଲେ : "ଦେହ ତ ଭଲ ନାହିଁ, ଯିବ କପରି ?"

ଏତିକବେଳେ କାହ୍ନୁ କହିଲା : "ବାବୁ, ସେଇ ସନ୍ତୋଷବାବୁ ତ, ଯିଏ ପୋଲିସଓ୍ୱାଲା । ବାବୁ, ସନ୍ତୋଷବାବୁ ଏ କି କଥା କରୁଛନ୍ତି ? ଦରବୁଢ଼ା ବୟସରେ ପୁଣି ଥରେ ବାହା ହେଉଛନ୍ତି ? ମୋ' ମନକୁ ତ ପାଉନାହିଁ ।"

ମୁଁ କାହ୍ନୁର ମୁହଁକୁ ଅବାକ୍‌ରେ ଚାହିଁ ରହିଲି । ପରେ କହିଲି : "କ'ଣ ହେଲା ଯେ କାହ୍ନୁ ? ଅନ୍ୟ ଲୋକେ କଣ ଦୁଇଥର ତିନିଥର ବାହା ହେଉ-ନାହାନ୍ତି ଜୀବନକୁ ପୁଣି ତ ବଞ୍ଚାଇବାକୁ ହେବ, ଚଳେଇବାକୁ ହେବ । ସନ୍ତୋଷବାବୁଙ୍କ ବୟସ ବା କେତେ ? ଏଇ ପଞ୍ଚଚାଳିଶ୍/ଛୟାଳିଶ୍ ବର୍ଷ ବା ହେବ । ଗତବର୍ଷ ତ ଦୁର୍ଭାଗ୍ୟକୁ ତାଙ୍କ ସ୍ତ୍ରୀ ଚାଲିଗଲେ । କେମିତି ବା ସନ୍ତୋଷବାବୁ ନିଃସଙ୍ଗ ଜୀବନଯାପନ କରନ୍ତେରେ କାହ୍ନୁ !"

"ବାବୁ !" କାହ୍ନୁ କହିଲା ଟିକେ କ୍ଷୋଭର ସହିତ "ତିନିଟା ପୁଅ ଝିଅ ତାଙ୍କର । ନିଃସଙ୍ଗ ହେଲେ କପରି ? ବଡ଼ ଝିଅଟିର ପୁଣି ବାହା ବୟସ ହେଲାଣି । ଏ ବୟସରେ ପୁଣି ବାହାଘର । ମୋ' କଥା ନ ମାନ ପଛେ ବାବୁ, ମୋ' ମନକୁ ତ ଆସୁ ନାହିଁ —"

ମୁଁ ମନେ ମନେ ଭାବୁଥିଲି : "କାହ୍ନୁ ତ କିଛି ଭୁଲ କହୁନାହିଁ ।" ତଥାପି ଯୁକ୍ତି ଛଳରେ କହିଲି : "କାହ୍ନୁ, ତମେ ତ ଜାଣ ଯେ, ଆଗେ ଲୋକେ ତ ଆହୁରି ବୟସରେ ବାହା ହେଉଥିଲେ । ଜଣେ ଜଣେ ପୁରୁଷ ଲୋକ ଏକା ସାଙ୍ଗରେ ତିନି ଚାରିଟା ବି ପତ୍ନୀ ରଖୁଥିଲେ ...'

କାହ୍ନୁ ସେତେବେଳକୁ ମୋ' ଗୋଡ଼ ଓ ପିଠିରେ ଦରଜ ଛାଣିବାପାଇଁ କଷି କଷି ବଳ ପ୍ରୟୋଗ କରୁଥିଲା ଏବଂ କହୁଥିଲା : "ଜାଣେ ଯେ ବାବୁ ! ଭୁଲ ବୁଝିବ ନାହିଁ ମୋତେ, ଛୋଟ ମୁହଁରେ ମୋର ବଡ଼ କଥା—ଆମ ପୁରୁଷ-ଜାତିଟା କେତେ ସ୍ୱାର୍ଥପର ସତେ ! ଅଧା ବୟସରେ ପତ୍ନୀ ହରେଇଲେ ବୋଲି, କଅଁଳ ବୟସର ଝିଅଟିଏ ପୁଣି ବାହା ହୋଇ ପଡ଼ନ୍ତି । ଗୋଟିକ ପରେ ଗୋଟେ । ସେଥିରେ ପୁଣି କେବେ କେବେ ଏକା ସାଙ୍ଗରେ ଦୁଇ ତିନିଟା ପତ୍ନୀ । ହେଲେ ନାରୀଜାତିଟା କଅଣ ବା ଦୋଷ କଲା ? ଯେ ସ୍ୱାମୀ ମରିଗଲେ, ବୟସ ଥାଉ ନା' ଚାହିଁକି,

ଘଣ୍ଟା ହେବେ ବୋଲି ବିଧବା ରହିବାକୁ ବାଧ । ତାଙ୍କ ପାଇଁ ତମ ପୁରୁଷ-ଜାତଟା ଆମ ଦେଶରେ ଆଇନ ଗଢ଼ି ଦେଇଛ: ତା' ନିଜ ପାଇଁ ସବୁ ମାଫ୍ ।" —ମୁଁ ସେତେବେଳକୁ ବୁଝି ପାରୁଥିଲି କାହ୍ନୁର ବୈପ୍ଳବିକ ଚିନ୍ତାଧାରାଟି କେଉଁଠି ? ସେ ତ କିଛି ଭୁଲ କହୁ ନାହିଁ । ଆଶ୍ଚର୍ଯ୍ୟ, କେଉଁ ଅରଣ୍ୟ-ନିବାସୀ କାହ୍ନୁ ! ଅଥଚ ତା' ମନ ଭିତରେ ନ୍ୟାୟ-ଅନ୍ୟାୟର ବିଚାରବୋଧ, ଆଇନ-କାନୁନର ଦର୍ପଣ, ହୃଦୟରେ ତା'ର କେଉଁ ଫୁଲର କୋମଳତା ।

ନା, ସେ'ଦିନ ଆଉ ଦେହ ଅସୁସ୍ଥତା ଯୋଗୁଁ ସନ୍ତୋଷବାବୁଙ୍କ ଦ୍ୱିତୀୟ ପକ୍ଷୀୟ ବାହାଘରକୁ ଯାଇ ହେଲା ନାହିଁ ।

. · ····ସେ'ଦିନ କାହ୍ନୁ ତା' କାମ ସାରି ଯିବାକୁ ବାହାରୁଥିଲା । ପତ୍ନୀଙ୍କୁ ଡାକି କହୁଥିଲି : "ହେଇ ଶୁଣ, ପଖାଳ ଅଛି ଯଦି, କାହ୍ନୁକୁ ଦିଅନା !" କାହ୍ନୁ ମନା କରି କହୁଥିଲା : "ନା' ବାବୁ ଘରେ ପଖାଳ ରଖି ଦେଇ ଆସିଛି···"

ଆଶ୍ଚର୍ଯ୍ୟ ହେଉଥିଲି ପୁଣି, କାହ୍ନୁର ଆତ୍ମାଭିମାନ ଦେଖି । ସହଜରେ କିଛି ଗ୍ରହଣ କରିବାକୁ ଭାରି ନାରାଜ । ହଠାତ୍ କଣ ଖିଆଲ ହେଲା, କାହ୍ନୁକୁ କହିଲି : "କାହ୍ନୁ ତମେ ତମ ଘରଟା ବସାଉନ କାହିଁକି ? ବାହାଟାଏ ହୁଅନ୍ତା, ଘରଟେ ବସନ୍ତା; ଘରଣୀଟିଏ, ଲକ୍ଷ୍ମୀଟିଏ ଆସନ୍ତା । ଘରଟା ହସି ଉଠନ୍ତା । ପିଲାପିଲି କିଚିରିମିଚିରି ହୁଅନ୍ତେ । ମନ ପୁରି ଯାଆନ୍ତା । ତମ ବୟସ ବା କେତେ ହୋଇ-ଥିବ ? ହେଲେ, ହୋଇଥିବ ପଇଁତିରିଶ ବା ଚାଳିଶ ବର୍ଷ !···"

ଲକ୍ଷ୍ୟ କଲି, କ୍ରମେ କାହ୍ନୁର ଦୁଇ ଆଖିରେ ଲୁହ ଯକେଇ ଆସୁଛି । ସେ ଆମ ଘରୁ ଚଞ୍ଚଳ ଚାଲିଯିବାକୁ ଉଦ୍ୟତ ।

କହିଲି : "ଆରେ, ଏ କ'ଣ କାହ୍ନୁ ! କ'ଣ ହେଲା ତମର ? ମୋ କଥାରେ କ'ଣ ତମେ ଦୁଃଖ କଲ ?"

: ' ନା ବାବୁ ! ଦୁଃଖ କରନ୍ତି କାହିଁକି ?"—ତା' ନିଜ ଭାଷାରେ କହୁଥିଲା କାହ୍ନୁ—"ତମେ ଯେଉଁ ଲକ୍ଷ୍ମୀ କଥା କହିଲ ବାବୁ ! ସେ ମୋର ଥିଲା । ଲକ୍ଷ୍ମୀ ମୋର ଥିଲା । ତାକୁ ବାହା ହୋଇଥିଲି, ପିଲାଦିନେ କେବେ । ଜାଣିଥିଲି, ସେ ମୋର ଲକ୍ଷ୍ମୀ । ଦିନେ କେବେ ବଡ଼ ହୋଇ ଆମ ଘରକୁ ଆସିଥାନ୍ତା । ମୋ ନିକଟକୁ ଆସିଥାନ୍ତା । ମୋ' ଲକ୍ଷ୍ମୀ । ହେଲେ ବିଧାତାଙ୍କ ଇଚ୍ଛା ହୁଏତ ନ ଥିଲା ଯେ, ସେ ମୋ' ନିକଟରେ ଆସି ରହୁ; ବରଂ ବିଧାତା ତାକୁ ନେଇଗଲେ ତାଙ୍କ ନିକଟକୁ । ନା, ମୁଁ ଆଉ ଦ୍ୱିତୀୟବାର ବାହା ହୋଇନାହିଁ; ଯୌବନରେ ବୁଢ଼ା ନୁହେ । ଲକ୍ଷ୍ମୀ ହିଁ ଥିଲା ମୋ' ପାଇଁ ଏକାନ୍ତ ନିଜର । ସେ ଯାଇଛି, ଆଉ

ନୁହେଁ···" କାହ୍ନୁର କଥାରେ କୋହ କ୍ରମଶଃ ଭରି ଉଠୁଥିଲା; ଆଉ ହୁଏତ କହିପାରି ନ ଥାନ୍ତା ସେ ।

"ବାବୁ ! ଯାଉଛ···" କହି ସେ ଚାଲିଗଲା ହଠାତ୍ ।

ହଁ, ସେହିଦିନଠାରୁ କାହ୍ନୁ ପାଇଁ ସେ ପ୍ରସଙ୍ଗ ମୁଁ ଆଉ କେବେ ପକାଇ ନାହିଁ । କାହ୍ନୁ ବି ନୁହେଁ ।

ସେ'ଦିନ ଦୈନିକ ସମ୍ବାଦପତ୍ରରୁ ସେଇ ଶୃଙ୍ଖଳକର ସମ୍ବାଦଟି ପଢ଼ିବା ପରେ ମୋର ସ୍ମୃତି ପଟ୍ଟରେ 'କାହ୍ନୁର' ସ୍ମୃତି ହିଁ ଆନ୍ଦୋଳିତ ହୋଇ ଉଠିଥିଲା ।

ଭାବୁଥିଲି : ଏ ପୃଥିବୀରେ ଶ୍ରୀ ସିଂହଙ୍କ ଭଳି ନିର୍ଲିପ୍ତ, ନିର୍ମାୟା ପୁରୁଷ ବି ଅଛନ୍ତି ଏବଂ ଅଛନ୍ତି ପୁଣି ଶ୍ରୀ ସିଂହଙ୍କ ପତ୍ନୀ ଭଳି ବିଶ୍ୱାସଘାତକୀ ପ୍ରବଞ୍ଚନାମୟୀ ନାରୀ ।

ଅଛନ୍ତି ପୁଣି ଏ ପୃଥିବୀରେ ସନ୍ତୋଷବାବୁଙ୍କ ଭଳି ଦେହଲାଳସୀ ପୁରୁଷ ଏବଂ ଅଛନ୍ତି ପୁଣି ଏ ପୃଥିବୀରେ ଅରଣ୍ୟ-ପ୍ରତିପାଳିତ 'କାହ୍ନୁ' ଭଳି ଉଦାର ପ୍ରଶାନ୍ତ ପୁରୁଷ, ଯିଏ ନାରୀକୁ ଦେଇ ଜାଣେ ହୃଦୟର କୋମଳ ଶ୍ରଦ୍ଧା ।



# ଅବନ୍ଧ୍ୟ ମହୀ

ଦୁର୍ଗାମାଧବ ମିଶ୍ର

ଛୁଥ···ଛୁଅ···ଛୁଅଅ···

ଇସ୍ ଛଅଟା ପଡ଼ିଲାନି । ଏଥର ହାରିବା ପ୍ରାୟ ନିଶ୍ଚିତ ।

ଲୁଡ଼ୋ ପାଲି ପାଖରେ ବସି କହି ଚାଲୁଥିଲେ ସରଳା । ଆଉ କେହି ସାଥିରେ ନାହିଁ ଖେଳିବାକୁ । ସେ ଚାରିଜଣଙ୍କ ପାଇଁ ଦାନ ପକାଇ ଖେଳୁଥିଲେ ।

ଅଧ ଦ୍ୱିପ୍ରହର ।

ସକାଳର ଜଳଖିଆ ଖାଇ ଦେଇ ସ୍ୱାମୀ, ପୁଅ, ପୁରୁଷ ଚାଲିଗଲେଣି କାମରେ । ବୋହୂ ଶୋଇଯାଇଛି—ଏ ଖରାର ଦାଉରୁ ମୁକ୍ତି ପାଇବାକୁ ବୋଧହୁଏ ।

ସରଳା ମଧ୍ୟ ଶୋଇଥିଲେ । ନିଦ ଭାଙ୍ଗିଗଲା । କେତେ ଆଉ ଶୋଇବେ ? ଦିନ ଗୋଟା ଗୋଟା କେବଳ ଶୋଇ ବସି କଟି ଯାଉଛି ତାଙ୍କର । କେତେବେଳେ ପ୍ରକୋଷ୍ଠର ସୀମିତ ପରିସର ମଧ୍ୟରେ ଆସବାବପତ୍ରର ସ୍ଥାନ ପରିବର୍ତ୍ତନ କରନ୍ତି । କିପରି ଲାଗୁଛି ପରିବର୍ତ୍ତିତ ପରିସ୍ଥିତି । ବେଶୀ ଦିନ ଗୋଟାଏ ସ୍ଥାନରେ ଖଟ ଚଉକି ଟେବୁଲ ପଡ଼ି ରହିଲେ ବ୍ୟସ୍ତ ଲାଗିଯାଏ ତାଙ୍କୁ । ବଦଳାଇ ଦିଅନ୍ତି । ଟିକିଏ ପରି-ବର୍ତ୍ତନରେ ଟିକିଏ ଶିହରଣ ମିଳେ । ସେଥିକ ସତେ ଯେପରି ତାଙ୍କର ଜୀବନର ପାଥେୟ । ସେ ଶିହରଣ ଟିକକ ପାଇବାପାଇଁ କେତେ ଚନ୍ତା ସେ କରନ୍ତି । କେତେ ପରିଶ୍ରମ କରନ୍ତି । କିନ୍ତୁ ଯାହା ପାଇଁ କରନ୍ତି, ତାଙ୍କର ଆଖିରେ ତାହା ଧରା ପଡ଼େ ନାହିଁ । ଆନନ୍ଦାତିଶଯ୍ୟାରେ ଝଲସି ଯାଏ ନାହିଁ ସେ ମୁହଁ—ଠିକ୍ ଏକ ଦାନବର ମୁଖା ସତେ ଯେପରି ସେ ମୁଖରେ ସତତ ଦୋଦୁଲ୍ୟମାନ ।

ଦୀର୍ଘ ନିଶ୍ୱାସ ପକାଇ, ସେ କେଉଁଦିନ ଲାଗିଯାଆନ୍ତି ଲୁଗା କାଚିବାରେ । ଲୁଗା କାଚିବା ପାଇଁ ଅଲଗା ଲୋକ ଥିଲେ ମଧ୍ୟ ସେ ଲୁଗା କାଚି ବସନ୍ତି । ଠାକୁର

ବସାଇ ପୂଜା କରିବାକୁ ଲୋକ ଥିଲେ ମଧ୍ୟ ସେ ଦିନେ ଦିନେ ଠାକୁର ଘରେ ପଶନ୍ତି ।

'ଇସ୍ କି ମଇଳା କରି ରଖିଛ ଠାକୁର ଘର ପଣ୍ଡିତଜୀ' କହି ଝାଡ଼ୁ ଧରି ଠାକୁର ଘର ସଫା କରି, ପାଣିରେ ଧୋଇ, ଠାକୁରଙ୍କ ମୂର୍ତ୍ତି ଓ ଫଟୋ ଟିକିନିଖି କରି ପରିଷ୍କାର କରନ୍ତି । ଚନ୍ଦନ ଶୁଖିଯାଇ ଲାଗିଛି ଯେ ଲାଗିଛି । ଟିକିଏ ଛଡ଼େଇ ଦେବାକୁ ହେଉ ନାହିଁ । ମୋଟା ମୋଟା ସିନ୍ଦୂର ଫଟୋର କାଚକୁ ନାଲି କରି ଦେଲାଣି । ନିର୍ମଳ କରି ଚନ୍ଦନରେ ଅଗୁରୁ ଦେଇ ପରିପାଟୀ କରି ସବୁ ସଜାନ୍ତି ସେ । ଠାକୁରମାନଙ୍କର ମଧ୍ୟ ସ୍ଥାନ ପରିବର୍ତ୍ତନ ହୁଏ । ବେଶୀଦିନ ତଳ ଥାକରେ ରହି ଯାଇଥିବା ଗଣେଶ ଉପର ଥାକକୁ ଆସନ୍ତି । ଉପର ଥାକରୁ ଲକ୍ଷ୍ମୀ ଆସନ୍ତି ତୃତୀୟ ଥାକକୁ । ନୂଆ କନା କାଟି କୃଷ୍ଣ ସିଲାଇ କରନ୍ତି । ସମସ୍ତଙ୍କୁ ପିନ୍ଧାଇ ହାର ଫୁଲରେ ମଣ୍ଡି ଦିଅନ୍ତି । କି ସୁନ୍ଦର ଦିଶେ ସେ ପରିବେଶ ! କିନ୍ତୁ ଦେଖିବ କିଏ ? ପ୍ରଶଂସା କରିବ କିଏ ? ସେ ନିଜେ ଦେଖିବେ, ନିଜକୁ ନିଜେ ସାବାସୀ ଦେବେ । ଆଉ କେହି ଆଖିଟେକ ଚାହିଁବେନି, ଚାହିଁଲେ ବି ତୁଣ୍ଡ ଖୋଲି କହିବେ ନି—ଭାରି ସୁନ୍ଦର ଦିଶୁଛନ୍ତି ଆଜି ଠାକୁର ।

କେତେଦିନ ଆଉ ଠାକୁର ବସାଇବେ ? ପୁଣି ପଣ୍ଡିତଜୀ ସେଠାରେ ରାଜତ୍ୱ କରନ୍ତି । ସରଳା ପଶନ୍ତି ରୋଷାଇ ଘରେ ।

ଓଃ, ଶାଗଟା ଟିକିଏ ମହୁରେ କରିଥିଲେ ହୋଇ ନଥାନ୍ତା ? ଖାଇଲା-ବେଳକୁ ତ କୁଆଁପଥର ହୋଇ ଯାଇଥିବ । ହଉ, ଉଠ, ଉଠ, ମୁଁ ମାଂସ ତରକାରିଟା କରିଦିଏଁ । ରାଜତ୍ୱ ସମର୍ପଣରେ ଉଠିଯାଏ । ସେଦିନ କେବଳ ମାଂସ ନୁହେଁ, ଛଅ ତିଅଣ, ନଅ ଭଜା କରି ଲଷ ବାଢ଼ନ୍ତି ସରଳା । କେହି ପଚାରନ୍ତି ନାହିଁ, ଏତେ ଭଲ ଭଲ ତରକାରି ତିଆରିବା ବିଦ୍ୟା ଶିଖିଲା କେଉଁଦିନ ? ଲୁହରି ଉଠନ୍ତି ସରଳା । ଆଉ ରୋଷେଇଘର ମାଡ଼ନ୍ତି ନାହିଁ ଅନେକ ଦିନଯାଏଁ ।

ବହିରେ ସ୍ୱାମୀଙ୍କର ଭାରି ଶ୍ରଦ୍ଧା । ଦିନେ ଦିନେ ସରଳା, ବହିଥାକରୁ ଧୂଳି ଝାଡ଼ି, ଲେଖକଙ୍କ ନାମ ଅନୁସାରେ ଓ ବହିର ଆକାର ଅନୁଯାୟୀ ସଜାଇ ରଖନ୍ତି ସମସ୍ତ ବହି ଆଲମାରିରେ । ବହିରେ କ୍ରମିକ ନମ୍ବର ଦେଇ ଗୋଟିଏ ବନ୍ଧେଇ ଖାତାରେ ଲେଖି ରଖନ୍ତି ବହିର ନାମ, ଲେଖକଙ୍କର ନାମ, ପ୍ରକାଶନର ବର୍ଷ ଓ ମୂଲ୍ୟ । ଭାବନ୍ତି, ଏଥର ହେଲେ ସ୍ୱାମୀ ସୁଖୀ ହେବେ । ତାଙ୍କ ପ୍ରତି କୃତଜ୍ଞତାର ଚାହାଣୀଟିଏ ଅନ୍ତତଃ ଦାନ କରିବେ । କିନ୍ତୁ ସ୍ୱାମୀ ଆଉ ଆଲମାରି ପାଖକୁ ଯାଆନ୍ତି ନାହିଁ । କୈଶୋର ସମୟରେ ଅନେକ ବହି କିଣିଥିଲେ ସେ । ବହି ଦେଖିଲେ

ସେ ଲୋଭ ସମ୍ବରଣ କରି ପାରନ୍ତି ନାହିଁ । କିନ୍ତୁ ସେ ବହି ଥରେ କିଣିଦେଲେ ଆଉ ପଢ଼ନ୍ତି ନାହିଁ । ସମୟ ନ ଥାଏ । ଛାତ୍ରାବସ୍ଥାରେ ପରୀକ୍ଷାର ଭୂତ ଚାପି ବସେ । ଛାତ୍ରାବସ୍ଥା ଅତିକ୍ରମ କରି ଚାକିରି କଲା ଦିନଠାରୁ ଚାକିରିର ଭୂତ ଏବେ ଚାପି ଧରିଛି । କହନ୍ତି, ଆଉ, ଟଙ୍କା ପଇସା ତ ନାହିଁ । ବହିତକ ଥାଉ । ଯେତେବେଳେ ସମୟ ପାଇବି, ପଢ଼ିବି । ଚାକିରିରୁ ଅବସର ନେଲାପରେ ଏଇମାନେ ହେବେ ମୋର ସାଥି । କିନ୍ତୁ ଆଖିର ଜ୍ୟୋତି ଯେ କ୍ରମଶଃ କ୍ଷୀଣ ହୋଇଯାଉଛି । କିଛି ସମୟ ଚଷମା ସାହାଯ୍ୟରେ ପଢ଼ିଦେଲେ ମୁଣ୍ଡ ବିନ୍ଧୁଛି, ବ୍ୟସ୍ତ ଲାଗୁଛି । ସରଳା ଜାଣନ୍ତି ଯେଉଁ ଦିନକୁ ପ୍ରତୀକ୍ଷା କରି ସ୍ୱାମୀ ଏ ପୁସ୍ତକ ସବୁ ଆହରଣ କରିଛନ୍ତି ସେଦିନ ଆଉ ପଢ଼ିବାକୁ ଶକ୍ତି ନ ଥିବ ଆଗ୍ରହ ନ ଥିବ । ତେଣୁ ସେ ତାଗିଦା କରନ୍ତି । ଆଉ ବହି କିଣ ନାହିଁ । ଦରମା ତ ଖାଇବାକୁ ଅଣ୍ଟୁ ନାହିଁ । ସେଥିରେ ପୁଣି ବହି ସଉକ !

ନିଜେ ଧରି ବସନ୍ତି ବହି ଖଣ୍ଡିଏ ପଢ଼ିବାକୁ । ବହିର ଅସରନ୍ତି ଭଣ୍ଡାର ଘରସାରା । ଯେଉଁଠି ଦେଖିବ, ବହି, ସମ୍ବାଦପତ୍ର, ଶନ୍ଦୁନ୍ନ ପତ୍ରିକା । ସବୁଥିରେ ସେହି ଏକା କଥା । ସେହି ରାଜନୈତିକ ସମୀକ୍ଷା, ଦୁର୍ନୀତି ଓ ଭ୍ରଷ୍ଟାଚାର । ଥରେ ଥରେ ଚାହିଁ ଦେଇ ଫିଙ୍ଗି ଦିଅନ୍ତି ସରଳା । କୌଣସି ଉପନ୍ୟାସ ଧରି ବସନ୍ତି । ସେଥିରେ ମଧ୍ୟ ନୂତନତ୍ୱ ନାହିଁ । ଏକା ପ୍ରକାର କାହାଣୀ —ଅପରାଧ, ହିଂସାକାଣ୍ଡ, ନଗ୍ନ ପ୍ରେମ, ମେଲୋଡ୍ରାମା । ନରୁବା ଅ-କାହାଣୀ । ଯାହାର ଅର୍ଥ ବୁଝନ୍ତି ନାହିଁ ସରଳା । ସେ ଉପନ୍ୟାସ ଅପଢ଼ା ରହିଯାଏ ।

ଧରି ବସନ୍ତି ଲୁଡ଼ୋ ପାଲି । ଚାରିଜଣଙ୍କ ପାଇଁ ଜଣେ ସିଏ ନିଜେ ଦାନ ପକାନ୍ତି । କେହି ତାଙ୍କ ଉପରେ ବିରକ୍ତ ହୁଅନ୍ତି ନାହିଁ ମାରିଦେଲେ ଅନ୍ୟର ଗୋଟି । କାହିଁକି ନା, ଅନ୍ୟ ଲୋକ ତ ସେ ନିଜେ । ନିଜେ ମାରିବେ ନିଜର ଗୋଟିକୁ ଅନ୍ୟ ପାଇଁ ବା ନିଜ ପାଇଁ ଦାନ ପକାଇ । ସେଥିରେ କାହା ପାଇଁ ମନ ଦୁଃଖ ନାହିଁ ଅଥଚ ସବୁରି ପାଇଁ ମନ ଦୁଃଖ । ଜିତିଲେ ମଧ୍ୟ ଅତିମାତ୍ରାରେ ଆନନ୍ଦ ନାହିଁ । କାରଣ ସେ ଗୋଟିଏ ହାତରେ ଜିତିଛନ୍ତି, ଅଥଚ ଅନ୍ୟ ହାତ ପାଇଁ ଦାନ ପକାଇ ହାରିଛନ୍ତି । ଦୁଃଖେଷୁ ଅନୁଦ୍‌ବିଗ୍ନମନା, ସୁଖେଷୁ ବିଗତସ୍ପୃହ । ଅତି-ମାନସ ସ୍ତରରେ ବିଚରଣ କରିବାର ପୂର୍ବାବସ୍ଥା ।

କିନ୍ତୁ ଆଜି କଅଣ ହେଉଛି, ଛଅ ପଡ଼ୁନାହିଁ । କୌଣସି ଗୋଟିଏ ଗୋଟି ଘରୁ ବାହାରି ପାରୁ ନାହିଁ । ବ୍ୟସ୍ତ ଲାଗିଗଲାଣି ।

ଉଠିଯାଇ ଘଣ୍ଟି ଚିପିଦେଲେ ସରଳା ।

—ପାଣି ଗିଲାସେ ଆଣିଲ ।

କହି ପୁଣି ଖେଳରେ ମନଦେଲେ ।

ପାଣି ପିଇ ସାରିଲା ବେଳକୁ ମଧ୍ୟ ଛୁଅ ପଢ଼ୁନାହିଁ । ଚୁପ୍ କରି ଲୁଡ଼ୋ ପାଲି ବନ୍ଦ କରିଦେଲେ ।

କାନ୍ଥ ଘଣ୍ଟାରେ ସମସ୍ତ ଟିକ୍ ଟିକ୍ ଶୁଭୁଛି । ମାତ୍ର ଏଗାରଟା । ଦେଢ଼ଟା ବେଳକୁ ସ୍ୱାମୀ ଆସିବେ । ଖାଇସାରି ଟିକିଏ ବିଶ୍ରାମ କରି ଅଢ଼େଇଟା ବେଳକୁ ପୁଣି ଅଫିସ ଫେରିଯିବେ । ଅଫିସ ସମସ୍ୟାରେ ମସ୍ତିଷ୍କ ତାଙ୍କର ଭାରାକ୍ରାନ୍ତ । କଥା ପଦେ କହିବାକୁ ମାନସିକ ପ୍ରସ୍ତୁତ ନାହିଁ । କଣ ଖାଇଲେ ଜାଣି ପାରନ୍ତି ନାହିଁ, ଭଲ ହୋଇଛି କି ନାହିଁ ଜାଣିବା ତ ଦୂରର କଥା ।

ସନ୍ଧ୍ୟା ହେଲେ ସମସ୍ତେ ଆସିବେ—ସ୍ୱାମୀ, ପୁଅ ଓ ପୁତୁରା । ଘର ଘର ପରି ଲାଗିବ । ଗୁ’ ପିଇ ଦି’ ପଦ ଇଆଡ଼ୁ ସିଆଡ଼ୁ କଥାବାର୍ତ୍ତା ହେଲା ପରେ ରାତ୍ରିଭୋଜନର ଘୋଷଣା । ତା’ପରେ ଯିଏ ଯାହା କୋଠରୀକୁ ସମ୍ବାଦପତ୍ରର ସାନ୍ଧ୍ୟ ସଂସ୍କରଣଟି ମାନ ଧରି ପଶିଯିବେ । ସ୍ୱାମୀ କ୍ଳାନ୍ତ । ବିଛଣାରେ ପଡ଼ୁ ନ ପଡ଼ୁ ନିଦ୍ରାଦେବୀ ତାଙ୍କୁ ଆଲିଙ୍ଗନ କରନ୍ତି । ସରଳାଙ୍କର ଆଲିଙ୍ଗନ ତାହା ନିକଟରେ କେତେ ଅସହାୟ, କେତେ ନ୍ୟୂନ !

ସକାଳ ଆସେ ପୁଣି, ସବୁଦିନ ପରି, କୌଣସି ପ୍ରତିଶ୍ରୁତିର ସ୍ୱାକ୍ଷର ନ ଥାଏ ସେଥିରେ ।

ଦିନେ ଦିନେ ଚିଠି ଲେଖିବସନ୍ତି ସରଳା । ଝିଅ ଆମେରିକାରେ । ତାକୁ ଚିଠି ଲେଖିବେ ସପ୍ତାହରେ ଥରେ ବା ଦୁଇଥର । ବଡ଼ପୁଅ ଗୁଜୁରାଟରେ । ସେ ଚିଠିର ଜବାବ ଦିଏ ନାହିଁ, ବିଶେଷତଃ ବିବାହ ପରେ, ବୋହୂ ସାଜିଛି ତାର ଷ୍ଟେନୋଗ୍ରାଫ୍‌ର । କେତେବେଳେ କମିଥା ସେ ଲେଖିଦିଏ ଦୁଇଧାଡ଼ି । ଭାଇ, ଭଉଣୀ, ଦିଅର, ନଣନ୍ଦ ସମସ୍ତଙ୍କ ପାଖକୁ ନିଜ ଆଡ଼ୁ ଚିଠି ଦେଇ ଥକି ଯାଆନ୍ତି ସେ । କାହାଠାରୁ ଉତ୍ତର ପାଆନ୍ତି ନାହିଁ । କେତେ ଲେଖିବେ ' କଣ ଲେଖିବେ ?

କେତେବେଳେ ଧରି ବସନ୍ତି ଖାତା କଲମ । କବିତା ଓ ଗଳ୍ପ ଲେଖିବାର ଅଭ୍ୟାସ ଅଛି ତାଙ୍କର । ପ୍ରେରଣା ଆସେ । ଲେଖି ଦିଅନ୍ତି । କିନ୍ତୁ ଉଦ୍ଧାରିବାକୁ ମନ ହୁଏ ନାହିଁ । କି ପରିଶ୍ରମ ! ଉତ୍ତାରି ସାରି ପଠାଇଲେ, ପତ୍ରିକାର ସମ୍ପାଦକ କେତେବେଳେ ଛାପନ୍ତି, କେତେବେଳେ ନାହିଁ । କେହି କୁହନ୍ତି ନି । ଭଲ ଲେଖିଛ କି ଖରାପ ଲେଖିଛ । ସାମାନ୍ୟ ପୋଷ୍ଟକାର୍ଡ଼ଟିଏ ମଧ୍ୟ ପଠାଇବାକୁ ପାଠକମାନେ କୁଣ୍ଠିତ । ଅଥଚ ତାଙ୍କର ଠିକଣା ପ୍ରତି ଲେଖା ତଳେ ଆଜିକାଲିର ପ୍ରଥା ଅନୁଯାୟୀ

ମୁଦ୍ରିତ ଥାଏ । ଚିଠି ଦେବାକୁ ଇଚ୍ଛା କଲେ ଅକ୍ଳେଶରେ ଦେଇପାରନ୍ତେ । ଏହି ଉଦାସୀନତା ଦେଖି ଲେଖିବାକୁ ଇଚ୍ଛା ହୁଏ ନାହିଁ ତାଙ୍କର । ଅନେକ ଦିନ ଧରି କଲମ ଧରନ୍ତିନି ।

ଜୀବନର ଏହି ଗୁରୁତ୍ୱର ବହୁ ବହୁ ଅର୍ଦ୍ଧଶତାବ୍ଦୀ ପୂରିବାକୁ ଯାଉଛି ତାଙ୍କର । ଜୀବନର ବିଚିତ୍ରତା ନାହିଁ । ବଞ୍ଚିବା'ର ଆଗ୍ରହ ମଧ୍ୟ ନାହିଁ । ଏତେ ବଡ଼ ମହାନଗରୀ ମଧ୍ୟରେ ସେ ସମସ୍ତଙ୍କଠାରୁ ଅଲଗା - ସମସ୍ତଙ୍କଠାରୁ କେତେ ଦୂରରେ । ସେହି ଦୂରତାକୁ ସଙ୍କୁଚିତ କରିବାକୁ କେହି ଆଗେଇ ଆସି ନାହାନ୍ତି । କିଏ ବା ଆସିବ ? ନିଜ ନିଜ କାମରେ ସମସ୍ତେ ବ୍ୟସ୍ତ । ସରଳାଙ୍କର କିଛି କାମ ନାହିଁ । ତା ବୋଲି, ସରଳାଙ୍କର ମନ ବୁଝି ତାଙ୍କୁ ତାଙ୍କର ସ୍ୱନିର୍ବାଚିତ ନିଃସଙ୍ଗ କୋଠରୀ ମଧ୍ୟରୁ ଟାଣି ଆଣିବାପାଇଁ କେହି କଅଣ ନିଜର କର୍ତ୍ତବ୍ୟ ବୋଲି ମନେ କରିବେ ନାହିଁ ? ସେ ରହିଯିବେ ଏଇମିତି ମ୍ଳାନ ନିଷ୍ପ୍ରଭ ହୋଇ ? ସମସ୍ତେ ଯେପରି ତାଙ୍କର ଶତ୍ରୁ । ସମସ୍ତଙ୍କର ସେ ଯେପରି ଶତ୍ରୁ । ପୃଥିବୀରେ ତାଙ୍କର ଜଣେ ହେଲେ କେହି ମିତ୍ର ଥାଆନ୍ତା !!! ଅଛି କେଉଁଠି ବୋଧହୁଏ । କିନ୍ତୁ କାହିଁ ? କାହିଁ ସେ ପରମ ବନ୍ଧୁ —ଯେ ତାଙ୍କର ମୁହଁର ସମସ୍ତ ରେଖାରେ ବନ୍ଧୁତାର ମସୃଣ ପ୍ରଲେପ ବୋଳିଦେବ ।

ଓଃ, କୁକୁରଟା କାହିଁକି ଭୁକୁଛି ? ଟିକିଏ ଚିନ୍ତା କରିବାକୁ ମଧ୍ୟ ଦେବେ ନାହିଁ ଏମାନେ । ଓଃ...

ଫିସ୍ଟି...ଫିସ୍ଟି...ନୋ...ନୋ ଚୁପ୍‌କର ଭଲ ।

କିନ୍ତୁ ଭୁକିବା ଯେ କୁକୁରର ଧର୍ମ ସେ ସେଥିରେ ହେଳା କରିବ କାହିଁକି ? କେଉଁଠି ଟିକିଏ ଖୁଟ୍ କରି ହେଲେ ତା'ର ନିଦ ଭାଙ୍ଗିଯିବ । ରାସ୍ତାରେ କାହିଁ କେତେ ଦୂରରେ ବୁଲା କୁକୁରଟିଏ ଭୁକିଲେ ତାକୁ ଶୁଭିବ । ଆରମ୍ଭ ହୋଇଯିବ ଭୁକା......ନିଜ ମନକୁ ଶାନ୍ତ ନ ଆସିଲା ପର୍ଯ୍ୟନ୍ତ କାହା କଥା ଶୁଣିବ ନାହିଁ ସେ । କେତେ ଆଦରରେ ଫିସ୍ଟିକୁ ପାଳି ନଥିଲେ ସରଳା ! ମା'ଆ ଦୁଧ ଛାଡ଼ିଲା ପରେ ନିଜ ବିଛଣାରେ ଶୁଆଇ, ଚାମଚରେ ଦୁଧ ପିଆଇ ଟିକିଏ ବଡ଼ ହେଲା ପରେ ଦୁଧରେ ରୁଟି ଚକଟି ଚକଟି ଆଦରରେ ଖୁଆଇ, ମୋଜା ଚିରି ଦେଲେ ଧମକ ଦେଇ, ମଇଳା କଲେ ନିଜେ ସଫା କରି, ଦୁଷ୍ଟାମୀ କଲେ ନିଜେ ଜଞ୍ଜିରରେ ବାନ୍ଧି ନିଜର ପୁଅ ପରି ସ୍ନେହ କରୁଥିଲେ । ସେ ବଡ଼ ହୋଇଗଲା । ଆଉ ତାଙ୍କ ପାଖ ମାଡ଼ୁ ନାହିଁ । ତାଙ୍କ କଥା ଶୁଣୁ ନାହିଁ । ସରଳା ମଧ୍ୟ ଆଉ ଦିନେ ତାକୁ ଆଦର କରି ଆଉଁସି ଦେଇ ନାହାନ୍ତି । ସେ ମଧ୍ୟ ତାଙ୍କର ଶତ୍ରୁ—ସବୁ ଶତ୍ରୁମାନଙ୍କ ମଧ୍ୟରେ ସେ ଜଣେ ।

କିନ୍ତୁ ଆଜି ତ ଫିସ୍ଫିସ୍ ଭୁକିବା ମୋଟେ କମୁ ନାହିଁ । ସବୁଦିନ କିଛି ସମୟ ଭୁକି ଦେଇ ଚୁପ୍ ହୋଇଯାଏ । ଏଁ, ଏ କଅଣ ? କାଠ ସିଡ଼ି ଚଢ଼ି ଜଣେ କିଏ ବୋଧହୁଏ ଉପରକୁ ଉଠି ଆସୁଛନ୍ତି । ଏ ଅବେଳରେ ଏ ପ୍ରବାସରେ କିଏ ଆସୁଛି ତାଙ୍କ ପାଖକୁ ? ଏ ନିଥର ନୀରବତାର ଅକମ୍ପ ତଡ଼ାଗରେ ଉପଳ ଖଣ୍ଡ ନିକ୍ଷେପ କରିବାକୁ କିଏ ପ୍ରୟାସ କଲା ? କାହିଁକି ? କିଏ ନିଜର ବହୁମୂଲ୍ୟ ସମୟ ବିନିବ୍ୟୟ କରି ଉଠି ଆସୁଛି ସରଳାଂକୁ ସଙ୍ଗ ସୁଖ ଦେବାକୁ ?

ସ୍ୱାମୀ ? ନା ସେ ତ କୌଣସି ଏକ ସଭାରେ ନିବ୍ୟସ୍ତ । ଦେଢ଼ଟା ପୂର୍ବରୁ ଆସିବାର ପ୍ରଶ୍ନ ନାହିଁ । ଦେଢ଼ଟା ବାଜିଗଲାଣି କି ? ନାଁ, ମୋଟେ ବାରଟା ।

ପୁଅ ? ନାଁ ସେ ଦିନ ସାଢ଼େ ସାତଟାରେ ଯାଏ ରାତି ସାଢ଼େ ଆଠ ନଅରେ ଆସେ, ଏଥିରୁ କେବେ ବ୍ୟତିକ୍ରମ ହୁଏ ନାହିଁ ତା'ର ।

ପୁରୁଷ ? ସେ ତ ଯାଇ କମ୍ପ୍ୟୁଟର ସେଣ୍ଟରରେ । ହୁଏତ ଆଜି ନ ଆସି ପାରେ ।

ଆଉ ତ କେହି ଆସିବାର ନାହିଁ ଏ ସୁଦୂର ମହାନଗରୀକୁ, ତାଙ୍କୁ ଆଗରୁ ନ ଜଣାଇ । ଆଗରୁ ଚିଠି ଆସିବ କି ଫୋନ୍ ଆସିବ । ଗାଡ଼ି ଯିବ । ସେମାନେ ଆସିବେ, ନିର୍ଦ୍ଦିଷ୍ଟ କେତେ ଦିନ ରହି କଲିକତା ସହରର କେତେକ ଦର୍ଶନୀୟ ସ୍ଥାନ ଦେଖିବେ, ସେ ସବୁର ତାଲିକା ଓ କ୍ରମାନୁସାରେ ସେମାନଙ୍କ ଯିବାର ରାସ୍ତା ଏବେ ସରଳାଙ୍କର ଖୁବ୍ ମୁଖସ୍ଥ । ନିଉ ମାର୍କେଟରୁ ଦରଦାମକରି . ଶାଢ଼ୀ ବ୍ଲାଉଜ କିଣିବେ । ସିନେମା ଦେଖିବେ । ଫେରି ଯିବେ ।

ଅଫିସ୍‌ର କେହି ମଧ୍ୟ ଅଫିସ୍ ସମୟରେ ସ୍ୱାମୀଙ୍କ ପାଖକୁ ନ ଯାଇ ତାଙ୍କ ପାଖକୁ ଆସିବେ କାହିଁକି ? ଛୁଟି ଦିନ ଦେଖି ସେମାନେ ସରଳାଙ୍କ ପାଖକୁ ଆସନ୍ତି ସେମାନଙ୍କର ବଦଳି କିମ୍ବା ପ୍ରୋଭିଡେଣ୍ଟ ଫଣ୍ଡ ଟଙ୍କା କେମିତି ମିଳିବ, ସେଥିପାଇଁ ସୁପାରିଶ୍ କରିବା ପାଇଁ ।

ଯେ ଆସୁଛି, ଆସୁ, କିନ୍ତୁ ସରଳା ନିଃସନ୍ଦେହ, ସେ ତାଙ୍କର ମିତ୍ର । ନଚେତ୍ ବୈଶାଖର ଝାଞ୍ଜିକୁ ଉପେକ୍ଷା କରି କିଏ ଆସନ୍ତା ତାଙ୍କ ପାଖକୁ । କାହିଁକି ? କାହିଁକି ତା'ର ଏତେ ସ୍ନେହ ! ଏତେ ଦରଦ !!

ଲୁହ ପୂରିଗଲା ଆଖି ତୋଳାରେ ସରଳାଙ୍କର । ସେ ମୁହଁ ବୁଲାଇ କରି ଲେଉଟାଇ ଶୋଇଲେ । ଉଠି ଦେଖିବାକୁ ଗଲେ ନାହିଁ ବାହାରକୁ । ଯେ କେହି ଏ ଘରକୁ ଆସିଲେ ତାକୁ ସ୍ୱାଗତ କରେ ଘରର ଚପ୍ରାସି ପ୍ରଥମେ । ନାଆଁ ଗାଆଁ ବୁଝେ । ଅନୁମତି ନେଇ ଭିତରକୁ ଛାଡ଼େ । ଏହି ଚିରାଚରିତ ପନ୍ଥାରେ ବ୍ୟତିକ୍ରମ ହୁଏ ନା । ଆଜି ହେବ କାହିଁକି ?

ଚୁପ୍ ଚୁପ୍ ଶବ୍ଦରେ କିଏ ଘର ଭିତରକୁ ପଶି ଆସୁଛି ଯିମିତ । ସରଳାଙ୍କୁ କେମିତି ଭୟ ଲାଗୁଛି ? ସେ ଆଖି ସମ୍ପୂର୍ଣ୍ଣ ବନ୍ଦ କରି ଦେଲେଣି । କେଡ଼େ ଉଚାଟ ଯେ ମନ । କିନ୍ତୁ ସେ ଆଖି ଖୋଲିଲେ ନାହିଁ, ରୁଦ୍ଧ ପତା ଦେଇ ବହି ଗଲୁଛି ଅଶ୍ରୁ । କିନ୍ତୁ କାହିଁକି । ·

କିଏ ଆସିଛି ? ଓଃ, କିଏ ଆସିଛି ? ଏ ହୃଦୟରଙ୍ଗ ଜୀବନ କିଏ ଆନ୍ଦୋଳିତ କରୁଛି ?

ଏଁ, କିଏ ଜଣେ ତାଙ୍କ ମୁଣ୍ଡ ଉପରର ଲୁଗାକୁ ଟାଣୁଛି ଯିମିତି ! କାହାର ହାତରେ ସ୍ପର୍ଶ ଇଏ ! ସେ କଣ ସ୍ୱପ୍ନ ଦେଖୁଛନ୍ତି ? ସବୁ କଣ ତାଙ୍କ ଉତ୍ତପ୍ତ ମସ୍ତିଷ୍କର ଅଲୀକ କଳ୍ପନା···ଆଶାର ତରଙ୍ଗାୟିତ ଫେନିଳ ସମୁଦ୍ର.... ??

ସେ ଉଠି ପଡ଼ିବେ କି ?

ସେ ଆଖି ଖୋଲି ଦେବେ କି ?

ସେ 'କିଏ ?' ବୋଲି ଚିତ୍କାର କରିବେ କି ?

ଯେଉଁ ହାତ ତାଙ୍କର ଚୂର୍ଣ୍ଣ କୁନ୍ତଳକୁ ଆକର୍ଷଣ କରି ଶିହରଣ ସୃଷ୍ଟି କରୁଛି ତାକୁ ବନ୍ଦୀ କରିଦେବ କି ? ନାଇଁ, ନାଇଁ, ଅଧିକ ଆକର୍ଷଣ କରୁ । ସେହି ଆକର୍ଷଣର ଯାଦୁ ତାଂକୁ ଅଭିଭୂତ କରୁ ।

କାନ ପାଖରେ ଏ କାହାର ଓଠ ?

ଏ କାହାର ସ୍ୱର ?

···ଏ ମ୍ମା···ମ୍ମା···ମ୍ମା···

ତଡ଼ିତ୍ ବେଗରେ ଉଠି ବସିଲେ ସରଳା । ପପୁ ଆସିଛି । ପପୁ ?.?

କୋଳରେ ଚାପି ଧରିଲେ ସରଳା ଦୁଇବର୍ଷର କୋମଳ ଶିଶୁଟିକୁ । କିଛି କହିପାରୁ ନାହାନ୍ତି ସେ । କଣ୍ଠ ତାଙ୍କର ସମ୍ପୂର୍ଣ୍ଣ ରୁଦ୍ଧ । କିଛି ଦେଖି ପାରୁ ନାହାନ୍ତି । ଚକ୍ଷୁ ତାଙ୍କର ଲୋତକୋଚ୍ଛନ୍ନ । ପଛରେ ବଡ଼ ବୋହୂ ତାରା ଓଳଗି ହୋଇ ସାରି ଠିଆ ହୋଇଛି, ଗୋଟିଏ ପଟକୁ ମୁଣ୍ଡ ନୁଆଇଁ ଦେଇ । ଆଉ ଠିଆ ହୋଇଛି ବଡ଼ ପୁଅ ପୁଲୁ । ଦେହରୁ ବହି ଯାଉଛି ଝାଳ··ବୈଶାଖୀ ମଧ୍ୟାହ୍ନର ସ୍ୱେଦ-ଧାରା ।

ମାଛର ବାମ-ଚକ୍ଷୁଟି କେବଳ ଅର୍ଜୁନଙ୍କୁ ଦେଖାଗଲା ପରି, ଏହି ପ୍ରାୟାନ୍ଧକାରରେ ସେ କେବଳ ଅନୁଭବ କରୁଛନ୍ତି ପପୁକୁ···ଦେହର ପ୍ରତ୍ୟେକ ଶିରାକନ୍ଦରେ ତାଙ୍କର ଛୁଟିଛି ଲକ୍ଷ···ଏକ ଅଫୁରନ୍ତ ଜୀବନୀଶକ୍ତିର ଚଳନଶୀଳ ବନ୍ୟା···

ପପୁ ତାଙ୍କର ବକ୍ଷରେ ମୁହଁ ଗୁଞ୍ଜି ଦେଇ ଖୋଜୁଛି ବାପ୍‌ପା....ପ୍‌ପା.... ପ୍‌ପା ??



# କେତେଦୂର ପୁରୀରୁ ଭୁବନେଶ୍ୱର

**ବିଶ୍ୱରଞ୍ଜନ**

ନା—ଯେତେ ଚେଷ୍ଟା କଲେ ବି ନିଦ ଆସୁନାହିଁ ଆଖିକୁ । ଅଥଚ ଅନୁଭବ କରିଥିଲା ମାଇଁ ଓ ମାମୁଙ୍କ ଅନୁପସ୍ଥିତିରେ ସେ କିଛିଦିନ ଭଲ ଭାବରେ ଶୋଇପାରିବ, ଗୁଡ଼ାଏ ଲେଖାଲେଖି କରିବ । କିଛି ନଲେଖି ପାରିଲେ ବି ଅନେକଦିନୁ ଚିଠି ସବୁର ଉତ୍ତର ଦେଇ ପାରିବ ।

ନା—କିଛି ସେ କରି ପାରିଲା ନାହିଁ । ମାମୁଙ୍କୁ ନେଇ ମାଇଁ ତା ବାପାଙ୍କ ପାଖକୁ ଯିବାର ଗୋଟିଏ ସପ୍ତାହ ବିତିଗଲାଣି । କିନ୍ତୁ ସେ ଚେଷ୍ଟା କରି ଚିଠି ଖଣ୍ଡିଏ ବି କାହାରି ପାଖକୁ ଲେଖି ପାରିଲା ନାହିଁ । ଏପରିକି ଅନାମିକା ପାଖକୁ ମଧ୍ୟ ନୁହେଁ । ପ୍ରତିଦିନ ରାତିରେ ଶୋଇବାକୁ ଯିବା ପୂର୍ବରୁ ସକାଳେ ମିଳିଥିବା ଚିଠିର ଉତ୍ତର ନଲେଖିଲେ ତାକୁ ଆପେ ନିଦ ହେଉ ନଥିଲା । ମାତ୍ର ମାଇଁ ଓ ମାମୁଙ୍କର କୋଳାହଳ ଶୁଣିବାକୁ ସେ ଅଭ୍ୟାସଟା ସେ ଏକଦମ ଭୁଲିଯାଇଛି କହିଲେ ଚଳେ । ଚିଠି ଲେଖି ବସିଲେ ସେ କେମିତି ପୁରାପୁରି ଶବ୍ଦହୀନ ହୋଇ ପଡ଼ୁଛି । ନିଜେ ନିଜ ପାଖକୁ ଲେଖିଥିବା ତା ଜୀବନର ଶ୍ରେଷ୍ଠ ସମ୍ଭବତଃ ଶେଷ ଚିଠିଟିକୁ ସେଇଥି ପାଇଁ ସେ ବାରମ୍ବାର ପଢ଼ୁଛି । ମୁଗ୍ଧ ହେଉଛି । ତାକୁ ପୁଣି ଛାତିରେ ଜାକି ଶୋଇ ଯାଉଛି । ଚିଠି ହେଉଛି ତାର ପ୍ରାଣ । ମାମୁ ହେଉଛି ସେଇ ଚିଠି ।

ଜୀବନରେ ବୋଧେ ଏମିତି ଏକ ସମୟ ଆସେ । ଯେତେବେଳେ ଅନ୍ୟମାନଙ୍କ ପାଖକୁ ନୁହେଁ—ନିଜ ପାଖକୁ ଚିଠି ଲେଖିବାକୁ ଇଚ୍ଛା ହୁଏ । ସେଇ ଚିଠିଟି ଲେଖି ସାରିଲା ପରେ କେମିତି ଏକ ଅଜଣା ପୁଲକରେ ମନପ୍ରାଣ ଭରିଯାଏ । ନିଜର ସେହି ଚିଠିଟି ଭିତରେ ସବୁଦିନ ପାଇଁ ବଞ୍ଚିଯିବାର ସ୍ୱପ୍ନ ମିଳିଯାଏ । ଏ ସଂସାରରେ ମୃତ୍ୟୁକୁ 'ସତ୍ୟ' ବୋଲି ସ୍ୱୀକାର କରି ନେଇଥିବା ଅସହାୟ ମଣିଷଟି

'ଛଟି' ଭିତରେ ହିଁ ଅମରତ୍ୱର କାମନା କରେ । 'ଛଟି' ଲେଖିବାର ଏଇ ଅଭୀପ୍ସା ଓ ଅଭିଳାଷରୁ ହିଁ ଗଢ଼ିଉଠେ ଘର ଓ ସଂସାର, ପୃଥିବୀ ପରିବାରର ଏ ସମସ୍ତ ସୃଷ୍ଟି ଈଶ୍ୱରଙ୍କର ହାତଲେଖା ଏକ ସୁନ୍ଦର 'ଛଟି' ନୁହେଁ ତ ଆଉ କଣ ?

ଖଟ ଉପରେ ଅନେକବେଳ ପଡ଼ିରହି ନିଃସଙ୍ଗତାରେ ଅନୁଭବ ଅସ୍ଥିର ହେଉଛି । ରାତି କେତେ ହେବ କେଜାଣି ? ବାହାରେ ବର୍ଷା ଆସି କବାଟ ବାଡଉଛି । ଭିତରେ ଶୂନ୍ୟ ବିଛଣାରେ ଅନୁଭବ ଏକା । ଆଗରୁ ସେ ଏକା ବେଶ୍ ରହି ପାରୁଥିଲା । ନିଃସଙ୍ଗତାର ଜ୍ୱାଳା ଅସହ୍ୟ ହେଲେ ମୋଟା ମୋଟା ବହିର ପୃଷ୍ଠା ଭିତରେ ସେ ନିଜକୁ ବେଶ୍ ହଜେଇ ଦେଇ ପାରୁଥିଲା । ଗଭୀର ପ୍ରଶାନ୍ତିରେ ନିଦ୍ରା ଯାଉଥିଲା । କିନ୍ତୁ ମାନ୍ସି ଆସିଲା ପରେ ସବୁ ଯେମିତି ବଦଳିଗଲା । କଲେଜରେ କ୍ଲାସ ଥିବା ସମୟତକ ତାର ଯାହା ଉପସ୍ଥିତି । ତାପରେ କଲେଜରେ ଆଉ ତାର ସାକ୍ଷାତ ମିଳେ ନାହିଁ । ସେ ଚୁପଚାପ ଖସି ଆସେ ମାନ୍ସିର କୋଳାହଳମୟ ପୃଥିବୀ ଭିତରକୁ । ସମସ୍ତେ ଆଶ୍ଚର୍ଯ୍ୟ ହୁଅନ୍ତି ଅନୁଭବର ଏ କ ପ୍ରକାର ଅଦ୍ଭୁତ ପରିବର୍ତ୍ତନ ! କ୍ଲାସ ବାହାରେ ଯେଉଁ ଅଧ୍ୟାପକ ଗ୍ରନ୍ଥଗ୍ରନ୍ଥୀଙ୍କର ନାନା ସମସ୍ୟା ଭିତରେ ନିଜକୁ ହଜେଇ ଦେଉଥିଲା, ହଠାତ୍ ସେ ଏମିତି ଘରମୁହାଁ ହୋଇଗଲା କେମିତି ? ସ୍ତ୍ରୀର ଆକର୍ଷଣ ! ଅନୁଭବ କ'ଣ ଅନୁଗତ ! ! ପତ୍ନୀଗତପ୍ରାଣ !

କେତେ ସନ୍ଦେହ—କେତେ ଆଲୋଚନା ଗ୍ରନ୍ଥମାନଙ୍କ ଭିତରେ, ବନ୍ଧୁ ମହଲରେ ।

ସ୍ତ୍ରୀର ଆକର୍ଷଣ ନୁହେଁ—ପୁଅର ଆକର୍ଷଣ ହିଁ ତାକୁ ଘରମୁହାଁ କରିଛି । ଏକଥା କହିଲେ ବନ୍ଧୁମାନେ ହସନ୍ତି । ଅବିଶ୍ୱାସର ହସ । କହନ୍ତି—ଅନୁଭବ, ବାପା ନହୋଇ ତମେ ପୁଅର ମାଆ ହେବା ଉଚିତ୍ ଥିଲା । ଭୁଲରେ ବୋଧହୁଏ ବାପା ହୋଇ ଯାଇଛ ।

ଅନୁଭବ କହିବ ବୋଲି ଭାବେ—ପିଲାଟିକୁ ଜନ୍ମ ଦେଉଥିବା ତାର ମାଆ ନୁହେଁ; ତା ଜନ୍ମର କାରଣ ହୋଇଥିବା ତାର ବାପା, ତାକୁ ପାଠ ପଢ଼େଇ ମଣିଷ କରି ଗଢ଼ିବାର ଦାୟିତ୍ୱ ନେଇଥିବା ଶିକ୍ଷକ-ଶିକ୍ଷୟିତ୍ରୀ, ତା ସମ୍ପର୍କରେ ଆସୁଥିବା ଏ ସମାଜର ପ୍ରତିଟି ତରୁଣ ଯଦି ତା ପାଇଁ ମାଆ ହୋଇ ପାରନ୍ତେ—ତାହାହେଲେ ଏ ସମାଜର ରଙ୍ଗ ବଦଳି ଯାଆନ୍ତା । ଏ ପୃଥିବୀ ସବୁଜିମାରେ ଭରି ଯାଆନ୍ତା ।

ଅନ୍ୟମାନଙ୍କ କଥା ଦୂରର କଥା ଏଠି ନିଜେ ମାଆ ବି ମାଆ ହୋଇ-ପାରେ ନାହିଁ । ସେଇଥିପାଇଁ ସବୁ ପିଲାଙ୍କ ମନରେ ଏବେ ସବୁ କିଛି ଭାଙ୍ଗି ଦେବାର

କଣ । ଯୌବନ ସେଠାରେ ଆଉ ଫୁଲ ବଗିଚ୍ଚ ନୁହେଁ—ଏକ ଏକ ଆଗ୍ନେୟଗିରି । କନ୍ଥ ମାଆର ମମତା ମଧୁର ଜଳରେ ବୁଡ଼ିବାକୁ ନ ଦେଇ ଆମେ ଗୃହୁଁ ପିଲ୍ଲାଏ ଆମର ହେବେ ବନବାଥର ଶାନ୍ତ, ସୁଶୀତଳ ଛାୟା । ସ୍ନେହ ବଦଳରେ ସନ୍ଦେହ, ଆଦର ବଦଳରେ ଅବଜ୍ଞା ଓ ଉପେକ୍ଷାର ପଙ୍କ ଭିତରେ ଗୁଞ୍ଜି ଦେଇ ଆମେ ଗ୍ଧହୁଁ ସେ ଫୁଟିବେ ପଦ୍ମ ହୋଇ । ପଙ୍କରୁ ପଦ୍ମ ଫୁଟେ ସତ, ହେଲେ ପଙ୍କରେ ବି ପୋକ ଲୁଚି ଥାଏ—ଏକଥା ଆମେ ଭୁଲିଯାଉ କାହିଁକି ?

ନା—ଅନୁଭବ କିଛି କହେ ନାହିଁ । ନୀରବ ରହେ । ମୁହଁ ଖୋଲି ଅଯଥା ଉପହସିତ ହେବାରେ ଲାଭ କ'ଣ ?

ମାନୁ ପାଇଁ ଅନୁଭବର ଭଲ ପାଇବା ଦେଖିଲେ ମାନ୍‌ନ ବି ଈର୍ଷା କରେ । କହେ, କେଉଁଠି ରଖିଥିଲ ତୁମର ଏତେ ଭଲ ପାଇବା—କାହିଁ ସେଥିରୁ କାଣିଚାଏ ବି ତ ମୁଁ ପାଇଲି ନାହିଁ । ମାନ୍‌ନର ଅଭିଯୋଗ ପୂରାପୂରି ମିଥ୍ୟା ନୁହେଁ । ସ୍ୱାମୀ-ସ୍ତ୍ରୀର ଭଲ ପାଇବା । କହିଲେ ଉଭୟ ଦେହ ଓ ମନର ପରିପୂର୍ଣ୍ଣ ମିଳନକୁ ବୁଝାଏ । ସେମାନଙ୍କ ଭିତରେ ପ୍ରଥମ ସମ୍ପର୍କ ଆରମ୍ଭ ହୁଏ ଦେହରୁ । ଦେହର ବିନିମୟ ହୋଇଗଲେ ମନ ଆପେ ଆପେ ବନ୍ଧା ପଡ଼ିଯାଏ । ଦେହ ବିନା ମନ ବା ମନ ବିନା ଦେହ କେବଳ ଗୋଟିକୁ ନେଇ ଭଲ ପାଇବାରେ ପୂର୍ଣ୍ଣତା ଆସେ ନାହିଁ ।

ଅନୁଭବ ଏ କଥା ବୁଝେ । ହେଲେ ଅସହାୟ । ଦେହ ସମ୍ପର୍କରେ କେମିତି ଆଶ୍ଚର୍ଯ୍ୟ ଭାବରେ ସବୁଦିନ ସେ ଉଦାସୀନ । କେବଳ ମନକୁ ନେଇ ଅତୀତରେ ସେ ଅନେକ ଖେଳ ଖେଳିଛି । ଦେହ ନଛୁଇଁ ମନ କିଣିବାର ଚେଷ୍ଟା କରିଛି । ଫଳରେ ଗୋଟିଏ ହେଲେ ମନ ଧରା ଦେଇନାହିଁ । ସମସ୍ତେ ଦୂରେଇ ଯାଇଛନ୍ତି । ଏମିତି ଖେଳ ଖେଳ ହାଲିଆ ହୋଇଗିବା ପରେ କ୍ଷୀଣ କ୍ଲାନ୍ତ ଓ ଅବସାଦରେ ନିଃସଙ୍ଗ-ତାର ପ୍ରତିମାଟିଏ ହୋଇ ଠିଆ ହୋଇଥିଲା ବେଳେ ମାନ୍‌ନ ଆସିଥିଲା ତା ଜୀବନକୁ ହାରି ଯାଇଥିବାର ସବୁ ଗ୍ଲାନିକୁ ପୋଛିନେବା ପାଇଁ । ମାନ୍‌ନର ଦେହକୁ ବର୍ଣ୍ଣନ କରି ସେଠି ନିଜର ପ୍ରୀତି ନୈବେଦ୍ୟ ବାଢ଼ି ତାକୁ ସନ୍ତୁଷ୍ଟ କରିବା ପୂର୍ବରୁ ହେ ଖୋଜି ବସିଲା ମନ । କିଛି ନ ଦେଇ ସେ ଅନେକ କିଛି ପାଇବାକୁ ଚାହିଁଲା । ଫଳରେ ଆରମ୍ଭ ହେଲା ଭୁଲ ବୁଝାମଣାର ପର୍ବ ।

ମାନ୍‌ନର ଅଭିଯୋଗ—ଦେହର ସମ୍ପର୍କ ତୁମ ପାଇଁ କିଛି ନୂଆ କଥା ନୁହେଁ । ଅତୀତରେ ଅନେକଙ୍କ ସହ ଏଇ ସମ୍ପର୍କ ରଖି ତୁମେ ତୁମର ସ୍ତ୍ରୀ ପ୍ରତି ସ୍ୱାଭାବିକ ଆବେଗ ଓ ଆକର୍ଷଣ ହରେଇ ବସିଛ । ପ୍ରତ୍ୟୁତ୍ତରରେ ଅନୁଭବ ତାର ସ୍ୱଭାବ

ସୁଲଭ ନୀରବତାକୁ ଆଦର କଲେ । ଏହି ନୀରବତା ହିଁ ମାନର ଅଭିଯୋଗକୁ ସତ୍ୟ ବୋଲି ପ୍ରମାଣ କରିବାରେ ସାହାଯ୍ୟ କରେ । ଏଇମିତି ଭୁଲ୍ ବୁଝାମଣାରେ ଦୁହିଁଙ୍କର ଜୀବନଟା ଯେତେବେଳେ ନୀଳହୀନ ଏକ ନିଃସଙ୍ଗ ଆକାଶ ହୋଇ ଉଠିଥିଲା ଠିକ୍ ସେତିକିବେଳେ କେଉଁଠି ଥିଲା କେଜାଣି, ସହସା ଜ୍ୟୋତ୍ସ୍ନାର ପ୍ଳାବନ ଖେଳାଇ ଆକାଶ ଉପରକୁ ଡେଇଁ ପଡ଼ିଲା ଗୋଲମାଲ ସୁନ୍ଦରୀଆ ଜହ୍ନଟିଏ । ଅସ୍ୱାଭାବିକ ନୀରବତାରେ ହଜି ଯାଇଥିବା ସଂସାରଟିକୁ ପୁଣି ଏକ ନୂତନ କୋଳାହଳରେ ଭରିଦେବାଲାଗି ଚୁପ୍‌ଚାପ ଚାଲିଆସିଲା ମାନୁ—

ମାନ ଓ ଅନୁଭବ ଉଭୟେ ବଞ୍ଚିଗଲେ । ମାନୁକୁ କୋଳରେ ଯାକି ଶୋଇ ପଡ଼ିଲେ ଅନୁଭବକୁ ପାଖରେ ନ ପାଇବାର ଅଭାବ ମାନକୁ ଆଉ ଏତେଟା ଅସହ୍ୟବୋଧ ହୁଏ ନାହିଁ । ମାନୁ ଭିତରେ ସେ ଅନୁଭବକୁ ପାଇଯାଏ ।

କ'ଣ ଏବେ କରୁଥିବ ମାନୁ ? ଶୋଇ ପଡ଼ିବଣି । ଶୋଇଥିବା କନ୍ଥା ତାର ମୁତରେ ଭିଜି ଯାଇଥିବ । ସେଇ ମୁତରେ ଓଦା ସରସର ହୋଇ ସେ ଶୋଇଥିବ । କନ୍ଥା ବଦଳେଇବାକୁ ମାନର ଆଉ ଚେତା ନ ଥିବ । ଥରେ ଶୋଇଗଲେ ନିଘୋଡ଼ ସେ ସଂଜ୍ଞା ହରେଇ ବସେ । ପ୍ରତିଦିନ ରାତିରେ ମାନୁର ମୁତ ବିଛଣା ବଦଳେଇବା, ନିଦ ଭାଙ୍ଗିଗଲେ ପାଣି ପିଇବ କି ନାହିଁ ବୋଲି ପଚାରି ଆଣିଦେବା, ନ ଶୋଇଲେ ଗୀତ ଗାଇବାର ଚେଷ୍ଟା କରି ତାକୁ ବୁଝେଇ ସୁଝେଇ ଶୁଆଇ ପକେଇବା,—ଏସବୁ ଅନୁଭବର ନିତ୍ୟ ନିୟମିତ ଅଭ୍ୟାସରେ ପଡ଼ିଯାଇଛି । ପ୍ରଥମେ ପ୍ରଥମେ ଏସବୁ କରିବା ପାଇଁ ମାନକୁ ନିଦରୁ ଉଠଉଥିଲା । ନିଦ ଭାଙ୍ଗିଗଲେ ମାନ ଚିଡ଼ଚିଡ଼ ହୁଏ । ଖୁସି ମନରେ ସେ କିଛି କରେ ନାହିଁ । ଅନୁଭବ ବି ସେଇ ରାତି ଅଧରେ ତା ଉପରେ ନିଜର ବିରକ୍ତି ପ୍ରକାଶ କରେ । 'ମାଆ'ର ପ୍ରେମ ଓ କର୍ତ୍ତବ୍ୟ ସମ୍ପର୍କରେ ନାତିଦୀର୍ଘ ଭାଷଣ ଦିଏ । ଏବେ କିନ୍ତୁ ସବୁ କାମ ନୀରବରେ ସେ ନିଜେ କରି ଯାଉଛି । ମାନୁ ପାଇଁ ବାପାର ଭୂମିକାରୁ ଓହ୍ଲାଇ ଆସି ମାଆ ହେବାରେ ଅନୁଭବର ଅନେକ ଆନନ୍ଦ ।

ତାର ମନେ ପଡ଼ିଯାଏ ବୋଉ କଥା । ପିଲାଦିନେ ଅନେକ ଥର ରୋଗରେ ପଡ଼ି ଛଟପଟ ହୋଇଛି ଅନୁଭବ । ମାସ ଅସୁସ୍ଥ ହୋଇ ପଡ଼ି ରହିବାର ସେଇ ଦିନମାନଙ୍କରେ ଅନୁଭବର ବିଛଣା ପାଖରେ ବସି ରହି ବୋଉର ରାତି ସବୁ ଦିନ ହୋଇ ଯାଉଥିଲା । କେବେ ଥରେ ହେଲେ ସେ ତା ଆଖିରେ ନିଦ୍ରାହୀନତାର କ୍ଲାନ୍ତି ବା ବିରକ୍ତିଭାବ ଲକ୍ଷ୍ୟ କରିନାହିଁ । ଅନୁଭବର ଦେହରୁ ଜର ଓହ୍ଲେଇଗଲେ ତା ବୋଉର ଶାନ୍ତ, ବିଷଣ୍ଣ ମୁହଁରେ କେମିତି ଅପୂର୍ବ ପୁଲକର ଆଭା ଖେଳିଯାଏ —

(୪)

ସେଇ ଦୃଶ୍ୟ ମନେ ପଡ଼ିଗଲେ ଏବେ ବି ଅନୁଭବର ଆଖି କୋଣରେ ଲୁହ ଜମି ଆସେ ।

ମାଆ ହେବା ଏକ ସାଧନାର କଥା ।

ସବୁ ଜନ୍ମଦାତ୍ରୀ ମାଆ ହୋଇ ପାରନ୍ତି ନାହିଁ ।

ମାନୁକୁ ଜନ୍ମ ଦେଇ ମାନ କ'ଣ ସତରେ ମାଆ ହୋଇ ପାରିଛି ?

ଅନୁଭବ ପାଇଁ ମାନ ହେଉଛି ଝିଅ ଓ ମାନୁ ହେଉଛି ପୁଅ । ସେ ଏକା ସେମାନଙ୍କର ବାପା ଓ ମାଆ ।

ଆଜି ସେ ଦୁଇଜଣଯାକ କେହି ତା ପାଖରେ ନାହାନ୍ତି । ମାନର ଅନୁରୋଧରେ ସେ ନିଜେ ସେମାନଙ୍କୁ ମାସଟିଏ ଲାଗି ମାନୁର ମାମୁଁଘରେ ଛାଡ଼ି ଦେଇ ଆସିଛି । ଗୋଟିଏ ମାସକୁ ମାନ ଗୋଟିଏ ସପ୍ତାହ ବି ନାହିଁ— ଅନୁଭବର ଅସ୍ଥିରତା ବଢ଼ିଗଲାଣି । ମନର ଏ ଅସ୍ଥିରତା କେବଳ ମାନୁ ପାଇଁ । ସେ ସ୍ଥିର କଲା ସିଏ ପାହିଲେ ସେ ଯାଇ ମାନୁକୁ ନେଇ ଆସିବ । ତା ବିନା ଘୋଟାଏ ମୁହୂର୍ତ୍ତ ରହିବା ତା ପକ୍ଷରେ ଆଉ ସମ୍ଭବ ନୁହେଁ ।

ମାନୁର ଅଭାବ ଜନିତ ଜ୍ୱାଳାରେ ଘାରି ହୋଇ ଅନୁଭବର ଆଖିକୁ କେତେବେଳେ ନିଦ ଆସିଯାଇଛି, ସେ ଜାଣେନା । ଏକ ଦୁଃସ୍ୱପ୍ନରେ ହଠାତ୍ ତାର ନିଦ ଭାଙ୍ଗିଗଲା । ନିଦ ଭାଙ୍ଗିଲା ବେଳକୁ ସେ ଦେଖିଲା—ସକାଳର ଆଲୁଅ ବନ୍ଦ ଝର୍କା କବାଟର ଫାଙ୍କ ଦେଇ ଭିତରେ ପଶିବାକୁ ଚେଷ୍ଟା କରୁଛି । ଧଡ଼ପଡ଼ ହୋଇ ସେ ବିଛଣାରୁ ଉଠି ପଡ଼ିଲା । ଅନେକ ସମୟ ସ୍ତବ୍ଧ ହୋଇ ସେ ବିଛଣାରେ ବସି ରହିଲା । କାହିଁକି ସେ ଦେଖିଲା ଏମିତି ସ୍ୱପ୍ନ ? ଏ ସ୍ୱପ୍ନର ଅର୍ଥ କ'ଣ ହୋଇପାରେ ?

ଗୋଟିଏ ପୋଖରୀ କୂଳରେ ସେ ବସିଛି । ପାଣି ଭିତରେ ଖେଳି ଖେଳି ଗାଧୋଉଛନ୍ତି ତାର ଜଣେ ବନ୍ଧୁ ଓ ମାନୁ, ତାର ପୁଅ । (ଦୁଇବର୍ଷ ନପୂରିଥିବା ପୁଅ ମନକୁ ମନ ପୋଖରୀ ଭିତରେ ଗାଧୋଇବା ଆଦୌ ସମ୍ଭବ ନୁହେଁ ।) ପୋଖରୀର ଗୋଟାଏ କୋଣରେ ବୁଦାମୂଳରେ ଚେକା ମାରି ଶୋଇଥିଲା ଛିପି ଛିପିକା କଳାରଙ୍ଗର ସାପଟିଏ । ବନ୍ଧୁ ଜଣକ ତା ଉପରକୁ ଢେଲାଟିଏ ଫିଙ୍ଗିଦେଲା । ହଠାତ୍ ସାପଟି ଉଠି ଆସି ଦଂଶନ କଲା ତାର ବନ୍ଧୁକୁ । ଅଚେତ ହୋଇ ସେ ପୋଖରୀ ଜଳ ଭିତରେ ଢଳି ପଡ଼ିଲା । ତାପରେ ସାପଟି ଧୀରେ ଧୀରେ ଯାଇ ମାନୁର ଦେହସାରା ଗୁଡ଼େଇ ହୋଇଗଲା । ଚିତ୍କାର କରି କାନ୍ଦୁଛି ମାନୁ । କୂଳରେ ଅସହାୟ ଅନୁଭବ, କେମିତି ସେ ସାପ କବଳରୁ ଉଦ୍ଧାର କରିବ ମାନୁକୁ ? ତାକୁ କିଛି ବୁଦ୍ଧି ବାଟ ଦିଶୁନାହିଁ । ନିଦ ଭାଙ୍ଗିଗଲା ।

ସାପ ସ୍ୱପ୍ନ ଦେଖିବା କଥା ଶୁଣିଲେ କେଜେ କମ୍ବା ମାଆ ଥିଲାବେଳେ କହୁଥିଲେ 'ଶୁ ମହାଦେବଙ୍କୁ କଣ ସାଚଥିଲୁ—ଦେଇନାହୁଁ, ତାଙ୍କ ପାଖରେ ଯାଇ ଭୋଗଦେଇ ଦେ । ସେତେସବୁ ବାଳେକଥା—ଅନୁଭବ ବିଶ୍ୱାସ କଣପାରେ ନାହିଁ । ଅବଶ୍ୟ ବିପଦ ଆପଦରେ ପଡ଼ିଲାବେଳେ ସେଥିରୁ ଉଦ୍ଧାର ପାଇବା ଲାଗି ଅନୁଭବର ଦୁର୍ବଳ ମନ ଅନେକଥର କେତେ ଠାକୁରଙ୍କର ସରଣ ପଶିଛି । ମାନୁର ଅସୁସ୍ଥତା ବଢ଼ିଲେ ସେ ଏବେ ବି ଜଗନ୍ନାଥ, ଲୋକନାଥ ବା ବିମଳା ପ୍ରଭୃତି ଦେବ ଦେବୀଙ୍କ ଉଦ୍ଦେଶ୍ୟରେ ଅନେକ କଛୁ ଯାଚନ୍ଦଏ । ପରେ ସେ ସବୁ ଦେବା ପାଇଁ ସେ ଭୁଲିଯାଏ । 'ଅନୁଭବ ଭାବେ ଯେ ଭଗବାନଙ୍କୁ କେବଳ ଯାଚିଯାଏ—ସେଇଥିରେ ସେମାନେ ସନ୍ତୁଷ୍ଟ ହୋଇ ଯାଆନ୍ତି । ମଣିଷ ଭଳି ନେବା ପାଇଁ ସେମାନେ ଆଶା ରଖନ୍ତି ନାହିଁ ବା ନଦେଲେ ପ୍ରତିଶୋଧ ପରାୟଣ ହୁଅନ୍ତି ନାହିଁ ।

ଅନୁଭବର ହଠାତ୍ ମନେ ପଡ଼ିଗଲା ପିଲାଙ୍କର କୌଣସି ବହିରେ ଏକ କାହାଣୀ ମଝିରେ ଦେଖିଥିବା ସେଇ ଛବିଟି । ନିଜର ସ୍ୱପ୍ନ ସହ ସେଇ ଛବିଟିକୁ ସେ ମିଳେଇ ନେଲା ମନେ ମନେ । କାହାଣୀଟି ଦାନବୀର ରାଜା ହରିଶ୍ଚନ୍ଦ୍ରଙ୍କର । ଛବିରେ ହରିଶ୍ଚନ୍ଦ୍ରଙ୍କର ପୁଅ ରୋହିତାଶ୍ୱ ଫୁଲ ତୋଳୁଛି । ସେହି ଫୁଲଗଛର ଶାଖାରୁ ସାପଟିଏ ଫଣା ଟେକ ରହିଛି ଦଂଶିବା ଲାଗି । ବେଶ୍ ଜୀବନ୍ତ ହୋଇଥିଲା ଛବିଟି । କେଉଁ ଶିଳ୍ପୀ ହାତରେ ଅଙ୍କା କେଜାଣି ! ତଳେ ପଂକ୍ତିଟିଏ —

> "କଲନା ମୂଳେ କାଳ ଥାଇ
> ପ୍ରାଣୀ ତା ଜାଣି ନ ପାରଇ ।"

ସବୁ ଠାକୁରଙ୍କ ଉଦ୍ଦେଶ୍ୟରେ ଅନୁଭବର ହାତ ଦୁଇଟି ଆପଣା ଛାଏଁ ଛାଏଁ ଯୋଡ଼ ହୋଇଗଲା । ଦଉଡ଼ିଲା ସେ ବସଷ୍ଟାଣ୍ଡକୁ । ଏଇ ମୁହୂର୍ତ୍ତରେ ତାର ମାନୁ ପାଖରେ ପହଞ୍ଚିବା ଦରକାର ।

ମାନେ ବସ୍ ନାହିଁ ?

ଯଗ୍ରେଇ ବସ୍‌ବାଲା ଷ୍ଟ୍ରାଇକ୍ କରିଛନ୍ତି । ସରକାରୀ ବସ୍ ଟିକକ ଆଗରୁ ଚାଲି ଯାଇଛି । ପୁଣି ଯାଇ ତନିଘଣ୍ଟା ପରେ ବସ୍ । ନା ଏତେ ସମୟ ସେ ଅପେକ୍ଷା କରି ପାରିବ ନାହିଁ । କୌଣସି ପ୍ରାଇଭେଟ୍ କାର୍ ଆରୋହୀଙ୍କୁ ଅଟକେଇବ । ଅନୁରୋଧ କରିବ—ତାକୁ ଟିକଏ ଭୁବନେଶ୍ୱର ନେଇଯିବା ଲାଗି । ଛକ ଉପରେ ଠିଆ ହୋଇଗଲା । ହାତ ଦେଖେଇ ଗଡ଼ି ଯାଉଥିବା ଗାଡ଼ିମାନଙ୍କୁ ଅଟକେଇବାକୁ ଚେଷ୍ଟା କଲା । କେହି ଅଟକୁ ନାହାନ୍ତି । କାର୍‌ର ଆରୋହୀମାନେ ନାମିକା ମଣିଷ । ନାମୀ ଓ ଦାମୀ ମଣିଷ । ପ୍ରଗତି ପଥର ଯାତ୍ରୀ ସେମାନେ । ଅନୁଭବ ଭଳି

ସାଧାରଣ ମଣିଷଟିଏ ପାଇଁ ଅଟକିବାକୁ ସେମାନଙ୍କର ବେଳ କାହିଁ ? ତାକୁ ଉପେକ୍ଷା କରି ସେମାନଙ୍କର ଗାଡ଼ି ଛୁଟି ଯାଉଛି ।

ଛକ ଉପରେ ଅନୁଭବ ଏକା ।

ଦୁଇହାତ ପ୍ରସାରି ଠିଆ ହୋଇଛି । ଅଦୃଶ୍ୟରେ ସେଇ ଦୃଶ୍ୟ ଦୁଇଟି ତାର ଚେତନାରେ ଲୁଚକାଳି ଖେଳୁଛି ।

ଫୁଲ ତୋଳୁଛି ଶ୍ୱେତହାଣ୍ଡ—ଫଣା ଟେକିଛି ସାପ !

ପୋଖରୀର ଗଭୀର ଜଳରେ ମାନୁ ତା ଦେହର ବଳୟରେ କୃଷ୍ଣସର୍ପର ବନ୍ଧନୀ ।

ସତେ କ'ଣ ଶ୍ୱେତହାଣ୍ଡର କୋମଳ ହାତର ସ୍ନେହରେ ସାପଟି ଫୁଲ ହୋଇ ଗୁଙ୍ଗୁଡ଼ି ଭିତରକୁ ଖସି ପଡ଼ିବ ?

ମାନୁର କୁନି କୁନି ପାଦରେ ଦଳି ହୋଇ କାଳ ସାପଟି ମାଳକଇଁ ହୋଇ ଫୁଟି ଉଠିବ ?

ଅନୁଭବର ଦୁଃସ୍ୱପ୍ନ ପୁଣି ସ୍ୱପ୍ନ ହୋଇ ଯାଉଛି ।

ବହୁ ସମ୍ଭାବନାଟିର ଉଜ୍ଜ୍ୱଳ ଝଲମଲ ସ୍ୱପ୍ନ ।

ତାର ମନେ ହେଲା—ଦୁର୍ବଳ ପାଦରେ ତାର ଏବେ ହନୁମାନର ଶକ୍ତି । ଏକା କୁଦାକେ ସେ ଯେମିତି ଡେଇଁ ମାନୁ ପାଖରେ ପହଞ୍ଚିବ ।

ତା ଠାରୁ ମାନୁର ଦୂରତା ବା କେତେ ?

କେତେ ଦୂର ବା ପୁରୀରୁ ଭୁବନେଶ୍ୱର ?



# ଅନ୍ଧକାର

**ଡ: କୃଷ୍ଣ ପ୍ରସାଦ ମିଶ୍ର**

ଗାଁକୁ ଯିବାମାନେ ପଇଡ଼ ନଡ଼ିଆ ତୋଳିବା, ପଇଡ଼ ପିଇବା, ମୁଢ଼ି ନଡ଼ିଆ ଖାଇବା ଓ ଗାଁର କେତେକ ମହତ୍ତ୍ୱପୂର୍ଣ୍ଣ ଜାଗାକୁ ଥରେ ପରିକ୍ରମା କରିନେବା । ତେଣୁ ମୁଁ ମଝିରେ ମଝିରେ ଯେତେବେଳେ ଗାଁକୁ ଯାଏ, ବାଡ଼ିଆଡ଼େ ଯାଇ ବାଲ୍ୟଜୀବନର ସ୍ମୃତି ସବୁ ଅଙ୍ଗାଙ୍ଗୀଭାବେ ଜଡ଼ିତ ଅଛି ଯାଏ, ସେଇଥିପାଇଁ ମହତ୍ତ୍ୱପୂର୍ଣ୍ଣ ଚୁଆ, ଖଳା, କଞ୍ଚା ସୁଆଦ ଆମ୍ବ ବଗିଚା, ସାନବେଦୀ ଓ ନଡ଼ିଆ ଗଛଗୁଡ଼ିକୁ ଥରେ ଦେଖିଦିଏ, ବା ସାଳିଆ ନଈ ପାଖକୁ ଚାଲିଯାଇ ବହଳଗାଡ଼ିଆ ବନ୍ଧକୁ ଥରେ ଘୁରି ଦେଇ ଚାଲି ଆସେ, କାରଣ ସେମାନଙ୍କ ସ୍ଥିତି ମୋତେ ମୋର ମଧ୍ୟ ବାଲ୍ୟକାଳ ଥିଲା ବୋଲି ଯେପରି ଆଶ୍ୱାସନା ଦିଅନ୍ତି, କିଛି କିଛି ମନେ ପକାଇ ଦିଅନ୍ତି । ଶିକର ନଡ଼ିଆ ତୋଳିବା ପାଇଁ ହାଡ଼ି ସାହିରୁ କାହାକୁ ହେଲେ ଡାକି ଆଣିବା ପାଇଁ ଲୋକ ପଠାଏ — ମୁଁ ଘରେ ପହଞ୍ଚି ପରିକ୍ରମା ଆରମ୍ଭ କଲାବେଳକୁ । ମୁଁ ଫେରିବା ବେଳକୁ ପଇଡ଼ ଛିଆ ହେଉଥାଏ ।

ଏଥରକ ମୁଁ ବାଡ଼ି ଦୁଆରୁ ଯାଇ ଚୁଆ ପାଖରେ ହୋଇଥିବା ଜାତି ଦଉଡ଼ି ଧରି ଚତୁର୍ଥ ଶ୍ରେଣୀରେ ପଢୁଥିବା ମୋର ସାନଝିଅ ବୟସର ଝିଅଟିଏ ପହଞ୍ଚିଲା, ଶ୍ରେଷ୍ଠିଆ ଗାମୁଛାଟିଏକୁ ସେ କଣ୍ଠ ମାଳ ପିନ୍ଧିଥାଏ, କଳା ମିଚ ମିଚ ହେଲେ ବି ଖୁବ ସୁନ୍ଦର ଦେଖିବାକୁ । ମୁଁ ଭାବିଲି, ଏ ଲାବଣ୍ୟ ପୃଥିବୀର ଅନ୍ୟ କନ୍ୟାଲୋକ ପାଇବେନି । ମୁଁ ତାକୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲି—କରେ ତୁ କିଏ ?

—ପଇଡ଼ ପଗ ତୋଳା ହେବ । ବାବୁ ପଗ ପଇଡ଼ ପିଇବ !

—ଶିକର ତୋତେ ଡାକିଛି ?

—ହଁ ।

—ତୁ ଏକା ଆସିଛୁ ?

ଅଭିଜ୍ଞ ଲୋକପରି ଗଛଗୁଡ଼ାକୁ ସେ ଗ୍ଭହୁଁଥିଲା ମୁହଁ ଉପରକୁ କରି ।

—ନା ମୋ ସହ ମୋ ମା ଆଇଛୁ । ଆଜ୍ଞା, ହଁନେଇଲ, ଏଇ ଗଛରେ ନଡ଼ିଆଗୁଡ଼ାକ ଅଧାଢ଼ିଆ ହୋଇଛୁ । ଆଉ ଗୁଡ଼ାକ ତ ନଡ଼ିଆ ପୂରା ହୋଇ ଗଲାଣି ।

—ତୁ ସବୁ ଜାଣି ପାରୁଛୁ !

ଏଇ ସମୟରେ ଚୂଆ ଆଡ଼କୁ ମୋର ନଜର ଖୁଲିଗଲା । ମୁଣ୍ଡରେ ବୋଝରଖି ପାଣିରେ କାଦୁଅ ପାଦକୁ ସ୍ତ୍ରୀ ଲୋକଟିଏ ଧୋଉଥିଲା । ବୋଝରେ ଏଣ୍ଡୁଡେଣ୍ଡ କଣ ଗୁଡ଼ାଏ ଭର୍ତ୍ତି ହୋଇଥିଲା, ଥଳିଆ କାଠିକୁଟା ହେବ, ଜାଳ ପାଇଁ ବୋଧେ ନେଉଥିଲା । ଗ୍ରେଟିଆ କପ୍ତାଟିରେ ତା ଶରୀରର କୌଣସି ଅଂଶ ଆବୃତ ହୋଇ ରହୁଥିବା ପରି ଜଣାଗଲାନି । ମୁଁ ଚଞ୍ଚଳ ଆଖି ଫେରାଇ ଗଛ ଚଢ଼ିବାକୁ ଉଦ୍ୟତ ହେଉଥିବା ପିଲାଟିକୁ ପଚାରିଲି—ସେଇ ତୋର ମା ?

ମୋ କଥାର କୌଣସି ଉତ୍ତର ସେ ଦେବା ପୂର୍ବରୁ ଘାଘଡ଼ା ଗଳାରେ ଶିକର ପାଟି କଲା—ଆରେ ଦୁଃଶା ଆଇଚୁ କରେ ! ହଇଲେ ଦୁଃଶା ମା, ସେ ବୋଝଟା ଧରି କାହିଁକି ଆଇଚୁ ବା ! ହେଇଟି ମୁଁ ଡାକୁଥିଲି ଦୁଃଶାକୁ ତୁ ଉପରେ ପଡ଼ି ଆସିଲୁ ? ସାଥିରେ ଆଣିଛୁ ବୋଝ । ତୋ ମତଲବ ଭଲ ନୁହେଁଲେ, ଦୁସିଆର ଥିବୁ, ମା ଆସିଛନ୍ତି ।

ତାପରେ ମୋ ଆଡ଼କୁ ବୁଲି ପଡ଼ି ଶିକର ଅଭିଯୋଗ କଲା—ବୁଝିଲ ସାଆନ୍ତେ । ତମେ ଆପଣ ଭିତରୁ କଣେ କେହି ଗାଁକୁ ନ ଆସିଲେ, ସବୁ ପାଳ ହୋଇଯିବଟି, ମୋତେ ଆଉ ପରେ ଦୋଷ ଦେବନି ! ସେଥି ପାଇଁ ମୁଁ ଦାୟୀ ନୁହେଁ । ଆପଣ ଜାଣନ୍ତି ଏ ଶଳା ମହା ଖେଚଡ଼ା, ଗାଣ୍ଡି ବୁଲାଇଲେ କଣ୍ଡୁ ଫିଟିଲା ଜାଣ । ହେଇଟି ଦେଖନ୍ତୁ, ଡାକିଲି ଦୁଃଶାକୁ, ଆସିଛନ୍ତି ଯୁଗଳ ମୂର୍ତ୍ତି ।

ଶିକରର ପାନଲାଲ ଜର୍ଜରିତ ପାଟିକୁ ଗ୍ଭହିଁ ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି—କାହୁଁ କଣ ହେଲା, ମା ପୁଅ ଏକାଠି ଆସିଲେ ? ଏଡ଼େ ସାନ ପିଲାଟା, ସେଇଥି-ପାଇଁ ମା ସାଙ୍ଗରେ ଗ୍ଭଲି ଆସିଛି । କାହୁଁ ଏଡ଼େ ସାନପିଲା କଣ ଗଛରେ ଚଢ଼ିବ ? ଗଛରେ ସେ ଚଢ଼େ ?

—ଗଛରେ ଦୁଃଶା ଚଢ଼ି ପାରିବ ! ଶିକର ମୋତେ କପଟ ଗୋଟିଏ ଗ୍ଭହାଣୀ ଦେଇ କହିଲା—ତେମେ ଆପଣ ଗାଁକୁ ବୁଲି ଆସିଛନ୍ତି । ବଡ଼ ପ୍ରଫେସର

ହୋଇଛନ୍ତି । ସାରା ପୃଥିବୀ ବୁଲିଛନ୍ତି । ହଉ, ନଡ଼ିଆ ତୋଳା ସରୁ, ତାପରେ କଥାବାର୍ତ୍ତା ହେବା । କିନ୍ତୁ ହେଇଟି ବୁଧିଆ, ଜାଣି ସାବଧାନ, ମା ସାନ୍ତାଣୀବି ଆସିଛନ୍ତି, ଭିତରେ ଧାନମାପ ଚାଲିଛି । ବାବୁଙ୍କୁ ଠକିଦେଇପାରୁ, କିନ୍ତୁ ମାଙ୍କ ଆଖି ସବୁ ଦେଖିପାରେ, ସେ ଏଇନେ ଆସିବେ, ମନେ ରଖିଥା ।

ଶିକରର କଥାରେ ମାଙ୍କଡ଼ ପରି ଚଢ଼ି ଚାଲିଥିବା ଜନ୍ତୁଟି ଗଛ ମଝିରେ ଯେପରି କ୍ଷଣକ ପାଇଁ ରହିଗଲା । ଶିକର ତା ବକ୍ତୃତା ଦେଇ ଚାବି ନେଇଗାଁ ଧରି ଘର ଭିତରକୁ ଚାଲିଗଲା । ମୁଁ ବୁଧିଆର ଗଛଚଢ଼ା ଦେଖୁଥାଏ । ଏତେ ଛୋଟିଆ ପିଲା, ଏତେ କଷ୍ଟସାଧ୍ୟ କଳାକୁ ଶିଖିଲା କିପରି, କେବେ ଆସୁଭ କଲା ! ଏତେ ଛୋଟିଆ ପିଲା ଯଦି ସହରମାନଙ୍କରେ ଶ୍ରମ କରିବା ମନା, ତା ହେଲେ ଗାଁ ମାନଙ୍କରେ ଗଛ ଚଢ଼ିବା କି ଜମିକ୍ଷମାରେ କାମ କରିବା ମଧ୍ୟ ବନ୍ଦ ହୋଇଯିବା ଉଚିତ । କିନ୍ତୁ ବୁଧିଆ ମା ବୁଧିଆର ଗଛଚଢ଼ାକୁ, ନିହାତି ସାଧାରଣ କଥା ବୋଲି ମନେକରି ଦୂରରେ କାଠିକୁଟା ଗୋଟାଉଥାଏ । ଉପରେ ବୁଧିଆ ନଡ଼ିଆ କାନ୍ଧ ପାଖରେ ପହଞ୍ଚିଯାଇ ଅଣ୍ଟା ଦଉଡ଼ିକୁ ଷ୍ଟ୍ରେଟ କରୁଥାଏ । ତାପରେ ସେ କାତି ନେଇ କାନ୍ଧରେ ଷ୍ଟ୍ରେଟ ପକାଇଲା । ଦୁଇଟି ଧଡ଼୍‌ଧଡ଼୍ ବଡ଼ ବଡ଼ ଷ୍ଟ୍ରେଟରେ ପୂରା କାନ୍ଧଟା ତା' ହାତକୁ ଚାଲିଆସିଲା । ମୋତେ ଚାହିଁ ସେ ପାଟିକଲା—ବାବୁ ଘୁଞ୍ଚି ଯାଆନ୍ତୁ, ପିଣ୍ଡା ଉପରକୁ ଚାଲି ଯାଆନ୍ତୁ, ପଇଡ଼ ପଡ଼ିବ ।

ମୁଁ ସେ କହିବା ଅନୁଯାୟୀ ପିଣ୍ଡା ଉପରକୁ ନ ହେଲେବି ଯଥେଷ୍ଟ ଦୂରକୁ ଚାଲିଗଲି । ପଇଡ଼ ସେ ତଳକୁ ପକାଇଲା । ମୁଁ ଗୋଟାଇବାକୁ ଆସୁଥିବାବେଳେ ସେ ପୁଣି ପାଟିକଲା– ନା ନା ଏବେ ନୁହଁ । ଅଉ ଦିଅଣ୍ଟା ପକାଇ ଦିଏ, ତାପରେ ଆସିବେ । ଭଲ ପଇଡ଼ ହୋଇଛି ।

ତାପରେ ଅଣ୍ଟା ଦଉଡ଼ିକୁ ବୁଲାଇ ନେଇ ସେ ଗଛ ସେପଟକୁ ବୁଲିଗଲା । କାତି ଷ୍ଟ୍ରେଟ ଦୁଇତିନି ଥର ଶୁଭିବା ପରେ ପୁଣି ଶୂନ୍ୟବାଣୀ —ପଇଡ଼ ପଇଲା । ତାପରେ ଦୁମଦାମ ଶବ୍ଦରେ ଚୂଆକୁଳ କମ୍ପିଗଲା ।

—ଏଥର ଓହ୍ଲାଉଛି । ଶିକରନା ଦିଅଣ୍ଟା କହିଥିଲା, ଦିଅଣ୍ଟା ପକାଇ ଦେଇଛି ।

ମୁଁ କହିଲି—ଠିକ୍ ଅଛୁ, ହୁସିଆରରେ ତଳକୁ ଓହ୍ଲାଇ ଆ । ମୁଁ ନଡ଼ିଆ ଗଛରୁ ପଡ଼ିଥିବା ପଇଡ଼ଗୁଡ଼ାକ ପ୍ରତି ଦୃଷ୍ଟି ଫେରାଇ ଆଣିବାକୁ ବସିଛି, ସେହି ସମୟରେ ବୁଧିଆ ଗୋଡ଼ର ଫନ୍ଦା ଗୋଟାଏ ହଠାତ୍ ଖସିଗଲା । ମୋ ଆଖି ବୁଜି ହୋଇଯିବା 'ବେଳକୁ ବୁଧିଆର 'ମା'ଲୋ ଡାକ ମୋତେ ଲାଗିଲା ସେ ଯେପରି

ପଇଡ଼ଟିଏ ମର ତଳେ ପଡ଼ିଗଲା । ମୁଁ ପୁଣି ଆଖି ଖୋଲିବା ବେଳକୁ ଦୁଶା ଗଛ ଗଣ୍ଡିକୁ କୁଣ୍ଢାଇ ଧରି ବସିଥାଏ, ଗଛମୂଳକୁ ଆଖି ପିଛୁଳାକେ ଦୁଶାମା ଆସି ସାରିଥାଏ, ବାଡ଼ପଟ ବାରଣ୍ଡାକୁ ବୋହି ଓ ଶୀକର ।

ତାପରେ ମୁଁ ଚିତ୍କାର କଲି ଦୁଶା ସାବଧାନ । ଧିରେ ଧିରେ ଓହ୍ଲା, ନହେଲେ ହାତଗୋଡ଼ ଚୁନା ହୋଇଯିବ ।

× × × ×

- ସାବଧାନ !

ମୋ ଚିତ୍କାରରେ ସେହି ଗ୍ରେଟ ଆପାର୍ଟମେଣ୍ଟଟି କମ୍ପିଗଲା ।

ସିଦ୍ଧାର୍ଥ ସ୍କୁଲରୁ ଆଣିଥିବା ନୋଟ୍‌ଟି ମୁଁ ଦେଖୁଥିଲି । ହ୍ୟାରନ୍ ସ୍ପ୍ରିଙ୍ଗ୍ ପବ୍ଲିକ ସ୍କୁଲର ପ୍ରିନ୍‌ସିପାଲ୍ ମୋ ପାଖକୁ ଲେଖିଥାନ୍ତି ଦୁଇଧାଡ଼ି—ପୁଅ ନେଇ ଆପଣଙ୍କର କିଛି ଜରୁରୀ କାମ । କାଲି ନିଶ୍ଚୟ ପୁଅ ସହ ସ୍କୁଲକୁ ଆସିବେ ।

ଲାଇବ୍ରେରୀରୁ କ୍ଲାନ୍ତ ହୋଇ ମୁଁ ଫେରିଥାଏ । ବାହାରେ ପ୍ରବଳ ଥଣ୍ଡା ପଡ଼ୁଥାଏ । ମୋ କ୍ଲାନ୍ତ ମୁହଁକୁ ଚାହିଁ ଶ୍ରୀମତୀ ଜଳଖିଆ ଆଣି ଥୋଇ ଦେଲେ । ସିଦ୍ଧାର୍ଥ ତା ଗନ୍ ଏରୋପ୍ଲେନ୍, ଡାଟ୍‌ମୋବାଇଲ ଭ୍ୟାନ୍ ଧରି ଖେଳୁଥାଏ । ମୁଁ ପ୍ରିନ୍‌ସିପାଲ୍‌ଙ୍କ ନୋଟ୍ ପଛରେ କଥା କଣ ବୋଲି ପଚାରିଲି, ସେ କିଛି କହି ପାରିଲେନି । ତିନ ଗୃହ ମାସ ହେଲା ଆମେ କାନାଡ଼ାରେ ପହଞ୍ଚିଛୁ । ସିଦ୍ଧାର୍ଥର ନାମ ଲେଖା ହେବା ଦୁଇମାସ ମାତ୍ର ହେବ । ଇଂରାଜୀ କହିବା ବୁଝିବା ତାର ଆଦୌ ହୋଇନି । ଭାଷା ଅସୁବିଧା ପାଇଁ ତାର ସାଙ୍ଗସାଥି କେହି ହୋଇ ନାହାଁନ୍ତି, ବୋଧେ ସେହିପାଇଁ କିଛି ଅସୁବିଧା ହୋଇଥିବ ।

ସ୍କୁଲରେ କିନ୍ତୁ ପ୍ରିନ୍‌ସିପାଲ୍ ମୋତେ ଯାହା କହିଲେ ସେଥିରେ ମୁଁ ଚମକି ପଡ଼ିଲି । ସିଦ୍ଧାର୍ଥ ରାସ୍ତା କ୍ରସ କଲାବେଳେ ଟ୍ରାଫିକ୍ ନିୟମ ନମାନି ରାସ୍ତାରେ ଦଉଡ଼ି କ୍ରସ କରିବାକୁ ଚେଷ୍ଟା କରୁଥିଲା । ଫଳରେ ଗୋଟିଏ ଦ୍ରୁତଗାମୀ କାର୍ ସହ ତାର ଧକ୍କା ଲାଗିଥାନ୍ତା । କିନ୍ତୁ କାର ବ୍ରେକ ଦେଇ ରହିଗଲା । ତାପରେ ପୋଲିସ୍ ସିଦ୍ଧାର୍ଥକୁ ଧରି ପ୍ରିନ୍‌ସିପାଲଙ୍କ ପାଖକୁ ଆସି ରିପୋର୍ଟ କଲା । ସେଇଥି ପାଇଁ ନୋଟ ଦେଇ ମୋତେ ଡକାଇ । ମୁଁ ସେଦିନ ସିଦ୍ଧାର୍ଥକୁ ସାଙ୍ଗରେ ଧରି ଠିକ୍ ସେହି ରାସ୍ତା ବାଟେ ଆସିଲି । ସ୍କୁଲରେ ନାଁ ଲେଖା ହେବା ପରେ ସିଦ୍ଧାର୍ଥକୁ ମୁଁ ଟ୍ରାଫିକ ନିୟମ ବତାଇ ଦେଇଥିଲି । ସାଙ୍ଗରେ ଯାଇ ରାସ୍ତା କ୍ରସ୍ କରାଇ ଦେଇଥିଲି । ତଥାପି ! କ୍ଲୋର ହ୍ୟାରନ କ୍ରସିଂ ପାଖରେ ତାକୁ ଠିଆ କରାଇ ରାସ୍ତା କିପରି କ୍ରସ୍ କରିବାକୁ ହୁଏ, କିପରି ପ୍ରଥମେ ଆଙ୍ଗୁଠି ଦେଖାଇ ଠିଆ ହେବାକୁ

ହୁଏ, ତାପରେ କପଡ଼ ଗାଣ୍ଠି ମଝରେ ରହିଗଲେ ରାସ୍ତାରେ ଚିହ୍ନିତ ଗାର ମଧ୍ୟରେ ଆଙ୍ଗୁଠି ଆଗକୁ ଦେଖାଇ ଦେଖାଇ ଆରପଟକୁ ଯିବାକୁ ହୁଏ ସବୁ ପୁଣି ମୁଁ ତାକୁ ଦେଖାଇ ଦେଲି । ଆଙ୍ଗୁଠି ଦେଖାଇବା ପରେ ବି ଗାଡ଼ି ଗତି ସ୍ଥିର କରି ବନ୍ଦ ନହେଲେ, ପୋଲିସର ସାହାଯ୍ୟ ନେବାକୁ ହୋଇଥାଏ । ସବୁ ବତାଇବା ପରେ ମୁଁ ସେହି ଜାଗାରେ ସିଦ୍ଧାର୍ଥକୁ କହିଲି— ସାବଧାନ୍, ଏ ନିୟମକୁ ଯେପରି କେବେ ଭୁଲିବୁନି । ସାବଧାନ !

ତାପରେ ଘରକୁ ଫେରି ମୁଁ ଶ୍ରୀମତୀଙ୍କୁ ସବୁକଥା କହି ସେଦିନ ସିଦ୍ଧାର୍ଥକୁ ସ୍କୁଲକୁ ନନେଇ ଥିବାରୁ କପରି ଦୁର୍ଘଟଣା ହେବାକୁ ଯାଉଥିଲା ତାହା ବର୍ଣ୍ଣନା କରିଥିଲି । ସିଦ୍ଧାର୍ଥ ସେଠି ଠିଆ ହୋଇଥିଲା । ତାପରେ ତାକୁ ମୁଁ ପିଠିରେ ବାଡ଼େଇବା ଆରମ୍ଭ କଲି ବାଡ଼େଇବାବେଳେ ମୁଁ ତାକୁ ବାରମ୍ବାର କହୁଥାଏ, ଆଗରୁ ମଧ୍ୟ ଟ୍ରାଫିକ୍ ନିୟମ ବତା ଯାଇଥିଲେ ମଧ୍ୟ କାହିଁକି ତାକୁ ମାନି ନଥିଲୁ ? ବାଡଉଥାଏ ଓ ସେହି ପ୍ରଶ୍ନ ବାରମ୍ବାର ପଚାରୁଥାଏ ।

ସିଦ୍ଧାର୍ଥକୁ ସେଥର ବାଡ଼େଇ ନଥିଲେ ଚଳିଥାନ୍ତା କି ନାହିଁ ମୁଁ କହି ପାରିବିନି । କିନ୍ତୁ ତାକୁ ବୁଝାଇ ଓ ତା ସହ ଦଣ୍ଡ ଦେଇ ସବୁଦିନ ପାଇଁ ସେ ଟ୍ରାଫିକ ନିୟମକୁ ମାନିବ ବୋଲି ମୋର ଧାରଣା ହୋଇଥିଲା । ସେ ଦିନ ସେ ଓ ଶ୍ରୀମତୀ କାନ୍ଦି କାନ୍ଦି ଶୋଇଥିଲେ । ସେମାନେ ଶୋଇବା ପରେ ମୁଁ ରାତିରେ ଆଉ ପଢ଼ି ପାରି ନଥିଲି, ସିଦ୍ଧାର୍ଥକୁ କୁଣ୍ଢାଇ, ତା ଖଟରେ ଶୋଇ ପଡ଼ିଥିଲି ।

\+ + +

ଦୁଣାକୁ ସାବଧାନ କରାଇଦେବା ବେଳେ ମୋର ତା ବାପା ମା ତାକୁ ଦଣ୍ଡ ଦେଇ ଠିକ ଭାବେ ଗଛଚଢ଼ା ଶିଖାଇବା ଉଚିତ ବୋଲି ଭାବିଲି । ଦୁଣା ଗଛକୁ କୁଣ୍ଢାଇ କୁଣ୍ଢାଇ ଓହ୍ଲାଉ ଥାଏ । ତା ମା ତାକୁ ବାଡ଼ୁଗୀକୁ ଗାଈ ଗୁହାଁ ରହିବା ପରି ଗୁହାଁ ରହୁଥାଏ । ଗଛ ଉପରୁ ଦୁଣାର ଆର୍ତ୍ତନାଦ ତାକୁ ସତର୍କ କରି ଦେଉଥାଏ ।

—ମରି ଥାନ୍ତିରେ ପୁଅ ଏଇଲେ ।

—ସାଆନ୍ତେ, ତା ବାପ ଏଇମିତି ଗଛରୁ ପଡ଼ି ମରିଥିଲା ।—ଶିକର ପିଣ୍ଡା ଉପରୁ କହିଲା ।

ଦୁଣା ଗଛରୁ ଓହ୍ଲାଇ କଚ୍ଛ ନକରି ପଇଡଗୁଡ଼ାକୁ ଗୋଟାଇ ଆଣି ମୋ ପାଖରେ ଜମା କରୁଥାଏ । ଶିକର ପିଣ୍ଡା ଉପରୁ କହିଲା—ଦୁଇଟା ଛେଇ ଦେ, ବାବୁ ପିଇବେ ।

ପଇଡ଼ ଭିତରୁ ଦୁଇଟା ବାଛି ନେଇ ଦୁଣା ଅଲଗା ରଖି ସ୍ୱଗତୋକ୍ତି କଲା—ଏ ଦୁଇଟା ମୋର ।

କାହିଁକି ?—ଶିକର ପଚାରିଲା ।—ଆଜିକାଲି ଗୃହ ଅଧିଆ ବ୍ରାହ୍ମଣ ପାଖରୁ ବେଶୀ ଆଦାୟ ହେଉନାହିଁ ?

ଦୁଣା କୌଣସି ଉତ୍ତର ନଦେଇ ପଇଡ଼ ଛେଇ ମୋ ପାଖରେ ରଖି ଦେଲା ।

ଶିକର ପଚାରିଲା—କେଉଁଟା ତୋଳିଲୁରେ ?

—ହେଇତ ପରା ସବୁ ପଇଡ଼ ତମ ଆଖି ଆଗରେ ଥୁଆ ହୋଇଛି, ଗଣିନ ।

—ଆରେ ପଇଡ଼ ତୋଳୁ ତୋଳୁ ଅଧାଡ଼ୁଆ ଗୁଡ଼ାକ ବି ତୋଳି ଦେଲୁ !!

ସେ ସମୟରେ ପିଣ୍ଡାରୁ ବୋଉ ତଳକୁ ଓହ୍ଲାଇଲା । ଦୁଣାମା ବୋଉକୁ କହିଲା—ମା ସାନ୍ତାଣୀ, ପୁରୁଣାଲୁଗା ଖଣ୍ଡେ ଦେବନି ।

ବୋଉ କହିଲା—ଆଉ ପୁରୁଣା ଲୁଗା ରହୁଛି କଲେ, ନୂଆ ଦେଲୁ ତ କଏ ନା କଏ ମାଗି ନେଇଯାଉଛି । କଣ୍ଟାଟିଏ ପାଇଁ ବି ପୁରୁଣା ଶାଢ଼ୀ ଖଣ୍ଡେ ମୋର ନାହିଁ ।

...ଫଳନ୍ତ ଗଛକୁ ସମସ୍ତେ ଢୋପଡ଼ ମାରନ୍ତି ମା । ଲକ୍ଷ୍ମୀ ଠାକୁରାଣୀ ତମକୁ ଦେଇଛନ୍ତି, ତମେ ଆମକୁ ଦବନି !

ପଇନ୍ଦି ପିନ୍ଧି ପିନ୍ଧି ମୁଁ ଦୁଣାକୁ ସ୍କୁଲକୁ କାହିଁକି ସେ ଯାଉନି ବୋଲି ପଚାରିଲି । ସେ ପଇଡ଼ଗୁଡ଼ାକୁ ଛେଇଲା ବେଳେ ତାର କୁନି କୁନି ମାଂସପେଶୀ ଗୁଡ଼ାକ ସ୍ଫୀତ ହୋଇ ଉଠୁଥାଏ । ତା'ର ସୁନ୍ଦର ଓ ସୁଗଠିତ ଶରୀରକୁ ଦେଖି ମୁଁ ତାହାକୁ ଛୁଇଁ ଦେଇ ମୋ ପାଖରେ ଛୁଆଁ ଅଛୁଆଁ ଭାବ କିଛି ନାହିଁ ବୋଲି ଧାରଣା ଦେବାକୁ ଇଚ୍ଛା କରୁଥାଏ । କିନ୍ତୁ ବୋଉ ଓ ଶିକରର ଉପସ୍ଥିତିରେ ମୁଁ ସଙ୍କୋଚରେ ପଡ଼ି ଯାଇଥାଏ । ସେହି ସମୟରେ ଶିକର ଆମ ପାଖରୁ ଚୁଆ ଆଡ଼କୁ ଚାଲିଗଲା ପରେ ତଳକୁ ଚାହିଁ ଦେଇ ନଇଁ ପଡ଼ି ବୁଦାଟିଏ ମୂଳରୁ ପୁଞ୍ଜାଏ ନଡ଼ିଆ ଧରି ଆମ ଆଡ଼କୁ ଦମ୍ ଦମ୍ ହୋଇ ଚାଲି ଆସି କହିଲା—ମାଆ ! ଦୁଣାର କାଣ୍ଡି ଦେଖନ୍ତୁ ! ସେ ଜମାରୁ ଚୋରି କରନି ।

ଆଜ୍ଞା ଯାହା କହୁନ, ମୋତେ ଯେତେ ମାଠରୁ ମାଠ, ମୁଁ ସେଇ ଦର୍ପୋଡ଼ା କାଠ ! ହଇରେ ଦୁଣା, ଏତକ କେଉଁଠି କଏ ରଖିଥିଲା ?"

ଏପରି ବିଚିତ୍ର ଭାବେ ନଡ଼ିଆ ଲୁଚିଯାଇ ପାରେ ବୋଲି ମୁଁ କଳ୍ପନା କରିପାରି ନଥିଲି । ଏତେ ଶ୍ରେଷ୍ଠପିଲା ଏପରି ଧୂର୍ତ୍ତ ହୋଇପାରେ, ଏପରିଭାବେ ଚୋରି କରିପାରେ ବୋଲି ମୁଁ ଆଶାକରି ନଥିଲି ! ବୋଉ ଦୁଖୀ ଓ ଦୁଖୀ ମା'କୁ ଗାଳି କରିବା ଆରମ୍ଭ କରି ଦେଇଥାଏ, ଯେଉଁ ଗାଳିର ଶବ୍ଦଗୁଡ଼ାକ ଗାଁର, ନଈ, ନାଳ, ପାଣି, ଚୂଆ, ପଙ୍କ ସହ ପୁରି ଖାପି ଯାଉଥାଏ—ସେତିକବେଳେ ମୁଁ ଜାଣିଲି ନୂଆ ବିଭାହୋଇ ଆସିବାପରେ ବୋଉ ଏ ଗାଁରେ ବହୁଦିନ ଧରି ରହିଥିଲା । ଦୁଖୀ ପ୍ରତି ମୋର ଯେଉଁ ସହାନୁଭୂତି ହୋଇ ଯାଇଥିଲା ତାହା ଧିରେ ଧିରେ କ୍ରୋଧରେ ପରିଣତ ହେଉଥିଲା । ମୁଁ ତା ବେଣୀଟିକୁ ଧରି ଝିଙ୍କିଦେଇ କହିଲି—ଝିଅରେ ଏତେ ଶ୍ରେଷ୍ଠ ବେଳୁ ଏପରି ଚୋରି ଶିଖିଲୁଣି !

ସେତିକବେଳେ ଉଭୟ ଦୁଖୀ ମା ଓ ବୋଉ ମୋ ପାଖକୁ ଝପଟି ଆସିଲେ । ମୁଁ ହାତ ଉଞ୍ଚାଇ ସାରିଥିଲି । କିନ୍ତୁ ସିଦ୍ଧାର୍ଥକୁ ମାରି ସେଦିନ ରାତିରେ ମୁଁ ତା ପାଖରେ ରାତିସାରା ଶୋଇଥିଲି । ତାକୁ ବୁଝାଇ ପ୍ରବୋଧନା ଦେଇଥିଲି ।

\+ \+ × ×

ମେଜର ଷ୍ଟ୍ରିଟ୍‌ର ଦୁଇ ପାର୍ଶ୍ୱରେ ଅସଂଖ୍ୟ ଗଛଙ୍କ ପତ୍ରଝଡ଼ା—ନାନା ବର୍ଣ୍ଣର ପତ୍ର ପଡ଼ିଥାନ୍ତି ରାସ୍ତାରେ, ପାର୍କିଂ କରାହୋଇଥିବା କାର୍ ଗୁଡ଼ାକ ଉପରେ ଦମକାଏ ପବନ ବହିଗଲା, ସେମାନେ ବୃନ୍ତଲ ଖସିବାକୁ ଉଦ୍ୟତ ପାରାଗୁଡ଼ିଏ ପରି ରାସ୍ତା ଉପରକୁ ଖସିଆସୁ ଥାଆନ୍ତି । ଚାଲିବାବେଳେ ଜୋତା ତଳେ ସେମାନଙ୍କର ମଚମଚ ଶବ୍ଦ ଯୋଗୁଁ ସିଦ୍ଧାର୍ଥ, ମୋର ଆଗେ ଆଗେ ଦଉଡ଼, ସେମାନଙ୍କୁ ମକଚି ପକାଉଥାଏ । ଶୁଖିଲା ପତ୍ର ଗୁଣ୍ଡ ହୋଇଯିବାର ଶବ୍ଦ ତାକୁ ଖେଳିବାକୁ ଦଉଡ଼ିବାକୁ ଉତ୍ସାହ କରୁଥାଏ । କାନାଡ଼ା ଆସିବାର ପ୍ରାୟ ବର୍ଷେ ପାଖାପାଖି ହୋଇଯିବ । ମୁଁ ସିଦ୍ଧାର୍ଥକୁ ସ୍କୁଲରୁ ଆଣି ଫେରୁଥାଏ । ଲାଇବ୍ରେରୀରୁ ମୁଁ ଜଲଦି ଫେରିଥାଏ ସେଦିନ । ଆପାର୍ଟମେଣ୍ଟ ବାରଣ୍ଡାରେ ଶ୍ରୀମତୀ ଠିଆ ହୋଇଥାଆନ୍ତି । ସେ ଆମ ଦୁହିଁଙ୍କ ଆଡ଼କୁ ଚାହିଁ ଠିଆହୋଇ ଥାଆନ୍ତି । ମୁଁ ବାରଣ୍ଡାରେ ପହଞ୍ଚିବା ବେଳକୁ ପଡ଼ୋଶୀଘର ଗୃହିଣୀ ସେଭେନ୍ ଅପର ଗୋଟିଏ ପୂରା କାର୍ଟନ ଧରି ଘର ଭିତରକୁ ପଶୁଥାଆନ୍ତି । ମୋତେ ଓ ଶ୍ରୀମତୀଙ୍କୁ ଦେଖି ହାଇ କହି ସେ ଭିତରକୁ ପଶିଲେ । ସିଦ୍ଧାର୍ଥ ମୋ ପଛେ ପଛେ ବାରଣ୍ଡାରେ ପହଞ୍ଚିଯାଇ ସେଭେନ୍ ଅପ୍ କାର୍ଟନ ଦେଖି ଦେଇଥିଲା । ଦାଣପୁର ନରହରିପୁର ଶାସନ ବୋଲି କହିଲେ ଯେପରି ନଡ଼ିଆ ପଇଡ଼ହିଁ ବୁଝାଏ ଉତ୍ତର ଆମେରିକାର ଯେ କୌଣସି ସହର କହିଲେ ସେଭେନ୍ ଅପ୍ ଓ ଆଇସ୍‌କ୍ରୀମ୍ ହିଁ ବୁଝାଏ । ସିଦ୍ଧାର୍ଥ ସେହିପରି କାର୍ଟନଟିଏ ଆଣିବା ପାଇଁ

ଜିଦ୍ ଧରିଲି । ମୁଁ ମନିପର୍ସ ଖୋଲିବା ବେଳକୁ ସେଥିରେ ଦୁଇଟି ଡଲାର ହିଁ ଅବଶିଷ୍ଟ ଥିଲା । ବ୍ୟାଙ୍କ ଖୋଲିବାକୁ ପରଦିନ ସକାଳ ନଅଟା ଯାଏଁ ଅପେକ୍ଷା କରିବାକୁ ପଡ଼ିବ । ସେହି ସମୟରେ ସିଦ୍ଧାର୍ଥ ଆମ ଦୁହିଁଙ୍କୁ ଚିନ୍ତିତ ଦେଖି ତା ପକେଟରୁ କୋଡ଼ିଏ ଡଲାର୍‌ର ନୋଟ୍‌ଟିଏ ବାହାର କରି ମୋତେ ପଚାରିଲା—ଏ ପଇସାରେ ସେଭେନ୍ ଅପ୍ ଆଣିବ ଡାଡ଼ି ? ମୁଁ ତା ହାତରେ କୋଡ଼ିଏ ଡ଼ଲାରର ନୋଟ୍‌ଟିଏ ଦେଖି ଆଶ୍ଚର୍ଯ୍ୟ ହୋଇଗଲି ।

—ଏ ଟଙ୍କା କେଉଁଠୁ ଆଣିଲୁ ?

—ମୁଁ ରାସ୍ତାରୁ ପାଇଲି ।

—କେଉଁଠି ?

—ଏଇଲେ, ଏଇ ରାସ୍ତାରେ ।

ସିଦ୍ଧାର୍ଥ ମୋର ହାବଭାବ ଦେଖି ଆତଙ୍କିତ ହୋଇ ଉଠୁଥିଲା ।

—ଚାଲ, ଦେଖାଇଦେବୁ କେଉଁଠି ପାଇଲୁ ।

ଶ୍ରୀମତୀ ଆମ ଦୁହିଁଙ୍କ କଥୋପକଥନ ଶୁଣି ମୋର ହାତଧରି ଆପାର୍ଟ-ମେଣ୍ଟ ଭିତରକୁ ନେଇଗଲେ । ପଛେ ପଛେ ସିଦ୍ଧାର୍ଥ ଆସିଲା । ଘର ଭିତରେ ପଶିବା ବେଳେ ତା ପାଟିରୁ ବାହାରିଗଲା—ସେ ଟଙ୍କା ମୋର, ମୁଁ ତାକୁ ରାସ୍ତାରୁ ପାଇଥିଲି ।

ସେହି ସମୟରେ କ୍ରୋଧରେ ମୁଁ ତା ଗାଲରେ ଚାପୁଡ଼ାଟିଏ ମାରିଥିଲି । ତା ଗୋରା ଗାଲରେ ମୋର ଆଙ୍ଗୁଳି ଚିହ୍ନ ପରିଷ୍କାର ବସି ଯାଇଥିଲା ।

—ରାସ୍ତାରେ ପଡ଼ିଥିବା ଟଙ୍କା; ଯାହାର ପଡ଼ିଥିବ ତାହାର ବା ସରକାରଙ୍କର ସମାଜର, ପାଇବା ଲୋକର କେବେ ନୁହେଁ । ଏ ଟଙ୍କା ବିଷ, ଏ ଟଙ୍କା ପାପ, ଏ ଟଙ୍କା ଅଶୁଭ, ଦୁର୍ଭାଗ୍ୟ ।

ମୁଁ ରାଗରେ ଥରୁଥାଏ, ମୋର ହାତରେ ନୋଟ୍‌ଟା ମଧ୍ୟ ଥରୁଥାଏ ।

ସିଦ୍ଧାର୍ଥ ସେ ନୋଟ୍ ଆଡ଼କୁ ଆଉ ଚାହିଁଲାନି । ମୋର ଯନ୍ତ୍ରଣା ସେ ବୁଝିଲା । ଡାଫୋଡିଲ ଫୁଲଟିଏ ବଦଳରେ କୌଣସି ଗୋଟିଏ ଅନୁଷ୍ଠାନକୁ ମୁଁ ସେଇ ଟଙ୍କା ଦେଇ ଦେଇଥିଲି ।

+ + +

ମୋର ଅତୀତ ହଠାତ୍ ତଳକୁ ଫେରି ଆସିଲା । ବୁଣା ମା କାନ୍ଦି କାନ୍ଦି କହୁଥିଲା ବାପ ଛେଉଣ୍ଡ ପିଲାଟାକୁ ମାରି ନାହିଁ ସାଆନ୍ତେ । ସେ ଆଉ କେବେ ଚୋରି କରିବନି ।

ବୁଣାର ଆଖିର କେଉଁ ପ୍ରାନ୍ତରେ ମୁଁ ସିଦ୍ଧାର୍ଥର ଲୁହାଣୀର ଚିହ୍ନ ଦେଖିଥିଲି ।



# ଓଟ

## ମନୋଜ ଦାସ

ପ୍ରାୟ ଅଶି ବର୍ଷ ତଳେ ସ୍କୁହାଲୀରେ ପାଠ୍ୟ କୌଣସି ଆଦର୍ଶ ସାହିତ୍ୟରେ ଶିବକୁମାର ପଢ଼ିଥିଲେ—ଓଟକୁ ମରୁ ପ୍ରଦେଶର ଜାହାଜ ଆଖ୍ୟା ଦିଆଯାଏ ।

ବହିରେ ଓଟର ଛବିଟିଏ ମଧ୍ୟ ମୁଦ୍ରିତ ହୋଇଥିଲା । ଶିବକୁମାରଙ୍କୁ ତାହା ମୋହିତ କରିଥିଲା । କେବଳ ଓଟର କୁବ୍‌ଜଟି ତାଙ୍କର ସହାନୁଭୂତି ଉଦ୍ରେକ କରିବା ଉଚିତ ନା ଭୟ, ଏହି ପ୍ରଶ୍ନ ଉପରେ ସେ ନିଃସନ୍ଦେହ ହୋଇପାରୁ ନ ଥିଲେ ।

ଓଟ ଦେଖିବା ନିମନ୍ତେ ତାଙ୍କ ହୃଦୟରେ ପ୍ରବଳ ବାସନାର ଜାଗରଣ ହୋଇଥିଲା । ସୁଯୋଗ ଶୀଘ୍ର ଆସିଲା ମଧ୍ୟ । ଜଣେ ମହିମାବନ୍ତ ସାଧୁ କେଇ କୋଣ ଦୂରବର୍ତ୍ତୀ ହାଟ ପଡ଼ିଆରେ ଡେରା ପକାଇଲେ । ତାଙ୍କ ସହ ରହିଥିଲେ ନିରନ୍ତର ଭଜନ ଗାଇ ପାରୁଥିବା ଶତାଧିକ ଶିଷ୍ୟ ଏବଂ ଅକୃପଣ ଦୁଗ୍ଧ ଦାନ କରୁଥିବା ଏକ ଡଜନ ଗାଈ । ସର୍ବୋପରି, କୌଣସି ଅଜ୍ଞାତ କାରଣରୁ ତାଙ୍କ ସହ ଥିଲା ଗୋଟିଏ ହୃଷ୍ଟପୁଷ୍ଟ ଓଟ ।

କିନ୍ତୁ ପୂର୍ବବର୍ତ୍ତୀ ରବିବାରର ବ୍ୟାପକ ସମସ୍ତ ଗୋଲିଆ ନଈ ପାଣିରେ ସନ୍ତରଣ ଓ ଡ଼ୁବନରେ ବ୍ୟସ୍ତ କରିଥିବା ହେତୁ ଶିବକୁମାର ପୀଡ଼ିତ ହୋଇ ପଡ଼ିଥିଲେ । ଗ୍ରାମର ଅନ୍ୟ ବାଳକମାନେ ସେମାନଙ୍କ ପୋଷାକୀ ଲୁଗାପଟା ବାହାର କରି ଓଟ ଦର୍ଶନ ସକାଶେ ବାହାରି ଗଲବେଳେ ସେ ଅଶ୍ରୁପାତ କରିଥିଲେ ।

ପ୍ରତ୍ୟକ୍ଷ ଓଟ-ଦର୍ଶନ ଦ୍ୱାରା ନିଜ ନିଜ ସମ୍ମାନ ବୃଦ୍ଧି କରି ପାରିଥିବା ହାଟ-ପ୍ରତ୍ୟାଗତ ବାଳକମାନେ ଓଟ ସମ୍ବନ୍ଧରେ ନାନା ଜ୍ଞାନଗର୍ଭକ କଥା

କହୁଥିଲେ । ଜଣେ କହୁଥିଲା କି ଓଠ ଏଣ୍ଟୁଅ ଭଳି ନିଜ ରଙ୍ଗ ପରିବର୍ତ୍ତିତ କରିପାରେ, ଆଉ ଜଣେ କହୁଥିଲା, ଜୁବ୍‌ଜ ଭିତରେ ଏପରି ଆଶ୍ଚର୍ଯ୍ୟ ଚୀଜ ଥାଏ, ଯାହା ମସ୍ତକରେ ହିଗ ଚହ୍ଟୁଥାଏ ।

ଏସବୁ ଅସତ୍ୟ ବୋଲି ବୁଝିବାକୁ ଶିବକୁମାରଙ୍କୁ ବର୍ଷଟିଏ ଲାଗିଥିଲା ।

ଅଧ୍ୟୟନ ପାଇଁ ଶିବକୁମାର ସହରକୁ ଆସିବା ମାତ୍ରେ ଓଠ ଦର୍ଶନର ଦ୍ୱିତୀୟ ସୁଯୋଗ ପାଇ ପୁଲକିତ ହୋଇଥିଲେ । କିନ୍ତୁ ସୁଯୋଗଟି ପୁନର୍ବାର ସେ ଅଳ୍ପକେ ହରାଇଲେ । ସହରକୁ ଆସିଥିଲା ଗୋଟିଏ ସର୍କସ । ସ୍ୱଳ୍ପ ପରିମାଣ ବସ୍ତ୍ର-ପରିହିତା ଜଣେ ରମଣୀଙ୍କ ସହ ମାର୍ଜିତ ଓଠଟିଏ ନୃତ୍ୟ କରିବା ଭଳି କୌଣସି ପ୍ରତିଶ୍ରୁତି ବହନ କରୁଥିଲା ରଙ୍ଗୀନ ବିଜ୍ଞାପନ ।

ମଧୁର ସ୍ୱପ୍ନାବସ୍ଥାରେ ଶିବକୁମାର ବାହାରୁଥିଲେ ସର୍କସ ଉଦ୍ଦେଶ୍ୟରେ ।

ହଠାତ୍ ଶିକାରୀ କବଳରୁ ପଳାତକ ବାରହା ଭଳି ଗତିରେ ଜଣେ ଭଦ୍ରଲୋକ ତାଙ୍କ ବସା ଭିତରକୁ ପଶି ଆସିଥିଲେ ଓ ତାଙ୍କ ଖଟିଆ ଉପରେ ବସିପଡ଼ି ତାଙ୍କର ଗାମୁଛା ଯୋଗେ ନିଜ କପାଳରୁ ପ୍ରଚୁର ଝାଳ ପୋଛୁଥିଲେ ।

ଶିବକୁମାର ସଦ୍ୟ ମଫସଲରୁ ଆସିଥାନ୍ତି । ସହରର ବହୁ ଘାତ-ପ୍ରତିଘାତ ଜାଣିବାକୁ ବାକି ଅଛି ବୋଲି ନିଜକୁ କହି ସେ ଆଗନ୍ତୁକଙ୍କ ଆଡ଼କୁ ଜୁଳୁଜୁଳୁ ଅନାଇ ରହିଲେ ।

"ସେମାନେ ପଚାରିଲେ କହିବ, ତମେ କାହାକୁ ଦେଖି ନାହଁ । ଯଦି ସେମାନେ ଘରେ ପଶି ମୋତେ ଦେଖିବେ, କହିବ ମୁଁ ମଉସା । ଶ୍ୱାସରୋଗୀ । ଚିକିତ୍ସା ପାଇଁ ଗାଁରୁ ଆସିଛି ।" ଆଗନ୍ତୁକ ଅଯାଚିତ ପରାମର୍ଶ ଦେଲେ ।

"ମଉସା ? ଶ୍ୱାସରୋଗୀ ?" ଶିବକୁମାର ଅତମତ ହୋଇ ପଚାରିଲେ ।

"ତ'ଣ ହେଲା ' ମଉସାଙ୍କୁ ଶ୍ୱାସରୋଗ ହେବା ମନା ?" ଆଗନ୍ତୁକ ଲମ୍ବ ଶୋଇପଡ଼ି ଓଲଟା ପଚାରିଲେ ।

ତିନି ମିନିଟ ନ ଯାଉଣୁ ଦୁଇଜଣ ଗଳଦ୍‌ଘର୍ମ ପୋଲିସ କର୍ମଚାରୀ ପହଞ୍ଚି ଶିବକୁମାରଙ୍କୁ ତାଙ୍କ ବସାରେ କେହି ଆଶ୍ରୟ ନେଇଛନ୍ତି କି ବୋଲି ପଚାରିଲେ ।

"ହଁ ।" ଶିବକୁମାର କହିଲେ । ଆଗନ୍ତୁକଙ୍କୁ ଧରାପକାଇ ଦେବା ଠିକ୍ ହେବ ବୋଲି ସେ ଯାଏ ସେ ମନେ କରୁଥିଲେ । କିନ୍ତୁ ସେ ବିସ୍ମୟଭରେ ଶୁଣିଲେ ନିଜ କଣ୍ଠସ୍ୱର "ମଉସା । ଶ୍ୱାସରୋଗୀ ।"

ପୋଲିସ ଗୁଲିଯିବା ମାତ୍ରେ ଆଗନ୍ତୁକ ବୃଦ୍ଧପଣ୍ଡା ଠିଆ ହେଲେ । ତାଙ୍କ ମୁହଁରେ ଫୁଟିଉଠୁ ଥିଲା ଆବିଷ୍କାରର ଦୀପ୍ତି ।

"ତମେ ବେଶ୍ ଚତୁର । ପ୍ରଥମରୁ କେହି ନାହିଁ କହୁଥିଲେ ସେମାନେ ମୋତେ ଦେଖି ପକାଇଲେ ସନ୍ଦେହ କରିଥାନ୍ତେ । ବେଶ୍, ବେଶ୍ । ପୁରସ୍କାର ତମର ପ୍ରାପ୍ୟ । ଚାଲ ।" ଆଗନ୍ତୁକ ପିଠି ଥାପୁଡ଼ାଇ ଦେଇ କହିଲେ ।

"ପୁରସ୍କାର ଲୋଡ଼ା ନାହିଁ ଆଜ୍ଞା । ମୁଁ ସର୍କସ ଯାଉଛି ।" ଶିବକୁମାର ବ୍ୟସ୍ତ ହୋଇ କହିଲେ ।

ଆଗନ୍ତୁକ ହସିଲେ । ହସ ସେତେ ପ୍ରଭାବଶାଳୀ ତଥା ତାତ୍ପର୍ଯ୍ୟପୂର୍ଣ୍ଣ ହୋଇପାରେ, ଶିବ କୁମାର ସେଯାଏ ସେକଥା ଜାଣି ନ ଥିଲେ । ସେ ହସରେ ପ୍ରଥମେ ତାଙ୍କୁ ଲାଜ ଲାଗିଲା । କ୍ରମେ ଲାଜର ସ୍ଥାନ ନେଲା ଏକ ନୂତନ ଉପଲବ୍ଧି, ପରାଧୀନ ଭାରତର ଜଣେ ଯୁବକ ପକ୍ଷରେ ସର୍କସ ଦେଖିବାଠୁଁ ବଳି ବହୁ ଅଧିକ ଗୁରୁତ୍ୱପୂର୍ଣ୍ଣ କାମ ରହିଛି ।

ଅନତିବିଳମ୍ବେ ତାଙ୍କ ଶ୍ରେଷ୍ଠ ବିପ୍ଳବୀମାନଙ୍କ ଗୋପନ କେନ୍ଦ୍ରରେ ପରିଣତ ହେଲା । ଶିବକୁମାରଙ୍କ ହୃଦୟରେ ଆସିଲା ସାର୍ଥକତାବୋଧ ।

ଯଥା ସମୟରେ ପୋଲିସ ତାଙ୍କ ଘର ଅବରୋଧ କଲା ଓ ତାଙ୍କୁ ସାମୟିକ ଭାବରେ ବନ୍ଦୀ କଲା । କିନ୍ତୁ ବିପ୍ଳବୀମାନଙ୍କ କର୍ମପଦ୍ଧତି ଥିଲା ଗୁରୁତ୍ୱପୂର୍ଣ୍ଣ । ସେମାନଙ୍କ ବିରୁଦ୍ଧରେ କୌଣସି ଅଭିଯୋଗ ପ୍ରମାଣିତ ହୋଇ ପାରିଲା ନାହିଁ ।

ମୁକ୍ତି ପାଇ ଶିବକୁମାର ଦ୍ୱିଗୁଣ ଉତ୍ସାହରେ କାମରେ ଲାଗିଲେ । କୃଷିଘର ଓ ଅବସର ବିନୋଦନ କେନ୍ଦ୍ର ନାମରେ ସେ ଅଞ୍ଚଳ ଅଞ୍ଚଳ ବ୍ୟାପୀ ସଂଗଠିତ କଲେ ବିପ୍ଳବ କେନ୍ଦ୍ର । ପ୍ରଚାର କଲେ ଏଇ ବାର୍ତ୍ତା—ସ୍ୱାଧୀନତା ପାଇଁ ଲୋଡ଼ା ଦେଶବ୍ୟାପୀ ସଶସ୍ତ୍ର ବିପ୍ଳବ ।

ପୁତ୍ରର କାର୍ଯ୍ୟକଳାପରେ ଆତଙ୍କିତ ପିତାମାତା ତୁରନ୍ତ ତାଙ୍କ ବିବାହର ବ୍ୟବସ୍ଥା କଲେ । କିନ୍ତୁ ବିବାହ ତଥା ଏକ ପୁତ୍ର-ସନ୍ତାନର ଜନ୍ମ ସତ୍ତ୍ୱେ ଶିବକୁମାର ତାଙ୍କ କାର୍ଯ୍ୟକ୍ରମ ରଖିଲେ ଅବ୍ୟାହତ ।

ଅବଶେଷରେ, ଏକ ମଧ୍ୟରାତ୍ରରେ ସେ ଧୃତ ହେଲେ—ଏଥର କେତେକ ଗୁରୁତ୍ୱପୂର୍ଣ୍ଣ କାଗଜପତ୍ର ସମେତ । ସୈନ୍ୟବାହିନୀର ଏକ କ୍ଷୁଦ୍ର

ଅଂଶ ସହ ତାଙ୍କ ଦଳର ମନ୍ତ୍ରଣା ପ୍ରମାଣିତ ହୋଇଗଲା । ସେ ହେଲେ ଦ୍ୱିପାନ୍ତରିତ ।

ଅନ୍ଦାମାନର ନିର୍ଯାତନା ଓ ନିର୍ଘଣ ଭିତରେ ହିଁ ତାଙ୍କ ସ୍ୱାସ୍ଥ୍ୟକୁ ପ୍ରତ୍ୟାବର୍ତ୍ତନ କରିଥିଲି ଓଃ । ଯେଉଁଦିନ ସେ ଅନ୍ୟଜଣେ କାରାବାସୀଙ୍କ ଠାରୁ ଶୁଣିଲେ ଯେ ଓଃ ଉପରେ ଯେତେ ନିର୍ମମ ବୋଝ ଲଦିଲେ ବି ସେ ବିଚରା କେବଳ ଦୀର୍ଘ ନିଶ୍ୱାସ ଓ ଅଶ୍ରୁମୋଚନ ବ୍ୟତୀତ ଅନ୍ୟ କୌଣସି ପ୍ରକାରେ ପ୍ରତିବାଦ କଣାଏ ନାହିଁ । ସେଦିନ ସେ ନିଜେ ହିଁ କାନ୍ଦ କାନ୍ଦ ହୋଇଥିଲେ ।

ଆନ୍ଦାମାନରୁ ନିଷ୍କୃତି ମିଳିଲା ବହୁ ବର୍ଷ ପରେ । ସେତେବେଳେ ସେ ଦିଶୁଥିଲେ ଆପଣାର ପ୍ରେତଭଳି । କାରାଗାର ଭିତରେ ଖାଦ୍ୟାଭାବ, ଅସ୍ୱାସ୍ଥ୍ୟକର ପରିବେଶ ଓ ଶାସନ ତାଙ୍କୁ ପ୍ରାୟ ପଙ୍ଗୁ କରି ଛାଡ଼ିଥିଲା । ବିପ୍ଳବର ଭବିଷ୍ୟତ ସମ୍ପର୍କରେ ସେ ଆଶାହତ ହୋଇଥିଲେ । ପିତାମାତା ତଥା ପତ୍ନୀ—ଯାହାଙ୍କୁ ସେ ଜାଣିବାର ସୁଯୋଗ ପାଇଥିଲେ ସାମାନ୍ୟ—ସେତେବେଳକୁ ପରଲୋକକୁ ପ୍ରସ୍ଥାନ କରିଥିଲେ ।

ଦେଶରେ ଏକ ନୂତନ ଧରଣର ସ୍ୱାଧୀନତା ସଂଗ୍ରାମୀ-ସମ୍ପ୍ରଦାୟର ଅଭ୍ୟୁଦୟ ହୋଇଥିଲା । ଶିବକୁମାର ସେମାନଙ୍କୁ ବୁଝିପାରୁ ନ ଥିଲେ ।

ଯେଉଁ ଗୋଟିଏ ମାତ୍ର ବିଷୟ ତାଙ୍କୁ ଆପ୍ୟାୟିତ କରିଥିଲା, ତାହା ହେଲା ସ୍ୱାଧୀନତା ସଂଗ୍ରାମରେ ତାଙ୍କ ଏକମାତ୍ର ସନ୍ତାନର ଯୋଗଦାନ । ତେବେ ସେ ଆପ୍ୟାୟନବୋଧ ଖୁବ୍ ଗଭୀର ହୋଇ ପାରିଲା ନାହିଁ; କାରଣ ସଂଗ୍ରାମ ପ୍ରତି ପୁତ୍ରର ଦୃଷ୍ଟିକୋଣ ସେ ପସନ୍ଦ କରି ପାରୁ ନ ଥିଲେ ।

"ଶତ୍ରୁକୁ ଆମେ ଅହିଂସା ଓ ପ୍ରେମଦ୍ୱାରା ସାମ୍ନା କରିବା !" ପୁତ୍ର ମୃଦୁ ହସି କଣାଇଥିଲେ ।

ପୁତ୍ରର ସାବଲୀଳ ଅଭିବ୍ୟକ୍ତି ଓ ସଫେଦ୍ ପୋଷାକରେ ସେ ମୁଗ୍ଧ ହୋଇ ଥିଲେ, କିନ୍ତୁ ଯୁକ୍ତି ତାଙ୍କର ହୃଦବୋଧ ହେଲା ନାହିଁ ।

"ଦେଖ ବାବୁ, ମୋର ଭୟ ହୁଏ, ସଂଗ୍ରାମକୁ ସଂଗ୍ରାମ ଦ୍ୱାରା ଜିତିବା କରିବାକୁ ଯେଉଁମାନେ ପ୍ରସ୍ତୁତ ନୁହନ୍ତି, ସେହିମାନଙ୍କୁ ଏ ନୀତି ସୁହାଇବ ମାତ୍ର । ଅଗଣିତ ଭୟାଳୁ ଲୋକେ ଦେଶପ୍ରେମୀ ବୋଲାଇବାର ସୁଯୋଗ ପାଇବେ । ଦେଶପାଇଁ ତାହା ହେବ ଦୁର୍ଯୋଗ । ଯେଉଁ ଗୌରବ ସାହସୀର ପ୍ରାପ୍ୟ, ତାକୁ ଲୁଣ୍ଠନ କରି ନେଇଯିବେ ସୁବିଧାବାଦୀମାନେ । ଯୋଗ୍ୟତମ ସନ୍ତାନମାନଙ୍କର ସତ୍ୟ ତ୍ୟାଗ ଦ୍ୱାରା ଭାରତମାତା ରୁଷ୍ଟ

ସ୍ୱଅନ୍ତେ ପିବା, ଏପରି ନକଲି ଅର୍ଘ୍ୟ ସେ ଗ୍ରହଣ କରିବେ କି ?"
ଶିବକୁମାର କହୁଥିଲେ ।

କିନ୍ତୁ ସମୟର ଧାରା ବଦଳି ଯାଇଥିଲା । ଏ ମତ ଗ୍ରହଣ କରିବା ତ ଦୂରର କଥା, ହୃଦୟଙ୍ଗମ କଲା ଭଳି ଲୋକ ଶିବକୁମାରଙ୍କ ଆଖିରେ ପଡୁ ନ ଥିଲେ ।

ଶିବକୁମାର ବାରମ୍ବାର ଦେଶ ଭ୍ରମଣରେ ବାହାରିବାର ଯୋଜନା କରୁଥିଲେ । ଇତଃସ୍ତତଃ ତାଙ୍କ ଆଦର୍ଶରେ ଆସ୍ଥାବାନ ଦେଶପ୍ରେମୀ କେତେ ଜଣ ତିଷ୍ଠି ରହିଛନ୍ତି, ତା'ର ସନ୍ଧାନ ନେବା ତଥା କାଳକ୍ଷେପଣ କରିବା ଥିଲା ଏ ଯୋଜନାର ଉଦ୍ଦେଶ୍ୟ । ଆଉ ଗୋଟିଏ ଅଭିଳାଷ ଯାହା ନିଜ ପାଖରେ ସେ ଅତି ଗୋପନ ଥିଲା, ତାହା ହେଲା ରାଜସ୍ଥାନ ଅଞ୍ଚଳରେ ହୃଦୟ ପୁରାଇ ଓଟ ଦର୍ଶନ ।

କିନ୍ତୁ ଦୈହିକ ଅବସ୍ଥା ଯୋଜନାକୁ କାର୍ଯ୍ୟକାରୀ କରାଇଦେଲା ନାହିଁ ।

ଏଣେ ପୁତ୍ରଟି କ୍ଷିପ୍ର ଗତିରେ ବିଖ୍ୟାତ ହୋଇ ଉଠୁଥିଲେ । ବିଶିଷ୍ଟ ଲୋକେ କହୁଥିଲେ, ପୁତ୍ର-ଭାଗ୍ୟ ଯୋଗୁଁ ସେ ଗର୍ବ କରିବା ଉଚିତ । ଶିବକୁମାର କର୍ତ୍ତବ୍ୟ ଦୃଷ୍ଟିରୁ ଗର୍ବ ବୋଧ କରିବାକୁ ଚେଷ୍ଟା କରୁଥିଲେ ।

କିନ୍ତୁ ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ଆୟୋଜିତ ଗୋଟିଏ ବିରାଟ ଜନସଭାରେ ସେ ନିଜର ଭାବ-ବିସ୍ଫୋରଣକୁ ରୋକିପାରିଲେ ନାହିଁ । ସେ କହିଲେ, ଅହିଂସାର ଦୋହାଇ ଦେଇ ଦେଶବ୍ୟାପୀ ଯେଉଁ ଭୀରୁତା ଓ ଛଳନାର ପୃଷ୍ଠ-ପୋଷକତା କରାଗଲା, ତାହାର ପରିଣାମ ହେଲା ଭାରତ ବିଭାଜନ ତଥା ସାମ୍ପ୍ରଦାୟିକ ରକ୍ତପାତ ।

"ଅହିଂସା ଆଚରଣ କରିବା ପାଇଁ ଲୋଡ଼ା ଯେଉଁ ଆଧ୍ୟାତ୍ମିକ ସାଧନା, ତାର କାଣିଚାଏ ବି ନ ଥାଇ ତମେମାନେ ଅହିଂସାର ଢୋଲ ବାଡେଇ ଲାଗିଲ । ତମର ଆତ୍ମଘାତୀ ପ୍ରତାରଣା ଓ ଅଭିନୟ ଦେଖି ହିଂସାର ଶୈତାନ୍ ଯେଉଁ ଅଟ୍ଟହାସ୍ୟ କରୁଥିଲା, ନିଜ ଢୋଲର ଆବାଜ୍‌ରେ ତମେ ସେ ଶବ୍ଦ ଶୁଣିପାରୁ ନ ଥିଲ । ଅସଲ ସମୟରେ ଶୈତାନ୍ ତମକୁ ଇତିହାସରେ ହାସ୍ୟାସ୍ପଦ ବନାଇ ଗ୍ରୁଡ଼ିଲା ।" ସେ ଘୋଷଣା କଲେ ।

ମଞ୍ଚରେ ସମାସୀନ ପୁତ୍ରଙ୍କ ସମେତ ସବୁ ମନ୍ତ୍ରୀବର୍ଗ ବଡ଼ ଅସ୍ୱସ୍ତି ଅନୁଭବ କଲେ । ଶିବଶଙ୍କରଙ୍କୁ ତେଣିକି ସଭା ସମିତିକୁ ଡକା ହେଲା ନାହିଁ ।

ପୁତ୍ର ହେଲେ ଉପମନ୍ତ୍ରୀ ଓ ଯଥା ସମୟରେ ମନ୍ତ୍ରୀ । ରବର ଫୋମର ଶେଯ, ଗରମ ପାଣି ବ୍ୟବସ୍ଥାମଣ୍ଡିତ ସ୍ନାନାଗାର ଓ ରେଡ଼ିଓ ସମ୍ବଳିତ ଗୋଟିଏ ମନୋରମ କୋଠରୀରେ ସ୍ଥାନ ପାଇଲେ ଶିବଶଙ୍କର । କୋଠରୀ ବାହାରେ ସେ ହେଲେ ବହିଷ୍କୃତ । ମଝେ ମଝେ ତାଙ୍କର ଭ୍ରମ ହେଉଥାଏ, ସେ ଯେପରି ଆନ୍ଦାମାନର

ନିର୍ବାସନ ଭିତରେ ରହିଛନ୍ତି । ଅବଶ୍ୟ ସେ ଭ୍ରମ ଅଯୌକ୍ତିକ ବୋଲି ସେ ବୁଝୁଥାନ୍ତି ।

ହଠାତ୍ ଘନେ କୋଳାହଳ ସନ୍ଧକାରେ ସମସ୍ତେ ତାଙ୍କୁ ମନେ ପକାଇଲେ । ତାଙ୍କୁ ନିଆ ହେଲା ଏକ ସୁସଜ୍ଜିତ ମଣ୍ଡପ ଉପରକୁ । ସେ ହେଲେ ପୁଷ୍ପ ଓ କର୍ପୂର-ମାଲ୍ୟ-ଭୂଷିତ । କରତାଳି ଧ୍ୱନି ମଧ୍ୟରେ ତାଙ୍କୁ ଗୋଟିଏ ତାମ୍ର ଫଳକ ଭେଟି ଦିଆଗଲା ।

ସେହି ଆନନ୍ଦମୁଖର ଅବସରରେ ସାମାନ୍ୟ ନିରାନନ୍ଦମୟ ବ୍ୟାପାରଟିଏ ପଡ଼ାକୁ ଆସିଲା : ଶିବଶଙ୍କର ମାନସିକ ଭାରସାମ୍ୟ ହରାଉଥିଲେ । ଏହା ଆବିଷ୍କାର କଲେ ପୁତ୍ରଙ୍କ ବୁଦ୍ଧିମାନ ଓ ଚିକ୍‌କଣ ସେକ୍ରେଟାରୀ ପିଏଙ୍କ ସର୍ବଦା ବୃଦ୍ଧଙ୍କ ପଶ୍ଚାତରେ ଦଣ୍ଡାୟମାନ ଥାଇ ତାଙ୍କୁ ସହାୟତା କରୁଥିଲେ । ଫଳକ ଗ୍ରହଣ କରି ବୃଦ୍ଧ ଗୁଣୁଗୁଣୁ ସ୍ୱରରେ କହିବାର ସେ ଶୁଣିଲେ ; "ଏଇଟା କ'ଣ ? ମୁଁ ଭାବିଥିଲି ଏମାନେ ମୋତେ ଓଟ ଦେଖାଇବେ !"

ଏ ଘଟଣା ଶୁଣି ମନ୍ତ୍ରୀ ଦୀର୍ଘ ନିଃଶ୍ୱାସ ଛାଡ଼ି ମନ୍ତବ୍ୟ ଦେଇଥିଲେ, 'ବାସ୍ତବିକ୍, ବାପା ଯେମିତି ମୋର ତତ୍ତ୍ୱ ନେବାର ସମୟ ପାଇ ନ ଥିଲେ, ମୁଁ ବି ସେମିତି ତାଙ୍କ ତତ୍ତ୍ୱ ନେବାର ଅବସର ପାଇନାହିଁ ।'

'ସାର ! ଦେଶ ପାଇଁ ଜୀବନ ଉତ୍ସର୍ଗ ହିଁ ଉଭୟଙ୍କ ଏ ତ୍ରୁଟିର କାରଣ ।' କହିଥିଲେ ସେକ୍ରେଟାରୀ ।

ଶିବକୁମାର ପୁଣି ବିସ୍ମୃତ ହେଲେ । ଅଧିକାଂଶ ସମୟ ସେ ଝିମାଇବାରେ ବା ନାତିଠାରୁ ପକ୍ଷୀକାହାଣୀ ଶୁଣିବାରେ ସମୟ ବ୍ୟସ୍ତ କରୁଥିଲେ । ନାତିର ସୌଜନ୍ୟରୁ ସେ ଦେଖିବାକୁ ପାଉଥିଲେ ଓଟର ନାନାବିଧ ଧଳାକଳା ତଥା ରଙ୍ଗୀନ ଚିତ୍ର ।

ମନ୍ତ୍ରୀଙ୍କ ବଂଗଳା ଆଗରେ ଚାଲିଥିଲା ସତ୍ୟାଗ୍ରହ । ସତ୍ୟାଗ୍ରହୀମାନେ କେତୋଟି ଦଳରେ ବିଭକ୍ତ ହୋଇଥିଲେ ଓ ପ୍ରତି ଦଳ ଏକାଦିକ୍ରମେ ଓଳିଏ କାଳ ଉପବାସ କରୁଥିଲେ । ସେହି ନିଦାରୁଣ ସମୟଟକ ସେମାନେ କେବଳମାତ୍ର ତାସ୍ ଖେଳରେ ବ୍ୟସ୍ତ କରୁଥିଲେ । ମଝେ ମଝେ ସେମାନେ ନିଜ ସଂଘର ଗୌରବ ବୃଦ୍ଧି ଏବଂ କର୍ତ୍ତୃପକ୍ଷଙ୍କ ମୃତ୍ୟୁକାମନା କରି ସ୍ଲୋଗାନ ଦେଉଥିଲେ ।

ଅପରାହ୍ନରେ ଶିବକୁମାର ବାଲକୋନି ଉପରକୁ ବାହାରି ଆସିଥାନ୍ତି । ପୁତ୍ରଙ୍କୁ ସେ ପଚାରିଲେ, 'ଏମାନେ କ'ଣ ଚାହାନ୍ତି ?'

"ଅଧିକା ଦରମା !"

"ଦେଇ ଦେଉନ ?"

' ବାପା, ଏମାନଙ୍କ ଭିତରୁ କେହି ଏଗାର ଶହ ପଚାଶରୁ କମ୍ ପାଆନ୍ତି ନାହିଁ ।"

' ତେବେ ଦୁଃଖୁଛନ୍ତି କାହିଁକି ?"

ପିତାଙ୍କ ଏ ପ୍ରଶ୍ନର ଉତ୍ତରରେ ମନ୍ତ୍ରୀ କାଶିଲେ ।

"ମୁଁ ଯାଉଛି ସେମାନଙ୍କୁ ପଚାରି ବୁଝିବି ଓ ବୁଝାଇବି ।" ବୃଦ୍ଧ ହଠାତ୍ ନିଜ ଅନ୍ତରଙ୍ଗ ବାଣ୍ଡର୍ଣ୍ଣିକ୍ ଶକ୍ତ ସ୍ୱରରେ ଧରି ବାଟ ଖୋଜି ହେଲେ ।

"ବାପା, ଶୁଣ ବାପା ! ତମେ ଏନେଇ ମୁଣ୍ଡ ଖେଳାଇବା ଦରକାର ନାହିଁ । ଏସବୁ କଥା ଆମ ଉପରେ ଛାଡ଼ି ଦିଅ ।"

"ତମ ଉପରେ ?" ବୃଦ୍ଧ ଧମକ ଦେଲେ । 'ତମ ଉପରେ ?' ସେ ପ୍ରଶ୍ନର ପୁନରାବୃତ୍ତି କରିବା ପରେ କ୍ରୋଧର ଆଧିକ୍ୟ ହେତୁ ଆଉ କିଛି କହି ପାରିଲେ ନାହିଁ ।

ଶିବକୁମାର ପାହାଚ ପାଖରେ ପହଞ୍ଚିଲେ । ଜଣେ ଅର୍ଦ୍ଦଳି ଦୌଡ଼ି ଆସୁଥିଲା ତାଙ୍କୁ ସହାୟତା କରିବା ପାଇଁ । କିନ୍ତୁ ଇଶାରା ଯୋଗେ ମନ୍ତ୍ରୀ ତାକୁ ନିରସ୍ତ କଲେ ।

ତଳ ମହଲକୁ ଅବତରଣ କରିବାକୁ ଶିବକୁମାରଙ୍କୁ ଲାଗିଗଲା ପାଞ୍ଚ ମିନିଟ୍ । ହଠାତ୍ ଦୌଡ଼ି ଦୌଡ଼ି ଆସି ତାଙ୍କ ନାତି ହାତ ଧରି ପକାଇଲା ।

"ଜେଜେ ଓଟ ଦେଖିବ ? ଅନେକ ଆସିଛନ୍ତି । ନଈ ସେପାରି ପଡ଼ିଆରେ ଜମା ହୋଇଛନ୍ତି । ଯିବା ?" ନାତି ଖୁସି କଣ୍ଠରେ ପଚାରିଲା ।

"ଓଟ ? ଅନେକ ? ନିଶ୍ଚୟ ଯିବା କିନ୍ତୁ..."

"ଡେରି ହେଲେ ଓଟମାନେ ଚାଲିଯିବେ, ଜେଜେ !" ନାତି ବୃଦ୍ଧଙ୍କ ବାହୁ ଧରି ଟାଣିଲା ।

ପଛପଟ ଦରଜା ଦେଇ ଦୁହେଁ ନିଷ୍କ୍ରାନ୍ତ ହେଲେ । କାର ଓ ଡ୍ରାଇଭର ପ୍ରସ୍ତୁତ ଥିଲେ । ନଈକୂଳରେ ପହଞ୍ଚିବାକୁ ଲାଗିଲା ଅଧଘଣ୍ଟାଏ । ସେତିକ ସମୟ ଭିତରେ ଶିବକୁମାର ବାରମ୍ବାର 'ଆଃ ଆଃ" ବୋଲି ଉଚ୍ଚାରଣ କରୁଥାନ୍ତି । ଦୀର୍ଘ ଦିନର କୌଣସି ଆଶା ମେଣ୍ଟିବାର ସମ୍ଭାବନା ଦେଖିଲେ ସେହି ସଂକ୍ଷିପ୍ତ ଅଭିବ୍ୟକ୍ତି ଦେବା ଥିଲା ତାଙ୍କର ଅଭ୍ୟାସ ।

ଅଦୂରର ପର୍ବତଶ୍ରେଣୀ ଉପରେ ଅବତରଣ କରୁଥିଲା ଶୀତଳ ସନ୍ଧ୍ୟା ।

"ହେଇଟି ଓଟମାନେ !" ପୋଲ ପାଖରେ କାରରୁ ଅବତରଣ କରି ନାତି ବାଲିଚରସ୍ଥ ଅଡ୍ଡେ ଆଙ୍ଗୁଳି ଦେଖାଇ କହିଲା ।

"କାହିଁ କି । କାହାନ୍ତି !" ଶିବକୁମାର ଏଣେ ତେଣେ ଦୃଷ୍ଟି ନିକ୍ଷେପ କରି ପଚାରିଲେ ।

"ହେଉପଗ, ସ୍କୁଲ ଯାଉଛନ୍ତି ! ତମ ଆଖିର ଅବସ୍ଥା ଯାହା, ସେଥିରେ ତମେ କ'ଣ ସେମାନଙ୍କୁ ଭଲ କରି ଦେଖି ପାରନ୍ତି ?" ନାଥ ଚେତେଇଦେଲା ।

"ଆଚ୍ଛା, ଆଚ୍ଛା, ମୁଁ ଦେଖି ପାରୁଛି ଯେ, ତେବେ..." ଶିବଶଙ୍କର ଧୂଆଁଳିଆ ଦୂରଦିଗନ୍ତକୁ ତୀବ୍ର ଭାବରେ ନିରୀକ୍ଷଣ କରୁଥିଲେ ।

'ହେଲା । ଏଥର ଚାଲ । ଆଉ କୁଆଡ଼େ ବୁଲିଯିବା । ପାର୍କ ଆଡ଼େ ।" ନାଥ କହିଲା ।

'ଆଉ କୁଆଡ଼େ ? କିଆଁ ଓଟ ଭଲ ଭାବରେ ନ ଦେଖି ମୁଁ ଚାଲିଯିବି କେଉଁ ଦୁଃଖରେ ? ସେମାନେ କେଡ଼େ ଭଲ ।"

"ନାହିଁ ମ, ଜେଜେ, ଚାଲ ପଳେଇବା ।" ନାଥ ଜିଗର ଲଗେଇଲା ।

କିନ୍ତୁ ଶିବକୁମାର ଟଳିଲେ ନାହିଁ । ନାଥ ବାରମ୍ବାର ତାଙ୍କ ବାହୁ, ତାଙ୍କ ହାତ ଓ ପଞ୍ଜାବି ଟାଣିବା ସତ୍ତ୍ୱେ ସେ ବ୍ୟାକୁଳ ଭାବରେ ଦୂରଦୂରାନ୍ତରକୁ ଦୃଷ୍ଟିପାତ କରୁଥାନ୍ତି । ଚଷମା ଥରକୁ ଥର ସଫା କରୁଥାନ୍ତି ।

କ୍ରମେ ତାଙ୍କ ବ୍ୟାକୁଳତା ହେଲା ଗାମ୍ଭୀର୍ଯ୍ୟରେ ପରିଣତ । ସେ ନାଥ ଉପରେ ଦୃଷ୍ଟି ନିବଦ୍ଧ କଲେ ।

"କାହିଁ ଓଟ ?" ସେ ପଚାରିଲେ ।

ନାଥ କିଛି କହିବା ପୂର୍ବରୁ ସେ ପ୍ରଚଣ୍ଡ କଣ୍ଠରେ କହିଲେ, "ଉତ୍ତର ଦେ, ମିଥ୍ୟାବାଦୀ !"

ଜେଜେଙ୍କ ସେ ଭଳି କଣ୍ଠସ୍ୱର ନାଥ କେବେ ଶୁଣି ନ ଥିଲା । ସେ ବିକଳ ଦେଖାଗଲା ।

"ବାପା ତୁମକୁ ଓଟ ଦେଖାଇବା ନାମରେ ଘରୁ ବାହାର କରି ଆଣିବାକୁ କହିଲେ । ମୋତେ ସେଥିପାଇଁ ଏଇଟା ଦେଲେ ।" ନାଥ ପକେଟରୁ ଚକୋଲେଟ କାଢ଼ି ଦେଖାଇଲା ।

ଶିବକୁମାର ବସି ପଡ଼ିଲେ ଓ ଆହୁରି ଜୋର ପାଟି କଲେ, "କ'ଣ ହେଲା, ମୋତେ ବା ସେମାନେ ଫନ୍ଦି କରି ଠକି ଦେଲେ । ମୁଁ ଅତୀତ । କିନ୍ତୁ ତୁ ? ତୁ ପରା ଭବିଷ୍ୟତ ? ସାମାନ୍ୟ ଚକୋଲେଟରେ ଠକି ହେଲୁ ତୁ ହତଭାଗା ?"

ନାଥ କାନ୍ଦିଲା ।

ଶିବକୁମାର ତାକୁ କୋଳକୁ ନେଲେ । "ତୁ କାନ୍ଦିବା ଦରକାର ।" ସେ ଏତିକି କହିଲେ । ଅନ୍ଧକାର ପ୍ରତି ପରୁଆ ନ କରି ଦୁହେଁ ବସିଥିଲେ ଦୀର୍ଘ ସମୟ ।

# ବୃଷଭର ଏକ ପାଦ

## ହରିହର ମିଶ୍ର

### ॥ ଏକ ॥

ପଚାରିବାକୁ ଇଚ୍ଛା ହେଉଥିଲା କେଉଁଟା ଦିନ ଭିତରେ କ'ଣ ବଦଳିଗଲାଣି ଭୁବି ! ତୋର ଗର୍ବ ନଷ୍ଟ ହେବାର କାରଣ ବା କ'ଣ ଥାଇପାରେ ଏମିତି ! କିନ୍ତୁ ଗାଉଁଲିଭଳି ଲାଗିଥିବା ତାର ପୁରୁଷ ମନରେ କଷ୍ଟ ହବ ଜାଣି ମୁଁ ପ୍ରଶଂସାମୁଖର ଆଖିରେ ତାର ଦୁହିଁଲିଆ ଗାଈର କଙ୍କଡ଼ାବାଡ଼ ଉପରେ ପୋଷିତ ଗୁହ୍ଲର ମୂରବି ଢଙ୍ଗ ନେଇ ଦେଖୁଥିଲି । ଚେଷ୍ଟା କଲେ ବି ତାକୁ ଦେଖିପାରିଲିନି ସେ ରେହେଇରେ । କୋଣାର୍କରୁ ମୂର୍ତ୍ତିଟିଏ ଚୋରେଇ ନେଲା ପରେ ଯେଉଁ ଶୂନ୍ୟ-ସ୍ଥାନଟି ପଡ଼ିଯାଏ, ସେଇଭଳି ଏକ ଶୂନ୍ୟ ପର୍ଦ୍ଦାକୁ ଚାହିଁ ଚାହିଁ ମୁଁ ଯନ୍ତ୍ରଣାରେ ଛଟପଟ ହୋଇପଡ଼ିଲି । ଆଉ ସେଇଭଳି ଏକ ଦୁର୍ଗନ୍ଧମୟ ଅନ୍ଧକାରର ଶ୍ୱାସରୁଦ୍ଧ ଅର୍ଗଳରେ ଅଟକି ହେବା ପରେ ମୁଁ ମୁକ୍ତ ହେବାକୁ ବାରମ୍ବାର ନିଃଶ୍ୱାସ ନେଲି··· ସେ ଅବା ପୁଣି ଫେରିଆସିଲା ମନ୍ଦିରର ନିର୍ଦ୍ଦିଷ୍ଟ ସ୍ଥାନକୁ···ତାର ଗୋରା ମାଉଁସିଆ ଦେହର ସ୍ୱାଭାବିକ ଖଙ୍କାକୃତର ନିଭୃତ ସୌନ୍ଦର୍ଯ୍ୟ ଭିତରକୁ । ମୋ ଦୃଷ୍ଟିର ଅଳନ୍ଧୁ ଓ ବୁଢ଼ୀଆଣୀ ଜାଲ ଭିତରୁ ପୁଣି ତାର ହସ ଉକୁଟି ଉଠିଲା ଉଜ୍ଜ୍ୱଳ ବଳିତାଭଳି ।

"ଦେଖିଲ ସମସ୍ତେ ସେଇଆ ଭାବୁଛନ୍ତି, ମୁଁ ବିଲ୍‌କୁଲ୍‌ ସେଇଆ ନାହିଁ, ଯାହାକୁ ତମେ ଚୋରେଇ ନେଇଥିଲ ତମର ମ୍ୟୁଜିୟମ୍‌କୁ ଆଜି ସେଇ ପ୍ରସ୍ତର-ଖଣ୍ଡିକର ସମସ୍ତ ଜନ୍ମ, ବର୍ଦ୍ଧନ ଓ ଜୀବନର ଗବେଷଣା ସାରି, ତମେ ଆଉ ଥରେ ତମର ସ୍ପେସିମେନ୍‌କୁ ଦେଖିନାହଁ, ଅସଂଖ୍ୟ ସନ୍ଦେହୀ, ଅକ୍ଳାନ୍ତ ଉଦ୍ୟମୀ ହାତୁଡ଼ି ଓ ନିହଣର ଦାଗ ଲିଭେଇ ଦେଇ ତମେ ତମର ଧରାବନ୍ଧା ପରମ୍ପରାର ଟିପ ଚିହ୍ନ ରଖିଦେଇଛ ତା ଉପରେ ।"

ତାଙ୍କଠାରେ ଜଣେ ସ୍ୱାମୀଠାରୁ ଅଧିକା ଆତ୍ମବିଶ୍ୱାସର ଛଳନା···ସତକୁ ସତ ଏକ କଳାପାହାଡ଼ର ବେକାଘାଟରେ ସେ ଚନ୍ଦ୍ରିକ ପଡ଼ିଲା ଓ ଗୋଟ ବାହୁଡ଼ା ଓଲଥା ଗାଈଟି ଭଳି ଶଳ୍ୟାରେ ବସିଲା ।

ଗ୍ଭଲସିବାର ମୁହୂର୍ତ୍ତିଟି ତା ସ୍ୱାମୀର ଧୋବ ଧୋବ ଦାନ୍ତରେ ଜଥଳ ଆଲୁଅ ପଡ଼ିଲା ପରି ଝଲସି ଉଠିଲା । କେତେଦୂର ତାର ପତ୍ନୀତ୍ୱ ? କେତେ ବେଶି ସେ ସ୍ତ୍ରୀ ହୋଇ ପାରିଛି ତାଙ୍କର ?

ରୁବି, ତୁ ତୋ ବାହାଘର ଛ'ମାସ ପୂର୍ବରୁ ଥରେ ମାତ୍ର ମତେ ଦେଖିଥିଲୁ, ସେଦିନ ତୁ ବଜାର କରି ସାରିସାରିବାର ଗ୍ଭଲି ଗ୍ଭଲି ପରିକ୍ରମା କରି ·ସେତେ ସୁନ୍ଦର ଦିଶୁଥିଲୁ ଆଜ ବାହାଘରର ଛ'ମାସ ପରେ—କ'ଣ ହୋଇଗଲା • ତୋର ! ରୁବି, ତୋର ଶେଷ କଥା ଟିକକ ମନେ ପଡ଼ୁଛି ସବୁରିପାଇଁ ମୁଁ ସବୁ କରିଛି··· ମୋପାଇଁ କାହାର ସହାନୁଭୂତି ନାହିଁ । ସେଇ ସହାନୁଭୂତି ଟିକକ ପାଇଁ କି ବ୍ୟାକୁଳ ହୋଇ ତୋ ଚିଠିରେ ବୋଦଲେୟାରଙ୍କ ଆତ୍ମଜୀବନୀର ଏଇ କଥାଟି ଉଦ୍ଧାର କରିଥିଲୁ ତୁ····

'Life is a desert of tedium and oasis of horror !' ସେଇ ଟିକକ ଜଳ, ତୋର ବିରାଟ ଶୋଷପାଇଁ ମର୍ମନ୍ତୁଦ ପାଲଟିଛି !

ଆଜିର ସାକ୍ଷାତ୍‌ପାଇଁ ତତେ ଧନ୍ୟବାଦ ରୁବି । ବହୁଦିନ ପରେ ଏ ଦେଖା । ବିଦାୟ···ବିଦାୟ···ବିଦାୟ ପୁଣି ଅନିଶ୍ଚିତ ଦିନପାଇଁ । ଯା ରୁବି··· ଯା···ଜଳଦ ପାରି ହୋଇଯା' ରାସ୍ତାର ମୋଡ଼ଣି । ରୁବି, ତୋ ମୁହଁରେ ଏ ଗ୍ରେଗଣା କେଶଗୁଚ୍ଛକୁ ଘୋଡ଼େଇ ତୁ ଗ୍ଭଲିଯା' ଏ ଗହଳିରେ, ଏ ବଜାରରେ, ମୋପାଇଁ ପଛରେ ସେଇ ଖୋସା ପାଖରେ, ମାଳତୀ ଫୁଲ ନୁହେଁ, ଦୟାର୍ଦ୍ର ଆଖି ଦୁଇଟି ପୋତିଦେଇ ତୁ ଗ୍ଭଲି ଯା'···

ରୁବି ମୁଁ କେବେ ତୋଠାରୁ କିଛି ଦାବୀ କରୁନାହିଁ । ତୁ କେବେ ସ୍ତ୍ରୀ ହୋଇ ପାରିବୁନି କା'ର···ତୁ କେବେ କା'ର ପତ୍ନୀ ନୋହୁ···

ମୋର ପତ୍ନୀ ଅଛି । ଆଜ ମୋ ଚଉଠି ରାତିର ପଞ୍ଚବାର୍ଷିକୀ····ଏ ରାତିରେ ପ୍ରଥମେ ଏକ ନାରୀ ମୋ କୋଳକୁ ଆସିଲାବେଳେ ମୁଁ ତାଙ୍କୁ ବିଶ୍ୱାସ ଦେଇଥିଲି 'ଏ ରାତି ସହସ୍ର ରାତି ହେଉ' । ରାତିକି ସ୍ୱୀକୁ ଅନନ୍ତପଥ ପର୍ଯ୍ୟନ୍ତ ବିସ୍ତୃତ କରିବାକୁ ମୋ' ଭଳି ମଣିଷର ସେ ଏକ ସ୍ୱପ୍ନ ।

ରୁବି, ସତେ ତୁ କ'ଣ ? ତୁ କଣ ସେଇ ସ୍ୱପ୍ନ ନୋହୁ ? ଯାହାକୁ ବହୁ ଗପ, କାହାଣୀ ଆଳାପରେ ସୁନ୍ଦର ଅଳଙ୍କାରଟି ଭଳି ବିରାଟ କରିହୋଇ ପାରେ ।

ରୁବ, ତୁ ମତେ କଦାପି ସେମିତ ଚହ୍ନିନୁ, ତୁ କଦାପି ବୁଝିନୁ ସେ ସମ୍ପର୍କ, ଯାହାକୁ ମୁଁ ମୋର କଳ୍ପନାର ଜାଲବୁଣି ତୋ ଗୃହପଟେ ଘେରେଇ ଦେଇଥିଲି । ତତେ ଅନେକଥର ଅଣୁଯ୍ଯ ଲାଗିଛି କବା ମୁଁ ବାଧ୍ୟ କରି ତତେ ସନ୍ତୁଷ୍ଟ କରିଛି ବହୁ ସୁନ୍ଦର ବାଲ୍ୟର୍ଦ୍ଧିଭଳି ପ୍ରେମ ସୃଷ୍ଟି କରି । ତେଣୁ ମୋର ପ୍ରଶ୍ନ ଶୁଣି, ମୋର ପ୍ରସ୍ତାବ ପଢ଼ି ତୁ ବିଲ୍କୁଲ୍ ଆଶ୍ଚର୍ଯ୍ୟ ହୋଇ ଯାଇଥିଲୁ । ସେଥିରୁ ମୁକ୍ତ ହେଲା-ବେଳେ ତୁ ଝରଝର ହୋଇ କାନ୍ଦୁଥିଲୁ ରକ୍ତାକ୍ତ ହେଲାଭଳି । ମୁଁ କିନ୍ତୁ ତୋ ହାତର ଛୁଞ୍ଚିରେ ଭରି ଦେଇଥିଲି ମୋର ସ୍ୱପ୍ନକୁ ଏତେକ ଚିକଣ କରି, ଯାହାକୁ ନେଇ ତୁ ଅନେକ ରୁମାଲ, ଅନେକ ମୋଜା, ଅନେକ କନାରେ ଫୁଲ ଫୁଟେଇ ସିଲେଇ କରି ଯାଉଥିଲୁ ମେସିନ୍ ଭଳି । ସେଇ ସ୍ୱପ୍ନର ସୂତାସବୁ ତୁ ଛୁଡ଼େଇଲା-ବେଳେ ବାହାରେ ବର୍ଷା ଝରିପଡୁଥିଲା ଝିନ୍ ଝିନ୍ ହୋଇ । ମୁଁ ମୋର ସମସ୍ତ ମିଥ୍ୟା, ମନଗଢ଼ା ସମ୍ପର୍କ ତୋ ହାତରେ ଛିଣ୍ଡିପଡ଼ୁଥିବା ଦେଖି ଆଉ ଏକ ଉପାଖ୍ୟାନର ଛଳନା ସୃଷ୍ଟି କଲି । ତୋ କୋଳରେ ପ୍ରସବ ହେଲା ଆମ ବିଭଙ୍ଗ ପ୍ରେମର ଏକ ଶ୍ରେଷ୍ଠ ଚିଠି, ଯାହାର ନାଁ ଦିଆଯାଇପାରେ 'ସାନ୍ତ୍ୱନା' ।

ରୁବ, ଆଜି କେଉଁ ନିର୍ଜନ ଦ୍ୱୀପରେ ବୁଲିଲାବେଳେ ତୋର ଗର୍ଭପାତ ହେଲା ? ତୋ ନିର୍ଜନ କୋଳକୁ ତୋର ସ୍ୱାମୀ ଠିକ୍ ମିଶ୍ରଣଭଳି ସାନ୍ତ୍ୱନାର ଶ୍ରେଷ୍ଠ ଏକ ଚିଠି ବଢ଼େଇ ପାରିଛନ୍ତି ନା ବିଶ୍ୱାସର ଏକ କଦାକାର ଜ୍ୟାଲବାନ ପହରା ଦଉଛି ତୋ ଗୃହ ଦାଗରେ କଦର୍ଯ୍ୟ ଓ ବିକଟ ସଙ୍ଗୀତ ଗାଇ ଗାଇ !

ଆଜି ପାଞ୍ଚ ବର୍ଷ ବିତିଗଲାଣି ମୋ ମଧୁଶଯ୍ୟା ରାତିର । ମାଞ୍ଚବର୍ଷ ତଳେ ଏମିତି ରାତିରେ ମୁଁ ଗ୍ରୀତ ପର୍ଦ୍ଦାଲାଗିଥିବା ଯୌତୁକର ଆସବାବପତ୍ର ଉପରେ ଲୁଚି ଶୋଇ ପଡ଼ିଥିଲି । ମୋ ପ୍ରଥମାକାଙ୍କ୍ଷୀ ବାପା ମାଆଙ୍କର ସମସ୍ତ କୋଠରୀରେ ମତେ ଖୋଜୁଥିଲେ ଓ ଯେତେବେଳେ ଘଣ୍ଟାଆଡ଼ ଘଣ୍ଟର ଝାଁ ଝାଁ ରଡ଼ିରେ ଫାଟି ପଡ଼ିଲା ମୁଁ ଧୀରେ ପରଦା ଖୋଲିଲି । ତତ୍କ୍ଷଣାତ୍ ସମସ୍ତ ଗୃହାଳ ଶୂନ୍‌ଶାନ୍ ହେଲାପରେ ମୁଁ ଏକମାତ୍ର ଷଣ୍ଢ ଗର୍ଜି ଗର୍ଜି ଧାଇଁଲି ମୋ ଫୁଲବିଛା ନୂଆ ପଲଙ୍କକୁ ।

ଆଜି ସେଇ ପଞ୍ଚବର୍ଷର ଅପେକ୍ଷା । ତୋ ସହିତ ସାକ୍ଷାତ୍ ମତେ କେଉଁ-ଆଡ଼େ ପକେଇ ଦିବାକୁ ଇଶାରା ଦେଉଥିଲା । ବର୍ତ୍ତମାନ ସେଥିରୁ ମୁକ୍ତ ହୋଇ ଏକ ବେଶ୍ୟାପଡ଼ାର ଅନ୍ଧାରକୁ ଘୃଣାରେ ନର୍ଦ୍ଦମାକୁ ଠେଲିଦେଲାଭଳି, ତୋର ଦୁର୍ବଳ ସ୍ମୃତି ଗୁଡ଼ିକୁ ଠେଲି ଦେଲିଣି । ଏବେ ମୁଁ ଆଗେଇ ଯାଉଛି ଯେମିତି ଏ ସାହିରେ କେବଳ ଗୋଟିଏ ଟୋକା ମୁଁ, ସେଇ ଶୂନ୍‌ଶାନ୍ ଦ୍ୱିପ୍ରହର ଗୃହାଳର

ଏକମାତ୍ର ବୃଷଭ । ମୋ ଗ୍ରୀବାଟା ଯେମିତି ନେଲ୍‌ସନ୍ ପାଟେଶ୍ୱରଙ୍କ ମୋଟା । ମୋର ଉଚ୍ଚତା ସତେ ଯେମିତି ମୋ ସକାଳର ଛାଇଠାରୁ ଲମ୍ବା । ମୋ ହାତଟା ମୋର ଜଙ୍ଘଭଳି, ଗୋଡ଼ ଦୁ'ଟା ଅବା କଣ୍ଟା ଗଛ ଭଳି !

ଏତେବେଳେ ହାତରେ ମଲ୍ଲୀଫୁଲ ବାନ୍ଧି ମାଳୀଙ୍କୁ ଅଧିକା ଅଧୁଲିଟାଏ ଫିଙ୍ଗି ଦେବାରେ ଏକ ଆନନ୍ଦ ଅଛି ।

## ॥ ଦୁଇ ॥

ଆକାଶର ଏକ ନକ୍ଷତ୍ରଗୋଷ୍ଠୀ ଶିଶୁମାରଭଳି ଶୋଇଛନ୍ତି ସେମାନଙ୍କ ଶୋଇବା ଘରେ । ମଶାରିର କୁହୁଡ଼ି ତଳେ···ଏକ ମାଆର ସ୍ତନ ଦୋହନ ଜନିତ କୌଣସି ଦନ୍ତହୀନ ଶିଶୁର ମୃଦୁ କଳରବ କେଉଁ ଅଭ୍ୟସ୍ତ ହାତର ଅପ୍ରସ୍ତୁତ ଏସରାଜ୍‌ର ସ୍ୱରଭଳି···ମିଳେଇ ଯାଉଥିବା ରାତିର ଗହନ ସ୍ୱପ୍ନଭଳି ।

ପିଲାଙ୍କ ମୂତର ଝାଳ ଗନ୍ଧରେ ଉତ୍ତେଜନା କମ୍, କିନ୍ତୁ ଫେରନ୍ତି ବାଟରେ ବେଶ୍ୟା ପଡ଼ାର ନର୍ଦ୍ଦମାସବୁ କ କଦର୍ଯ୍ୟ, ଉତ୍ତପ୍ତ ଇଉରିଆର ଉଚ୍ଛୁଳା ଗନ୍ଧରେ ଉନ୍ମତ୍ତ କରନ୍ତି ଘ୍ରାଣଠାରୁ ସ୍ପର୍ଶ ଯାଏ । ମାତୃମୂର୍ତ୍ତିଟି ହୁଏତ ଭୁଲିଯାଇଛି ଆଜି ତା ବିବାହର ପଞ୍ଚବାର୍ଷିକୀ ରାତି ।

ଆହାରେ, ମୋର ଚଉଠି ରାତିର ନଦ ! ତମ୍ବାତାରର ସେ ଦେହ-ଖଣ୍ଡିକ ଗୁଡ଼େଇ ଦେଇ ଯେଉଁ ଦୁଇ ଘନ ମିନଟ୍‌ର ବିଦ୍ୟୁତ୍ ଜ୍ୱଳନାରେ ମତେ ରୁ ବୁଡ଼େଇ ରଖୁ ତୋର ତରଳ ପଙ୍କର ଜଳ କୋଠରୀରେ···ଆଜି ରୁ ଭୁଆଡ଼େ ?

"ଉଠ, ଦେଖୁନ ମଣିଷ କେତେଆଡ଼ୁ ବୁଲି ବୁଲି ଆସୁଛି !" ଏଭଳି ଛଳନାର ପ୍ରୟୋଜନ ନାହିଁ । ଏ ଦୁର୍ବଳତାର ମାନେ କିଛି ନାହିଁ । ତାର ଦୈନ୍ୟ, ବେକାରି, ଭଙ୍ଗା ପାଚେରିର ଅରଣ୍ୟ ଜଙ୍ଗଲ ପରି ଜଟିଳ ଓ ରକ୍ଷଣଶୀଳ କୌଳନ୍ୟ ପ୍ରଥା ଆଉ ସେଇ ଧାରୁଆ ବାରଣ୍ଡାରେ ଧାଉଁଥିବା ସ୍ୱେଦସିକ୍ତ ସତୀ ସ୍ତ୍ରୀ ଲୋକଟି ଧରୁକଛି ଭୁଲି ଶୋଇ ଯାଇଛି ।

କ'ଣ ତାର ଅଛି ନିଜର ଅଧିକାର ସାବ୍ୟସ୍ତ କରିବାକୁ । କ'ଣ ଅଛି ତା ପାଖରେ ? ମଲ୍ଲୀହାର ? ଯୂଇହାର ? ଲମ୍ବା ଚଉଡ଼ା ଶାଳଭଳି ଛଇଗ୍ରୀଡ଼ ଦେହ···ହୁଏତ ସ୍ପର୍ଶ କରିବାକ୍ଷଣି ସେ ଆଖି ଖୋଲିବ । ଦହି ଆଉ ଗ୍ରୀବ ଉପରେ ଟାଣି ଆଣିବ ଲୁଗାକୁ । ତା'ପରେ କେମିତି ଏକ କାତର ଆଖି····ଇତର ବ୍ୟବହାର···ବିରକ୍ତିର ଭିଡ଼ାମୋଡ଼ା····

ଚିହିଁକି ଉଠିଲା ସେ । "ଏ ଅତ୍ୟାଚାରର କାହିଁକି ? କୋଉ ସୁଖରେ ରଖିଛ ମତେ···ଆଉ ସ୍ତନ, ଦେହଟା ଜଳିଗଲା ଭଳି ଲାଗୁଛି....ସ୍ତନ କହୁଛି" ତା ଦେହର କେଉଁଠି କେଉଁଠି ମୋର ଇଲାକା ମୁଁ ଆଖି ପକେଇ ନଥିଲି ମୁହଁରେ ତା ପ୍ରତି ଏକ ଘୃଣିତ କ୍ରୋଧର ଛଳନା ରଖି । କି ଦୟନୀୟ ପ୍ରଜାତି ଭଳି ମୁଁ ଚାହିଁ ରହିଥିଲି ସେଇ ଦେହଟାକୁ । ଦିଗନ୍ତଭଳି ପଛକୁ ପଛକୁ ଘୁଞ୍ଚିଯାଉଥିଲା ସେ ।

କେଉଁ କେଉଁ ପାଗଳକବି ଭକ୍ତ ପାଲଟିଥିଲେ ଏ ନାରୀର ଦେହକୁ ଛୁଇଁ କରି, ଦୂରକୁ ଠେଲିଦେଇ । କୋଉ ଅନାଦୃତ ଯୁଗରୁ ଏ ଅପାଂକ୍ତେୟ ଶତାବ୍ଦୀ ପର୍ଯ୍ୟନ୍ତ । ତାଙ୍କର ଝର୍ଣ୍ଣ-ଅଧୀର ମନ ଝର୍ଣ୍ଣ-କାତର ପଥର ଭଳି ପଡ଼ିରହିଛି ବହୁତ ପଛରେ । ମୁଁ କିନ୍ତୁ ଚାହେଁ ସେଇ ସାତଯୁଗ ତପସ୍ୟା ପରେ ମାତ୍ର ସାତୋଟି ସେକେଣ୍ଡ, ଏକ ନପୁଂସକ ପାହାଡ଼କୁ ଗୋରୁର ଗଳକମ୍ବଳଭଳି କୁଞ୍ଚିତ କୋମଳ ସ୍ପର୍ଶ । ସେ ପଥର ମୋ ପାଇଁ ନରମ ସ୍ତନର ଏକ ଶିହରଣ ।

ତାର ସ୍ତନ ଉପରେ ବର୍ଷିପଡ଼ିଲି, ମହାଭାରତର ବୃକୋଦର କେଉଁ ଯାଜ୍ଞସେନୀର ପ୍ରତିଶୋଧର ତୃଷ୍ଣା ପ୍ରଶମିତ କରିବାର ଅଘୋର ପ୍ରତିଜ୍ଞାରେ ବର୍ଷି-ରହିଲାଭଳି ।

କିନ୍ତୁ ମୁଁ କିଏ ? ତା ବୁକୁରେ ଏକ ଦୁରନ୍ତ ଆତତାୟୀ ?
ଅବା ବିପୁଳ ପୃଥ୍ୱୀର ବିଦୀର୍ଣ୍ଣ ସ୍ତନରେ ଏକ ନବଜାତ ଶିଶୁ ?
କିଏ କାହାର ଆଶ୍ରୟ ଚାହେଁ ? ସେ—
ନା ମୁଁ ଚାହେଁ ଆଶ୍ରୟ !

କିନ୍ତୁ ଏ ସ୍ତନର ପ୍ରଚଣ୍ଡ ମଧ୍ୟାହ୍ନ ଏଇ ଶେଯକୁ କେତେ ବିସ୍ତୃତ ବାଲୁଚର କରି ଦେଇଛି ମୋପାଇଁ ଆଉ ଏ ସ୍ଳାନମ୍ଳାନ ଶୀର୍ଣ୍ଣ କଣ୍ଟକ ବୃକ୍ଷଟି···କ'ଣ ପାଇଁ ଜୀଇ ରହିଛି ଜୀବନର ମଧ୍ୟାହ୍ନରେ, ଏକାକୀ ଏ ମରୁଭୂଇଁରେ ?

"ଆଉ କ'ଣ ରଖିଛି ଏ ଦେହରେ । ଆଉ କ'ଣ ଅଛି, ମୋର କଙ୍କାଳ ? ହାଡ଼ ଦିଖଣ୍ଡ ଅଛି, ଚୋବାଇବାକୁ ଇଚ୍ଛା, ଖାଇ ଯାଅ···ରାକ୍ଷସ !" ମୋ ଆଖି ଦି'ଟା ତଥାପି ସ୍ଥିର । ମୋର ସ୍ତନଟା ବାସ୍ତବିକ୍ ପଥର କାନ୍ଥଭଳି ନିସ୍ପନ୍ଦ ତଥାପି ଏକ ପ୍ରବଳ ଉତ୍ତେଜନା କେଉଁ ଅଦୃଶ୍ୟ ନେପଥ୍ୟରେ ମୁଣ୍ଡ ପିଟୁଛି ।

ଆହୁରି କଠୋର ଭାବେ ଦେଖିବାକୁ ଇଚ୍ଛା ହେଉଛି । ତାର ତଣ୍ଟିରେ ଦି'ଟା ଯାକ ପଞ୍ଝା ରଖି ଭାବିହେଉନି ଏତେ ସହଜରେ ତାକୁ ଶେଷ ନ କରି ସ୍ତନର କପରି···ଆଙ୍ଗୁଠିରେ ସାମାନ୍ୟ କିଛି ଶକ୍ତି ପ୍ରୟୋଗ କରି ତାର ବିଷାକ୍ତ ନିଃଶ୍ୱାସକୁ ବନ୍ଦ କରି ଦିଅନ୍ତି ବର୍ତ୍ତମାନ ! ସେ କିନ୍ତୁ କି ବିପର୍ଯ୍ୟସ୍ତ ସାହସରେ ମତେ

ମନ୍ତ୍ରମୁଗ୍ଧ କରୁଛୁ । ମୁଁ ସାପଭଳି ଝୁଲୁଛୁ···ସେ ପେଣ୍ଡ ଖୋଲ ନର୍ତ୍ତକୀରେ ଘୁରିଛୁ ମତେ ।

କ'ଣ ପାଇଁ ତାକୁ ଉଲଗ୍ନ କରୁଛୁ ମୁଁ ? କ'ଣ ପାଇଁ ? ସବୁ ଭୁଲି ଯାଉଛୁ ମୁଁ । ଜାଣେନା କି କଠୋର ସ୍ୱପ୍ନର ଲୋହିତ ଅନ୍ଧାର ଭିତରେ ମୋ ସମସ୍ତ ପରିଚିତ ଫୁଲଗୁଡ଼ିକର ବାସ୍ନା ମଧ୍ୟ ମୁଁ ଜାଣିପାରୁନି । କି ଉତ୍କଟ ଗନ୍ଧ ତା ପାଟିରୁ···· କଣ ଖାଇଛୁ ସେ···ପିଲାଛୁଆ, ଘୁନା, ଶାଶୁ ଶ୍ୱଶୁର ଓ ସମସ୍ତ ସଂସାରକୁ··· ହାକୁଟିରେ ତାର ଏକ ଅଜଣା ବିସ୍ମୃତକାର ଗନ୍ଧ···ତେବେ କେଉଁଠି ଦଳିମକଚ ଛୁଡ଼ ପଡ଼ିଲେ ସବୁ ମଲ୍ଲୀ, ଯୂଇ ଫୁଲର ପାଖୁଡ଼ା ।'

କେଉଁଠି ?

ମାଶପାଶବ କି ତଣ୍ଟି ଚପି ତାକୁ !

କିନ୍ତୁ କେତେ ଖୋଲା ତାର ସମସ୍ତ ଇନ୍ଦ୍ରିୟବାସ୍ପ ଦେହର ଜାହାଜଟା ···ଏକମାତ୍ର କାପ୍ତାନ ମୁଁ । ମତେ ଭୟ ଲାଗୁଛୁ ବିସ୍ତୀର୍ଣ୍ଣ ସମୁଦ୍ର, ନା ଜାହାଜର ପ୍ରକାଣ୍ଡ ନୀରବତା···ଯାହା କେଉଁ ପୁରୁଣାକାଳର ପୋତ, ଲୋମହର୍ଷକାରୀ କେତେ ଦୁଃସାହସିକ ସ୍ମୃତିର ବୀଭତ୍ସ ସଙ୍ଗୀତରେ ମୂର୍ଚ୍ଛନାହତ ।

ତେବେ ମୋର ଭୟ କ'ଣ ?

ମୁଁ ଅନୁପଯୁକ୍ତ, ସେଇ ସାତୋଟି ସେକେଣ୍ଡର ଆକର୍ଷଣରେ ଦୁର୍ବଳ, ଅବସନ୍ନ ମୁଁ । ମୋର ପୃଥିବୀ, ମୋର ପରିଚିତ ସମସ୍ତ ବାୟୁମଣ୍ଡଳ ସ୍ତବ୍ଧ-ସ୍ଥବିର-ନପୁଂସକ ।

ଏ ସଂଘର୍ଷ ବହୁକାଳର । ଏ ଯୁଦ୍ଧ, ଏ ପ୍ରବଳ ଅଭିଯାନ, ଉଭୟର ଅଦ୍ଭୁତ ସାଲିସ୍ ପରେ, ଉଭୟ ହୃଦୟର ଆନୁଗତ୍ୟର ସ୍ୱୀକାର ପରେ··· ଅଜ୍ଞାତବାସରେ ଥିବା ପରସ୍ପରର ପ୍ରଚ୍ଛନ୍ନ ଅବଚେତନର ସଂଘର୍ଷ···ଉଭୟେ ରକ୍ତାକ୍ତ ହେବାପରେ ଏହାର ଆପୋଷ ସମାଧାନ କିନ୍ତୁ କୁତ୍ତାଭଳି ସଙ୍କୁଚିତ ହୋଇ ଲାଙ୍ଗୁଳ ଯାକି କୁଆଡ଼େ ଚାଲିଯାଉଛି....

କୁଆଡ଼େ ଯାଉଛି ସେ—ସାମ୍ନାରେ । ବିବର୍ଣ୍ଣ ସାଯ୍ୟା ଶାଢ଼ୀ ଭିତରେ ମୋର ଈର୍ଷା ଓ ଈପ୍ସାର ରକ୍ତୋତ୍ଥ ମହାକ୍ରମା । ନିଃଶ୍ୱାସରେ ହଠାତ୍ ଏକ ସବୁଜ ମଫସଲ ପବନରେ ବାରମ୍ବାର ଦୋହଲି ଉଠିଲାଭଳି ସେ କମ୍ପିତ ଶିହରି ଉଠିଲା । ତା ପରେ କଡ଼ ଲେଉଟାଇଲା ନିଃଶ୍ୱାସର ଗତି ଭଙ୍ଗ ଦେଇ । ମୁଁ ଓହ୍ଲେଇ ଆସିଲି ବହୁ ଉଚ୍ଚ ପାହାଡ଼ରୁ କ୍ଲାନ୍ତ, ସ୍ୱେଦସିକ୍ତ ହୋଇ । ଏତେବେଳେ ବାହାରେ ଜହ୍ନ, ଆକାଶରେ ଅଗ୍ନିଚକ୍ରଭଳି ରକ୍ତତାରକାର ସ୍ଫୁଲିଙ୍ଗ ବିଛେଇ ମୁଣ୍ଡ ଉପରେ ଘୂରୁଛି ବର୍ତ୍ତୁଳ ଜହ୍ନ ।

ସିଗାରେଟ୍‌ରେ ନିଆଁ ଧରେଇଲି ।

ରୁବ ! ତୁ କେମିତି ଥିବୁ ଏ ଘରରେ ! ତୋ ସ୍ୱାମୀ ପାଖରେ ତୁ ମୋଭଳି ଅସହାୟା ହୋଇ ପଡ଼ିଥିବୁ ! ତୋ ସ୍ୱାମୀ ଆକାଶଭଳି ଉଦାର, ସହନଶୀଳ, ଶୂନ୍ୟ ପୃଷ୍ଠଭଳି ଟେକେ ସ୍ମୃତିଥିବ । ତାହାର କୋଳକୁ ଲାଗି ତୁ ଶୋଇ କ'ଣ ଭାବୁଥିବୁ କେଜାଣି । ନିକଟରେ ଦେଖ୍ ତୋର କେତେ ଦର୍ପଣ ସହୁଛୁ, ତୁ ଶୋଇପଡ଼ । ତୋ ପ୍ରଥମ ପ୍ରେମର ସହନଶୀଳ ସ୍ନେହର ଶୁଭେଚ୍ଛା ସବୁବେଳେ । ସେଥିପାଇଁ ମୁଁ ସାରା ସହରର ଶରୀର ଉପରେ ଅତ୍ୟାଚାର କରେ ପ୍ରତିଦିନ । ଠିକ୍ ଝାଉଁଆର ଧର୍ଷଣ ଚିହ୍ନ ରଖିଦେଇଯାଏ ତରଳ ଏ ଅନ୍ଧାରର ପିଚୁବୋଳା ରାସ୍ତାରେ ।

ରୁବ ! ତୁ ଶୋଇପଡ଼ ମୋର ଅତୀତ ଭଳି, ପ୍ରଥମ ଦୃଷ୍ଟିଭଳି, ଥର୍ମୋ-ଫ୍ଲାସ୍‌ରେ । ବର୍ତ୍ତମାନ ସମୟ କେତେ ? ସାଢ଼େ ଦୁଇ ।

ମୁଁ ଯାଇ ପାରନ୍ତି ତୋ ଦୋକାନ ପର୍ଯ୍ୟନ୍ତ । ପାଚେରୀ ଡେଇଁ ତୋ ପାଖକୁ ଯାଆନ୍ତି ଓ ଫେରି ଆସନ୍ତି । ଯେ'ନ ଯାଆନ୍ତି କି ଯେମିତି ଚନ୍ଦ୍ର, ସୂର୍ଯ୍ୟ ଯେମିତି ଯା' ଆସ କରନ୍ତି ।

ଏ ସହରରେ ଅନ୍ତତଃ ଆଜି ମୋ ଶକ୍ତି ପାଖରେ କିଏ ପରାଜିତ ନ ହେବ ! ଆଜି ଦ'ପହରେ ଗୋଟେ ଡାକବାଙ୍ଗ ଯନ୍ତ ପଛେ ପଛେ ମୁଁ ଧାଇଁ ଧାଇଁ ଅନେକ କିଛି ବଡ଼ ବଡ଼ କାମ କରିଛି ରୁବ, ଦେଢ଼ ଲକ୍ଷ ଟଙ୍କାର ବାରବାଟି ଲଟେରୀ ଲାଗେଇଛି ଆଜି ମୁଁ ।

ରୁବ ! ତୁ ଆଉ ମୋ ସ୍ତ୍ରୀ ଓ ଅନ୍ୟ ନାରୀମାନେ ସମସ୍ତେ ଏକା । କାହାର ଅତୀତରେ ସ୍ୱପ୍ନ ନାହିଁ, ଭବିଷ୍ୟତରେ ବିଶ୍ୱାସ ନାହିଁ । ତମେମାନେ ପଣତ ରଖିଛ । କେତେ ଧୂଳି, କେତେ ଲୁହ, କେତେ ଝାଳ ପୋଛୁଥାଅ ତମେ—ଅଥଚ ମୋ ସ୍ତ୍ରୀ, ସେ ମଧ୍ୟ ଠିକ୍ ତମଭଳି ତ ଜଣେ !

ହଁ, ସେ ଶୋଇଛି । ରୁବ ଓ ସେ ହୁଏତ ଏକା । ସ୍ୱପ୍ନହୀନ, କ୍ଳାନ୍ତହୀନ ମଫସଲ ଭଳି ନିରାପଦ ଦୂରତ୍ୱ । କି ସୁନ୍ଦର ସ୍ୱଚ୍ଛ ଏକ ଆଶ୍ୱାସନା ଦବାପାଇଁ ସେମାନେ ଜନ୍ମ ।

କିନ୍ତୁ ସେଠି ଯେ ଶୋଇଛି ମୋର ସ୍ତ୍ରୀ । ତା ଉପରେ ଦ ତିନିଟା ଅସରପା କାନ୍ଥରୁ ଖସି ଖୋଜୁଛନ୍ତି ସ୍ୱଶଆଡ଼େ ସ୍ତୁତି । ମୋର ଈର୍ଷାଭଳି, ମୋର ଇଚ୍ଛାଭଳି ସେମାନେ ତାର ଦେହକୁ ଝୁଙ୍କି ଚାଲିଛନ୍ତି । ଓଃ, କି ଜଳାବଳ ହଉଛି ଖଟରେ ପଡ଼ି ସେ । ମୋର କ୍ଷେତ, ବିଲରେ ମୂଷା, ଅସରପାର ଭିଡ଼ ଜମିଯାଉଛି

ବର୍ତ୍ତମାନ । ଏଇଠି ଗୋଟିଏ ଉତ୍‌କ୍ଷିପ୍ତ ଗ୍ଲାସଭଳି ଆଜି ମୁଁ କେଉଁ ଭାଗ୍ୟହୀନପୁତ୍ର ବରୁଦ୍ଧରେ ଗର୍ଜି ଉଠୁଛି "bloody bastard swine" ।

ତା'ପରେ ତାକୁ ଟେକି ଆଣିଛି । ସେ ଜାଣୁ ବା ନ ଜାଣୁ, ତା ଦେହରୁ ଜାଣିହେଉନି ତା ପ୍ରବୃତ୍ତିର ଗତିବୃଦ୍ଧି । ତାକୁ କେବଳ ଗ୍ଲାସର ଶାଳୁଆ ପଟାରେ ଘୁଷିଦେଇ ଏକ କବୁଳ ଅନ୍ଧାର ଗାତ ଭିତରକୁ ଠେଲି ଦେଇପାରେ ମୁଁ । ବର୍ତ୍ତମାନ ସେଇ ଭିତରେ ପଡ଼ି ଛଟପଟ ହେଉଛି ସେ । ତାକୁ ଟେକିଆଣିଛି ମୁଁ ଏକ ଅବୈଧ କାର୍ଯ୍ୟପାଇଁ । ସମ୍ପୂର୍ଣ୍ଣ ଅବୈଧ ମୋର ଗାର୍ହସ୍ଥ୍ୟ । ଅଶୁଦ୍ଧ ବ୍ରାହ୍ମଣ କାର୍ଯ୍ୟରେ, ଅଶ୍ଳୀଳ ହୋମାଗ୍ନିର ଦହନରେ ଦାମ୍ପତ୍ୟ ମୋର ଜୀବନ୍ମୃତ, ଭ୍ରଷ୍ଟ, ପରିତ୍ୟକ୍ତ ମନ୍ତ୍ରବେଦୀ ଭଳି ମୋର ପଲଙ୍କକୁ ଘେରି ଶୋଇଛନ୍ତି ଉର୍ବଶୀ ଅବା ସ୍ବପ୍ନେଶ୍ୱରୀ ଉଜ୍ଜ୍ୱଳ ବଂଶଧର ।

ହେ ମୋର ପତ୍ନୀ ! ସ୍ୱରୂପନଭଳି ମୁଁ ତମକୁ ଆଜି ମଧ୍ୟ ଧର୍ଷଣ କରେ । କି ମୂଲ୍ୟବାନ, କି ନୈତିମୟ ଏ ମହାଯୌନତା, କି ବିକୃତ ଅପଭ୍ରଂଶ ମୁଁ ତାର ୨ ନା, ଏ ଶତାବ୍ଦୀଟା ସେଇଆ—ଷଣ୍ଢବର । ମୁଁ ନୁହେଁ । ବୃଷଭକୁ ଦେଖିଲେ ମନେ ହୁଏନା ସେ ହଡ଼ା କମ୍ପା ନପୁଂସକ ହେଲାଣି କି ନା !

କିନ୍ତୁ ଏ ରାତି ପରେ—

*　　*　　*

ପରବର୍ତ୍ତୀ ସକାଳ । ଘଣ୍ଟାଟିଏ । ଗଲାଭଳି ହେଉଛି । ଅଗ୍ନନିର ଫାୟାର୍ ବ୍ରିଗେଡ୍ ଧସିଆସିଲି ଏକ ହଠାଣି ଦେଇ ମୋ'ର ଗଳିଆଡ଼େ । ତା ଉପରେ ଅସରପା ଭଳି ପୋଲିସ୍ କେତୋଟି ଝପ୍‌ଝାପ ଡେଇଁଲେ ଓ ସମସ୍ତେ ଧାଇଁଲେ ସାମ୍ନାରେ ଥିବା ଏକ ଗମ୍ଭୀରଆ ବାର୍ମି ଆଡ଼େ । ସୂର୍ଯ୍ୟ କିରଣ ପରିଷ୍କାର ପଡ଼ୁଛି ବାର୍ମିରେ ପାଣି ନାହିଁ । ଖାଲି ପଥର, ପାହାଚ ନାହିଁ, କାଦ ନାହିଁ । ଖାଲି ବାର୍ମିର ବହୁ ନିମ୍ନ ଚଟାଣରେ ଏକ ପରିଚିତ ବାରବୁଲା ବୃଷଭଟିଏ ମରି ପଡ଼ିଛି ସୂର୍ଯ୍ୟ ପରିଷ୍କାର ପଡ଼ୁଛି ତା ପେଟ ଉପରେ । ତାର ଦେହ ଛିଙ୍ଗିପଡ଼ି ଲାଗିଛି ପେଟରେ ଆଉ ପଣ୍ଟି ଅକସ୍ମାତ୍ ଗମ୍ଭୀର କୂପରେ ଖସି ପଡ଼ିଛି ଅନେକ ବେଳୁ ସହରରେ ଆସନ୍ନ ବସ୍ତଚକାର ଆଶଙ୍କା ଥିଲାବେଳେ—



# ଅର୍ଘ୍ୟ

## ବୀଣାପାଣି ମହାନ୍ତି

ସେଇ ଛୋଟିଏ ଦୁର୍ଘଟଣା ନେଇ ସମଗ୍ର ସକାଳଟା ସାରା ସହର ଏତେ ବ୍ୟସ୍ତ ରହିଲା ଯେ, ପ୍ରାୟ ସମସ୍ତ ଦୈନନ୍ଦିନ କାର୍ଯ୍ୟରେ ପ୍ରତ୍ୟେକ ବୁଦ୍ଧିମାନ ଓ ହୁସିଆର ବ୍ୟକ୍ତିର ବି କିଛୁଟା ବ୍ୟତିକ୍ରମ ଘଟିଗଲା । ବାଟଚଲା ମଣିଷର ପାଦ ଓ ଯାନବାହନ ଅଟକି ଯାଇଥିଲା ଅନେକ କ୍ଷଣ । ଆଖପାଖ ଚା’ ଓ ପାନ ଦୋକା-ନରେ କାଟତି ମଧ୍ୟ ବଢି ଯାଇଥିଲା । ଅଧିକାଂଶ ଭୁଲି ଯାଇଥିଲେ ସେମାନଙ୍କର ନିଜସ୍ୱ ଉପସ୍ଥିତିକୁ ଏକ ଅସ୍ୱାଭାବିକ ପରିସ୍ଥିତିରେ ।

କିଏ ଜଣେ ଠିକ୍ ଏତିକି ବେଳେ ପାଟିକରି ଉଠିଲା···“ଇଲୋ ମୋ’ ମା’ଲୋ, ମୁଁ କ’ଣ କରିବିଟି ! ଆରେ ନଧିଆ, ଆରେ ହରିଆ, କୁଆଡ଼େ ଗଲ ରେ··· ମୋ’ ମା ଲୋ, ମୋ’ ଆଖି ତ ବୁଜି ହୋଇ ଯାଉଛି । ହଇରେ ମିଣିପିଗୁଡ଼ା କ’ଣ ଦେଖୁଛ ବା···ନାହିଁ, ହବ ନାହିଁ ମୁଁ ଧାଇଁ ଯାଏ···ତମ ଆଖି ସବୁ ଫୁଟି ଯିବ ରେ ଫୁଟି ଯିବ !”

ସମବେତ ଜନତା ସେତେବେଳକୁ ତଟସ୍ଥ ହୋଇ ଯାଇ କାଲିକାଲି ଶବ୍ଦ ଆଡ଼କୁ ଚମକି ଚାହିଁଥିଲେ । ମାତ୍ର ଯେଉଁ ପ୍ରାୟ ବୃଦ୍ଧା ମହିଳାଟି ଏ କଥା କହୁଥିଲେ ବିସ୍ମିତ, ବିରକ୍ତ ଓ ଶୋକାପ୍ଲୁତ ହୋଇ । ସେ ଟ୍ରେନଟା ଗୋଡ଼ରେ କେମିତି କେମିତି ଅଦୃଶ୍ୟ ହେବାକୁ ଯାଉଥିଲେ ସାମ୍ନାରୁ । ଟ୍ରେନଟିଆ ବଗୁଲିଆ ପିଲାଟିଏ ପାଟି କରି ଉଠିଲା—“ଏ ବୁଢ଼ୀ ! ବାଟ ଦେଖି ଚାଲ । ନ ହେଲେ ତୋ’ ମଜା ଦେଖି ନେବ ।”

ବୁଢ଼ୀ ବୋଧହୁଏ ପିଲାଟିର ପାଦକୁ ମାଡ଼ି ଦେଇଥିଲେ କି କ’ଣ ? କିଏ ସେହି ବୁଢ଼ୀ ସ୍ତ୍ରୀ ଲୋକଟି ବୋଲି ଚତୁର୍ଦ୍ଦିଗରେ ଯେତେ କୋଳାହଳ ଗୁଞ୍ଜନ ହେଲେ ବି ସଠିକ୍ ଏକ ସିଦ୍ଧାନ୍ତରେ ଜନତା ପହଞ୍ଚି ପାରିଲେ ନାହିଁ ।

ସେତେବେଳକୁ ନରମ ଖରା ଗଛର ପତ୍ର ଗହଳି ଭିତରୁ ଶବଟିର ଦେହ, ମୁଣ୍ଡ ଛୁଇଁ ଗଲାଣି । କୋଉ ଯୁଗର ବୁଢ଼ା ଅଶ୍ୱତ୍ଥ ଗଛର ଗଣ୍ଡି ଦେହରୁ ଝୁଲି ଆସିଛି ଉଲଗ୍ନ ନାରୀ ଦେହର ଏକ ଶବ । ଖାଲି ଶବଟିଏ ରାସ୍ତା କଡ଼ରେ ପଡ଼ିଥିଲେ ଏ କୌତୂହଳ ନ ଥାନ୍ତା କି ଜଣେ ଅପରିଚିତ ହୋଇଥିଲେ ବି ଏତେଟା ଭିଡ଼ ଜମି ନ ଥାନ୍ତା । ମାତ୍ର ଏ ଯେ ଅତି ପରିଚିତା ଜଣେ ଅଳ୍ପବୟସ୍କା ଯୁବତୀର ଉଲଗ୍ନ ଦେହର ପ୍ରଦର୍ଶନୀ । ଚିହ୍ନା ଅଚିହ୍ନା ବହୁ ଲୋକଙ୍କର ଏଠାରେ ଭିଡ଼ ହେବା ସ୍ୱାଭାବିକ—ପୁଣି ଶବଟି ଓହଳି ରହିଛି ସହରର ଅତି ପରିଚିତ ପୁରାତନ ଅଶ୍ୱତ୍ଥ ଗଛ ଦେହରେ । କାହିଁକି ? ପ୍ରତ୍ୟେକ ପ୍ରତ୍ୟେକଙ୍କୁ ଏହି ପ୍ରଶ୍ନ ନୀରବରେ କରିଥିଲେ ବି କୌଣସି ସନ୍ତୋଷଜନକ ଉତ୍ତର ନାହିଁ । ଆଖି ଡ଼ିମା ଡ଼ିମା କରି ବୀଭତ୍ସ ଉଲଗ୍ନ ଦେହଟା ଯେପରି ସମଗ୍ର ଜନତାକୁ ବିଦ୍ରୂପ କରୁଛି, ଅଥଚ ସମସ୍ତେ ସେଇ ବିଦ୍ରୂପକୁ ଖାତିର ନ କରି ଉଲଗ୍ନ ଦେହଟାକୁ ନିରୀକ୍ଷଣ କରୁଥିଲେ ନିର୍ବିକାରରେ । କ'ଣ ଅଛି ଏଇ ନାରୀ ଦେହର ରକ୍ତ ମାଂସରେ କେଜାଣି ? ଯେତେ ଚାହିଁ ଦେଖିଲେ ବି, ତୃଷ୍ଣା ମେଣ୍ଟେ ନାହିଁ । ସବୁ ଦେହ ପରି ଦେହଟିଏ—ରକ୍ତ, ଶିରା ପ୍ରଶିରା ସବୁ ସମାନ । ତଥାପି ଦେଖିବାକୁ ଚାହିଁବାକୁ ଇଚ୍ଛା ହୁଏ··· । କ'ଣ ଦରକାର ବା ଥିଲା ସ୍ତ୍ରୀଅଟିର, ନିଜର ଲୁଗାପଟା ଦେହରୁ କାଢ଼ି ଦେଇ ଏକାନ୍ତ ଭାବରେ ଉଲଗ୍ନ ହୋଇ ଆତ୍ମହତ୍ୟା କରିବାର !

ଘର୍ ଘର୍ ଶବ୍ଦ କରି ଏତିକି ବେଳେ ମଟର ସାଇକେଲଟା ଅଟକି ଗଲା । ଭିଡ଼ ଠେଲି ତରୁଣ ତରୁଣୀ ଦୁଇଜଣ ପଶି ଆସିଲେ ଏବଂ ସମବେତ ଜନତାର ଉପସ୍ଥିତିକୁ ଭୁଲିଯାଇ ତରୁଣୀଟି ପାଟିକରି ଉଠିଲା—"ଦେଖମ ମାଇକିନାର ଢଙ୍ଗକୁ ଦେଖ ! ମୁଁ ଜାଣିଥିଲି ଘରକୁ ହାତଘର କଲା ମାଇକିନା ସିଏ ଇଏ, ସିଥିରେ କ'ଣ ମୁଁ ତାକୁ ଘରୁ କାଢ଼ି ଦେଲି ଉମେଶ ସିଏ ପାଗଳା ପରି ତା'ଙ୍କ ପିଛୁ ଧରିଲେ । ସବୁବେଳେ ଦେହରୁ ମୁଣ୍ଡରୁ ଲୁଗା କାଢ଼ି ଦେଖେଇ ଦେଉଥିବ । ମଲା ଯେ ଦେଖ୍‌ନା ତା'ର ଅଭ୍ୟାସ କେମିତି ? ଲୁଗାପଟା ଖୋଲି ଥୋଇଦେଇ କ'ଣ ବୁଝି ବସିଲା ଗଛରେ ଲଙ୍ଗଳା ମୁକୁଳା ହୋଇ ଝୁଲି ପଡ଼ିଲା ? ଏତିଥିରୁ ବୁଝନା ତା'ର ଗୁଣ କେମିତି ଯେ ଆଉରି ଦେଖିବାକୁ ଧାଇଁ ଆସିଲ ? ଛିଃ ଛିଃ ।"

ତରୁଣୀଟି ଏତିକି କହି ବିରକ୍ତିରେ ଆଖି ବୁଜିଦେଲା ପରି ହେଲା । ତରୁଣଟି କିଛି ନ କହି ଗମ୍ଭୀର ଭାବରେ ମଟର ସାଇକେଲ ଦେହରେ ବସିରହି ଝୁଲନ୍ତା ଶବର ମୁହଁକୁ ଚାହିଁଥିଲା । ଏତିକିବେଳେ ସମବେତ ଜନତାକୁ ଉଦ୍ଦେଶ୍ୟ କରି କିଏ ଜଣେ କହିଲା—"ଚାଲ ଏତେ ଲୋକ ରୁଣ୍ଡ ହୋଇ ଆଉ କ'ଣ କରିବା ?

ପୋଲିସ୍ ଆସିଗଲେଣି; ସେ ତାଙ୍କର କାମ କରିବେ । କିନ୍ତୁ ଘଟଣାଟା ବଡ଼ ବିଚିତ୍ର ଲାଗୁଛି । କାଲି ଝିଅଟାକୁ ମୁଁ ବଜାର କରିବାର ଦେଖିଛି, ଅଥଚ ଆଜି ଦଉଡ଼ି ଦେଇ ଝୁଲୁଛି ! ରାମ୍ ରାମ୍, ଘଟଣା କେମିତି ଘଟିବ କେଜାଣି ? ହଇରେ ସପନା ! ବଜାର ବ୍ୟାଗ୍‌ଟା ଆଣିଛୁ ତ ? ହଁ । କିରେ ଖଲା ଅନେଇଛୁ କ'ଣ ? ଶୋଭିକୁ ମୋଟେ ଦେଖିଥିବୁ କି । କିରେ, ତା'ଠି ଜୀବନ ନାହିଁ ଯେ ଖସଲାଲା କରିବୁ । ଚାଲ, ଚାଲ; ତେଣେ ମାଛବଜାର ଖାଁ ଖାଁ ହୋଇଗଲେ ତମ ସାଆନ୍ତାଣି ମତେ ଆଉ ଘରେ ପୂରେଇବେ ନି । ଚାଲିଲୁ ! ପକେଇବ ଖୁନ୍ଦାଟାଏ ଯେ···

"ନାହିଁ ବାବୁ : ଦେଖିବି କ'ଣ ? ମାଗିଯାଚ ପରଘରେ ଲୁଗା ଧୋଇ ବାସନ ମାଜି ଚଳୁଥିଲା ଶୋଭି । ତାକୁ କ'ଣ ଦେଖିନି ଯେ ଆଜି ଦେଖିବି ? ହେଲେ ଦଉଡ଼ି ଦେଇ ଏମିତି କଅଁ ମଲା ? ଆହା, "କି ସୁନ୍ଦର ଦେଖିବାକୁ ! ଯାହା ଘରକୁ ଯାଉଥାନ୍ତା ଘର ପୂରି ଯାଉଥାନ୍ତା : କେତେ ମୁଁ ମା'ଙ୍କୁ କହୁଥିଲି ତାକୁ...."

"ହଇରେ ଛତରା ! ନାଗର ପଣ ଦେଖାଉଛୁ ? ଶୋଭିକୁ ତୁ ବାହା ହୋଇଥାନ୍ତୁ ? ହଇରେ ବାଲୁଙ୍ଗା, ଗୁଳିର ତଳେ ଗଳେଇଲୁଣି କି ? ଦେଖୁଛ, ଦେଖୁଛ ତା ବୁଦ୍ଧିକୁ !'

ସପନା ସେତେବେଳେ ଗାମୁଛା କାନିରେ ତା'ର ଲୁହ ପୋଛୁଥିଲା । ମେଞ୍ଚାଏ ମେଘ ଭିତରେ ସୂର୍ଯ୍ୟ ବି ନିଜକୁ ଲୁଚେଇ ଦେଇଥିଲେ । ଶୀତ ଦିନରେ କୁହୁଡ଼ି ଓ ଶିଶିରରେ ଶବଟାର ଦେହ ଯେମିତି ଓଦେଇ ଯାଉଥିଲା ସମସ୍ତଙ୍କ ଆଖି ସାମ୍ନାରେ ।

ଯୁବତୀଟିର ସର୍ବାଙ୍ଗ ସୁନ୍ଦରୀ ହେଲେ ବି ଯେପରି କଳେଇ ହେଲାପରି ମନେ ହେଉଥିଲା । ତା'ର ମୁହଁଟା ଧୀରେ ଧୀରେ ବିବର୍ଣ୍ଣ ହେବା ସଙ୍ଗେ ସଙ୍ଗେ କ୍ରମଶଃ ବୀଭତ୍ସତା ଘୋଟି ଆସୁଥିଲା । ତା'ର ମୁକୁଳା ଆଖି ଦୁଇଟି ବି ଉପସ୍ଥିତ ଜନତାକୁ ସମୀକ୍ଷା କରିବାରେ ହୁଏତ ବ୍ୟସ୍ତ ଥିଲା । ଅଥଚ, ବିଷର ଠାରୁ ସେଠାରେ ଥିଲା ତାଚ୍ଛଲ୍ୟ, ଉପହାସ ଓ ଘୃଣାର ପ୍ରଲେପ, ସମସ୍ତ ପୃଥିବୀକୁ ଦାମ୍ଭିକତାକୁ ବଡ଼ ପଣକୁ, କୌତୂହଳକୁ ସେ ଯେମିତି ଗୋଟାଏ ଫୁତ୍କାରରେ ଉଡ଼ାଇ ଦେଇଛି ଓ ସେହି ଉଡ଼ାଇ ଦେବାରେ ହିଁ ଯେପରି ସେ ସାମ୍ରାଜ୍ୟ ଜୟ କରିଛି···· ।

ଏତିକିବେଳେ ଜିପ୍‌ଗାଡ଼ି ଚଢ଼ି କିଏ ଜଣେ ଓହ୍ଲେଇ ଆସିଲେ ଏବଂ ଭିଡ଼ ଭିତରେ ପଶି ଶବକୁ ଛୁଇଁଦେଇ ପଛକୁ ବୁଲିପଡ଼ି ଚିତ୍କାର କରି ଉଠିଲେ,

"ଆରେ ନବୀନ ! ସତକଥା, ଆ' ଦେଖିବୁ ଆ' ଶୋଭ ଛଡ଼ା ତ ଇଏ ଆଉ କେହି ନୁହେଁ...ଓଃ ଶେଷକୁ ଏଇ ଅବସ୍ଥା ହେଲା ବସ୍ତୁଘର !" ଆଉ କ'ଣ ସେ କହୁଥିଲେ କିଛି ସ୍ପଷ୍ଟ ଶୁଣା ଯାଉ ନ ଥିଲା । ବସ୍ତ୍ରଘରେ, ଶୋକରେ ସେହି ପ୍ରାପ୍ତବୟସ୍କ ମଣିଷଟି ବାରମ୍ବାର ରୁମାଲରେ ମୁହଁ, ଆଖି ପୋଛି ଚାଲିଥିଲେ । ନବୀନ ନାମଧାରୀ ଶୁଭ୍ର ଧୋତି ପରିହିତ ପ୍ରାପ୍ତ ପ୍ରୌଢ଼ ପରି ଦେଖାଯାଉଥିବା ଭଦ୍ରଲୋକଟି ମୁଣ୍ଡ ଝୁଲାଇ ଆସିଲେ । ଥରେ ମାତ୍ର ଚାହିଁଦେଇ ପ୍ରାର୍ଥନା କଲା ଭଙ୍ଗୀରେ ଆଖି ବୁଜି ଛିଡ଼ା ହେଲେ ।

ଚତୁର୍ଦ୍ଦିଗରେ ନୀରବତା ଯେପରି ଅଖଣ୍ଡ ରାଜତ୍ୱ କରୁଥିଲା । ମେଘ କଟି ଯାଇ ସୂର୍ଯ୍ୟ ରଶ୍ମି ପତ୍ର ଗହଳରୁ ଶବ ଦେହ ଉପରେ ଜମିଥିବା ସମସ୍ତ ଶିଶିର କଣାକୁ ଶୋଷି ଚାଲିଥିଲା । ସେହି ସମୟରେ ସମସ୍ତ ଚିନ୍ତାକୁ ଅତିକ୍ରମ କରି ଗୋଟିଏ କଥା ସମସ୍ତଙ୍କ କାନରେ ବଜ୍ରାପରି ବାଜିଲା 'କ'ଣ ଏଥିରେ ଆଶ୍ଚର୍ଯ୍ୟ ହେବାର ଅଛି ଯେ ? ପ୍ରତିଦିନ ତ ଏମିତି ରାସ୍ତା କଡ଼ରେ ଅଜସ୍ର ଲୋକ ମରୁଛନ୍ତି, ସ୍ୱାମୀ-ଶାଶୁଙ୍କ ଗଞ୍ଜଣା ସହି ନ ପାରି କେତେ ଝିଅ-ବୋହୂ ପ୍ରାଣ ଦେଉଛନ୍ତି—ବିଷ ଖାଇ, ପାଣିରେ ବୁଡ଼ି, ନିଆଁରେ ଜଳି, ଘର ଛାଡ଼ି ଚାଲିଯାଉଛନ୍ତି । ଆଉ ସହଜରେ ଏଇଟି ନଗରମାର୍ଗି ଝିଅ...ପେଟକୁ ମୁଠାଏ ଦାନା ପାଇଁ ଦେହ ବିକୁଥିଲା, ବୟସ୍କ ଲୋକଙ୍କୁ ମଜ୍ଜୁଆଳି କରୁଥିଲା, ଝିଅ-ବୋହୂଙ୍କୁ ଉଚାଟ କରୁଥିଲା, ଆଉ ସାରା ସମାଜରେ ଗୋଟାଏ କଳଙ୍କିତ ନାରୀ ହିସାବରେ ଆତଙ୍କ ସୃଷ୍ଟି କରୁଥିଲା...ଭଗବାନ ତାକୁ ବୁଦ୍ଧି ଦେଲେ, ସଦ୍‌ବୁଦ୍ଧି ହେଲା, ବେଳ ଥାଉ ଥାଉ ସେ ବାଟ କାଟିଲା । କେହି କାନ୍ଦିବାକୁ ନାହିଁ, ଝୁରିବାକୁ ନାହିଁ, ଏମିତିକି ମରଣଟାକୁ ଏପରି ଅଦ୍ଭୁତ ଭାବରେ କାହିଁକି ଟାଣି ଆଣିଲୁ ବୋଲି ଲଜ୍ଜିତ ହେବାକୁ ନାହିଁ ।"

ଏ କଥା ଯିଏ କହୁଥିଲେ ସେ ଜଣେ ଅତି ବୃଦ୍ଧ ଲୋକ । ଥୁରୁଥୁରୁ ଚମଡ଼ା, କୋଟରଗତ ଚକ୍ଷୁ ଓ ଥର ଥର ଦେହ ନେଇ ସେ ଯେମିତି ଗଭୀର ବେଦନାରେ ଭାଙ୍ଗିପଡ଼ୁଥିଲେ ।

ଡଆସିଲ୍ଲ ଲଗାଇ ସିଗାରେଟ୍‌ରେ ଅନ୍ୟମନସ୍କଭାବରେ ଚୁମ୍ବନ ଲଗାଇ ଦେଇ ଦାଢ଼ିକଣଦେଖି ଅଳ୍ପ ବୟସ୍କ ଜଣେ ଯୁବକ କହିଲା, "ଆପଣ ଯାହା କହିଲେ ତାକୁ ମୁଁ ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହେଁ, ସାର୍ । ସମାଜର ଏଥିପ୍ରତି ଗୋଟାଏ ଦାୟିତ୍ୱ ଅଛି । ମୁଁ ଅବଶ୍ୟ ଅସ୍ୱୀକାର କରୁନି ଯେ ବ୍ୟକ୍ତିର ଦାୟିତ୍ୱ ନାହିଁ ବୋଲି...ଏପରି ବୀଭତ୍ସ ଭାବରେ ମୃତ୍ୟୁକୁ ବରଣ କରିବା ମୂଳରେ ନିଶ୍ଚୟ କିଛି ଉଦ୍ଦେଶ୍ୟ ଅଛି । ବିଶେଷତଃ ଜଣେ ନାରୀ, ସୁନ୍ଦରୀ ନାରୀ, ଯିଏ ଏପରି

ଦେହର ପସରାକୁ ପ୍ରଦର୍ଶନୀ କରି ମୃତ୍ୟୁ ବରଣ କରେ, ତେବେ ତାଙ୍କୁ ମା' ବୋଲି କଏ କାହିଁକି ସମ୍ବୋଧନ କରିବ ?"

ବୃଦ୍ଧବ୍ୟକ୍ତି ଚମକିଲେ ପରି ସେହି ପ୍ରଶ୍ନକର୍ତ୍ତା ଯୁବକକୁ ଅନେଇଲେ ଏବଂ ନିମିଷେ ଦ୍ୱନ୍ଦ୍ୱରେ ପଡ଼ିଗଲେ ଉତ୍ତର ଦେବାପାଇଁ । ପର ମୁହୂର୍ତ୍ତରେ ସେ କ୍ଷୀଣ ହସି କହିଲେ, "ନାଁ ହେ।, ଇଚ୍ଛାକୃତ ମୃତ୍ୟୁ ନୁହେଁ ଯଦିଓ ଏହା ଆତ୍ମହତ୍ୟା । କେହି କେବେ ଗୁପ୍ତ ଅଙ୍ଗ ପ୍ରଦର୍ଶନ କରିବାକୁ ଚାହେଁନା । ସେ ମା' ହେଉ ବା ରାକ୍ଷସୀ ହେଉ ।"

"ତେବେ...?"

ବୃଦ୍ଧ ଧୀର ମନ୍ଥର ଗତିରେ ଜନତାର ଭିଡ଼ କାଟି ଶବ ଆଡ଼କୁ ଆଗେଇ ଯାଉ ଯାଉ ଅନିଚ୍ଛାକୃତ ସ୍ୱରରେ ହସି ଦେଇ କହିଲେ—"ଗୋଟାଏ ଆଦିମ ପିପାସା । ନିଜେ ଜଳିବା ଓ ଅନ୍ୟକୁ ଜଳାଇବା କିଛି ସହଜ ବ୍ୟାପାର ନୁହେଁ— ବିରାଟ ଶକ୍ତି ଦରକାର ।"

"ଆପଣ କ'ଣ କହୁଛନ୍ତି ସାର୍ ? କିଛି ବୁଝି ହେଉ ନାହିଁ... ।"

"ସମସ୍ତ ହୋଇନି ତୁମର । ଏବେ ତୁମର କୌତୂହଳକୁ ଆଗେ ଶାନ୍ତ କର ଏବଂ ଏହାଠାରୁ କେବେ ଉତ୍କୃଷ୍ଟ ସମୟ ଆସିବ ବୋଲି ତ ମୋର ମନେହୁଏ ନାହିଁ । ତୁମ ପାଇଁ ହୁଏତ କିଛିଟା..."

ଯୁବକଟି କିଛି ନ କହି ଶରତ୍ତରେ ସିଗାରେଟ୍ ଟୁକୁରାଟା ଯୋତାରେ ମାଡ଼ି ଦେଇ ରାସ୍ତା ଆଡ଼କୁ ମୁହାଁଇଲା । ବହୁ ସମୟ ଅକାରଣରେ ନଷ୍ଟ କରିଥିବା ବ୍ୟକ୍ତିର ନିଷ୍ଫଳ ବ୍ୟକ୍ତିତ୍ୱ ଫୁଟି ଉଠୁଥିଲା ତା'ର କିଶୋର-ପ୍ରାପ୍ତ ମୁଖ ମଣ୍ଡଳରେ ।

ସେତେବେଳକୁ ପ୍ରସ୍ତୁତ ଅତଳମ କରିସିବାକୁ ବସିଲାଣି । ଦେଖଣାହାରୀଙ୍କ ସଂଖ୍ୟା ବଢ଼ିଯିବା ସଙ୍ଗେ ସଙ୍ଗେ ଆଲୋଚନାର ଦୈର୍ଘ୍ୟ ପ୍ରସ୍ଥ ମଧ୍ୟ ବିସ୍ତୃତ ହେବାକୁ ବସିଲାଣି । ନାନାଆଡ଼ୁ ନାନା ଯୁକ୍ତିତର୍କର ବାୟୁମଣ୍ଡଳ ଉଷ୍ଣ ହୋଇ ଉଠିଲା ସିନା କୌଣସି ନିର୍ଦ୍ଦିଷ୍ଟ ତଥ୍ୟର ସନ୍ଧାନ ମିଳିଲା ନାହିଁ । ରାସ୍ତାକଡ଼ରେ ମରି ପଡ଼ିଥିବା କୌଣସି ଲୋକ ଚଳମାନ ମଣିଷର ଗତିରୋଧ କରେ ନାହିଁ, ବରଂ ଆଣିଦିଏ ଏକ ଅସ୍ଥିରତା, ଏକ ଆତଙ୍କଭରା ଦାୟିତ୍ୱବୋଧ । ତେଣୁ ତ ମଣିଷ ଫେରିଯାଏ ରହି ନ ରହିଲା ଭଳି ରାସ୍ତା କଡ଼ର କ ଦୁର୍ଘଟଣାରେ ପଡ଼ିଥିବା ବ୍ୟକ୍ତିଟିକୁ ଉପେକ୍ଷା କରି । ମାତ୍ର ଏଠାରେ ଜଣେ ସୁନ୍ଦରୀ ଅଳ୍ପବୟସ୍କା ନାରୀର ଉଲଗ୍ନ ଦେହ ଗନ୍ଧ ତାଳକୁ ଓହ୍ଲାଇଛି ଯେ ! ସତେ ଯେମିତି ଏକ ପ୍ରଦର୍ଶନୀ, ମନେ

ଯେମିତ କେହି କେବେ ନାଗ୍ନ ଦେହ ଦେଖି ନାହାନ୍ତି, ତା'ର ଗୁପ୍ତ ଅଙ୍ଗ ଦେଖି ନାହାନ୍ତି ! ଏପରି ଏକ ମୃତ୍ୟୁରେ ଶୋକାକୁଳତା ଅପେକ୍ଷା କୌତୂହଳ ବେଶି ରହିଛି ଜନତା ପାଇଁ । ଏମିତିକି ବୋକାଙ୍କ ପରି ଗୁହ୍ୟ ଦେଖିବାରେ ବି କୌଣସି ଲଜ୍ଜା ନାହିଁ କାହାର । ବୋଧହୁଏ ସେହି କୌତୂହଳ ପାଇଁ ଏହି ବିରାଟ ସମାବେଶ । ଅଥଚ ଦେହରେ ଜୀବନର ଲେଶମାତ୍ର ଚିହ୍ନ ନାହିଁ କି ଆମନ୍ତ୍ରଣର ପ୍ରଶ୍ନ ନାହିଁ । ତଥାପି...

ସକାଳର ସୂର୍ଯ୍ୟ କ୍ରମଶଃ ପ୍ରଖର ହୋଇ ଉଠୁଥିଲା । ଭିଡ଼ କମିବା ପରିବର୍ତ୍ତେ ବୃଦ୍ଧି ପାଇବାରେ ଲାଗିଥିଲା । କେତେ ଗୁଞ୍ଜନ, କୋଳାହଳ କଳ୍ପନା-ମନ୍ତ୍ରଣା ଭିତରେ କିଛି ନିର୍ଦ୍ଦିଷ୍ଟ ବସ୍ତୁସ୍ଥିତି ବା ତଥ୍ୟ ନ ଥିଲା । କେହି ଯେପରି ଜାଣିପାରୁ ନ ଥିଲେ ପରବର୍ତ୍ତୀ କର୍ତ୍ତବ୍ୟ କ'ଣ । ସମସ୍ତେ ଯେମିତି ଅପେକ୍ଷା ରଖୁଥିଲେ କିଏ ଯେପରି କେଉଁଠୁ ଦେବଦୂତ ପରି ଆସିଯାଇ ସମସ୍ୟା ସମାଧାନ କରିଦେବ । କିନ୍ତୁ କିଏ ସେ ? କାହିଁ ?

ଏତିକିବେଳେ ଭିଡ଼ ଭିତରୁ କିଏ ଜଣେ ପାଟି କରି ଉଠିଲା—'ଘୁଞ୍ଚିଯାଅ, ପୋଲିସ ଆସିଗଲାଣି । ଖୋଦ୍ ଏସ୍: ପି: ବି ଆସି ଗଲେଣି । ଆଉ ତାମସା କରି ଲାଭ ନାହିଁ ।'' କିଏ କହିଲା କେଜାଣି । ସେତେବେଳେ ଏତେଗୁଡ଼ିଏ ପାଟି ମୁଖର ଥିଲା ଯେ ବୁଝିବା ମୁସ୍କିଲ ।

ଏସ୍: ପି: ଆସି ଥରେ ଶବକୁ ଗ୍ରହିଦେଇ ଇଙ୍ଗିତରେ ଇନ୍‌ସପେକ୍ଟରଙ୍କୁ କ'ଣ ସବୁ କହିଲେ । ଦୁ' ଜଣ କନେଷ୍ଟବଲ ଅର୍ଡ଼ର ନେବାକୁ ଅପେକ୍ଷା କରିଥିଲେ ଯେପରି ।

ଖୁହୁଁ ଖୁହୁଁ ଗଛରୁ ରସି କାଟି ଶବଟାକୁ ଆଣି କନେଷ୍ଟବଲ ଦୁ' ଜଣ ତଳେ ଶୁଆଇ ଦେଲେ । ଉପର ଅର୍ଡ଼ର ନ ଆସିଲା ପର୍ଯ୍ୟନ୍ତ ଅନ୍ୟ କିଛି କରାଯାଇ ପାରିବ ନାହିଁ । ଏସ୍: ପି: ଆଉ ଇନ୍‌ସପେକ୍ଟର ଉପସ୍ଥିତ ଜନତା ସହ ସେତେ-ବେଳକୁ କଥାବାର୍ତ୍ତା ଛଳରେ ଜମାନବନ୍ଦୀ ନେବାକୁ ଆରମ୍ଭ କରିଦେଲେଣି— ଯଦି କିଛି ତଥ୍ୟ ମିଳିଯାଏ ..

ଏତିକିବେଳେ ସେଇ ଶ୍ରେଷ୍ଠୀ ବୁଢ଼ୀ ଗଣ୍ଡିଗ୍ରଟାଏ କାଖେଇ ଧଇଁସଇଁ ହୋଇ ପହଞ୍ଚି ଚିତ୍କାର କରି ଉଠିଲା "ରୁହ, ରୁହ ସେମିତି ଝିଅଟାକୁ ଉଠାଅ ନାହିଁ । ଲଙ୍ଗଳା ମୁକୁଳା କରି ମଶାଣିକୁ ନେବ କେମିତି ? ମୁଁ ତାକୁ କପଡ଼ା ଟିଏ ଘୋଡ଼େଇ ଦିଏ କି ନେଇଯିବ ।''

କନେଷ୍ଟବଲ ଦୁ' ଜଣ କ'ଣ ଭାବି ଅଟକି ଗଲେ । ସମବେତ ଜନତା ଚଳଚ୍ଚିତ୍ର ଦେଖିଲା ଭଙ୍ଗୀରେ ନୀରବ । ଇନ୍‌ସପେକ୍ଟର ଖାଲି ଅନ୍ୟମନସ୍କ

ସ୍ୱରରେ ପସ୍ଟର ଉଠିଲେ, 'ହେ ବୁଢ଼ୀ ! ତୋର ସେ ଝିଅ କ'ଣ ହୁଏ ତାଙ୍କର ?"

ବୁଢ଼ୀ ତାର କେମା ହାତରେ ଗଣ୍ଠିଲିଟା ଖୋଲୁ ଖୋଲୁ ଫୋପାଡ଼ିଲା ଭଳି କହିଲା,—"ମଲା ମୋର କଥା କ'ଣ ହେବମ ? କ'ଣ ଖାଲି ହେବ ବୋଲି ମୁଁ ଧାଉଁଛୁ କି ? ଯେତେ ହେଲେ···"

ଇନ୍‌ସପେକ୍ଟର ଗମ୍ଭୀର କଣ୍ଠରେ କନ୍‌ଷ୍ଟେବଲ ଉଦ୍ଦେଶ୍ୟରେ କହିଲେ, "ହେଇ, ଉଠା ଶବ । ଗୋଟେ ସୁଆଙ୍ଗ ଗ୍ଲିଛି ! କାହାର ଝିଅ କାହାର ଭଉଣୀ କେହି ମାନବାକୁ ନାରାଜ । ଏଣେ କ'ଣ ନା 'ରଖ, ରଖ' । କହେ। ! ମାଇକିନିଟା କ'ଣ ସ୍ୱର୍ଗରୁ ଗଳି ପଡ଼ିଲି ?"

ବୁଢ଼ୀ ଅଣ୍ଟାରେ ଲୁଗାଟା ଭିଡ଼ି ଦେଇ କହିଲା—"ମଲା ଝିଅଟାର ତ ବାପ ମା କେହି ନାହିଁ । ପରଘରେ ଗତର ଖଟେଇ ଦି' ଓଳି ପେଟ ପୁରୁ ନ ଥିଲା ଯେ ତେଣିକି ଯାଇଯାଉ ଟୋକାଙ୍କର ନାଟ ଚାଲୁଇ ନେଇ, ତା'ର ଦେହ ଖଣ୍ଡକୁ ତ ସଭିଏଁ ଗୁହିଁ ବସିଥାନ୍ତି । ଆଉ କଥଣ କରିଥାନ୍ତା ଯେ···ଲଙ୍ଗଳା ମୁକୁଳା ହୋଇ ରସି ଲଗାଇ ଦେଲା ଶେଷକୁ । କେତେ ସହିବ ମଣିଷ ଜନମ ତ ? ଏବେ ଦେଖୁଥା···ତା' ଦେହର ଶୋଷକୁ ଲୁଣ୍ଡ ହୋଇ ମିଶିପେ ମାଇପେ ସମସ୍ତେ ଦେଖୁଥା...."

ମୀରବତା ଭାଙ୍ଗି ଏସ୍. ଡି. ପାଟି କରି ଉଠିଲେ—"ଏଇ ବୁଢ଼ୀ, ପାଟି ବନ୍ଦ କର । ତୋର ଯଦି କିଛି କହିବାର ଅଛି କହ, ଏଣୁ ତେଣୁ ବାଜେ କଥା ବକିବା ଦରକାର ନାହିଁ ।"

ବୁଢ଼ୀ କ'ଣ କହିବ କହିବ ହୋଇ କହି ପାରିଲା ନି । ଅଦ୍ଭୁତ କଷ୍ଟରେ ତା'ର ଲୋଳିତ ଚମରେ ଏକ ପ୍ରକାର ଶିହରଣ ଆସିଯାଇଥିଲା, ଆଉ ସେହି ଶିହରଣରେ ସେ ଅନ୍ୟ ଏକ ଜଗତକୁ ଯେମିତି ଗ୍ଲିଲା ଯାଇଥିଲା । ଅଧା-ଖୋଲା ଗଣ୍ଠିଲିଟା ସେମିତି ତଳେ ପଡ଼ିଥିଲା । ଆଖି ତା'ର ଛଳ ଛଳେଇ ଉଠିଥିଲା । ଲୁହରେ ଟଳମଳ ହୋଇ ଦଦରା କଣ୍ଠରେ ସେ କହିଲା,—"ନାହିଁ ବାବୁ ! ମୁଁ ଭିଖାରୁଣୀଟା କ'ଣ କହିବ ? ମତେ କି ଜଣା ନିୟମ କାନୁନ୍ । ଝିଅଟା ଲଙ୍ଗଳା ମୁକୁଳା ହୋଇ ପଡ଼ିଛି ଦେଖି ଦେହ ସହିଲା ନି ଯେ ମାଗିଯାଚି କନା ଦି'ଖଣ୍ଡ ଆଣି ଖାଲି ଘୋଡେଇ ଦେବାକୁ କହୁଛି । ଆଖି କ'ଣ ହୋଇ ଯାଉଛି । ମୋର ସେ କିଛି ନୁହେଁ ମ ବାବୁ ! ହେଲେ ସବୁରି ଝିଅ, ମା ଭଉଣୀ ତ ଅଛନ୍ତି ! ଆଜ ମୋ'ର ଝିଅ ହୋଇଥାଆନ୍ତା··· ! ଆହା ! ବଡ଼ ଲକ୍ଷ୍ମୀମନ୍ତ ଝିଅଟା, କି ଦୁର୍ବୁଦ୍ଧି ଘଟିଲା ତାଙ୍କୁ ରସି ଲଗେଇ ସଞ୍ଜଟାଏ ଲଗାଇ ଦେଲା ଏଠି ? ହେଲେ ବିଷ ଖାଇ

ଦେଇଥାନ୍ତା କି ନଈ ପୋଖରୀକୁ ଡେଇଁ ପଡ଼ିଥାନ୍ତା ? କିଛି ହେଲା ନି, ନିଅଁ ନାଗୀଟା ଦେହଟାକୁ ମେଲା କରି ଦେଇ ଚାଲିଗଲା ।

ଏସ୍. ପି. ଚୁରୁଟ୍‌ରୁ ଧୂଆଁ ମେଞ୍ଚାଏ ଛାଡ଼ି କହିଲେ "ହେଲେ ତୁ କହି-ପାରିବୁ କିଏ ତା' ପଛରେ ଅଛନ୍ତି ' କାହିଁକି ସେ ମଲା ? ଏ ସାଇର କି ଅନ୍ୟ କୋଉ ସାଇର କିଏ ତା' ମୃତ୍ୟୁ ପାଇଁ ଦାୟୀ ? ଡରନା, କହ । ତୋର ଡରିବାର କିଛି ନାହିଁ—ଆମେ ଅଛୁ କହ ।"

ସାତସିଆଁ ଚାରିହାତର ଲୁଗାଟାଏ ବାହାର କରି ତନଖି ଦେଖୁ ଦେଖୁ ବୁଢ଼ୀ କହିଲା, "ମୁଁ ଜାଣିଥିଲେ ତମକୁ କୁହନ୍ତି କାହିଁକି ମ ? ଏମିତି ତ କେତେ ଝିଅ ବୋହୂ ରୋଜନା ମରୁଛନ୍ତି, ତମେ କିଏ ଯାଉଛ କି ପଚାରିବାକୁ ? ଯାର କେହି ନାହାନ୍ତି ବୋଲି ଏତିକି ପାଳି ଲାଗିଛି ନା ! ଛ୍ୟା ବୁଝିପାରୁ ନ କ'ଣ ମ ? ମୁଁ କ'ଣ କହୁଛି କି ମୁଁ ତାକୁ ଘୋଡ଼େଇ ଦିଏ, ତେଣିକି ତମେ ମୁଆଡେ ନେଉଛ ନିଅ । ଯେତେହେଲେ ଝିଅଟା ତ—ଏମିତି ଲଙ୍ଗଳା ମୁକୁଳା ହୋଇ ପଡ଼ିଲେ ଦେଖି କେମିତି ସହିବ ? କାହାର ଭଲ ଝିଅ ବୋହୂ, ମା ନାହାନ୍ତି ?"

ଏସ୍. ପି: ଇନସ୍‌ପେକ୍ଟର କିଛି କହିଲେ ନାହିଁ । ସମବେତ ଜନତା କେବଳ ନୀରବରେ ଚଳଚ୍ଚିତ୍ରର ଶେଷ ଦୃଶ୍ୟରେ ଦେଖୁଥିଲେ ଭିକାରୁଣୀ, କୁଷ୍ଠ ରୋଗାକ୍ରାନ୍ତ ବୁଢ଼ୀଟି ଥର ଥର ହାତରେ ଉଲଗ୍ନ ଶବ ଉପରେ ଛିଣ୍ଡା ମଇଳା ସାତସିଆଁ ଲୁଗାଟିଏ ଘୋଡ଼େଇ ଦେଉଥିଲା ସମୟରେ ଆଖିରୁ ଢାଳି ଦେଉଥିଲା ଦି' ଟୋପା ଲୁହ । ପତ୍ରଟିଏ ପଡ଼ିଲେ ପଥରଟିର ଶବ୍ଦ ସୃଷ୍ଟି ହେବାର ନୀରବତା ସେତେବେଳକୁ ଚତୁର୍ଦ୍ଦିଗରେ ଜମି ଆସିଥିଲେ ବି ଅସ୍ଥିର ପବନ କଟାକ୍ଷ ନିସ୍ପନ୍ଦ ହୋଇ ଯାଉଥିଲା !



# ଗ୍ରୀଷ୍ମାବକାଶରେ ଜୀବନ୍ତ ଶବଯାତ୍ରା

**ଡ: ଚଉଧୁରୀ ହେମକାନ୍ତ ମିଶ୍ର**

କଟକ ସହରର ଗ୍ରୀଷ୍ମକାଳର ଦ୍ୱିପ୍ରହର ଯେଉଁପରି ଘର୍ମାକ୍ତ, ସେହିପରି ଘିମିର ରଞ୍ଜିତ ଏବଂ ଏହି ବାତାବରଣ ବିଷୟରେ କଥିତ ଅନୁଶୀଳନ କଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ, କପର ଅନ୍ୟ ଦେଶରେ ପ୍ରେମିକ ପ୍ରେମିକା ଯୁଗଳ ଦେହ ଲଗାଲଗି ହୋଇ ଅନ୍ୟ ସ୍ଥାନର ଅଭାବରେ ଚଳମାନ ସାଇକ୍ଲ-ରିକ୍ସା ମଧ୍ୟରେ ହିଁ ଏତେଟା ପ୍ରେମଜନିତ ଜ୍ୱର ଅନୁଭବ କରିଥାନ୍ତି ଏବଂ କିପରି ସେହି ସହରର ବଡ଼ ବଡ଼ ବିଦଗ୍ଧ ବିଦଗ୍ଧ ପଣ୍ଡିତଗଣ ଶୋକତାପଗ୍ରସ୍ତ ସଂସାରକୁ କପର ପାଶୋର ଦେଇ କେବଳ ଅଣ୍ଡା ଅଣ୍ଡା ରଚନାମାନ ବସି ଲେଖୁଥାନ୍ତି । ତେବେ ଆମ୍ଭେମାନେ ଆଶ୍ଚର୍ଯ୍ୟ ହୋଇଗଲେ ତ ଆଉ ଦୁନିଆଁ ବଦଳି ଯିବ ନାହିଁ । ଦୁନିଆଁ ଗୁଁ ଦୁନିଆ ଚାଲିଥିବ, ଆମ୍ଭେମାନେ ଆଶ୍ଚର୍ଯ୍ୟ ପରେ ଆଶ୍ଚର୍ଯ୍ୟ ହୋଇ ଯାଉଥିବୁ, କାହାର କାହାରକୁ ଖାତର ନାହିଁ, ତେବେ ଯୌବନର ଧର୍ମ ସେ କରି ଚାଲିବ, ସେ ତ କାହାର କଥା ଶୁଣିବ ନାହିଁ । ଅତଏବ ହଷ୍ଟେଲମାନଙ୍କରେ କେବଳ ଯୁବକମାନେ ଯେଉଁଭଳି ସମୟ ବ୍ୟତୀତ କରନ୍ତି ଛୁଟିଦିନ ହେଉ, ଛୁଟିନଥା ଦିନ ହେଉ, ତାହା କେବଳ ଅନୁଭବୀ ଜାଣନ୍ତି । ଘରଆଡ଼ୁ 'ହାଉ ଡେରକେ ଧାଉ ଡେରକେ' ହରଦମ୍ ଶୁଣାଯାଉଥାଏ । ଖୋର୍ଦ୍ଧା ଲୁଙ୍ଗି ପରିହିତ, କାନ୍ଧରେ ତଉଲିଆ, ହାତରେ ଲୋଟା ଏରୂପ 'ବେଦଂ ବଦନ୍ତି' ମାନ ଯେଉଁପରି ପ୍ରାତଃ ସ୍ମରଣୀୟ ଆକବର ଖାଁଙ୍କର ନାଲି ଗୁଡ଼ାଖୁ ମେଖାଏ ଧରି ମଟିରେ ମଟିରେ ଗୋଟିଏ ଟିଅ କେଷ୍ଟଦେଇ ସାଙ୍ଗସାଥିଙ୍କ ସାଙ୍ଗରେ ଦେଶର ଅବସ୍ଥା, ସାହିତ୍ୟରେ ଅଶ୍ଳୀଳତା, ସହପାଠିନୀମାନଙ୍କର ସର୍ବଶେଷ ଲୋକାପବାଦ, ଆନ୍ତର୍ଜାତିକ ଅର୍ଥନୀତି, ମନୋବିଦ୍ୟା, ଜ୍ୟୋତିଷ, ଦର୍ଶନ ଆଦି କାବ୍ୟଶାସ୍ତ୍ର ବିନୋଦ କରି ସମୟ କଟାଉଥାନ୍ତି ତାହା ଦେଖିଲେ ମନରେ ଅପୂର୍ବ ଆନନ୍ଦ ଜାଗ୍ରତ ହେବ ।

ତେବେ ମମତ୍ରେ ଏହିପ୍ରକାର ବନ୍ଦୋବସ୍ତରେ ସନ୍ତୁଷ୍ଟ ନୁହନ୍ତି ବୋଲି ଜଣାଯାଏ । ଶ୍ରୀ ବପ୍ପେଶ୍ୱର ବଶ୍ୱାଳ ଓ ଶ୍ରୀ ଲଡ଼ୁକେଶ୍ୱର ମହାପାତ୍ର ଉଭୟେ ତୃତୀୟ ବାର୍ଷିକ କଳାର ଓଡ଼ିଆ (ଅନର୍ସ) ଇତିହାସର ଛାତ୍ର ହୋଇଥିଲେ ମଧ୍ୟ, ଗୋଟିଏ ରୁମ୍‌ରେ, ନାମତଃ, ସୁଟ ନଂ ୫୩ରେ ରହୁଥିଲେ ମଧ୍ୟ, ଦୁହେଁ କୁମାରୀ ମଧୂସ୍ମିତା ମହାନ୍ତିଙ୍କର ଜୋରତର ସ୍ତାବକ ଏବଂ ମନେ ମନେ ପ୍ରେମିକ ହୋଇଥିଲେ ମଧ୍ୟ, କାହିଁକି କେଜାଣି କେବଳ କଳାକନ୍ଥା ଦେଇ ସମସ୍ତ ବ୍ୟସ୍ତିତ କରୁଥିବାର ଦେଖାଯାଏ । ଉଭୟଙ୍କର ବାସସ୍ଥାନ ସମାନ ଜିଲ୍ଲାରେ ଏବଂ ଉଭୟେ ସେହି ଦିବାକର ମାଷ୍ଟ୍ରଙ୍କ ହାତରୁ ଅକ୍ଷରଶିକ୍ଷା କରିଥିବା ମଧ୍ୟ କୌଣସି ପ୍ରଭେଦ ଆଣେ ନାହିଁ । ସେମାନଙ୍କର ଝଗଡ଼ାଟି ଦୃଶ୍ୟ-ଶ୍ରାବ୍ୟ ପଦ୍ଧତି ସାହାଯ୍ୟରେ ଭିଡ଼ିଓ ଟେପ୍ କରିନେଲେ ମାଗଣାରେ ଟେଲିଭିଜନ୍ ବାଲାଏ ଗୋଟିଏ ସୁନ୍ଦର କାର୍ଯ୍ୟକ୍ରମ ପାଇପାଇଥାନ୍ତେ, ତେବେ ସେମାନଙ୍କ କଥା ଦୂରେ ଥାଉ, ସେମାନେ .. ହେଲେ 'ଦୂରଦର୍ଶନ', ଅର୍ଥାତ୍ ସବୁ କଥାକୁ ଦୂରରୁ ଦେଖାନ୍ତି । ଯେଉଁମାନେ 'ପାଖଦର୍ଶନ', ଅର୍ଥାତ୍ ତନ୍ଦସ୍ଥ ବାରଣ୍ଡାରେ ଗୋଡ଼ ଫରକଟେଇ ଠିଆ ହୋଇଥାନ୍ତି, ସେମାନେ ବିନା ଟିକସରେ ମନୋରଞ୍ଜନର ଯୋଗାଡ଼ରେ ପ୍ରସନ୍ନ ହୋଇଯା'ନ୍ତି ଏବଂ କଳହର ଆଦ୍ୟକାଳରେ ଯେତେବେଳେ କେବଳ ବାକ୍‌ଯୁଦ୍ଧ ଚାଲିଥାଏ କେତେବେଳେ ଲଡ଼ୁକେଶ୍ୱରର କେତେବେଳେ ବପ୍ପେଶ୍ୱରର ପକ୍ଷ ନେଇ ତହିଁରେ ଅଳ୍ପ ଅଳ୍ପ ଇନ୍ଧନ ଯୋଗାନ୍ତି । କଟକର ବଜାରମାନଙ୍କର ଷଣ୍ଢ-ଲଢ଼େଇ ଯେ ଅନୁଭବ କରିଥିବେ ସେମାନେ ଏହି ଲୀଳାଟି ସହଜେ ବୁଝି ପାରିବେ । କ୍ରମେ ବାକ୍ ଯୁଦ୍ଧଟି ଅବାକ୍ ଯୁଦ୍ଧରେ ପରିଣତ ହୁଏ ଏବଂ ନୀରବରେ ଝିଙ୍କାଝିଙ୍କି, ଟଣା ଟଣି, ମରମର, ବଧା-ବଧି, ଗୁପୁଡା-ଗୁପୁଡ଼ି ବିବିଧ ରଣକୌଶଳ ପ୍ରଦର୍ଶନ ପୂର୍ବକ ଉଭୟେ ଯେ ରୀତିରେ ଯୁଦ୍ଧ କରିଥାନ୍ତି, ତାହା ଦେଖିଲେ କୌଣସି ଐତିହାସିକ କହିବାକୁ ବାଧ୍ୟ ହେବେ ଯେ ଓଡ଼ିଆ ପାଇକର ବୀରତ୍ୱର ଏହା ଏକ ଅନ୍ୟଥା ଦୁର୍ଲ୍ଲଭ ନିଦର୍ଶନ । ଐତିହାସିକମାନେ ଏଠାକୁ ଆସନ୍ତି ନାହିଁ । ସେମାନେ କେବଳ ମାଟିତଳ ଖୋଳି ତାଡ଼ି ବିରଳ ବିରଳ ସାକ୍ଷ୍ୟ ଅନୁସନ୍ଧାନ କରୁଥାନ୍ତି । ସେମାନେ ଅନ୍ଧାରରେ ଥିବା ବେଳେ ଆମ୍ଭେମାନେ ବର୍ତ୍ତମାନ ସେମାନଙ୍କୁ ଗ୍ରାହ୍ୟ ଦେଇଅଛୁ । କେବଳ ନିବେଦନ, ଓଡ଼ିଶାର ଇତିହାସ ପୃଷ୍ଠାରେ ଅଧୂନାକାଳର ଏହି ଜୀବନ୍ତ ସାକ୍ଷ୍ୟମାନ ଲିଖିତ ହୋଇଥାଉ । ଆପଣଙ୍କର ବ୍ୟସ୍ତ ହେବାର କାରଣ ଦେଖୁନାହୁଁ ଐତିହାସିକ ମହାଶୟ, କାରଣ କାଳକ୍ରମେ ଏହା ମଧ୍ୟ ପ୍ରସ୍ତର ସ୍ତୂପରେ ପରିଣତ ହେବ । ସେତେବେଳେ ତ ଆଉ ମନାକରି ପାରିବେନି । ସେତେବେଳେ ତ ଠିକ୍ ଶାବଳ ଖଣ୍ଡି ଧରି ପହଞ୍ଚିଯିବେ ଖୋଳି ପର୍ବତ ମାରି ମୂଷା କରିବାକୁ; ତା'ହେଲେ, ଆଜିଠୁଁ ଟିପି ରଖିବାକୁ ଆପତ୍ତି କାହିଁକି ? ହେଲା

ଏବେ ଆପଣଙ୍କର ସମସ୍ତ ନାହିଁ, ଆମ୍ଭମାନଙ୍କୁ କହିଦେଲେ ଆମ୍ଭେମାନେ ଲେଖି ଦେବୁ । କେତେ କଥା ଲେଖିଲୁ, ଆଉ ଏଇ କେଇପଦ ଲେଖିଲେ କ'ଣଟା ସରିଯିବ ' ଉପରନ୍ତୁ ଆମ୍ଭମାନଙ୍କର ନାମଟି ଯଦି କୌଣସି ଇତିହାସକାର ତାହାଙ୍କର ପୃଷ୍ଠାରେ ଭୁଲକ୍ରମେ ଲଗାଇ ଦିଅନ୍ତି, ତା'ହେଲେ ଆମ୍ଭମାନଙ୍କର କଲେବର, ବାଜି ମାତ୍ ହୋଇଯିବନି କି, ଯେହେତୁ ଶୁଣିଅଛୁ ଯେ କେବଳ ଇତିହାସରେ ନାମ ରଖିବା ସକାଶେ କେତେ ଲୋକ ମରଣ ପଣ କରି କେତେ କାମ କରିଯାଇ ଅଛନ୍ତି । ଅନ୍ୟାନ୍ୟ ବହୁ ମହତ୍ ଉଦ୍ଦେଶ୍ୟ ମଧ୍ୟରେ ଏହି ରଚନାର ଏପରି ଏକ ପ୍ରଚ୍ଛନ୍ନ ଉଦ୍ଦେଶ୍ୟ ଯେ ନାହିଁ, ତାହା ଜୋର ଦେଇ କହି ହେଉ ନାହିଁ ।

ମଲ୍ଲ ଯା' କଥା ଲହିସରେ ପାଣୋଶ ଦେଇଛୁ ସର୍ବଶ୍ରୀ ବିଘ୍ନେଶ୍ୱର ବିଶ୍ୱାଳ ଏବଂ ଲଡ଼ୁକେଶ୍ୱର ମହାପାତ୍ରଙ୍କର ଅବାକ୍ ଯୁଦ୍ଧ, ଇତ୍ୟବସରରେ ଅନେକ ଆଗେଇ ଯାଇଅଛୁ ଏବଂ ପ୍ରାୟ ରକ୍ତାକ୍ତ ଅବସ୍ଥା ଆଡ଼କୁ ଦ୍ରୁତ ଅଗ୍ରସର ହେଉଅଛି । ଆଜିର କଜିଆର ବିଷୟବସ୍ତୁର ଅଭିନବତ୍ୱ ହିଁ ଅନେକ ଦର୍ଶକଙ୍କୁ ମୁଗ୍ଧ ଚକିତ କରିଅଛି । ବିଘ୍ନେଶ୍ୱର ବାବୁଙ୍କ ମତରେ ସର୍ଦ୍ଦି ହୁଏ ବୀଜାଣୁରୁ ଏବଂ ଲଡ଼ୁକେଶ୍ୱର ଏହି ବୀଜାଣୁର ପ୍ରଧାନ ଡିପୋ ହୋଇ ପୂର୍ବ ... ନମ୍ବର ଘରର ଝରକା ପାଖର ଖଟିଆଟି ଅକ୍ତିଆର କରି ବିରାଜମାନ ହୋଇଥିବାରୁ ତତ୍‌ସ୍ଥ ବାତାବରଣ ଘୋର ସଂକ୍ରମଣଗ୍ରସ୍ତ ହୋଇ ପଡ଼ୁଅଛି । ଶ୍ରୀ ଲଡ଼ୁକେଶ୍ୱରଙ୍କ ମତରେ ସର୍ଦ୍ଦିର କାରଣ ଷ୍ଟେପ୍‌ଟୋ କସାଇ ଏବଂ ଷ୍ଟାଫାଇଲୋକଯାଇ ନାମକ ବ୍ୟାକ୍‌ଟିରିଆ ଦ୍ୱୟ ଏବଂ ବିଘ୍ନେଶ୍ୱର ପରି ପୃଥୁଳ ଶରୀରରେ ନିବାସ ଲାଗି ସର୍ବଦା ଆତୁର । ଏହିମାନଙ୍କ ହେତୁ ଆଜି ଲଡ଼ୁକେଶ୍ୱରଙ୍କର ଅନ୍ୟଥା ସୁସ୍ଥ ଶରୀର ସର୍ଦ୍ଦିଗ୍ରସ୍ତ ହୋଇଅଛି । ଏହାର କାରଣ ଓ ପ୍ରମାଣାଦି ବାକ୍‌ଯୁଦ୍ଧ କାଳରେ ସମାପ୍ତ ହୋଇଅଛି । ବର୍ତ୍ତମାନ ଜୋର ଯା'ର, ମୂଳକ ତା'ର ଅର୍ଥାତ୍ ଯେ ନିର୍ବଳ ବୋଲି ପ୍ରମାଣିତ ହେବ, ସେହି ବ୍ୟକ୍ତି ସର୍ଦ୍ଦିପାଇଁ ପ୍ରତ୍ୟକ୍ଷ ଭାବରେ ଦାୟୀ ବୋଲି ଅକାଟ୍ୟ ଭାବରେ ପ୍ରମାଣିତ ହୋଇଯିବ । ସମ୍ଭବତଃ ଇତ୍ୟାକାର ଆଶା ନେଇ ପ୍ରତିଦ୍ୱନ୍ଦ୍ୱୀ ଦ୍ୱୟ ଅବାକ୍ ଯୁଦ୍ଧରେ ରତ ହୋଇଅଛନ୍ତି । ଏଯାବତ ଅବାକ୍ ହୋଇ ରହିଥିବା ବିଦଗ୍ଧ ଦର୍ଶକମଣ୍ଡଳୀ କିନ୍ତୁ ନାନା ପ୍ରକାରେ ନିଜକୁ ବିଭକ୍ତ କରି ବାକ୍ ବିତଣ୍ଡା କରୁଅଛୁ । ତାହାର ଯତ୍‌କିଞ୍ଚିତ ଉଦ୍ଧୃତ ନିମ୍ନଲିଖିତ ମତେ—

ବିଘିନା ଠିକ୍ କହୁଛି, ବୀଜାଣୁ ।

ଅଟିରେ ବୀଜାଣୁ ନୁହେଁ, ଜୀବାଣୁ ।

ରୁଟା କ'ଣ ଜାଣିଛ ? ଷ୍ଟେପ୍‌ଟୋକକସ୍ ବାକ୍‌ଟିରିଆ, ଜୀବାଣୁ ଫେର କ'ଣ ?

ଷ୍ଟାଫାଇଲୋକକ୍‌ସ । ଗୁଚ୍ଛ କୋଉଠିକାର ।
ଯାବେଃ, ଷ୍ଟେପ୍‌ଟୋକସାଇ, ଷ୍ଟାଫାଇଲୋକସାଇ, ମଙ୍ଗ କୋଉଠିକାର ।
କସାଇ କାହିଁକ ବା ? ଜ୍ୱର ଅଇଲା--
ଆବେ, କସାଇ ହେଲା ବନ୍ଧୁ ବର୍ଚନ ।
ରୁ ଗଣିକର ଦେଖିଥିବୁ, ନାହିଁ ? ଜ୍ୱର ଅଇଲା—
କ'ଣ ଜ୍ୱର ଅଇଲା, ହେଁ ?
ଲଡ଼ୁ ଠିକ୍ କହୁଥିଲା ।
ବଘିନା ଠିକ୍ କହୁଥିଲା ।'
ଅପ୍ ଅପ୍ ଲଡ଼ୁ ।
ବଘିନା ଅପ୍ ଅପ୍ ।
ଆରେ ତମେଗୁଡ଼ାକ ହବନେଇଁ ।
ଡାକ୍ତର କଶୋର ଚନ୍ଦ୍ର ମିଶ୍ର କହୁଛନ୍ତି—ମୋ' ଜନାଙ୍କ ସାଙ୍ଗ ।
ଡାକ୍ତର ଗିରଜା ପଟ୍ଟନାୟକ କହୁଛନ୍ତି—ମୋ' ଦାଦାଙ୍କ ଶଳା ।
ଯାବେଃ ସେଗୁଡ଼ା କ'ଣ ଜାଣନ୍ତି—!
ଅପ୍ ବଘିନା—
ଅପ୍ ଲଡ଼ୁଆ-ଲଡ଼ିଯା, ଯା ଲଡ଼ିଯା ।
ବଘିନା ଲଢ ଯା, ଯା ଲଢଯା ତାଧିନ ଧିନା ।
ମୁଁ ବାଜମାର କହୁପାରେ—
ମୁଁ ଶହେ ଟଙ୍କା ବାଜ ମାରୁଛି ବଘିନା ହାରବ । ହ୍ୟାପ ମୋଣ୍ଟୁଗ୍ରମ୍ ।
ମୁଁ ଶହେ ଟଙ୍କା ବାଜ ମାରବି, ଲଡ଼ୁଆ ହାରବ, ମଢ଼ିଆ କାଠଟାଏ ।
ଡାକ୍ତର ବାବୁ କହୁଛନ୍ତି, ଯଦି ଓଷଦ ଖାଇଲେ ସପ୍ତାହକରେ
ଆଉ ଓଷଦ ନ ଖାଇଲେ ସାତ ଦନରେ ଭଲ ହୁଏ ।
ସବୁ ଗୁଡ଼୍‌ବକ୍ ।

ଇତ୍ୟାକାର ଆଲୋଚକ ବୃନ୍ଦ ଏକ ଶୀତଳ ଯୁଦ୍ଧରେ ବ୍ୟସ୍ତଥିବା ବେଳେ ଆମ୍ଭମାନଙ୍କର ତରୁଣ ବନ୍ଧୁଦ୍ୱୟ ସବୁଜ ଘାସ ଉପରେ ଯେଉଁ ସମ୍ମୁଖ ସମର ରଚନା କରଥିଲେ ତାହାର ବର୍ଣ୍ଣନା କରବା ଯେତେ ସହଜ ବୋଲି ପ୍ରଥମ ଦର୍ଶନରେ ପ୍ରତୀୟମାନ ହୋଇଗଲା, ପ୍ରକୃତରେ ତାହା ଏତେ ସହଜ ନୁହେଁ । ଆମ୍ଭମାନଙ୍କର ଲେଖନୀ କେବଳ ସୁନ୍ଦରୀମାନଙ୍କର ବର୍ଣ୍ଣନାରେ ଶର୍ଟହାଣ୍ଡ଼ା ନବେରୁ

ଅଧିକ ପ୍ରୟାସ ବ୍ୟସ୍ତ କରିଥିବାରୁ କଥା କଥାକେ ନମମୀୟ, କମମୀୟ, ରମଣୀୟ, ଶରଦଶଶି, ଆଦରମଣି, ଧନମଣି, ସ୍ତନ୍ଦବଦନା, ଇତ୍ୟାଦି ଅବାନ୍ତର ଶବ୍ଦମାନ କଥା କଥାକେ ଦ୍ବନ୍ଦ୍ବ କରି ଆମ୍ଭର ବର୍ଣ୍ଣନା ମଧ୍ୟକୁ ବାଡେଇ ପିଟି ହୋଇ ପୁଷ୍ଟୁସି ଆସୁଅଛନ୍ତି । କେବଳ ସାରଳା ଦାଶଙ୍କର ମହାଭାରତ ମଧ୍ୟରେ ଯୁଦ୍ଧର ମନୋଜ୍ଞ ବର୍ଣ୍ଣନା ଦେଖିବାକୁ ମିଳଥାଏ ଏବଂ ତାହା ମଧ୍ୟ ପ୍ରବାସୀ ଲେଖକମାନଙ୍କର ହାତ ପାହାନ୍ତାରେ ମିଳୁ ନ ଥିବାରୁ କେଉଁଠାକୁ ଯିବୁଁ, ବୁଝିପାରିଲୁ ନାହିଁ । ନିକଟରେ ଜନୈକ ଆଜୀବନ ସଭ୍ୟ ଗ୍ରାହକ ତାଙ୍କର ସଗ୍ରହାଳୟର ଏକ ସଠିକ ତାଲିକା ଆମ୍ଭ ଉପରେ ସ୍ନେହ ପରବଶ ହୋଇ ଆମ୍ଭ ନିକଟକୁ ପଠାଉଅଛନ୍ତି; ସେହି ତାଲିକାଟି ଡନ୍ନ ତିନ୍ନ କରି ଦେଖିଗଲେ ମଧ୍ୟ ଆମ୍ଭର ସାହାଯ୍ୟକୁ ଆସିବା ଭଳି କିଛି ହାତରେ ବାଜିଲା ନାହିଁ । ଆମ୍ଭମାନଙ୍କର ଏତାଦୃଶ ଅସହାୟତାକୁ ମନରେ ରଖି ସହାନୁଭୂତିଶୀଳ ସହୃଦୟ ପାଠକ କଲେ ଏବଂ ବାଳକ ଅନୁମାନ ଉପରେ ନିର୍ଭର କଲେ ଅବା କିଛି ସାଫଲ୍ୟ ପାଇବୁ ଏବଂ ଶ୍ରମ ସାର୍ଥକ ହେବ । ପ୍ରସଙ୍ଗକ୍ରମେ ଉଲ୍ଲେଖ, ଆମ୍ଭମାନଙ୍କର ଶ୍ରମ ସାର୍ଥକ ହେବ ବୋଲି କେତେ କଥା କରିଗଲୁ; କିନ୍ତୁ ଏଯାବତ ତାହା ସାର୍ଥକ ହେଲା ନାହିଁ, ଶୁଣି ଆଶ୍ଚର୍ଯ୍ୟ ହେବେ । ତଥାପି ଆମ୍ଭେମାନେ ଚେଷ୍ଟାରେ ତ୍ରୁଟି କରିବୁ ନାହିଁ ।

ସମ୍ବାଦ ଆରମ୍ଭ ହେଲାବେଳକୁ ବଦ୍ରେଶ୍ବରଙ୍କର ଲମ୍ବ କେଶମାନ ଲଡ଼ୁକେଶ୍ବରଙ୍କ ହସ୍ତରେ ଥିଲା ଏବଂ ଶେଷୋକ୍ତଙ୍କର କର୍ଣ୍ଣଦ୍ବୟ ପ୍ରଥମୋକ୍ତଙ୍କର ଦୁଇମୁଷ୍ଟି ମଧ୍ୟରେ ଅଦୃଶ୍ୟ ଥିଲା ଏବଂ ଉଭୟ ପକ୍ଷ କେତେକ ମୁହୂର୍ତ୍ତ ଏପରି ସ୍ତବ୍ଧ ଥିଲେ ଯେପରି ସତରଞ୍ଜି ଖେଳରେ ସମାନ ଶକ୍ତିସମ୍ପନ୍ନ ଦୁଇଟି ଗୁଳି ସାମନା ସାମନି ଭାବରେ ଅଟକି ରହିଛି ଏବଂ ଏହି ନୀରବତା ପରେ ହିଁ କିଏ ହାରିବ କିଏ ଜିତିବ ଗୋଟିଏ ଗୁଳ୍‌ରେ ସ୍ଥିର ହୋଇଯିବ । ଲଡ଼ୁକେଶ୍ବର ହଠାତ୍ ଦୁଇ ହସ୍ତରେ ବଦ୍ରେଶ୍ବରଙ୍କୁ ଏକ ପ୍ରବାଳ ଶକ୍ତିସମ୍ପନ୍ନ ସମ୍ମୁଖ ଧକ୍‌କା ଦେଇ ନିଜେ ଚିତ୍କାର କରି ଉଠିଲେ ଯନ୍ତ୍ରଣାରେ, କାରଣ ସେହି ପ୍ରଚଣ୍ଡ ଧକ୍‌କା ନିଜର କର୍ଣ୍ଣମୂଳକୁ ଅବିକଳ ପ୍ରସାରିତ ହୋଇଥିଲା । ଏହାପରେ କ୍ଷଣକେ ଦେଖାଗଲା ଯେ ଲଡ଼ୁକେଶ୍ବର ବଦ୍ରେଶ୍ବରଙ୍କୁ ଧରାଶାୟୀ କଲେ ଏବଂ ପରମୁହୂର୍ତ୍ତରେ ନିଜର ଗୋଡ଼ ପାଖଟି ନିଜର ପ୍ରତିଦ୍ବନ୍ଦ୍ବୀଙ୍କର ବେକ ମୂଳରେ ସ୍ଥାପନ କରି ତାହାଙ୍କୁ ଚିତ୍ କରି ଦେଲେ ବଦ୍ରେଶ୍ବର, ଅର୍ଥାତ୍ ଯେଉଁପରି ଚକ୍ରବତ୍ ପରିବର୍ତ୍ତନ୍ତେ ସୁଖାନିଚ ଦୁଃଖାନିଚ ବୋଲି କହିଥିଲେ କେଉଁ ସସ୍କୃତ କବି, ଅଥବା ଯୁଧିଷ୍ଠିର ମଧ୍ୟ ହୋଇପାରନ୍ତି । ଏହି ଯୁଦ୍ଧରେ ଶେଷ ତୁଳନାରେ ଦକ୍ଷତା କମ୍ ବୋଲି ପ୍ରମାଣିତ ହେଉଥିଲା । ବୁଝାଗଲା ବାହୁଯୁଦ୍ଧ, ଯୁଗୁଚ୍ଛୁ, କୁଂଫୁ, ଜୁଡ଼ୋ, କାରାଟେ ଆଦି

ବିଭିନ୍ନ ଦେଶସ୍ଥ ଯୁଦ୍ଧ ପଦ୍ଧତିର ଏକ ଆଶ୍ଚର୍ଯ୍ୟକର ସମ୍ମିଶ୍ରଣ ସଂଘଟିତ ହେଉଅଛି, ଯାହାକି ମଲ୍ଲଯୁଦ୍ଧ ବିଶାରଦମାନଙ୍କର ଗବେଷଣାର ବିଷୟବସ୍ତୁ ହୋଇପାରେ ଏବଂ ସିନେମାରେ ନାୟକ ଓ ଖଳନାୟକଙ୍କର ଯୁଦ୍ଧ ଯୋଜନା କରୁଥିବା ବିଶେଷଜ୍ଞମାନେ ମଧ୍ୟ ଏଥିରୁ କିଛି ଶିକ୍ଷଣୀୟ ବିଷୟ ପାଇପାରନ୍ତି ଏବଂ ପ୍ରଚୁର ଟମାଟୋ ସସ୍ ସହଯୋଗେ ଏହାର ଏକ ରକ୍ତାକ୍ତ ସଂସ୍କରଣ ବଜାରକୁ ଯାଇ ପାରନ୍ତି । ସାମ୍ବାଦିକ ଏହିପରି ମନନ ଚିନ୍ତନରେ ମଗ୍ନ ଥିବା ବେଳେ ଘଟଣାଟା ଦୁଇଧରଣ ଭିନ୍ନ ଆକାର ଯାଇଥିଲା । ଦୁଇ ପ୍ରତିଦ୍ୱନ୍ଦ୍ୱୀ ପରସ୍ପର ପ୍ରତି 'ଇଂରାଜୀ ଘୁଷି' (ଫକୀରମୋହନଙ୍କ ଧନ୍ୟବାଦ) ହିନ୍ଦୀ ସିନେମାର 'ଡିସୁମ ଡିସୁମ୍ ଘୁଷି', କିହୁଣୀ, ଭିଡ଼ (ଏବଂ ସ୍ୱର୍ଗତ ଗୋପାଳଚନ୍ଦ୍ର ପ୍ରହରାଜଙ୍କର ସୁଖ୍ୟାତ ବିଜ୍ଞାନୀକରଣ ଶ୍ଳୋକଟି ଏଥିସଙ୍ଗେ ପାଠ କରିବାକୁ ଉପଦେଶ ଦେଉଅଛି) ଆଦି ପ୍ରୟୋଗ କରି ପ୍ରଚଣ୍ଡ ବେଗରେ ଆଗ୍ରସର ହେଉଥିଲେ ଏବଂ ଦର୍ଶକମଣ୍ଡଳୀ ପ୍ରୋତ୍ସାହନ ଦେବାରେ ଏପରି ଏକ ବାତାବରଣ ସୃଷ୍ଟି ହୋଇଅଛି, ମନେ ହେଉ ଅଛି ଆମ୍ଭେମାନେ ଯେପରି ସନ୍ତୋଷ ଟ୍ରଫି, ଡର୍ବି, ଆଦି ଜାତୀୟସ୍ତରର ଫୁଟବଲ୍ ଖେଳ ଓ ଅନ୍ୟାନ୍ୟ ଉତ୍ତେଜକ ଘଟଣାର ଧାରାବିବରଣୀ ଶୁଣୁଅଛୁଁ । ସାମ୍ବାଦିକ ପାଖକୁ ଗଲାବେଳକୁ ଯୋଦ୍ଧାମାନେ ଅନେକ କ୍ଳାନ୍ତ, ଅବସନ୍ନ ଭାବରେ କେବଳ କର୍ତ୍ତବ୍ୟ ନିର୍ବାହ କରିବା ଉଦ୍ଦେଶ୍ୟରେହିଁ ମଝିରେ ମଝିରେ ଝିଙ୍କାରି ଉଠି ଗୋଟିଏ ଦୁଇଟା ମାରଣାସ୍ତ୍ର ପ୍ରୟୋଗ କରୁଥିଲେ । ସେମାନେ ପ୍ରଥମେ ପ୍ରଥମେ ଦମ୍ ନେବାକୁ ଅଳ୍ପ ଅଟକୁଥିଲେ ଏବଂ ଅତ୍ୟନ୍ତ ପ୍ରଶଂସନୀୟ ଭାବରେ ଅନ୍ୟପକ୍ଷ ମଧ୍ୟ ତଦ୍ରୂପ ଅପେକ୍ଷା କରୁଥିଲେ ଏବଂ ଏଠାରୁ ପରୋକ୍ଷ ଭାବରେ ପ୍ରସ୍ତୁତିର ସଙ୍କେତ ନ ପାଇଲେ କିଛି ଆରମ୍ଭ କରୁ ନଥିଲେ ।

ଏହି ରୋଚକ ଅବାକ୍ ଚକିତ ହୃଏତ ଆହୁରି କିଛି ସମୟ ଚାଲିଥାନ୍ତା, କିନ୍ତୁ ସେତିକିବେଳେ କୌଣସି କାରଣରୁ ହଷ୍ଟେଲର ଓ୍ୱାର୍ଡେନ୍ ଇଆଡ଼େ ଆସୁଥିବାର ସମ୍ବାଦ ବିଦ୍ୟୁତ୍ ବେଗରେ ସଞ୍ଚରିତ ହେବାରୁ ହଠାତ୍ ବାରଣ୍ଡାମାନ ଖାଲି ହୋଇଗଲା ଏବଂ ପ୍ରତିଦ୍ୱନ୍ଦ୍ୱୀଦ୍ୱୟ କେବଳ ଶୂନ୍ୟକୁହିଁ ଆପଣାର ଯୁଦ୍ଧ କୁଶଳତା ଅର୍ପଣ କରିବାକୁ ଏତେଟା ଉତ୍ସାହିତ ବୋଧ କରୁ ନ ଥିବାରୁ ହେଉ କିମ୍ବା ଉପସ୍ଥିତ ସାମ୍ବାଦିକ ମୁଖରୁ ଓ୍ୱାର୍ଡେନ୍ଙ୍କର ଆସିବାର ସମ୍ବାଦଟି ପାଇକରି ହେଉ, ନିଜର କାର୍ଯ୍ୟକ୍ରମଟି ଅନିର୍ଦ୍ଦିଷ୍ଟ କାଳ ଲାଗି ସ୍ଥଗିତ ରଖିଥିଲେ ଏବଂ ଉଠି ଛାଡ଼ିଦେଇ ହେଉଥିଲେ କି, ଏତିକିବେଳେ ସଦଳବଳ ଓ୍ୱାର୍ଡେନ ଡକ୍ଟର ଦାସ ସେଠାରେ ଉପସ୍ଥିତ ହୋଇଥିଲେ । ସେ ବିପ୍ଳେଶ୍ୱରଙ୍କର କଳା ଆଖିପତା ଏବଂ ଲକ୍ଷ୍ମୀକେଶ୍ୱରଙ୍କର ରକ୍ତ ଲାଗିଥିବା ଦାନ୍ତକୁ ଏକାଦିକ୍ରମେ ଅଙ୍ଗୁଳି ହିଁ ଦର୍ଶାଇ

ଜିଜ୍ଞାସୁନୟନରେ ବୃଦ୍ଧଙ୍କୁ ସମସ୍ତେ ଅନାଇଁ ଯାଇଥିଲେ । ତାଙ୍କର ଦୃଷ୍ଟିରେ ଅନେକ ପ୍ରଶ୍ନ, ଅନେକ ଭବିଷ୍ୟଦ୍‌ବାଣୀ ଏବଂ ଦଣ୍ଡବିଧାନ ରହିଥିଲା ।

"ମୁଁ ସାର୍ ପଡ଼ିଯାଇଥିଲି
"ମୁଁ ସାର୍ ତାକୁ ଉଠାଉଥିଲି, ମୁଁ ବି ।
"ହଁ ସାର୍, ସେ ବି ।
"ହଁ ସାର୍,
"ହେଁ ହେଁ ସାର୍ ।
"ହେଁ ହେଁ ହେଁ ସାର୍ ।
"ସେ କିଛି ନୁହେଁ ସାର୍ ।

କିଛି ସମୟ ଗୋଟିଏ ଆପାତ ଅଖଣ୍ଡ ନୀରବତା ସେହି ବାତାବରଣରେ ବିରାଜମାନ ହେଲା । ତା'ପରେ ଓ୍ୱାର୍ଡେନ ସେମାନଙ୍କୁ ତାଙ୍କ ସଙ୍ଗେ ଆସିବାକୁ ଇସାରା କରି ପୁନରାୟ ସଦଳବଳ ପ୍ରତ୍ୟାବର୍ତ୍ତନ କରିଥିଲେ । ସେଠାରେ ଆଉ କେହି ନ ଥିଲେ । ପ୍ରାୟ ଘଣ୍ଟାଏ କାଳ ସେ ଏହି ଦୁଇ ଯୋଦ୍ଧାଙ୍କ ସଙ୍ଗେ ବିତାଇଥିଲେ । ସେଠାରେ ନିଶ୍ଚୟ ଆନ୍ତର୍ଜାତିକ ପରିସ୍ଥିତି ଏବଂ ପରସ୍ପରର ସ୍ୱାର୍ଥ ବିଷୟକ ଆଲୋଚନା ଶାନ୍ତ ମୁକ୍ତ ଏବଂ ବନ୍ଧୁତ୍ୱପୂର୍ଣ୍ଣ ବାତାବରଣ ମଧ୍ୟରେ ସଂଘଟିତ ହୋଇଥିଲା; କିନ୍ତୁ ପଦାକୁ ଆସି ଗୋଟିଏ ଏକକ ସାମ୍ବାଦିକ ସମ୍ମେଳନରେ ବିଘିନା ଓ ଲଡ଼ୁଆ ଘୋଷଣା କରିଥିଲେ ଯେ ପ୍ରକୃତରେ ସେମାନେ ଏ ବିଷୟରେ କୌଣସି ଆଲୋଚନା କରି ନାହାନ୍ତି । ମୂଳ ସମସ୍ୟାଟି ବର୍ତ୍ତମାନ ସୁଦ୍ଧା ଅସମାହିତ ହୋଇଥିବାରୁ ଓ୍ୱାର୍ଡେନ୍ ତାହାଙ୍କର ସମ୍ପର୍କସ୍ଥ ଜନୈକ ବିଲାତ ଫେରନ୍ତା ଡାକ୍ତରଙ୍କ ସଙ୍ଗେ ପରାମର୍ଶ କରି ଫଳାଫଳ ଜଣାଇବାକୁ ପ୍ରତିଶ୍ରୁତି ଦେଇଅଛନ୍ତି । ଏହାପରେ ସେ ଦୁହେଁ କରମର୍ଦ୍ଦନ କରି ଯୁକ୍ତ ବିବୃତିର ଘୋଷଣା ପତ୍ରରେ ମାନସିକ ସ୍ୱାକ୍ଷର କରି ସ୍ମିତହାସ୍ୟ ସହଯୋଗେ ବିଦାୟ ନେଇଥିଲେ ।

ଆମ୍ଭେମାନେ ଜାଣୁ, ଅସଲ ବିବାଦ ପ୍ରତ୍ୟକ୍ଷ ନୁହେଁ, ପରୋକ୍ଷ । ଅତଏବ ସେଦିନର ଅବ୍ୟକ୍ତ ବିବାଦ କେବେ ବ୍ୟକ୍ତ ହେବ, ସେହି ପ୍ରତୀକ୍ଷାରେ ରହିଥିଲୁ । ଯେବେ କେବଳ ପ୍ରତ୍ୟକ୍ଷ ଘଟଣାର ବିବରଣ ଦେଇଯାଉଥାନ୍ତୁ ତା'ହେଲେ ଆମ୍ଭେ ନିକୃଷ୍ଟତର ସାମ୍ବାଦିକ ହିସାବରେ ଉତ୍କଳଖଣ୍ଡରେ ବିଖ୍ୟାତ ହୋଇ ଯାଇଥାନ୍ତୁ ଏବଂ ଆମ୍ଭଙ୍କୁ ନଉକରି ଦେବା ଲାଗି ଖବରକାଗଜମାନଙ୍କ ମଧ୍ୟରେ ଜୋର ପ୍ରତିଯୋଗିତା ହୋଇଥାନ୍ତା । ଆମ୍ଭର ସୌଭାଗ୍ୟରୁ ତାହା ଆଦୌ ହୋଇ ନାହିଁ । ଆମ୍ଭେ ସେହି ପ୍ରକାର ସାମ୍ବାଦିକ ଯେଉଁମାନେ କି

ଓ୍ୱାଟରଗେଟ୍ କାଣ୍ଡ, ଭାରତର ଜରୁରୀକାଳ ଘୋଷଣା, ବୃହନ୍ନଳାଙ୍କର ବୃହନ୍ନଶୌର୍ଯ୍ୟ ଆଦି ସକଳ ଅବ୍ୟକ୍ତ ଲୀଳା ପ୍ରକାଶ କରିବାକୁ ସତତ ପ୍ରତୀକ୍ଷମାଣ । ଏହିଭଳି ଗୋଟିଏ ସମ୍ବାଦ ହେଲେ ହିଁ ଯଥେଷ୍ଟ ହେବ । ଆଉ ରାମା ଦାମା ଶାମା କ'ଣ ସମ୍ବାଦ ଲେଖୁନାହାନ୍ତି କି ? ଅତଏବ ଚକସ୍ରାଣସ୍ଥିତ ବିବାଦଟିର ମୀମାଂସା କେବେ ଓ କିପରି, କାହା ଦ୍ୱାରା ଏବଂ କେଉଁଠାରେ ହୋଇଥିଲା ସେ ବିଷୟରେ ଆମ୍ଭେ ମୁଣ୍ଡ ଖର୍ଚ୍ଚ କଲୁ ନାହିଁ । ମୋଟ କଥା ଏ ବିବାଦ ଯାଇ ସେ ବିବାଦ । ଲଡ଼ୁଆ କଙ୍ଗ୍ ହେଲେ ବିଧିନା କଙ୍ଗ୍ ଆଉ ବିଘିନା ସି. ପି. ଆଇ. ହେଲେ ଲଡ଼ୁଆ ସି. ପି. ଆଇ. ଏମ୍, ସେ ଅଲ୍ କହିଲେ ଏ କାଲ୍ । ସେ ପୂର୍ବକୁ ମୁହାଇଲେ ଏ ପଶ୍ଚିମକୁ । ଏହି ବିବାଦ ଯେ ଅଖଣ୍ଡ ତୈଳଧାର ପରି ନିରବଚ୍ଛିନ୍ନ, ତାହା ମଧ୍ୟ ନୁହେଁ । ପୃଥିବୀର ବିବଦମାନ ରାଷ୍ଟ୍ର ଓ ରାଷ୍ଟ୍ରାଂଶ ଯେପରି ବଡଦିନ ଛୁଟି ବେଳେ ଦୁଇ ତିନିଦିନ ଯୁଦ୍ଧ ବିରତି ଘୋଷଣା କରନ୍ତି, ସେହି ଆଢ଼ରେ ଏ ଦୁହିଁଙ୍କ ହାତ ଧରାଧରି ହୋଇ ଯାଉଥିବାର ମଧ୍ୟ ବେଳେ ବେଳେ ଦେଖାଯାଏ । ଲଡ଼ୁ କହେ, ଘରୁ ଘିଅ ଆସିଛି ନେ', ବିଘିନା କହେ ମୋ ପାଖେ ସଜନାଛୁଇଁର ଆଚ୍ଚୁର ଅଛି ନା ।

ଗୋଟିଏ ଦୀର୍ଘ ଯୁଦ୍ଧ ବିରତି ପରେ ଯେଉଁ ଘଟଣାଟି ଘଟିଥିଲା, ତାହା ଅନେକ ଦିନ ପର୍ଯ୍ୟନ୍ତ କୌଣସି ଦର୍ଶକ ଭୁଲିପାରି ନ ଥିଲେ । ଲଡ଼ୁକେଶ୍ୱର ଟିକିଏ ପିଠିଭଙ୍ଗିଆ ଏବଂ କାୟିକ ଶକ୍ତିରେ ବୃଟଗଜା, ଗୁଡ଼ ଓ ଦୁଗ୍ଧ ସେବନକାରୀ ତାହାଙ୍କର ପ୍ରତିଦ୍ୱନ୍ଦ୍ୱୀ ତାହାଙ୍କୁ ଅନାୟାସରେ ପରାସ୍ତ କରିପାରନ୍ତି, କିନ୍ତୁ କିଏ ନ ଜାଣେ ଯୁଦ୍ଧ କେବଳ ବଳ ନୁହେଁ ବୁଦ୍ଧିରେ ମଧ୍ୟ ସଂଘଟିତ ହୋଇଥାଏ ।

ଦିନେ ଗ୍ରୀଷ୍ମକାଳର ଛୁଟି ଦିନରେ ନାନା ଆଲୋଚନା ଓ ଚର୍ଚ୍ଚାରେ ସମୟଟି ହଷ୍ଟେଲର କମନ୍ ରୁମ୍‌ରେ କଟି ଯାଉଥିଲା । କେହି କେହି ଦିକ୍‌ଦାର ହୋଇ ଖଣ୍ଡିଏ ଖାତାରେ କବିତା ଲେଖିବାକୁ ଆରମ୍ଭ କରିଛନ୍ତି, କେହି କେହି ସଦ୍ୟ କ୍ରୀତ ଗୋଇନ୍ଦା ପତ୍ରିକାରୁ ଆଶ୍ୱସନା ଖୋଜୁଛନ୍ତି; କେହି କେହି ନିଘୋଡ଼ ନିଦରେ ଶୋଇଛନ୍ତି ଏତିକି ବେଳେ ସିଆଡ଼୍ ବିଷଣ୍ଣ ମୁଖରେ ଲଡ଼ୁକେଶ୍ୱରଙ୍କୁ ଆସୁଥିବାର ଦେଖାଗଲା । ଯେଉଁ ଗୋଷ୍ଠୀ ଆଲୋଚନାରେ ମତ୍ତ ଥିଲେ ତାଙ୍କ ମଧ୍ୟରୁ ଜଣେ ପଚାରିଲେ ତାଙ୍କର ଦୁଃଖର କାରଣ କ'ଣ ।

"ବିଘ୍ନେଶ୍ୱର ଆତ୍ମହତ୍ୟା କରିବାକୁ ଅଫିମ ଖାଇଦେଇଛି ।"

ଘଟଣାର ବିବରଣୀଟି ସଂକ୍ଷିପ୍ତ ହେଲେ ମଧ୍ୟ ଏହାର ପ୍ରତିକ୍ରିୟାଟି ପ୍ରବଳ ହୋଇଥିଲା । ଆଜି ରୁମ୍‌କୁ ଫେରି ଲଡ଼ୁବାବୁ ଦେଖିଲେ ଯେ ବିଘ୍ନେଶ୍ୱର ଖଟ

ଉପରେ ଲମ୍ବ ହୋଇ ସୁଶକାଚ ମେଲାଇ ପଡ଼ିଅଛି ଏବଂ ଲଡ଼ୁବାବୁଙ୍କର ବିଛଣା ଉପରେ ଗୋଲ ଗୋଲ ଅକ୍ଷରରେ ଖଣ୍ଡିଏ ଚିଠି ଲେଖି ଆଖିଦୃଶିଆ କରି ରଖିଅଛି । ଲଡ଼ୁ ପ୍ରତି ତାହାର ଅନ୍ୟାୟ ଆକ୍ରମଣ ଓ ଅନ୍ୟାନ୍ୟ ଅତ୍ୟାଚାର ଆଦି ଯେଉଁ ତଙ୍ଗିରେ ଘୋର ଅନୁତାପ ପ୍ରକଟ ହୋଇଅଛି । ନିକଟରେ ଷାଣ୍ମାସିକ ପରୀକ୍ଷାରେ ମଧ୍ୟ ସେତେଟା ଭଲ ଫଳ ହୋଇନାହିଁ । ଆହୁରି ମଧ୍ୟ କୁମାରୀ ମଧୁମିତାଙ୍କର ବିବାହ ପ୍ରସ୍ତାବ ବିଷୟରେ ତାହାଙ୍କ ଗୃହରେ କଥାବାର୍ତ୍ତା ଚାଲିଅଛି । ଏସବୁ ବ୍ୟତୀତ ଅନ୍ୟାନ୍ୟ ଗୋଟିଏ ଦୁଇଟି ଗୌଣ କାରଣର ମଧ୍ୟ ଉଲ୍ଲେଖ ରହିଅଛି । ବର୍ତ୍ତମାନ ଆତ୍ମହତ୍ୟା ଛଡ଼ା ଉପାୟ ନାହିଁ ମନେକରି ବିଘ୍ନେଶ୍ବର ଅଫିମ ଯୋଗାଡ଼ କରି ଟେଳାଏ ପକାଇ ଦେଇଛି । ଘଣ୍ଟାଏ ହେବଣି ଏବଂ ବିଷକ୍ରିୟା ଆରମ୍ଭ ହୋଇ ଯିବଣି ।

ବିଘ୍ନେଶ୍ବରର ଆତ୍ମହତ୍ୟା ରୂପକ ଷଡ଼ଯନ୍ତ୍ରକୁ ପଣ୍ଡ କରିବାକୁ ସମସ୍ତେ ଦୃଢ଼-ପଣକର ହେଲେ । ତାହାର ଚିଠିର ଶେଷଧାଡ଼ିରେ ଥିଲା ଚାଲିଲି, ଚାଲିଲି, ଚାଲିଲି, ଏହା ସମସ୍ତଙ୍କୁ ଏତେ ଚଡ଼ାଇଦେଲା ଯେ ଚିଠିଟି ଟୁକୁଡ଼ା ଟୁକୁଡ଼ା କରି ସମବେତ ଭାବରେ ଚିରିବାକୁ ଗୋଟାଏ ଧସ୍ତାପରା ଲାଗିଗଲା । ଏଣିକି କର୍ତ୍ତବ୍ୟ କ'ଣ, ତାହା ବିଚାର କରିବାର ସମୟ ଆସିଗଲା ।

ଲଡ଼ୁବାବୁ କହିଲେ ତାହାଙ୍କର ଭାଉଜଙ୍କ ଭଉଣୀ ସ୍ୱୟଂ ମେଡ଼ିକାଲ କଲେଜର ଛାତ୍ରୀ ହୋଇଥିବାରୁ ଏବଂ ସ୍ୱାଭାବିକ ଭାବରେ ତାହା ସଙ୍ଗେ ଘନିଷ୍ଠ ସମ୍ପର୍କ ରହିଥିବାରୁ ସେ ଭଲଭାବେ ଜାଣନ୍ତି ଯେ, ଅଫିମ ଖାଇଥିବା ଲୋକକୁ ରକ୍ଷା କରିବାକୁ ହେଲେ ତାହାର ପେଟ ସଫା କରିବାକୁ ହେବ ଏବଂ ତାକୁ ଶୋଇବାକୁ ଦେବାର ନୁହେଁ । ଫଳରେ ଦେହରେ ମାଡ଼ ଆଦି ଆଘାତ ଅନବରତ ଚାଲୁ ରହିଥିବା ଦରକାର । ନଚେତ୍ ତାହାର ଜୀବନ ସଙ୍କଟ ଉପସ୍ଥିତ ହେବ ।

ଏହା ଶୁଣି ଘୋର ଉତ୍ସାହରେ ଦଶଜଣ ସାଙ୍ଗେ ସାଙ୍ଗେ ସ୍ୱେଚ୍ଛାସେବକ ତାଲିକାରେ ନାମ ଲେଖାଇ ଦେଲେ ଏବଂ ଆଦେଶର ଅପେକ୍ଷାରେ ଜାଗ୍ରତ୍ଆର ହୋଇ ଠିଆ ହୋଇଗଲେ ଧାଡ଼ିବାନ୍ଧି । ଖବରଟା ବିଦ୍ୟୁତ ବେଗରେ ପ୍ରଚାରିତ ହୋଇଯିବା ପରେ ପରେ ସୁଟ ୧୬୭ ରୁମ୍ ସାମନାରେ ଗୋଟିଏ ଛୋଟିଆ ମେଳା ବସିଗଲା ।

ସେତେବେଳକୁ ବିଘ୍ନେଶ୍ବର ସମ୍ଭବତଃ କୌଣସି ସ୍ୱପ୍ନ ଦେଖି ଟିକେ ଟିକେ ହସୁଥିଲେ । ସେହି ହସଟି ଅନେକ ଦିନ ପର୍ଯ୍ୟନ୍ତ ତାହାଙ୍କର ଶେଷ ହସ ହୋଇ ରହିଗଲା । ଚାରିଜଣ ଷଣ୍ଢା ଷଣ୍ଢା ସ୍ୱେଚ୍ଛାସେବକ ତାଙ୍କର ବିଛଣା ପାଖକୁ ଆସି

ଅଜସ୍ର ବିଧା, ଚାପୁଡ଼ା, ଧକ୍କା, କହୁଣୀ, ଡଦ୍ଧ (ପୁନଶ୍ଚ ସ୍ୱର୍ଗତ ଗୋପଲ ପ୍ରହରାଜଙ୍କର ବିସ୍ତାରୀକରଣ ଶ୍ଳୋକଟି ଦ୍ରଷ୍ଟବ୍ୟ) ତାହାଙ୍କର ଉପତ ସ୍ଥୁଳ ବପୁ ଉପରେ ଲଦି ଦେଇଗଲେ । ସେ ପ୍ରଥମେ କିଛି ବୁଝି ପାରି ନ ଥିଲେ, ତାହା ପରେ କ୍ଷୀଣ ସ୍ୱରରେ ପ୍ରତିବାଦ କରିଥିଲେ ଏବଂ ପରେ ହାତ ଦେଇ ପ୍ରତିରୋଧ ଏବଂ ମୁଷ୍ଟି ଦ୍ୱାରା ପ୍ରତିଶୋଧର ପ୍ରୟାସ କରିଥିଲେ ଯଥାକ୍ରମେ । ପ୍ରତ୍ୟେକ କ୍ରିୟାର ପ୍ରତିକ୍ରିୟା ରହିଅଛି ବୋଲି ଜଣେ ଇଂରାଜୀ ବୈଜ୍ଞାନିକ ସାହେବ, ନାମତଃ ଶ୍ରୀ ନିଉଟନ୍, ଯାହା କହିଥିଲେ ତାହାର କୌଣସି ବ୍ୟତିକ୍ରମ ଏଠାରେ ଦେଖାଗଲା ନାହିଁ, ଯଦ୍ୟପି ମାନବ ଜୀବନରେ ଅନେକ ବ୍ୟକ୍ତି ଉପକାର କରି ଅପକାର ପାଇଥାନ୍ତି ଅଥବା ବହୁତ ପରିଶ୍ରମ କରି କିଛି ପାଇ ନ ଥାନ୍ତି ଇତ୍ୟାଦି ଅନେକ ବ୍ୟତିକ୍ରମ ଦେଖାଯାଇଥାଏ । ନିଉଟନ ସାହେବ ଯଦ୍ୟପି ଜିଦମାରି କହିଥିଲେ ଯେ ଏ ରୂପ ପ୍ରତିକ୍ରିୟା ସମାନ ଶକ୍ତିର ଏବଂ ବିପରୀତ ହେବ, ଏଠାରେ ବିଘ୍ନେଶ୍ୱରଙ୍କର ମୁଷ୍ଟ୍ୟାଘାତ ରୂପକ କ୍ରିୟା ବହୁଗୁଣ ହୋଇ ତାହାଙ୍କ ପାଖକୁ ଲେଉଟି ଆସିଥିଲା ଏବଂ ଶକ୍ତି ମଧ୍ୟ ସମାନ ଏକଥା କୁହାଯାଇ ନ ପାରେ । ତୁମ୍ଭମାନଙ୍କ ଜଡ଼ବୁଦ୍ଧିର ଜାଡ୍ୟ ଏଠାରେ ଚଳିବ ନାହିଁ ବୈଜ୍ଞାନିକ ମହାଶୟ, ଯଦ୍ୟପି ଅନେକ ମନୁଷ୍ୟ ଜଡ଼ ପଦାର୍ଥଙ୍କ ନିୟମରେହିଁ ଚଳିଥାନ୍ତି । ତେବେ ହଁ, ଅନ୍ୟ କିଛି ବୈଜ୍ଞାନିକ ନିୟମ ଯେବେ ଥାଏ ତା' ହେଲେ ଆମ୍ଭେମାନେ ଜାଣିବାକୁ ଆଗ୍ରହୀ ଏବଂ ଜାଣିଲା ମାତ୍ରକେ ଅତି ତୁରନ୍ତ ମତ ପରିବର୍ତ୍ତନ କରିବାକୁ ଆଗଭର ହୋଇ ରହିଥିବୁ । ତେବେ ଯାହା ଦେଖାଗଲା, ବିଘ୍ନେଶ୍ୱରଙ୍କ ଉପରେ ମାଡ଼ ବର୍ଷାର କୌଣସି ସଠିକ ବୈଜ୍ଞାନିକ ଫର୍ମୁଲା ଦେବା ଏକ୍ଷଣି ସମ୍ଭବ ହେବ ନାହିଁ, ଅତଏବ ସେ ପ୍ରୟାସରୁ ବିରତ ହେବୁଁ । ବିଘ୍ନେଶ୍ୱର ଯେଉଁ ଦୁଇ ଚାରିଟି ଶକ୍ତିଶାଳୀ କରାଘାତ ବିଭିନ୍ନ ଦିଗକୁ ନିକ୍ଷେପ କରିଥିଲେ ସେତିକିରେ କ୍ରିୟାଟି ଶେଷ ହୋଇଗଲା; କାରଣ ସ୍ୱେଚ୍ଛାସେବକଗଣ ଗୋଟିଏ ଖୋର୍ଦ୍ଧାଲୁଙ୍ଗି ସାହାଯ୍ୟରେ ତାହାଙ୍କର ହସ୍ତଦ୍ୱୟ ପଛପଟିଆ କରି ବାନ୍ଧି ରଖିଥିଲେ । ତାଙ୍କର ଆତ୍ମଘାତୀ ହେବାର ଦୃଢ଼ ସଂକଳ୍ପ କଥା ଅନୁମାନ କରି କେବଳ ଜନହିତ ଉଦ୍ଦେଶ୍ୟରେ ହିଁ ତାଙ୍କ ଉପରେ ଏତିକି ଆଘାତ ଆଣିଥିବା ସହାନୁଭୂତିଶୀଳ ସହୃଦୟ ସ୍ୱେଚ୍ଛାସେବକ ସହପାଠୀ-ଙ୍କର ଏହି ଅବଦାନ ବିଘ୍ନେଶ୍ୱରଙ୍କର ବ୍ୟକ୍ତିଗତ ଇତିହାସରେ ୨୪ କାରାଟ୍ ସୁବର୍ଣ୍ଣାକ୍ଷରରେ ଲିଖିତ ରହିଥିବ ଏବଂ ତହିଁରେ ହୀରା ଏବଂ ମୋତି ମାଣିକ୍ୟ ଖଣ୍ଡିଏ ଖଣ୍ଡିଏ ବସାଇ ତାହା ଆହୁରି ଉଜ୍ଜ୍ୱଳ କରିବା ଉଦ୍ଦେଶ୍ୟରେ ତାଙ୍କୁ ଧକ୍କା ଦେଇ ଦେଇ ପଦାକୁ ଅଣାଗଲା । ପୁନଶ୍ଚ, ମନୁଷ୍ୟ ଏକ ସାମାଜିକ ପ୍ରାଣୀ ଏବଂ ସମାଜର ଇଚ୍ଛାରେ ହିଁ ଆତଯାତ ହୋଇଥାଏ ଏବଂ ସମାଜର ଇଚ୍ଛା ହେଲେ ଅନ୍ୟ କୌଣସି ଯାଥାର୍ଥ ଖୋଜି ବାହାର କରିବାକୁ ଚେଷ୍ଟିତ ହୁଏନାହିଁ । ଆହୁରି

ପୁନଶ୍ଚ, ମନୁଷ୍ୟ ଗୋଟିଏ ଯୁକ୍ତିପ୍ରବଣ ଜୀବ, ଏହି ସତ୍ୟ ସମାଜ କ୍ଷେତ୍ରରେ ଘୋର ମିଥ୍ୟାରେ ପରିଣତ ହୁଏ ଏବଂ ସମାଜ ଗୋଷ୍ଠୀ କେବଳ ଅନ୍ଧଭାବରେ ନିଜର ବିଶ୍ୱାସ ଅନୁଯାରେ ଚାଲନ୍ତି ସମାଜ ଅଥବା ବ୍ୟକ୍ତିଙ୍କର ସମାନ ଅବସ୍ଥାର ବିଶ୍ୱାସ ଅନୁସାରେ କର୍ମ କରି ଯାଉଥାଏ । ଯେଉଁ ସକଳ ବ୍ୟକ୍ତି କରିଥାଏ, ତାହା ଅବା ବଦଳି ଯାଇପାରେ. କିନ୍ତୁ ଯେଉଁ ସକଳ କୌଣସି ଗୋଷ୍ଠୀ, ବିଶେଷ ରୂପରେ 'ଯୁବଶକ୍ତି' କରିଥିବ କାହାରି ସାଧ୍ୟ ନାହିଁ ତାହା ଘଳେ ହେଲେ ଟଳାଇ ପାରିବ ।

: ଉପର୍ଯ୍ୟୁକ୍ତ ତତ୍ତ୍ୱ କଥାଟି ସମ୍ପୂର୍ଣ୍ଣ ରୂପେ ଆମ୍ଭର ମସ୍ତିଷ୍କରୁ ଏହିକ୍ଷଣି ଉଦ୍‌ଗତ ହୋଇଅଛୁ ବୋଲି ଲେଖି ଦେଲୁଁ କ ଦରକାରବେଳେ କର୍ମରେ ଆସିବ । ଏତେ ତତ୍ତ୍ୱ କଥା କିନ୍ତୁ ଘଟଣା ସ୍ଥଳରେ କୁହାଯାଇ ନ ଥିଲା ପରମ ସୌଭାଗ୍ୟର ବିଷୟ । କାରଣ ଆଜକାଲିକାର ସିନେମା ଏବଂ ଥିଏଟରମାନଙ୍କରେ ହଠାତ୍ ହାତଗୋଡ଼ ଲଟିକରିନେଇ ଲୋକମାନେ ଠିଆ ହୋଇଯିବା ଭଳିରେ ଆମ୍ଭ-ମାନଙ୍କର ସ୍ୱେଚ୍ଛାସେବକ ନାୟକ ଓ ନେତାନାୟକମାନଙ୍କ ଅପେକ୍ଷା କରାଇ ଗୋଟିଏ ନାତିଦୀର୍ଘ ଭାଷଣ ଦେଇଥିଲେ ଅବା ଅନ୍ୟ କଥା ହୋଇଥାନ୍ତା, କିନ୍ତୁ ଦେଖାଯାଏ ଘଟଣା ପ୍ରୁ ଘଟଣା ଚାଲୁଥାଏ ବ୍ୟାଖାକାରମାନେ ଅନ୍ୟାନ୍ୟ ବର୍ଷ ପରେ ଧୀରେ ସୁସ୍ଥେ ତାହାର ବିଶ୍ଳେଷଣ କରୁଥାନ୍ତି ।

ଲିଙ୍ଗୁରେଶ୍ୱରଙ୍କ କୃପାରୁ ଗୋଟିଏ ସାଇକଲ୍ ରିକ୍ସା ମଧ୍ୟ ଆସିଗଲା ଏବଂ ଜଣ ଜଣ କରି ସ୍ୱେଚ୍ଛାସେବକ ପାଳିକରି ଅନବରତ ମାଡ଼ମରା କାର୍ଯ୍ୟକ୍ରମଟି ଚାଲୁ ରଖିଲେ । ଏହି ପ୍ରକାରେ ବିଘ୍ନେଶ୍ୱର ଡାକ୍ତରଖାନାରେ ପହଞ୍ଚିଲେ । ଭାରପ୍ରାପ୍ତ ଡାକ୍ତର ଜଣକ ଏହି ଜରୁରୀକାଳୀନ ଅବସ୍ଥାକୁ ଦେଖି ଗୋଟିଏ ମୋଟା ଖାତାରେ ଅନେକ ସମୟ ଧରି ଲେଖିଲେ । ବିଘ୍ନେଶ୍ୱରଙ୍କର ବୟାନ୍ ହେଲା. ସେ ଆଦୌ ଆତ୍ମହତ୍ୟା କରିନାହାନ୍ତି ଏବଂ ଅଫିମ ଖାଇ ନାହାନ୍ତି; କିନ୍ତୁ ଘଟଣା ଯେ ଅନେକ ଆଗକୁ ବଢ଼ିଗଲାଣି, ସେଥିପାଇଁ ତାହାଙ୍କର ଘୋର ଆପତ୍ତି ସତ୍ତ୍ୱେ ତାଙ୍କର ମୁଖ ଗହ୍ୱରରେ ନଳୀ ଭର୍ତ୍ତିକରି ପେଟ ଧୁଆ ଧୋଇ ଆରମ୍ଭ ହେଲା । ତଥାପି ବିଘ୍ନେଶ୍ୱର ଏକ ସ୍ୱେଚ୍ଛାସେବକ ସମ୍ମିଳନୀରେ ଭାଷଣ ଦେଇ କହିଲେ, ତାହାଙ୍କର ଆତ୍ମହତ୍ୟା'ର ଆକ୍ଷେପ ଘୋରତର ଭାବରେ ମିଥ୍ୟା ଏବଂ ରାଜନୈତିକ ଅଭିସନ୍ଧିସୂଚକ । ସେ ପୁଣି କହିଲେ, ଆତ୍ମହତ୍ୟା କରିବା କଥା ସେ କେବେ ଚିନ୍ତା କରିନାହାନ୍ତି ସତ୍ତ୍ୱକାଳେ କୁମାରୀ ନମ୍ରମିତା ମହାନ୍ତି ସ୍ୱୟଂ ପରୋକ୍ଷରେ ସ୍ୱୀକାର କରିଥିବାର ଜଣାଯାଇଛୁ

ଯେ, ସେ ପିତଗଙ୍ଗିଆ ବ୍ୟକ୍ତିମାନଙ୍କୁ ପସନ୍ଦ ତ ଦୂରର କଥା, ପାସଙ୍ଗରେ ମଧ ପକାନ୍ତି ନାହିଁ ଏବଂ ବିଶ୍ୱସ୍ତ ସୂତ୍ରରୁ ଏକଥା ଜାଣିବା ପରେ ବହୁବାର ଖୋଜିକରି କୌଣସି ଅଭାବ ବର୍ତ୍ତିମାନ ନାହିଁ । ସେ ଲର୍ଡ଼ କେଶ୍ବରଙ୍କ ଆଡ଼କୁ ସଳଖେ ଚାହିଁ କହିଲେ, ସେ ଫେରି ଆସୁଛନ୍ତି । ଏହାର ପ୍ରତିଶୋଧ ବିଷୟରେ କୌଣସି ନିର୍ଦ୍ଦିଷ୍ଟ ଯୋଜନା ତାଙ୍କର ମନରେ ଅଛି କି ବୋଲି ଏକ ପ୍ରଶ୍ନର ଉତ୍ତରରେ ସେ କହିଲେ, ଦେଖାଯାଉ କ'ଣ ହେଉଛି । ଦୁଇ ଚାରିଦିନ ଦେହର ଦରଜ କମିବାକୁ ଲାଗିବ ଏବଂ ପରେ ସେ ଚନ୍ଦ୍ରାଳକ ଦେଖିବେ ବୋଲି କେହି କେହି ଅନୁମାନ କରୁଛନ୍ତି ।

